# କିଶନ ପଟ୍ଟନାୟକ

## ପ୍ରବନ୍ଧ ସଙ୍କଳନ

### ପ୍ରଥମ ଭାଗ

**ସମ୍ପାଦନା**

**ନିଗମାନନ୍ଦ ଷଡ଼ଙ୍ଗୀ**
**ଶୈଲେନ ରାଉତରାୟ**

**ବିକଳ୍ପ ପ୍ରକାଶନ, ବରଗଡ଼**

**ସେଣ୍ଟର୍ ଫର୍ ହ୍ୟୁମାନ୍ ସାଇନ୍ସେସ୍ ଭୁବନେଶ୍ୱର**

**ପ୍ରବନ୍ଧ ସଙ୍କଳନ (ପ୍ରଥମ ଭାଗ)**

ଲେଖକ : କିଶନ ପଟ୍ଟନାୟକ

ସମ୍ପାଦକ : ନିଗମାନନ୍ଦ ଷଡ଼ଙ୍ଗୀ ଓ ଶୈଳେନ ରାଉତରାୟ

ଡି.ଟି.ପି. : ଉର୍ମିଳା ଆଚାର୍ଯ୍ୟ

ପ୍ରକାଶକ : ବିକଳ୍ପ ପ୍ରକାଶନ, ସମତା ଭବନ, ବରଗଡ଼ ଓ
ସେଣ୍ଟର୍ ଫର୍ ହ୍ୟୁମାନ୍ ସାଇନ୍ସେସ୍ ଭୁବନେଶ୍ୱର

ମୁଦ୍ରଣ : ଏବି ଇମେଜିଂ ଆଣ୍ଡ୍ ପ୍ରିଣ୍ଟସ୍ ପ୍ରା.ଲିଃ
୬୨,୬୩, ଗଙ୍ଗାନଗର, ୟୁନିଟ୍-୬, ଭୁବନେଶ୍ୱର

ପ୍ରଥମ ପ୍ରକାଶ : ୨୦୧୫

ମୂଲ୍ୟ : ୩୦୦ଟଙ୍କା (ଭାରତ ଭିତରେ)
୧୨ ଡଲାର (ଭାରତ ବାହାରେ)

---

**Prabandha Sankalana (Volume -I)**

Author : Kisan Patnaik

Editor(s) : Nigamananda Sadangi and Sailen Routray

D.T.P. : Urmila Acharya

Publisher : Bikalpa Prakashan, Samata Bhawan, Bargarh and
Centre for Human Sciences Bhubaneswar

Printer : AB Imaging & Prints Pvt. Ltd.
62 & 63, Ganga Nagar, Unit-6, Bhubaneswar

First Edition : 2015

Price : Rs. 300/- (Indian Price)
$ 12 (For Sale Outside India)

# ସୂଚୀପତ୍ର


| ପ୍ରବନ୍ଧ | ପୃଷ୍ଠା ସଂଖ୍ୟା |
|---|---|
| ମୁଖବନ୍ଧ | ୬ |
| ସମ୍ପାଦକୀୟ | ୯ |
| କିଶନ ପଟ୍ଟନାୟକ : ଏକ ଜୀବନାଲେଖ୍ୟ | ଟ |
| *ଭାରତୀୟ ବୁଦ୍ଧିଜୀବୀର ସଙ୍କଟ ଓ ଅନ୍ୟାନ୍ୟ ପ୍ରବନ୍ଧରୁ* | |
| ଭାରତୀୟ ବୁଦ୍ଧିଜୀବୀର ସଙ୍କଟ | ୦୩ |
| ଦେଶରକ୍ଷା ଓ ଭାରତୀୟ ମସ୍ତିଷ୍କ | ୨୧ |
| ଏକବିଂଶ ଶତାବ୍ଦୀରେ ଗଣତନ୍ତ୍ରର ଭବିଷ୍ୟତ | ୩୫ |
| ଇଣ୍ଟରନେଟ୍ ଓ ବଳଦଗାଡ଼ି ବିରୁଦ୍ଧରେ ଏକ ଘୋଷଣାପତ୍ର | ୪୯ |
| ଆଧୁନିକ ବିଶ୍ୱରେ ସମାଜବାଦର ନୂତନ ରୂପରେଖ | ୬୯ |
| ନାରୀ ଆନ୍ଦୋଳନର ନବଦିଗନ୍ତ | ୮୭ |
| ଧନୀ ଦେଶମାନଙ୍କ ବିକଳ୍ପ ବନାମ ଗରିବ ଦେଶର ବିକଳ୍ପ | ୯୫ |
| *ବିଚାରର ଟିପାଖାତାରୁ* | |
| ଏକ ବିଚାରବିହୀନ ଶତାବ୍ଦୀ | ୧୧୧ |
| ବିଚାରଧାରାର ପତନ ଓ ଅଭ୍ୟୁଦୟ | ୧୧୭ |
| ଜଗତୀକରଣ ବନାମ ବାମପନ୍ଥୀ ଚିନ୍ତାଧାରା | ୧୨୫ |
| ଚୀନ୍, ଭାରତ ଓ ବିଶ୍ୱ ପୁଞ୍ଜିବାଦ | ୧୩୯ |

| | |
|---|---|
| ଅର୍ଥଶାସ୍ତ୍ରର ନୂତନ ଦିଗନ୍ତ | ୧୫୧ |
| ଓଡ଼ିଶା ରାଜନୀତିର ନିରାଶା ଓ ଆଶା | ୧୬୩ |
| ଖଣିର ବିକଳ୍ପ | ୧୭୩ |
| ଜଳର ଭବିଷ୍ୟତ | ୧୭୯ |
| ଜଗତୀକରଣ ଓ ଦାରିଦ୍ର୍ୟର ଉତ୍ପତ୍ତି | ୧୮୩ |
| ଭାରତୀୟ ରାଷ୍ଟ୍ରର ଦୁର୍ଗତି | ୧୯୩ |
| ହିନ୍ଦୁ ଧର୍ମ ଓ ଭାରତୀୟ ରାଷ୍ଟ୍ର | ୧୯୯ |
| ସାମାଜିକ ବୈଷମ୍ୟ | ୨୦୭ |
| ଦଳିତ ରାଜନୀତି ଓ ଶୁଦ୍ର ସଂସ୍କୃତି | ୨୧୫ |
| ବର୍ଣ୍ଣାଶ୍ରମରୁ ନବ-ବ୍ରାହ୍ମଣବାଦ | ୨୨୩ |
| ନାରୀର ଦାସତ୍ୱ ଓ ମୁକ୍ତି | ୨୩୩ |
| ବିକାଶ ଓ ଶିକ୍ଷା | ୨୪୩ |
| ଭାଷା, ଉପଭାଷା, ମାତୃଭାଷା | ୨୫୩ |
| ଆଞ୍ଚଳିକ ବୈଷମ୍ୟ ଓ ସ୍ୱତନ୍ତ୍ର ରାଜ୍ୟ | ୨୬୧ |

# ମୁଖବନ୍ଧ

କିଶନ ପଟ୍ଟନାୟକ (ଜନ୍ମ – ୨୯ ଜୁନ୍ ୧୯୨୯, ମୃତ୍ୟୁ – ୨୭ ସେପ୍ଟେମ୍ବର ୨୦୧୪) ପରାଧିନ ଭାରତରେ, ଓଡ଼ିଶାର ଏକ ରାଜାରାଜୁଡ଼ା ଗଡ଼ଜାତ ଅଞ୍ଚଳ (ଭବାନୀପାଟଣା, କଳାହାଣ୍ଡିରେ, ଜନ୍ମଗ୍ରହଣ କରି ନିଜସ୍ୱ ସାଧନା ଓ ସ୍ୱାଧ୍ୟାୟ ବଳରେ ଅଖିଳ ଭାରତୀୟ ସ୍ତରରେ ଜଣେ ମୌଳିକ ରାଜନୈତିକ ଚିନ୍ତକ ଭାବରେ ପରିଚିତି ତଥା ଖ୍ୟାତି ଲାଭ କରିଥିବା ଜଣେ ବିରଳ ବ୍ୟକ୍ତିତ୍ୱ । ମୂଳତଃ ସେ ଥିଲେ ଜଣେ ରାଜନେତା; ନିଜକୁ ଜଣେ 'ରାଜନୈତିକ କର୍ମୀ' ବୋଲି ପରିଚୟ ଦେବାକୁ ସେ ପସନ୍ଦ କରୁଥିଲେ । ବିଭିନ୍ନ ପ୍ରସଙ୍ଗରେ ଚିନ୍ତନମନନ ଓ ଲେଖନ, ଅର୍ଥାତ ବିଚାର ନିର୍ମାଣ ତାଙ୍କର ରାଜନୈତିକ କର୍ମର ଏକ ଅଭିନ୍ନ ତଥା ନିରନ୍ତର ଅଙ୍ଗ ଥିଲା ।

ପାଖାପାଖି ୭୫ ବର୍ଷର ଜୀବନକାଳ ଭିତରୁ ୫୦ ବର୍ଷରୁ ଊର୍ଦ୍ଧ୍ୱ ସମୟ ସେ ସାର୍ବଜନିକ ଜୀବନରେ ସକ୍ରିୟ ରହିଥିଲେ । ନିର୍ବାଚନ ରାଜନୀତିରେ ସେ ଥରେ ମାତ୍ର ବ୍ୟକ୍ତିଗତ ସଫଳତା ହାସଲ କରିଥିଲେ; ୧୯୬୨ ରେ ତାଙ୍କୁ ମାତ୍ର ୩୨ ବର୍ଷ ହୋଇଥିବା ବେଳେ ସୋସାଲିଷ୍ଟ୍ ପାର୍ଟିର ପ୍ରାର୍ଥୀ ଭାବରେ ସମ୍ବଲପୁର ଲୋକସଭା ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇଥିଲେ । ଡକ୍ଟର ରାମ୍‌ମନୋହର୍ ଲୋହିଆଙ୍କୁ ସେ ନିଜର ରାଜନୈତିକ ଗୁରୁ ବୋଲି ଗ୍ରହଣ କରିଥିଲେ । ଭାରତୀୟ ରାଜନୈତିକ ବିଚାର ପରମ୍ପରାରେ ତାଙ୍କୁ ଗାନ୍ଧୀ-ଲୋହିଆ-ଜେପି (ଜୟପ୍ରକାଶ୍ ନାରାୟଣ୍) ବିଚାରଧାରାର ଜଣେ ବାହକ ବୋଲି କୁହାଯାଇପାରେ । ଗାନ୍ଧିଜୀଙ୍କ ତିରୋଧାନ ପରେ ସେ ରାଜନୀତି କ୍ଷେତ୍ରକୁ ପ୍ରବେଶ କରିଥିଲେ ଓ ଆମ ଦେଶରେ ସାମଜବାଦୀ ଆନ୍ଦୋଳନର ଦୁଇ ତୁଙ୍ଗ୍ ନେତା ତଥା ସିଦ୍ଧାନ୍ତକାର ରାମମନୋହର ଲୋହିଆ ଓ ଜୟପ୍ରକାଶ ନାରାୟଣଙ୍କ ଘନିଷ୍ଠ ସାନ୍ନିଧ ଲାଭ କରିବାର ସୁଯୋଗ ପାଇଥିଲେ ।

କିଶନ ପଟ୍ଟନାୟକଙ୍କ ପାଇଁ ରାଜନୀତି ସର୍ବଦା ଏକ ବହୁମୁଖୀ କାମ ଥିଲା । କ୍ଷମତାସର୍ବସ୍ୱ ଚରିତ୍ର ରାଜନୀତି କ୍ଷେତ୍ରରେ ପତନ ପାଇଁ ମୁଖ୍ୟତଃ ଦାୟୀ ବୋଲି ହୃଦୟଙ୍ଗମ କରି ନିରବଚ୍ଛିନ୍ନ ଭାବରେ ସଙ୍ଘର୍ଷ, ରଚନାତ୍ମକ କାମ, ସଙ୍ଗଠନ ଓ ବିଚାର ନିର୍ମାଣ ଓ କର୍ମୀ ପ୍ରଶିକ୍ଷଣ ଉପରେ ସେ ସକ୍ରିୟ ରହୁଥିଲେ । କ୍ଷମତାସର୍ବସ୍ୱ କୌଣସି ରାଜନୈତିକ ଦଳରେ ସାମିଲ୍ ନହୋଇ ସେ ଦେଶ ଓ ଦୁନିଆର ବିଭିନ୍ନ ସମସ୍ୟାବଳୀ ତଥା ଯୁଗୋପଯୋଗୀ ବିକଳ୍ପ ଓ ସମାଧାନ ଉପରେ ନିରନ୍ତର ଗଭୀର ଭାବରେ ଚିନ୍ତା ଓ ବିଚାର ବିମର୍ଶ କରୁଥିଲେ । ବିଭିନ୍ନ ଧାରାର ସାମାଜିକ-ରାଜନୈତିକ କର୍ମୀମାନଙ୍କ ପାଇଁ ତାଙ୍କ ସହ ବିଚାରବିମର୍ଶର ସୁଯୋଗ ଏକ ସୁଖଦ ଓ ଶିକ୍ଷାପ୍ରଦ ଅନୁଭବ ଥିଲା । ଅନ୍ୟମାନଙ୍କର ମତ ଓ ବିଚାରକୁ ଶୁଣିବାର ଏକ ଅନନ୍ୟ ଗୁଣ ତାଙ୍କ ଭିତରେ ଥିଲା ।

ଉପରୋକ୍ତ ଗୁଣ କାରଣରୁ ତାଙ୍କ ଭିତରେ ଏକ ଅସାଧାରଣ ବୌଦ୍ଧିକ ନମ୍ରତା ପରିଲକ୍ଷିତ ହେଉଥିଲା । ୨୦୦୦ରେ ଯେତେବେଳେ ତାଙ୍କର ରାଜନୈତିକ ଚିନ୍ତନର ପ୍ରଥମ ହିନ୍ଦୀ ପୁସ୍ତକ 'ବିକଳ୍ପହୀନ୍ ନହିଁ ହୈ ଦୁନିଆ' ରାଜ୍‌କମଲ୍ ପ୍ରକାଶନ୍ ଦ୍ୱାରା ପ୍ରକାଶ ଲାଭ କଲା, ତାହାର ଭୂମିକାରେ ସେ ଲେଖିଥିଲେ, 'ଏହି ପୁସ୍ତକ ମୋର ନୁହେଁ । ମୁଁ ଏହାର ପ୍ରବକ୍ତା ମାତ୍ର ।'

ଦୀର୍ଘ ସମୟ ହେଲା ମୋତେ ପ୍ରତୀତ ହେଉଛି ଯେ ମୁଁ ଯାହା ଦେଖେ, ପଢ଼େ ଓ ଅନ୍ୟମାନଙ୍କ ସହ କଥାବାର୍ତ୍ତା କରେ; ସେ ଭିତରୁ ଅନେକ କଥା ମୁଁ ଗ୍ରହଣ କରିନିଏ । ଏହିପରି ଭାବରେ ମୁଁ ଯେତେବେଳେ ଲେଖେ, ତନ୍ମଧ୍ୟରୁ ଅଧିକାଂଶ ମୋତେ ସେଥିରୁ ହିଁ ମିଳିଥାଏ । ହଁ, ମୁଁ କେବଳ ନିଜସ୍ୱ ଶୈଳୀରେ ତାକୁ ଲେଖିଦେଇଥାଏ । କେତେକ କଥା ଅନ୍ୟମାନଙ୍କ ଠାରୁ କିମ୍ବା ଅନ୍ୟମାନଙ୍କ କଥାର ପ୍ରତିକ୍ରିୟାରୁ ଜନ୍ମଲାଭ କରିଥାଏ । ଅର୍ଥାତ ଅନ୍ୟମାନଙ୍କର ମତ ବା କଥା ନଥିଲେ ମୋର ମତ ମଧ୍ୟ କୁଆଡ଼ୁ ଆସନ୍ତା । ତେଣୁ କେବଳ ମତ/କଥା ରଖିବାର ମୋର ଯୋଗଦାନ କାରଣରୁ ମୁଁ ଏହାର କର୍ତ୍ତା ନୁହେଁ, ବରଂ ପ୍ରବକ୍ତା' । ଏପରି ଏକ ଭାବନାକୁ ଅନ୍ତର ସହ ପ୍ରକାଶ କରିବା ପାଇଁ ଯେକୌଣସି ବ୍ୟକ୍ତିର ହୃଦୟ ଓ ମସ୍ତିଷ୍କରେ ଅସାଧାରଣ ନମ୍ରତା ଲୋଡ଼ା । ସେପରି ଉପାଦାନରେ ଗଢ଼ା ଥିଲା କିଶନ ପଟ୍ଟନାୟକଙ୍କ ବୌଦ୍ଧିକ ବ୍ୟକ୍ତିତ୍ୱ ।

'ସରଳ ଜୀବନ ଓ ଉଚ୍ଚ ବିଚାର'ର ସେ ଏକ ଜୀବନ୍ତ ଉଦାହରଣ ଥିଲେ । ରାଜନୀତିରେ ସର୍ବଦା ସକ୍ରିୟ ରହି ଓ ଖ୍ୟାତି ଅର୍ଜନ କରି ମଧ୍ୟ କ୍ଷମତା ଓ ସମ୍ପତ୍ତି ପ୍ରତି ସମ୍ପୂର୍ଣ୍ଣ ନିର୍ମୋହ ରହିବାର ବିରଳ ଗୁଣ ତାଙ୍କ ଭିତରେ ଥିଲା । ତାଙ୍କର ଏହି ଅନନ୍ୟ ଗୁଣ କାରଣରୁ ହିନ୍ଦୀ ଜଗତର ପ୍ରଖ୍ୟାତ ସାହିତ୍ୟିକ ଧର୍ମବୀର ଭାରତୀ ତାଙ୍କୁ 'ରାଜନୈତିକ ସନ୍ଥ'ର ଆଖ୍ୟା ଦେଇଥିଲେ । କିଶନ ପଟ୍ଟନାୟକଙ୍କ କଥା ଓ କାମରେ ଯେପରି ସାମଞ୍ଜସ୍ୟ ଥିଲା, ତାଙ୍କର ଭାଷଣ ଓ ରଚନା ମଧ୍ୟ ସେପରି ଭାବରେ ଏକାଧାରରେ ସାବଲୀଳ ଥିଲା । ଅତି ଗୂଢ଼ କଥାକୁ ସରଳ ଭାଷାରେ କହିବାର ଓ ଲେଖିବାର ଏକ ଚମତ୍କାର ଶୈଳୀ ତାଙ୍କର ଥିଲା ।

ଦେଶ ଓ ସମାଜ ଜୁଝୁଥିବା ସମସାମୟିକ ବିଭିନ୍ନ ସମସ୍ୟାକୁ ଗଭୀର ଅର୍ନ୍ତଦୃଷ୍ଟି ସହ ବିଶ୍ଲେଷଣ ପୂର୍ବକ ସେସବୁର ଦୂରଗାମୀ ପରିଣାମକୁ ଦେଖି ପାରିବାର ଏକ ଅସାଧାରଣ କ୍ଷମତା ଥିଲା କିଶନ ପଟ୍ଟନାୟକଙ୍କର । ତାଙ୍କର ନିବନ୍ଧଗୁଡ଼ିକୁ ପାଠ କଲେ ଏକଥା ଅବଶ୍ୟ ହୃଦ୍‌ବୋଧ ହେବ । ଗତ ଶତାବ୍ଦୀର ଶେଷ ଦଶନ୍ଧିର ପ୍ରାରମ୍ଭରେ ତିନୋଟି ସମ୍ବେଦନଶୀଳ ଓ ଜଟିଳ ପ୍ରସଙ୍ଗ ଆମ ଜାତୀୟ ଜୀବନକୁ ଅଭୂତପୂର୍ବ ଭାବରେ ଉଦ୍‌ବେଳିତ କଲା । ମଣ୍ଡଳ କମିଶନ୍‌ର ସୁପାରିଶକୁ କାର୍ଯ୍ୟକାରୀ କରିବା ନିଷ୍ପତ୍ତିକୁ ନେଇ ବିବାଦ ଓ ସାମାଜିକ ସ୍ତରରେ ବିଭେଦ, ବାବ୍ରି ମସ୍‌ଜିଦ୍-ରାମମନ୍ଦିର ପ୍ରସଙ୍ଗକୁ କେନ୍ଦ୍ର କରି ସାମ୍ପ୍ରଦାୟିକ ଉତ୍ତେଜନା ଓ ନୂଆ ଆର୍ଥିକ ନୀତିର ପ୍ରଚଳନର ତାଳେ ତାଳେ ଜଗତିକରଣ-ଉଦରୀକରଣ-ଘରୋଇକରଣ ଯୁଗର ଆରମ୍ଭ । ଏହି ତିନୋଟି ଯାକ ପ୍ରସଙ୍ଗ ଜନିତ ଘଟଣାବଳୀ ଏକା ସମୟରେ ଆମର ରାଷ୍ଟ୍ରୀୟ ଚେତନାକୁ ଗଭୀର ଭାବରେ ପ୍ରଭାବିତ କଲା । ସେହି କାଳଖଣ୍ଡରେ ଦେଶର ଅଧିକାଂଶ ରାଜନେତା ଓ

ବୁଦ୍ଧିଜୀବୀମାନଙ୍କ ଭିତରେ ଗୁରୁତର ବିଚାରଗତ ବିଭ୍ରାଟ ଦେଖାଦେଲା, ଯାହାର ପରିଣାମ ଆଜି ବି ଅନୁଭୂତ ହେଉଛି । ସେପରି ଏକ ସନ୍ଧିକ୍ଷଣରେ ଏହି ସବୁ ଜଟିଳ ପ୍ରସଙ୍ଗକୁ ସଠିକ ଓ ସନ୍ତୁଳିତ ଭାବରେ ବୁଝିପାରି ସେସବୁର ଦୂରଗାମୀ ପରିଣାମକୁ ଲୋକଲୋଚନରେ ସ୍ପଷ୍ଟ ଭାବରେ ଦେଖାଇବାର ନିରବଚ୍ଛିନ୍ନ କାମ କରିଥିବା ଦେଶର କତିପୟ ରାଜନୈତିକ ବୁଦ୍ଧିଜୀବୀମାନଙ୍କ ଭିତରେ କିଶନ ପଟ୍ଟନାୟକଙ୍କ ନାମ ଆଗ ଧାଡ଼ିରେ ରହିବ । ଏ ବିଷୟକ ପ୍ରବନ୍ଧଗୁଡ଼ିକରୁ ଆମେ ଏହାର ପ୍ରମାଣ ପାଇପାରିବା ।

କିଶନ ପଟ୍ଟନାୟକଙ୍କର ନିବନ୍ଧଗୁଡ଼ିକ ମୁଖ୍ୟତଃ ତାଙ୍କର ରାଜନୈତିକ କର୍ମ ଓ ଚିନ୍ତା ଦ୍ୱାରା ପ୍ରେରିତ ଥିଲା । ସାଧାରଣ କର୍ମୀମାନଙ୍କୁ ଆଖି ଆଗରେ ରଖି ସେ ତାଙ୍କର ଭାବ ଓ ଭାଷାକୁ ସଜାଉଥିଲେ । ମୂଳତଃ ତିନୋଟି ଭାଷାରେ (ହିନ୍ଦି, ଓଡ଼ିଆ ଓ ଇଂରାଜୀ) ସେ ଦକ୍ଷତାପୂର୍ବକ ରଚନା କରୁଥିଲେ । ଯଦିଓ ଓଡ଼ିଆ ତାଙ୍କର ମାତୃଭାଷା, ସର୍ବାଧିକ ରଚନା ସେ ହିନ୍ଦୀରେ କରିଯାଇଛନ୍ତି । ଯୁବାବସ୍ଥାରେ ଲୋକସଭା ସଦସ୍ୟ ହେବାର ସୁଯୋଗ, ଲୋହିଆଙ୍କ ସାନ୍ନିଧ୍ୟରେ ତାଙ୍କର ପ୍ରତିଭାର ବିକାଶ ସାଙ୍ଗକୁ ଅଖିଳ ଭାରତୀୟ ସ୍ତରରେ ନେତୃତ୍ୱର ସୁଯୋଗ ଓ ପରିଚିତି ଲାଭ କାରଣରୁ ଏହା ସ୍ୱାଭାବିକ ଥିଲା ।

୧୯୫୦ ଦଶକର ଶେଷ ଭାଗରେ ଡକ୍ଟର୍ ଲୋହିଆଙ୍କ ଦ୍ୱାରା ସମ୍ପାଦିତ ହିନ୍ଦୀ ପତ୍ରିକା 'ଜନ' ଓ ଇଂରାଜୀ ପତ୍ରିକା 'ମାନ୍‌କାଇଣ୍ଡ୍' ସହ ସେ ସହଯୋଗୀ ରୂପେ ଜଡ଼ିତ ହୋଇଥିଲେ । ୧୯୭୭ରୁ 'ସାମୟିକ ବାର୍ତ୍ତା' ନାମକ ଏକ ହିନ୍ଦୀ ପତ୍ରିକାର ମୁଖ୍ୟ ସମ୍ପାଦକ ହିସାବରେ ଦାୟିତ୍ୱ ଜୀବନର ଶେଷ ପର୍ଯ୍ୟନ୍ତ ତୁଲାଇଥିଲେ । ଏହି ପତ୍ରିକାରେ ନିୟମିତ ଲେଖନ ସାଙ୍ଗକୁ ବିଭିନ୍ନ ସମ୍ବାଦପତ୍ର ଓ ପତ୍ରପତ୍ରିକା ପାଇଁ ମଧ୍ୟ ସେ ଲେଖୁଥିଲେ । ରାଜନୈତିକ ଜୀବନର ପ୍ରାରମ୍ଭରେ କଟକ ପାର୍ଟି (ସୋସାଲିଷ୍ଟ୍) ଅଫିସ୍‌ରୁ ପ୍ରକାଶିତ 'କୃଷକ' ପତ୍ରିକାର ସମ୍ପାଦନା କାମ ସହ ସେ ସକ୍ରିୟ ଥିଲେ । ୧୯୮୪ରେ ତାଙ୍କର ମୁଖ୍ୟ ସମ୍ପାଦନାରେ ବରଗଡ଼ରୁ 'ଭୂମିପୁତ୍ର' ନାମକ ଏକ ପତ୍ରିକା ବର୍ଷକ ପାଇଁ ବାହାରିଥିଲା । ପରବର୍ତ୍ତୀ ସମୟରେ ୧୯୯୩ରୁ ଜୀବନର ଶେଷ ପର୍ଯ୍ୟନ୍ତ ବରଗଡ଼ରୁ ପ୍ରକାଶିତ ତ୍ରୈମାସିକ ବିଚାର ପତ୍ରିକା 'ବିକଳ୍ପ ବିଚାର'ର ସେ ମୁଖ୍ୟ ସମ୍ପାଦକ ଥିଲେ । ଏସବୁରେ ପ୍ରକାଶିତ ତାଙ୍କର ଓଡ଼ିଆ ପ୍ରବନ୍ଧ ବାହାରେ ବିଭିନ୍ନ ପତ୍ରପତ୍ରିକା ପାଇଁ ମଧ୍ୟ ସେ ଲେଖୁଥିଲେ ।

କିଶନ ପଟ୍ଟନାୟକଙ୍କ ଜୀବଦ୍ଦଶାରେ ୧୯୯୫ ମସିହାରେ ଦିଲ୍ଲୀର ଜଣେ ସାଥି ଅରବିନ୍ଦ ମୋହନଙ୍କ ଉଦ୍ୟମରେ 'ଭାରତ୍ ଶୁଦ୍ରୋଁ କା ହୋଗା' (ସମତା ପ୍ରକାଶନ) ଶୀର୍ଷକରେ ଏକ କ୍ଷୁଦ୍ର ପ୍ରବନ୍ଧ ସଙ୍କଳନ ପ୍ରକାଶିତ ହୋଇଥିଲା । ୨୦୦୦ ମସିହାରେ ରାଜ୍‌କମଲ୍ ପ୍ରକାଶନ୍ (ଦିଲ୍ଲୀ) ତରଫରୁ ତାଙ୍କର ରାଜନୈତିକ ଚିନ୍ତନର ଏକ ପ୍ରତିନିଧିମୂଳକ ସଙ୍କଳନ 'ବିକଳ୍ପହୀନ୍ ନହିଁ ହେ ଦୁନିଆଁ'ର ପ୍ରଥମ ସଂସ୍କରଣ ବାହାରି ଥିଲା । ପରବର୍ତ୍ତୀ ସମୟରେ ତାଙ୍କର ତିରୋଧାନ ପରେ ୨୦୦୫ରେ ରାଜ୍‌କମଲ୍ ପ୍ରକାଶନ୍ ତରଫରୁ ଆଉ ଦୁଇଟି ପୁସ୍ତକ 'ଭାରତୀୟ ରାଜ୍‌ନୀତି ପର୍ ଏକ୍ ଦୃଷ୍ଟି' ଓ 'କିସାନ୍ ଆନ୍ଦୋଳନ୍ : ଦଶା ଓ ଦିଶା' ଶୀର୍ଷକରେ ପ୍ରକାଶିତ ହୋଇଛି ।

ଓଡ଼ିଆ ଭାଷାରେ ପ୍ରକାଶିତ ତାଙ୍କ ନିବନ୍ଧଗୁଡ଼ିକର ପ୍ରଥମ ସଙ୍କଳନ ୨୦୦୧ରେ ତାଙ୍କର ଜଣେ ଘନିଷ୍ଠ ବନ୍ଧୁ ଯତୀନ୍ଦ୍ରମୋହନ ମହାନ୍ତିଙ୍କ ଉଦ୍ୟମରେ 'ଭାରତୀୟ ବୁଦ୍ଧିଜୀବୀର ସଙ୍କଟ ଓ ଅନ୍ୟାନ୍ୟ ପ୍ରବନ୍ଧ' ଶୀର୍ଷକରେ ଭୁବନେଶ୍ୱରସ୍ଥ ସୁବର୍ଣ୍ଣରେଖା ପ୍ରକାଶନ ଦ୍ୱାରା ଛପାଯାଇଥିଲା । ତାଙ୍କର ଜୀବିତାବସ୍ଥାରେ ପ୍ରସ୍ତୁତ, କିନ୍ତୁ ତିରୋଧାନ ପରେ ପ୍ରକାଶିତ, ଦ୍ୱିତୀୟ ପୁସ୍ତକର ଶୀର୍ଷକ ହେଉଛି 'ବିଚାରର ଟିପାଖାତା' । ଏହା ବରଗଡ଼ସ୍ଥ ବିକଳ୍ପ ପ୍ରକାଶନ ଦ୍ୱାରା ୨୦୦୪ ମସିହାରେ ଛପାଯାଇ ଥିଲା । ୨୦୦୫ ମସିହାରେ ବନ୍ଧୁ ମାନସ ଜେନା ନିଜସ୍ୱ ଉଦ୍ୟମରେ (ପୂର୍ବରୁ କିଶନ ପଟ୍ଟନାୟକଙ୍କର ସମ୍ମତି ନେଇ) ଅନୁବାଦ ପୁସ୍ତକ 'ଭାରତ ଶୁଦ୍ରଙ୍କର ହେବ'ର ପ୍ରକାଶନ କରାଇଥିଲେ । ଏହି ସବୁ ପୁସ୍ତକର ଆଦୃତି ଥିଲେ ସୁଦ୍ଧା ଆଜି ସେଗୁଡ଼ିକ ଉପଲବ୍ଧ ନୁହେଁ ।

କିଶନ ପଟ୍ଟନାୟକଙ୍କର ଅବର୍ତ୍ତମାନରେ 'ବିକଳ୍ପ ବିଚାର' ପତ୍ରିକାକୁ ଅନିୟମିତ ଭାବରେ ବିକଳ୍ପ ପ୍ରକାଶନ ବାହାର କରିଆସୁଛି । କିନ୍ତୁ ନାନାଦି କାରଣରୁ ଆମେ କିଶନ ପଟ୍ଟନାୟକଙ୍କର ରଚନାବଳୀକୁ ଗ୍ରନ୍ଥ ଆକାରରେ ଏପର୍ଯ୍ୟନ୍ତ ପ୍ରକାଶ କରିପାରି ନଥିଲୁ । ଏପରି ସମୟରେ ଯୁବ ବନ୍ଧୁ ଶୈଳେନ୍ ରାଉତରାୟ ଆମକୁ ଏକ ପ୍ରସ୍ତାବ ଦେଲେ ଯେ ସେ କେତେଜଣ ବନ୍ଧୁମାନଙ୍କ ସହ ମିଶି 'ସେଣ୍ଟର୍ ଫର୍ ହ୍ୟୁମାନ୍ ସାଇନ୍‌ସେସ୍, ଭୁବନେଶ୍ୱର' ନାମକ ଏକ ଅନୁଷ୍ଠାନ ଗଢ଼ିଛନ୍ତି ଓ ଉକ୍ତ ଅନୁଷ୍ଠାନ କିଶନ୍ ପଟ୍ଟନାୟକଙ୍କର ଓଡ଼ିଆ ପ୍ରବନ୍ଧ ଗୁଡ଼ିକର ସଙ୍କଳନ ଗ୍ରନ୍ଥ ଛାପିବାକୁ ପ୍ରସ୍ତୁତ । ଆମ ପାଇଁ ଏହା ଏକ ଅତି ଖୁସିର ପ୍ରସ୍ତାବ ଥିଲା ।

ଉପରୋକ୍ତ ତିନୋଟି (ପୂର୍ବରୁ) ପ୍ରକାଶିତ ପ୍ରବନ୍ଧ ସଙ୍କଳନ ପୁସ୍ତକ ସାଙ୍ଗକୁ ଏ ଭିତରେ ଓଡ଼ିଆରେ ରଚିତ ଅନ୍ୟ କେତୋଟି ପ୍ରବନ୍ଧକୁ ଏକତ୍ରିତ କଲା ପରେ ସେସବୁ ଛଅ ଶହ ପୃଷ୍ଠା ପାଖାପାଖି ହୋଇଗଲା । ସେସବୁକୁ ଦୁଇଟି ଖଣ୍ଡରେ ପ୍ରକାଶ କରିବାର ନିଷ୍ପତ୍ତି ନିଆଗଲା । ପରବର୍ତ୍ତୀ ସମୟରେ ତାଙ୍କର ଅନ୍ୟାନ୍ୟ ହିନ୍ଦି ପ୍ରବନ୍ଧମାନଙ୍କର ଓଡ଼ିଆ ଅନୁବାଦ ଓ ବାକି ଓଡ଼ିଆ ପ୍ରବନ୍ଧମାନଙ୍କୁ ଏକତ୍ରିତ କରି ପ୍ରକାଶ କରିବାର ଯୋଜନା ରହିଛି ।

କିଶନ ପଟ୍ଟନାୟକଙ୍କୁ ନିଜେ କେବେ ଭେଟି ନଥିବା, କିନ୍ତୁ ତାଙ୍କର ରଚନା ଦ୍ୱାରା ଅନୁପ୍ରାଣିତ ହୋଇ ଏପରି ଏକ ଗୁରୁଦାୟିତ୍ୱ ନେଇଥିବା ବନ୍ଧୁ ଶୈଳେନ ରାଉତରାୟଙ୍କ ଏକାନ୍ତ ଉଦ୍ୟମ ଯୋଗୁଁ ଏହି ଗ୍ରନ୍ଥ ଦୁଇ ଖଣ୍ଡ ପ୍ରକାଶ କରିବା ସମ୍ଭବ ହୋଇଛି । ଏହା ଫଳରେ ନୂଆ ପିଢ଼ିର ଅନେକେ କିଶନ-ବିଚାର ସହ ପରିଚିତ ହୋଇପାରିବେ । ତାଙ୍କୁ ଅଶେଷ କୃତଜ୍ଞତା ।

ଓଡ଼ିଶାର ସାମାଜିକ-ରାଜନୈତିକ କର୍ମୀ, ଛାତ୍ର, ଗବେଷକ, ଶିକ୍ଷକ, ଅଧ୍ୟାପକ, ସବୁ ମହଲରେ ଏହି ପୁସ୍ତକ ଆଦୃତ ହେବ ବୋଲି ଆମର ଆଶା ଓ ବିଶ୍ୱାସ ।

ଲିଙ୍ଗରାଜ
ପ୍ରକାଶକ, ବିକଳ୍ପ ପ୍ରକାଶନ
ସମତା ଭବନ, ବରଗଡ଼ - ୭୬୮୦୨୮

# ସମ୍ପାଦକୀୟ

ଏ ବହି ପାଇଁ କାମ ଅନେକ ଦିନ ହେଲା ଆରମ୍ଭ ହେଲାଣି; ପାଖାପାଖି ତିନି ବର୍ଷ ହେବ ବୋଧେହୁଏ । ୨୦୧୨ ମସିହାର ଗୋଟିଏ ଶୀତୁଆ ସନ୍ଧ୍ୟା । ନିଗମ ଭାଇ, ମୁଁ, ଭାରତ ଭାଇ (କବି ଭାରତ ମାଝୀ) ସାମ୍ୟବାଦୀ ସତ୍ୟବ୍ରତ ମିତ୍ର, ଓ ଯୁବକବି ସିଦ୍ଧାର୍ଥ ମହାପାତ୍ର ଶୈଳଶ୍ରୀ ବିହାରରେ ଫକୀର ଭାଇ ଦୋକାନ ଆଗରେ ଠିଆ ହୋଇ ଖଟିରେ ନିଜର ଉପସ୍ଥାନ ପକାଉଥାଉ । କଥାରୁ କଥାରୁ କିଶନ ବାବୁଙ୍କ ବିଷୟ ପଡ଼ିଲା । ଓଡ଼ିଆରେ ଭଲ ବକ୍ତାଙ୍କର କଥା ଉଠିଲାରୁ ନିଗମ ଭାଇ କହିଲେ ଯେ କିଶନବାବୁଙ୍କ ଠାରୁ ଭଲ ବକ୍ତା ସେ ଓଡ଼ିଆ ଭାଷାରେ କ୍ୱଚିତ ଶୁଣିଛନ୍ତି । ମୁଁ କହିଲି ମୋର ଦୁର୍ଭାଗ୍ୟ ଯେ ମୁଁ ଆଜ୍ଞାଙ୍କୁ କେବେ ଶୁଣିନାହିଁ; ତାଙ୍କର ଲେଖା ପଢ଼ିଛି ମାତ୍ର ।

ଏହା ପରେ କଥା ଧିରେ ଧିରେ ଛିଣ୍ଡିବାକୁ ଲାଗିଲା । ସମସ୍ତେ ଯେଝା ଘରକୁ ବାହାରିଲା ବେଳକୁ ଭାରତ ଭାଇ ମୋତେ କହିଲେ, 'ଶୈଲେନ ଗୋଟେ କାମ କର । କିଶନ ବାବୁଙ୍କର ବହି ଆଉ କିଛି ପ୍ରାୟ ବଜାରରେ ମିଳୁ ନାହିଁ । ତୁମେ ତାଙ୍କର ସବୁ ଓଡ଼ିଆ ଲେଖାକୁ ଏକାଠି କରି ବହିଟିଏ କର ।' ମୋତେ ପ୍ରସ୍ତାବଟି ବହୁତ ଭଲ ଲାଗିଲା । ହେଲେ ଏକୁଟିଆ କାମଟି ହାତକୁ ନେବାକୁ ସାହସ କୁଳେଇଲା ନାହିଁ । ମୁଁ କହିଲି ଯଦି ନିଗମ ଭାଇ ମୋ ସହିତ ମିଶିକରି ବହିର ସମ୍ପାଦନା କରିବେ, ତାହାହେଲେ ମୁଁ କାମଟିକୁ ହାତକୁ ନେବି । ନିଗମ ଭାଇଙ୍କୁ ଭାରତ ଭାଇ ଓ ସିଦ୍ଧାର୍ଥ କୁହାବୋଲା କଲାଠୁ ସେ ରାଜି ହେଲେ ।

ଆମେ ଦୁହେଁ ମିଶି କାମ ଆରମ୍ଭ କଲୁ । ହେଲେ କାମ ଶ୍ରୀଗଣେଶ ହେବାର ଅଳ୍ପ କେଇଦିନ ଭିତରେ ମୋ ବାପା କର୍କଟ ରୋଗରେ ଆକ୍ରାନ୍ତ ବୋଲି ଜଣାପଡ଼ିଲା । ତାଙ୍କର ଚିକିତ୍ସା, ଯତ୍ନ, ମୃତ୍ୟୁ ଓ ମୃତ୍ୟୁ ପରର କର୍ମ, ଓ ତାହାପରେ ନିଜର ସ୍ୱଭାବଗତ ଅଳସୁଆମି, ବହି ଛପାଇବା ପାଇଁ ପଇସା ଯୋଗାଡ଼ କରିବାରେ ଅସୁବିଧା, ଏହି ସବୁ କିଛି କାରଣ ଯୋଗୁଁ ବହିର ସମ୍ପାଦନା ଓ ପ୍ରକାଶନରେ ଅହେତୁକ ବିଳମ୍ବ ଘଟିଛି । ବନ୍ଧୁ ସମ୍ବିତ୍ ମିଶ୍ରଙ୍କର ଆର୍ଥିକ ସାହାଯ୍ୟ, ଲିଙ୍ଗରାଜ ଭାଇଙ୍କର ବୌଦ୍ଧିକ ସହଯୋଗ ଓ ତାଗିଦ ଓ ସତ୍ୟଜିତ ଭାଇଙ୍କର ସମ୍ପୃକ୍ତି ବିନା ଏହି ବହିଟି ଯୋଜନାରୁ ବାସ୍ତବତାକୁ ରୂପାନ୍ତରିତ ହୋଇପାରି ନ ଥାଆନ୍ତା । ଉଭୟଙ୍କୁ ଧନ୍ୟବାଦ ।

ଆମେ ଯେତେବେଳେ କାମ ଆରମ୍ଭ କଲୁ, ଭାବିଥିଲୁ, ଯେ ସମ୍ପାଦନାର କାମ ସହଜ ହେବ । କିଶନ ବାବୁଙ୍କର ଓଡ଼ିଆରେ ବେଶି ଲେଖା ନ ଥିବ ବୋଲି ଆମର

ଗୋଟିଏ ଭୁଲ୍ ଧାରଣା ଥିଲା । ମାତ୍ର ଧିରେ ଧିରେ ମୂଳ ଓଡ଼ିଆ ଲେଖା ଓ ହିନ୍ଦୀରୁ ଓଡ଼ିଆକୁ ଅନୂଦିତ ପ୍ରବନ୍ଧ ଇତ୍ୟାଦି ମିଶାଇ ୬୦୦ ପୃଷ୍ଠାରୁ ଉର୍ଦ୍ଧ୍ୱର ବହିଟିଏ ହେବବୋଲି ଲାଗିଲା । ଏଣୁ ଏହି ବହିଟିକୁ ଦୁଇଟି ଖଣ୍ଡରେ ପ୍ରକାଶିତ କରିବା ପାଇଁ ନିଷ୍ପତ୍ତି ନେଲୁ । ପ୍ରଥମ ଖଣ୍ଡରେ, ୨୦୦୧ ମସିହାରେ ଭୁବନେଶ୍ୱରସ୍ଥ ସୁବର୍ଣ୍ଣରେଖା ପ୍ରକାଶନ ସଂସ୍ଥା ଦ୍ୱାରା ଛପାଯାଇଥିବା 'ଭାରତୀୟ ବୁଦ୍ଧିଜୀବୀର ସଙ୍କଟ ଓ ଅନ୍ୟାନ୍ୟ ପ୍ରବନ୍ଧ' ତଥା ୨୦୦୪ ମସିହାରେ ବରଗଡ଼ସ୍ଥ ବିକଳ୍ପ ପ୍ରକାଶନ ଛାପିଥିବା 'ବିଚାରର ଟିପାଖାତା' – ଏହି ଦୁଇଟି ପ୍ରବନ୍ଧ ସଙ୍କଳନରେ ସ୍ଥାନିତ କରିବାର ନିଷ୍ପତ୍ତି ନେଲୁ । ଏହି ଖଣ୍ଡଟି ବର୍ତ୍ତମାନ ଆପଣଙ୍କ ହାତରେ ଅଛି । ଦ୍ୱିତୀୟ ଖଣ୍ଡରେ ଭୁବନେଶ୍ୱରରେ ମାନସ ଜେନାଙ୍କ ଦ୍ୱାରା ୨୦୦୫ ମସିହାରେ ପ୍ରକାଶିତ 'ଭାରତ ଶୁଦ୍ରଙ୍କର ହେବ' (ମୂଳ ହିନ୍ଦିର ପ୍ରକାଶନ ୧୯୯୫)ରେ ସ୍ଥାନିତ ପ୍ରବନ୍ଧଗୁଡ଼ିକ ତଥା ବିକଳ୍ପ ବିଚାରରେ କିଶନ ପଟ୍ଟନାୟକଙ୍କ ଲେଖନିରୁ ପ୍ରକାଶ ପାଇଥିବା ଏପର୍ଯ୍ୟନ୍ତ ଅସଙ୍କଳିତ ପ୍ରବନ୍ଧଗୁଡ଼ିକ ଏକତ୍ର ଅତିଶୀଘ୍ର ପ୍ରକାଶିତ ହେବାର ଯୋଜନା ରହିଛି ।

ଏହା ଭିତରେ ଆମେ କିଶନ ପଟ୍ଟନାୟକ ଓଡ଼ିଆ ଭାଷାରେ ଲେଖିଥିବା ଅନେକ ଲେଖା ଛାଡ଼ି ଯାଇଥିବାର ସମ୍ଭାବନା ରହିଛି । ଏତଦ୍‌ବ୍ୟତୀତ କିଶନ ବାବୁଙ୍କର ଅନେକ ଉପାଦେୟ ହିନ୍ଦି ପ୍ରବନ୍ଧର ଏପର୍ଯ୍ୟନ୍ତ ଓଡ଼ିଆ ଅନୁବାଦ ହୋଇନାହିଁ । ଏହି ଅପ୍ରକାଶିତ ଓଡ଼ିଆ ଲେଖା ଏବଂ ଅଣଅନୂଦିତ ହିନ୍ଦି ଲେଖାକୁ ଓଡ଼ିଆରେ ଅନୁବାଦ କରି ଏକତ୍ର ଗୋଟିଏ ତୃତୀୟ ଖଣ୍ଡର ପ୍ରକାଶନର ଲକ୍ଷ୍ୟ ମଧ୍ୟ ରହିଛି ।

ବର୍ତ୍ତମାନ ଭାରତୀୟ ସମାଜ, ବିଶେଷତଃ ଓଡ଼ିଆ ସମାଜ, ଏକ ଅଦ୍ଭୁତ ସମୟ ଦେଇ ଗତିକରୁଛି । ସବୁ କ୍ଷେତ୍ରରେ ମୂର୍ଖମାନଙ୍କର ରାଜୁତି । ଧନତନ୍ତ୍ର ସବୁକିଛି ଗିଳିବା ପାଇଁ ଉଦ୍ୟତ । ଦେଶର ସାଧାରଣ ଜନତା ତ୍ରସ୍ତ ଓ ବିଭ୍ରାନ୍ତ । ରାଜନୀତି କ୍ଷମତାର ପଶାଖେଳ ମାତ୍ର ପାଲଟିଛି । ଏପରି ପରିସ୍ଥିତିରେ ରାଜନୀତି ଓ ବିଚାରର ସଙ୍ଘାତରୁ ସମନ୍ୱୟ ଓ ବିକଳ୍ପର ସମ୍ଭାବନା ସୃଷ୍ଟି କରିଥିବା କିଶନ ବାବୁଙ୍କର ବିଚାରର ଆଲୋଚନାର ଆବଶ୍ୟକତା ରହିଛି । ବିଶେଷତଃ ଓଡ଼ିଆ ଭାଷାରେ ଜ୍ଞାନଚର୍ଚ୍ଚାର ଘୋର ଅଭାବ । ଏହି ପ୍ରବନ୍ଧ ସଙ୍କଳନଗୁଡ଼ିକ ଓଡ଼ିଆ ଭାଷାରେ ଓ ସମାଜରେ ରାଜନୀତି ଓ ସମାଜ ଚର୍ଚ୍ଚାର କିଛି ଅଭାବ ପୂରଣ କରିବ ବୋଲି ଆଶା । ଅଳମ୍ ଅତି ବିସ୍ତରେଣ ।

ଶୈଲେନ ରାଉତରାୟ
(ସେଣ୍ଟର୍ ଫର୍ ହ୍ୟୁମାନ୍ ସାଇନ୍‌ସେସ୍ ଭୁବନେଶ୍ୱର)

# କିଶନ ପଟ୍ଟନାୟକ : ଏକ ଜୀବନାଲେଖ୍ୟ

ବିଶିଷ୍ଟ ସମାଜବାଦୀ ନେତା ଓ ଚିନ୍ତାନାୟକ କିଶନ୍ ପଟ୍ଟନାୟକ ଘଟଣାକ୍ରମେ ଥରେ ଲୋକସଭାକୁ ନିର୍ବାଚିତ ହୋଇଥିଲେବି ସ୍ୱଭାବତଃ ସେ ଜଣେ ମୌଳିକ ପରିବର୍ତ୍ତନବାଦୀ ଓ ସମ୍ବେଦନଶୀଳ ସଙ୍ଗଠକ । ତାଙ୍କର ଜନ୍ମ ଜୁନ ୨୯ ତାରିଖ ୧୯୨୯ ମସିହା । ତାଙ୍କର ଜନ୍ମସ୍ଥାନ କଳାହାଣ୍ଡି ଜିଲ୍ଲା । କଳାହାଣ୍ଡିର ସାମ୍ପ୍ରତିକ ଅବସ୍ଥା ଅନୁମେୟ, ଅଶୀ ବର୍ଷ ତଳେ ସେଇ ଅନଗ୍ରସର, ଘଞ୍ଚ ଜଙ୍ଗଲ ଘେରା, ଦୁର୍ଭାଗ୍ୟ ପୀଡ଼ିତ ଅଞ୍ଚଳର ସାମାଜିକ ସ୍ଥିତି କେଡ଼େ ଦାରୁଣ ଥିବ ସହଜରେ ଜଣାପଡୁଛି । ୧୯୪୨ରେ ଭାରତଛାଡ଼ ଆନ୍ଦୋଳନର ଖବର ମଧ୍ୟ ସେଠାରେ ପହଞ୍ଚି ପାରୁନଥିଲା । ଜଣେ ମେଧାବୀ ଛାତ୍ର ଭାବେ କଳାହାଣ୍ଡି ଷ୍ଟେଟ୍‌ର ବୃତ୍ତି ପାଇ ସେ ବଲାଙ୍ଗୀର୍ କଲେଜ୍‌ରେ ଆଇ.ଏ. ପଢୁଥିବାବେଳେ ୧୯୪୬ରେ ପ୍ରଜାମଣ୍ଡଳ ଆନ୍ଦୋଳନରେ ସାମିଲ୍ ହେବାରୁ ରାଜବିରୋଧୀ କାର୍ଯ୍ୟ ପାଇଁ ତାଙ୍କର ବୃତ୍ତି କଟାଯାଏ । ତେବେ ୧୯୪୭ରେ ଭାରତ ସ୍ୱାଧୀନ ହେଲାବେଳକୁ ସେ ନାଗପୁର୍‌ରେ ସ୍ନାତକ ଶ୍ରେଣୀର ଛାତ୍ର । ସେଇଠାରେ ସେ ସମାଜବାଦୀ ଚିନ୍ତାଧାରା ସଂସ୍ପର୍ଶରେ ଆସନ୍ତି ଓ ବ୍ୟାପକ ଅଧ୍ୟୟନରୁ ତାଙ୍କର ରାଜନୈତିକ ଜୀବନର ଅଙ୍କୁର ରୋପଣ ଆରମ୍ଭ ହୁଏ । ଗଡ଼ଜାତ ମିଶ୍ରଣ ବେଳକୁ ଅନ୍ୟତମ ଅଗ୍ରଣୀ ସମାଜବାଦୀ ନେତା ସୁରେନ୍ଦ୍ର ଦ୍ୱିବେଦୀଙ୍କ ରାଜନୀତି ସମ୍ପର୍କରେ ବୀତସ୍ପୃହ ହୋଇ ସେ ଏକବସ୍ତ୍ରୀ ଭାବେ ଅନିଶ୍ଚିତ ଜୀବନକୁ ଆଦରି ଓଡ଼ିଶା ଛାଡ଼ି ଚାଲି ଯାଆନ୍ତି ଓ ଘଟଣା କ୍ରମେ ନିଜ ବିଦ୍‌ବତ୍ତା ଓ ପ୍ରତିଭାରୁ ମାନ୍ଦ୍ରାଜ୍ ସ୍ଥିତ ରାଜସ୍ୱ ପରିଷଦରେ ଜଣେ କିରାଣୀ ହୋଇ ଯୋଗ ଦିଅନ୍ତି । ଅଚାନକ ଭାବେ ପୁଣି ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ସହ ମାନ୍ଦ୍ରାଜ୍‌ରେ ସାକ୍ଷାତ ଓ ତାଙ୍କରି ଚାପ ଯୋଗୁଁ କଟକ ଆସି ସମାଜବାଦୀ ଦଳର ସାପ୍ତାହିକ ପତ୍ର 'କୃଷକ'ର ସମ୍ପାଦନା ଦାୟିତ୍ୱ ନିର୍ବାହ କରନ୍ତି ।

୧୯୫୭ରେ ସମ୍ବଲପୁର ଅଞ୍ଚଳରେ ପ୍ରଥମେ ତାଙ୍କ ନେତୃତ୍ୱରେ କୃଷକ ସଙ୍ଗଠନ ମୁଣ୍ଡ ଟେକେ । ସମଗ୍ର ପଶ୍ଚିମ ଓଡ଼ିଶାରେ ଆନ୍ଦୋଳନାତ୍ମକ ରାଜନୀତିର ସେ ଏକ ଭିତ୍ତିଭୂମି ପକାନ୍ତି । ୧୯୬୦ରେ ଅଖିଳ ଭାରତ ଆଇନ ଅମାନ୍ୟ କାର୍ଯ୍ୟକ୍ରମରେ 'ଇଂରାଜୀ ହଟାଓ ଅଭିଯାନ' ଚଳାଇ ବ୍ରହ୍ମପୁର ଜେଲରେ ଛଅ ମାସ କଟାନ୍ତି । ଏହା ପୂର୍ବରୁ ସମାଜବାଦୀ ଦଳର ବିଭକ୍ତିକରଣକୁ ନେଇ ଦଳେ କଂଗ୍ରେସ୍‌ରେ ମିଶିଲା ବେଳେ ସେ ତୁଙ୍ଗ ସମାଜବାଦୀ ନେତା ଲୋହିଆଙ୍କ ନେତୃତ୍ୱକୁ ସ୍ୱୀକାର କରି ତାଙ୍କ ସମ୍ପାଦନାରେ ହାଇଦ୍ରାବାଦ୍‌ରୁ 'ମାନ୍‌କାଇଣ୍ଡ୍' ପତ୍ରିକାର କାର୍ଯ୍ୟକାରୀ ସମ୍ପାଦକ ଭାବେ ୧୯୫୮ ରୁ ୧୯୬୧ ଯାଏଁ ସେଠାରେ ଅବସ୍ଥାନ କରନ୍ତି । ପୁନଶ୍ଚ, ସେ ମରୁଡ଼ି ଜନିତ ପରିସ୍ଥିତିରୁ ଚାଷୀଙ୍କ ଉପରୁ ଖଜଣା ଓ ଜଳକର ଛାଡ଼ର ଦାବି କରି ଗିରଫ୍ ହୁଅନ୍ତି ଓ ସେହି

ସମୟରେ ସେ ଲୋକସଭା ନିର୍ବାଚନରେ ପ୍ରାର୍ଥୀ ହୁଅନ୍ତି । ବସ୍ତୁତଃ ଜେଲରେ ଥାଇ ସେ ଲୋକସଭାକୁ ବିପୁଳ ଭୋଟରେ ନିର୍ବାଚିତ ହୁଅନ୍ତି; ତତ୍କାଳୀନ ପାର୍ଲାମେଣ୍ଟରେ ସେ ଥିଲେ ସର୍ବ କନିଷ୍ଠ ସାଂସଦ । ଲୋକସଭାରେ ଥିବାବେଳେ ସେ ପଣ୍ଡିତ ନେହେରୁ, ଶାସ୍ତ୍ରୀଜୀ ଓ ଇନ୍ଦିରା ଗାନ୍ଧୀଙ୍କ ପ୍ରାଧାନମନ୍ତ୍ରୀତ୍ୱକୁ ନିବିଡ଼ ଭାବେ ନିରୀକ୍ଷଣ କରି ବହୁ ପ୍ରଶ୍ନ ଉଠାଇଛନ୍ତି । ଏପରିକି ସେ ସମୟରେ ପ୍ରଧାନମନ୍ତ୍ରୀ ନେହେରୁଙ୍କ ନିରାପତ୍ତା ପାଇଁ ଦୈନିକ ପଚାଶ ହଜାର ଟଙ୍କା ଖର୍ଚ୍ଚ ହେଉଥିବାରୁ ତାହା ଉପରେ ନେହେରୁଙ୍କୁ ପତ୍ର ଲେଖି ତାଙ୍କଠାରୁ ଚାରୋଟି ପ୍ରତ୍ୟୁତ୍ତର ପାଇଛନ୍ତି ଓ ସେସବୁ ପୁସ୍ତିକା ଆକାରରେ ଇଂରାଜୀ ଓ ହିନ୍ଦୀରେ ସଙ୍କଳିତ ହୋଇଛି । ପଶ୍ଚିମାଞ୍ଚଳର ମରୁଡ଼ିକୁ ସେ ଅତି ତୀବ୍ର ଓ ସମ୍ବେଦନଶୀଳ ଭାବେ ଉପସ୍ଥାପିତ କରାଇ ପାରିଥିଲେ । ଫଳତଃ, ଇନ୍ଦିରା ଗାନ୍ଧୀ ଓଡ଼ିଶାର ମରୁଡ଼ି ପ୍ରପୀଡ଼ିତ ଅଞ୍ଚଳ ପରିଦର୍ଶନ କରିବାକୁ ବାଧ ହୋଇଥିଲେ ।

ସେହିଦିନୁ ତାଙ୍କର ରାଜନୈତିକ ଜୀବନରେ ଯେପରି ଅମାପ ଶତ୍ରୁ, ସେ ମଧ ଅବଦମିତ ଭାବେ ଏକ ସାଲିସ୍‌ହୀନ ରାଜନୀତିଜ୍ଞ । ଜରୁରୀକାଳୀନ ପରିସ୍ଥିତିରେ ଆଠ ମାସ କାରାବରଣ ଓ ଅଣ୍ଡରଗ୍ରାଉଣ୍ଡ୍ କାର୍ଯ୍ୟ କରନ୍ତି । ଏହା ପୂର୍ବରୁ ଜୟପ୍ରକାଶ୍‌ଙ୍କର ସମ୍ପୂର୍ଣ୍ଣ କ୍ରାନ୍ତି ଆନ୍ଦୋଳନରେ ସାମିଲ୍ ହୋଇ, ପ୍ରଚଳିତ ସୁବିଧାବାଦୀ ରାଜନୀତିକୁ ବିରୋଧ କରି ଦେଶବ୍ୟାପୀ ଯୁବଛାତ୍ର ସଙ୍ଗଠନକୁ ସକ୍ରିୟ କରିବାରେ ମନୋନିବେଶ କରି ଥାଆନ୍ତି । ଲୋହିୟାଙ୍କ ମୃତ୍ୟୁ ପରେ ସମାଜବାଦୀ ଦଳରେ ବୈପ୍ଳବିକ ଆଭିମୁଖ୍ୟ ନଷ୍ଟ ହେବା ଓ ଗୋଷ୍ଠୀକନ୍ଦଳ ବଢ଼ିବାରୁ ୧୯୭୨ରେ ସେ ଦଳ ତ୍ୟାଗ କରି ସ୍ୱାଧୀନ ଭାବେ ଭାରତବର୍ଷର ବିଭିନ୍ନ ପ୍ରାନ୍ତ ବୁଲି ଯୁବ ଛାତ୍ରଗୋଷ୍ଠୀଙ୍କୁ ସଙ୍ଗଠିତ କରନ୍ତି । ଏହି ଉପଲକ୍ଷେ ସେ ଭାରତର ବିଭିନ୍ନ ସ୍ଥାନରେ, ବିଶେଷକରି ବିହାର, ମଧପ୍ରଦେଶ, ମହାରାଷ୍ଟ୍ର, କେରଳ, କର୍ଣ୍ଣାଟକ ଓ ଉତ୍ତର ପ୍ରଦେଶରେ, ଯେତେ ଜଣାଶୁଣା, ଓଡ଼ିଶାରେ ସେତେ ନୁହନ୍ତି । ବିଦେଶୀ ପୁଞ୍ଜି ଓ ବହୁରାଷ୍ଟ୍ରୀୟ କମ୍ପାନୀର ଅନୁପ୍ରବେଶକୁ ବିରୋଧ କରି ଆଜି ସମଗ୍ର ଦେଶରେ ଯେଉଁ ଏକ ଦୃଢ଼ ମତବାଦ ପ୍ରକାଶ ପାଇଛି, ତାହାର ଆଦ୍ୟ ଉଦ୍‌ଘୋଷକ ଥିଲେ କିଶନ ପଟ୍ଟନାୟକ । ସର୍ବଭାରତୀୟ ସ୍ତରରେ ଏହି ମତବାଦରେ ଦୀକ୍ଷିତ ସାମାଜିକ ନ୍ୟାୟ ଓ ସମତାରେ ବିଶ୍ୱାସୀ ଜନଆନ୍ଦୋଳନକାରୀଙ୍କ ସହ ସେ ଏକତ୍ର ଗଢ଼ନ୍ତି, ଜାତୀୟ ଏକତା ମଞ୍ଚ ଓ ସମାଜବାଦୀ ଜନ ପରିଷଦ । ଭିନ୍ନ ବିଚାରଧାରା ଓ ବୈପ୍ଳବିକ ରାଜନୀତିରେ ବିଶ୍ୱାସୀ ସ୍ୱର୍ଗତ ପଟ୍ଟନାୟକଙ୍କର ରାଜନୈତିକ ଜୀବନ ପ୍ରାରମ୍ଭରୁ 'ଜନ', 'ସାମୂହିକ ବାର୍ତ୍ତା' ଭଳି ହିନ୍ଦୀ ପତ୍ରପତ୍ରିକାରେ ତାଙ୍କର ପ୍ରବନ୍ଧ ନିୟମିତ ଭାବେ ପ୍ରକାଶିତ ହେଉଥିଲା । ଓଡ଼ିଆରେ ଏକ ନୂତନ ଧାରା ଓ ଦର୍ଶନର ପତ୍ରିକା 'ବିକଳ୍ପ ବିଚାର'ର ସେ ମୁଖ୍ୟ ସମ୍ପାଦକ ଥିଲେ । ସମାଜବାଦୀ ଜନ ଆନ୍ଦୋଳନର ଏହି ମହାନାୟକ ୨୭ ସେପ୍ଟେମ୍ବର ୨୦୦୪ ମସିହାରେ ଦେହତ୍ୟାଗ କଲେ । ହେଲେ ଏବେ ମଧ ସମଗ୍ର ଦେଶରେ ରହିଛନ୍ତି ତାଙ୍କ ମୌଳିକ ବିଚାର ଧାରାର ଅନୁପନ୍ଥୀ ଓ ପରିପ୍ରୟୋଗକାରୀ ଏକ ବୃହତ୍ତର ଯୁବଗୋଷ୍ଠୀ ।

**ଅଭୟ ସିଂହ**

# ଭାରତୀୟ ବୁଦ୍ଧିଜୀବୀର ସଙ୍କଟ

ଯେ କୌଣସି ସମାଜର ବୁଦ୍ଧିଜୀବୀମାନଙ୍କୁ ସ୍ଥୂଳତଃ ଦୁଇଟି ଶ୍ରେଣୀଭୁକ୍ତ କରାଯାଇପାରେ । ପ୍ରଥମତଃ, ଯେଉଁମାନେ କଳାକାର, ସାହିତ୍ୟିକ, ବୈଜ୍ଞାନିକ ଓ ଦାର୍ଶନିକ ରୂପରେ ସୃଜନଶୀଳ ଭାବରେ ସେହି ସମାଜ ନିମନ୍ତେ 'ବୁଦ୍ଧି' ସଞ୍ଚୟ କରନ୍ତି ଓ ଦ୍ୱିତୀୟରେ ଯେଉଁମାନେ ସମାଜର ରୀତିମତ ଚାଳନା ନିମନ୍ତେ ଶିକ୍ଷକ, ଟେକ୍ନିସିଆନ୍, ଡାକ୍ତର, ଇଞ୍ଜିନିୟର ବା କିରାଣୀ, କିଲଟର ଦାୟିତ୍ୱରେ ପରିବାହକ ରୂପେ 'ବୁଦ୍ଧି'କୁ ନିୟୋଜିତ କରନ୍ତି । ଏ ଦୁଇ କୌଣସି ଶ୍ରେଣୀର ସମାଜଶାସ୍ତ୍ରୀୟ ସଂଜ୍ଞା ଓ ଅନୁଶୀଳନ ଭିତରକୁ ଯିବା ବର୍ତ୍ତମାନ ଅଭିପ୍ରେତ ନୁହେଁ । 'ଫଳେନ ପରିଚୟତେ' ସୂତ୍ରରେ ପ୍ରଥମ ପର୍ଯ୍ୟାୟର ଉର୍ବରତା, ମୌଳିକତା, ପ୍ରଭାବ ଓ ସିଦ୍ଧି; ଦ୍ୱିତୀୟ ପର୍ଯ୍ୟାୟର ସ୍ୱାସ୍ଥ୍ୟ ଓ ଗତିଶୀଳତା ଦ୍ୱାରା ହିଁ ପ୍ରମାଣିତ ହେବା ବିଧେୟ - ବିଶେଷତଃ ଭାରତ ଭଳି ସମାଜରେ, ଯେଉଁ ସମାଜର ସାମ୍ପ୍ରତିକ ଧର୍ମ କେବେହେଲେ ସ୍ଥାୟିତ୍ୱ ହୋଇ ନପାରେ; ଯାହାର ମର୍ମରେ ଅଗ୍ରଗତିର ବିଦ୍ୟୁତ୍ ସଞ୍ଚାରିତ ନହେବା ପର୍ଯ୍ୟନ୍ତ ସେଇ ସମାଜର ନୈତିକ ତଥା ଭୌତିକ କ୍ଷୟ ଉତ୍ତରୋତ୍ତର ବୃଦ୍ଧି ପାଇବା ନିଶ୍ଚିତ ।

ଭାରତୀୟ ସମାଜ ଯେ ଅଧଃପତନର ଅବସ୍ଥା ଦେଇ ଗତିକରୁଛି - ଉତ୍କର୍ଷର ପଥରେ ନୁହେଁ- ଏହାର ଯଥାର୍ଥତା ପରୀକ୍ଷା ନିମନ୍ତେ ପଞ୍ଚବାର୍ଷିକ ଯୋଜନାଗୁଡ଼ିକର ପ୍ରଗତି-ଇସ୍ତାହାର ଉପରେ ନିର୍ଭର କଲେ କିଛି ସମୟ ପାଇଁ ସନ୍ଦିହାନ ହେବା ସ୍ୱାଭାବିକ । କିନ୍ତୁ ଯେ କୌଣସି ମାନବଧର୍ମୀ ସାମାଜିକ ପ୍ରଗତିର ଅମୋଘ ମାପଦଣ୍ଡ ସମାଜସ୍ଥ ସାଧାରଣ ବ୍ୟକ୍ତିର ଦୈନନ୍ଦିନ ଚଳାଚଳ, ତାହାରି ଆନ୍ତରିକ ଅନୁଭୂତି ତଥା ବାହ୍ୟ ପରିବେଶ ସହିତ ସଂଯୋଗର ସାବଲୀଳତା ଓ ଆଶାଭୂତ ପ୍ରୟାସ । ଏ ଦୃଷ୍ଟିରୁ ବିଚାର କରିବା ସମାଜର ଅଗ୍ରଗତି ବା ଅଧୋଗତିକୁ ଜାଣିବାର କେବଳ ସିଧାସଳଖ ଉପାୟ ନୁହେଁ, ସହଜ ମଧ୍ୟ ଓ ପ୍ରତ୍ୟେକ ଲୋକ ତାହାର ନିଜ ଜୀବନ ସୀମା ଭିତରେ ଏହାର ଉପଲବ୍ଧି କରିପାରିବ । ଏହି ଅନୁଭୂତି ଭିତରେ ଆମେ କେତେ ଧରଣର ଟେକ୍ନିସିଆନ୍‌ଙ୍କୁ ଛାଡ଼ିଦେଲେ ଶିକ୍ଷକ, କିରାଣୀ, ଡାକ୍ତର, ଦୋକାନୀ, ଓକିଲ, ମାଜିଷ୍ଟର ଓ ସାମ୍ବାଦିକ ପ୍ରଭୃତି ଦ୍ୱିତୀୟୋକ୍ତ ବୁଦ୍ଧିଜୀବୀ ଶ୍ରେଣୀର ସଂସ୍ପର୍ଶରେ ପ୍ରତ୍ୟହ ଆସୁ । ଠିକ୍ କହିବାକୁ ଗଲେ, ଦୈନନ୍ଦିନ ଜୀବନର ଭଲମନ୍ଦ, ସୁଖଦୁଃଖ ଏଇମାନଙ୍କ ଚାଲିଚଳଣ, ଚରିତ୍ର, ସ୍ୱଭାବ ସଙ୍ଗରେ ଗୁନ୍ଥା । ଏଇ ଅନୁଭୂତିର ବର୍ତ୍ତମାନ ସମାଜରେ ନାମ କ'ଣ ?

ଦୁର୍ବହ ଜୀବନ ! ଗଳିତ ନୈତିକତା ! ଆତ୍ମାର ହତଶ୍ୱାସ ! ଜୀବନର (ଓ ତେଣୁ ମାନବିକ ମୂଲ୍ୟର) ଘୋର ନିରର୍ଥକତା !

ଲାଞ୍ଛମିଛ, ଖୋସାମତ, ଭୟ, ଆତ୍ମହତ୍ୟା, ହତାଶା ପଛରେ ଲୁଚି ରହିଛି ପୌରୁଷହୀନତା, ସତ୍ୟରେ ଅବିଶ୍ୱାସ, ମାନବିକତାରେ ଅନାସ୍ଥା ଓ ସବୁଠୁ ବେଶୀ କ୍ଲେଶଦାୟକ-ସାମାଜିକ ପ୍ରଗତି ପ୍ରତି ବିମୁଖତା । ଜାତୀୟ ଅଗ୍ରଗତି ହେଲାବେଳେ ଏଗୁଡ଼ିକର ସହାବସ୍ଥାନ ସମ୍ଭବ ନୁହେଁ । ଯେଉଁ ଜାତି ବା ସମଷ୍ଟି ମାନବିକ ମୂଲ୍ୟକୁ ସମ୍ମାନ କରି ସଭ୍ୟତା ପଥରେ ଅଗ୍ରସର ହୋଇଚାଲେ ତାହାର ବ୍ୟକ୍ତି ଜୀବନର ଦୈନନ୍ଦିନ ଚଳାଚଳ, ଆଚାର ବ୍ୟବହାରରେ ଏପରି ବ୍ୟାଧି ଦେଖାଯିବ ନାହିଁ । ଆଶା ଓ ଉତ୍ସାହର ପ୍ରେରଣାରେ ତାହାର ପ୍ରତ୍ୟେକ ନାଗରିକର ଧମନୀରେ ଯେଉଁ ସାହସର ଉଷ୍ମ ଢେଉ ଖେଳିବ, ତାହାର ଉଦ୍‌ବେଳନରେ ବହୁ ସଂକୀର୍ଣ୍ଣତା ଓ କ୍ଷୁଦ୍ରତା ଧୋଇ ହୋଇଯିବ । ଏଣୁ ଆମର ପ୍ରଗତି ଇସ୍ତାହାରମାନଙ୍କରେ ଯେ ଭୀଷଣ ତ୍ରୁଟି ରହିଛି ଏହା ଅନୁମାନ କରିବା ପାଇଁ ଆତ୍ମପ୍ରତାରଣା ଛଡ଼ା ଅନ୍ୟ କୌଣସି ପ୍ରତିବନ୍ଧକ ଥାଇ ନ ପାରେ । ଏକ ଦିଗରେ ସାଧାରଣ ଲୋକର ହା ହୁତାଶଭରା ସ୍ୱାଦହୀନ ଜୀବନ ଓ ଅନ୍ୟ ଦିଗରେ ସମାଜର ଦ୍ୱିତୀୟୋକ୍ତ ବୁଦ୍ଧିଜୀବୀ ଶ୍ରେଣୀ ଭିତରେ ଘୋର କ୍ଷୁଦ୍ରତା ଓ ଆବିଳତା, ଜାତୀୟ ଅଧଃପତନର ଜ୍ୱଳନ୍ତ ପ୍ରମାଣ । କୋର୍ଟ୍‌କଚେରୀ, ରାଜନୀତି ଓ ବ୍ୟବସାୟ କ୍ଷେତ୍ର ବିଷୟରେ ସାଧାରଣ ଲୋକ ଠିକ୍ କରିସାରିଛି ଯେ ସାଧୁତା ଅସମ୍ଭବ । କିନ୍ତୁ ଅତି ପବିତ୍ର, ପରୋପକାରୀ ଓ ମାନବିକ ପେଶା ବୋଲାଉଥିବା ଡାକ୍ତରୀ, ଶିକ୍ଷକତା, ଭୂଦାନ ଓ ରେଡ୍‌କ୍ରସ୍ ଭିତରେ ମଧ୍ୟ କିପରି ମଣିଷତ୍ୱର ଗନ୍ଧ ନାହିଁ, କ୍ଷମତା ଓ ପଇସାର ସଙ୍କୀର୍ଣ୍ଣ ଦୃଷ୍ଟିରୁ କିପରି ଅଦାଲତର ପେଶ୍‌କାର୍ ଓ ହସ୍‌ପିଟାଲ୍‌ର ଡାକ୍ତର ବା ଚାଉଳ ବ୍ୟବସାୟୀ ଲକ୍ଷପତି ଓ ଶିକ୍ଷା ବ୍ୟବସାୟୀ କୁଳପତି କିମ୍ବା ରେଭିନ୍ୟୁ ପଟୁଆରୀ ଓ କଲେଜ୍ ଅଧ୍ୟାପକ ଭିତରେ ଫରକ ବେଶି କିଛି ନାହିଁ – ଏହାର ଉଦ୍‌ଘାଟନ ଓ ଅନୁଶୀଳନ ଦେଶର ସୁପ୍ତ ବିବେକକୁ ଆନ୍ଦୋଳିତ କରିବା ପାଇଁ ଆବଶ୍ୟକ ହେଲେ ମଧ୍ୟ ଏଠାରେ ଉଦ୍ଦିଷ୍ଟ ନୁହେଁ ।

ଆମର ଆଲୋଚ୍ୟ ବିଷୟ କେବଳ ପ୍ରଥମୋକ୍ତ ବୁଦ୍ଧିଜୀବୀମାନଙ୍କର ବର୍ତ୍ତମାନର ସାମାଜିକ ଓ ଜାତୀୟ ଅଧଃପତନ ନିମନ୍ତେ ଦାୟିତ୍ୱ ଓ ତାହାର କାରଣ ନିରୂପଣ । ଆର୍ଥିକ ଓ ସାଂସ୍କୃତିକ ଉନ୍ନତିର ବହୁ ପଛରେ ପଡ଼ିଯାଇଥିବା ଏକ ରାଷ୍ଟ୍ରର ଲୋକସମୂହକୁ ନବପ୍ରାଣରେ ଉଦ୍‌ଜୀବିତ କରିବାର ସର୍ବଦା ଦୁଇଟି ବାଟ ରହିଛି – ରାଜନୈତିକ ଓ ସାଂସ୍କୃତିକ । ପ୍ରଥମଟି ବିପ୍ଳବ ଓ ଦ୍ୱିତୀୟଟି ନବଚୈତନ୍ୟ ବା ରେନେସାଁ ନାମରେ ଖ୍ୟାତ । ରାଜନୈତିକ ବିପ୍ଳବ ଦ୍ୱାରା ଲୋକସମୂହର ଆର୍ଥିକ, ସାମାଜିକ ଆଦି ଭୌତିକ କଲ୍ୟାଣ ଆଶା କରାଯାଏ ଓ ନବଚୈତନ୍ୟ ଫଳରେ ବୌଦ୍ଧିକ, ନୈତିକ ଓ ଆଧ୍ୟାତ୍ମିକ ମୂଲ୍ୟବୋଧର ନବୋଦୟ ହୁଏ । ଏ ଦୁଇଟି ପ୍ରଣାଳୀ ପରସ୍ପରର ପରିପୂରକ ଓ ଭୌତିକ ବିପ୍ଳବ ପଛରେ ଯଦି ବୌଦ୍ଧିକ ନବୋଦୟର ପୃଷ୍ଠଭୂମି ନଥାଏ କିମ୍ବା, ଅନ୍ୟ କଥାରେ, ବୌଦ୍ଧିକ ବିପ୍ଳବ ଯଦି ରାଜନୈତିକ ବିପ୍ଳବର ଦିଗଦର୍ଶକ ନହୋଇ କେବଳ ଏକ ଉପଶାଖା ହୋଇ ପରେ ବାହାରେ, ତାହା ଏକାଙ୍ଗୀ ବିପ୍ଳବ ହୋଇଯିବ ଓ ତହିଁରୁ ଉଦ୍ଭୁତ ସଭ୍ୟତା ବା ସାମାଜିକ ବିକାଶ କେବେହେଲେ ମାନବୀୟ ଧାରାରେ ପରିସ୍ଫୁଟିତ

ହୋଇପାରିବ ନାହିଁ । କମ୍ୟୁନିଷ୍ଟ ବିପ୍ଳବ ଏହାର ପ୍ରକୃଷ୍ଟ ଉଦାହରଣ । ଏହା ପ୍ରଧାନତଃ ଏକ ଅର୍ଥନୈତିକ ଆନ୍ଦୋଳନ ଓ ସାଂସ୍କୃତିକ ପରିବର୍ତ୍ତନ ଏହାର ଉପଶାଖା ଓ ଅଧିନସ୍ଥ ରୂପେ ଦେଖାଦିଏ । ଏକ ସର୍ବାଙ୍ଗୀନ ବିପ୍ଳବ ପାଇଁ ରାଜନୈତିକ ତଥା ସାଂସ୍କୃତିକ ବିପ୍ଳବ ଉଭୟ ସମାସ୍କନ୍ଧ ଭାବରେ ଆବିର୍ଭୂତ ହୋଇ ଜନମତକୁ ଉଦ୍‌ବେଳିତ କରିବା ଆବଶ୍ୟକ । ଭାରତ ପାଇଁ ଯେଉଁମାନେ ଏକ ଗରୀୟସୀ ଭବିଷ୍ୟତର କଳ୍ପନା କରୁଛନ୍ତି, ସେମାନେ ଉଭୟ ବିପ୍ଳବର ଆବଶ୍ୟକତା ବୋଧକରିବା ଉଚିତ୍ ।

ଭାରତୀୟ ବୁଦ୍ଧିଜୀବୀର କାର୍ଯ୍ୟକଳାପକୁ ଲକ୍ଷ୍ୟ କଲେ ଜଣାଯିବ ଯେ ଉପର ବର୍ଣ୍ଣିତ ସମାଜ ଓ ବ୍ୟକ୍ତିର ନୈତିକ ଅଧୋଗତିର ସମ୍ମୁଖୀନ ହେବା ପରିବର୍ତ୍ତେ ସେ ତାହାର ଶିକାର ହୋଇଛି । ଭାରତୀୟ ସମାଜ ପରାଧୀନତାରୁ ମୁକୁଳିବା ପରେ ସମାଜକୁ ଚଳାଇବା ନିମନ୍ତେ ଭାରତୀୟ ବୁଦ୍ଧିଜୀବୀମାନଙ୍କ ଉପରେ ଏକ ବିରାଟ ନୂଆ ଦାୟିତ୍ୱ ଆସି ପଡ଼ିଲା । ସେ ଦାୟିତ୍ୱ ହେଉଛି ଭାରତୀୟ ସମାଜ ଆଗରେ ଯେଉଁ ବିବିଧ ସମସ୍ୟା ଅଛି ସେଗୁଡ଼ିକର ମନନ ଚିନ୍ତନ କରି ସମାଧାନର ମାର୍ଗ ଦେଖାଇବା, ବ୍ୟବସ୍ଥିତ ରୀତି ନୀତିକୁ ପରୀକ୍ଷା କରି ରଚନାତ୍ମକ ତଥା ନ୍ୟାଶମୂଳକ ସମାଲୋଚନା କରିବା । ଏ କାର୍ଯ୍ୟ ପାଇଁ ମୌଳିକତା ଦରକାର ଥିଲା ବର୍ତ୍ତମାନର ପୃଥିବୀ ଓ ଭାରତୀୟ ପରିସ୍ଥିତିରେ । କାରଣ ଭାରତ ଯେପରି ଏକ ଯୁଗ-ସଙ୍କଟ କାଳରେ ସ୍ୱାଧୀନ ହୋଇ ନୂଆ ସମାଜ ହିସାବରେ ନିଜକୁ ଗଢ଼ିବାର ସୁଯୋଗ ପାଇଲା, ତାହା ମଧ୍ୟ ବିଲକ୍ଷଣ । ଭାରତ ସ୍ୱାଧୀନ ହେଲାବେଳକୁ ପ୍ରଚଳିତ ସଭ୍ୟତା ଭୁଷୁଡ଼ି ପଡୁଛି । ଦୁଇଟି ମହାଯୁଦ୍ଧର ଫଳସ୍ୱରୂପ ଆଣବିକ ବୋମାର ଉଦ୍ଭାବନ ଓ ଶାନ୍ତିକାଳରେ ମଧ୍ୟ ସଭ୍ୟ ଦେଶମାନଙ୍କର ଦୁଇଟି ଯୋଦ୍ଧୃମଣ୍ଡଳୀରେ ବିଭକ୍ତ ହୋଇଯିବା, ପାଶ୍ଚାତ୍ୟ ସଭ୍ୟତାର ଅବସାନ ଓ ବିଘଟନର ନିର୍ଭୁଲ ନିଦର୍ଶନ । ତାହାର ଏକପଟେ ଆସୁରିକ ଯୁଦ୍ଧ ଓ ସାମ୍ରାଜ୍ୟବାଦର ଅଭିବ୍ୟକ୍ତି ଓ ଅନ୍ୟଆଡ଼େ ହିଂସାତ୍ମକ ଅର୍ନ୍ତଯୁଦ୍ଧ ଓ ଅମାନୁଷିକ ଅଧିନାୟକବାଦର ଅଭିବ୍ୟକ୍ତି ଓ ଉଭୟ ମଧ୍ୟରେ ଅସରନ୍ତି କଳହ ଓ ମାରଣାସ୍ତ୍ର ପ୍ରତିଯୋଗିତା – ଏ ପରିସ୍ଥିତି ଭିତରେ ଭାରତ ଭଳି ଏକ ଜନସମାଜ ପୃଥିବୀ ଇତିହାସ ବକ୍ଷରେ ଯେତେବେଳେ ବାଟ ଖୋଜିଲା, କୌଣସି ପରିଷ୍କାର ରାସ୍ତା ତା ଆଗରେ ନଥିଲା । ଅବଶ୍ୟ ପାଶ୍ଚାତ୍ୟ ସଭ୍ୟତାର ଗାରିମାରେ ସ୍ତବ୍ଧ ପ୍ରାଚ୍ୟ ମସ୍ତିଷ୍କ ପକ୍ଷରେ ଇଂଲଣ୍ଡ, ରୁଷ୍ ବା ଆମେରିକା ଭଳି ଶିଳ୍ପୋନ୍ନତ ଦେଶ ହେବାର ଆକାଂକ୍ଷା ସ୍ୱାଭାବିକ ଥିଲା । ଜାପାନ୍ ଓ ଚୀନ୍ ଦୁଇ ଭିନ୍ନ ବାଟରେ ଏହି ପାଶ୍ଚାତ୍ୟ ଅନୁକରଣର ଆଦର୍ଶ ଗ୍ରହଣ କରିଛନ୍ତି ଓ ଯେକୌଣସି ମୂଲ୍ୟରେ ତାହା ହାସଲ କରିବାକୁ ଚାହାନ୍ତି । ଆକାଂକ୍ଷାଟି ମୋଟ ଉପରେ ଏହି – 'ଆମେ ପଛୁଆ ଦେଶ । ଇଂଲଣ୍ଡ, ଆମେରିକା ବା ରୁଷ୍ ଆଗୁଆ ଦେଶ । ସଭ୍ୟ ଓ ଶକ୍ତିଶାଳୀ ହେବାପାଇଁ ଆମକୁ ସେମାନଙ୍କ ପରି ହେବାକୁ ହେବ । ତାଙ୍କର ବଡ଼ ବଡ଼ ଶିଳ୍ପ ଓ ବିଜ୍ଞାନ ସାହାଯ୍ୟରେ ଆମେ ଏହା କରିପାରିବା' ।

ଭାରତୀୟ ମସ୍ତିଷ୍କ ଏହି ଆକାଂକ୍ଷାକୁ ସହଜ ଓ ପ୍ରତ୍ୟକ୍ଷ ଭାବରେ ଗ୍ରହଣ କରିପାରି ନାହିଁ । ଏହାର କାରଣ ଉପନିଷଦ୍ ସମୟର ସୁଦୂର ଅତୀତର ପରମ୍ପରା ନୁହେଁ । କାରଣ ଚୀନ୍‌ରେ ମଧ୍ୟ କନ୍‌ଫୁସିଅସ୍ ପରମ୍ପରା ଥିଲା । ସଭ୍ୟତାର ଯୁଗ ବଦଳିଲା ପରେ

ପୁରୁଣା ପରମ୍ପରାକୁ ଛାଡ଼ିବା ପାଇଁ ସାହସ ଆସିଯାଏ । କିନ୍ତୁ ସୌଭାଗ୍ୟକ୍ରମେ ବା ଦୁର୍ଭାଗ୍ୟକ୍ରମେ ଏହି ସୁଦୂର ଅତୀତର ପରମ୍ପରା ହଠାତ୍ ଏକ ନୂଆ ଆତ୍ମା ଘେନି ଭାରତର ମନକୁ ଆନ୍ଦୋଳିତ କଲା । ଯାହା ଫଳରେ ଭାରତୀୟ ମସ୍ତିଷ୍କ ଓ ହୃଦୟ ପୃଥିବୀର ପ୍ରଚଳିତ ମୂଲ୍ୟ ବ୍ୟବସ୍ଥାକୁ ଗ୍ରହଣ କରିବାର ସ୍ୱାଭାବିକତା ଓ ସହଜତା ହରାଇ ପକାଇଲା । ଏଥିରେ ଅନ୍ତର୍ନିହିତ ସମସ୍ୟାକୁ ବୌଦ୍ଧିକ ପାରମ୍ପରିକତାର ସମସ୍ୟା ବୋଲି ସମାଜ ଶାସ୍ତ୍ରୀୟ ଭାଷାରେ କୁହାଯାଇପାରେ । ଚୀନ୍‌ର ଉଦାହରଣରୁ ପ୍ରକୃଷ୍ଟ ଭାବେ ଦେଖାଯାଇଛି ଯେ ଗୋଟିଏ ସଭ୍ୟତା ନିହାତି ଅଚଳନ୍ତି ଓ ନିଷ୍କ୍ରିୟ ହୋଇଗଲା ପରେ ତାହାର ପରମ୍ପରାଗତ ପ୍ରଭାବ ଦୁର୍ବଳ ହୋଇପଡ଼େ ଓ ନୂତନ ସଭ୍ୟତାର ଆକର୍ଷଣ ତାହା ଉପରେ ବିଜୟ ଲାଭ କରେ ।

ଭାରତରେ ମଧ୍ୟ ତାହା ଘଟିପାରିଥାଆନ୍ତା । କିନ୍ତୁ ଗାନ୍ଧିଜୀଙ୍କର ଆନ୍ଦୋଳନ ପାଶ୍ଚାତ୍ୟ-ଅନୁକରଣ ଧାରାବାହିକତାରେ ଏକ ସଙ୍କଟ ସୃଷ୍ଟି କରିଦେଇଛି । ଏହା କେବଳ ସାମୟିକ ନା ଯୁଗ ପ୍ରବର୍ତ୍ତକ, ତାହା ଭବିଷ୍ୟତର ଇତିହାସ କହିବ; କିନ୍ତୁ ଏକଥା ନିଶ୍ଚୟ ଯେ ପ୍ରାଚ୍ୟର ବୌଦ୍ଧିକ ଇତିହାସରେ ଏକ ପାର୍ଥକ୍ୟ ଆସିଯାଇଛି । ଗାନ୍ଧୀ ପୁରାତନର ବାହକ ନଥିଲେ । ପ୍ରଚଳିତ ସଭ୍ୟତା ଓ ମୂଲ୍ୟ ବ୍ୟବସ୍ଥାରେ ଅସନ୍ତୁଷ୍ଟ ହୋଇ ଏକ ଅଲଗା ବାଟ ଖୋଜିବା ପାଇଁ ଗୀତା ଓ ବୁଦ୍ଧଙ୍କୁ ସେ ଭିତ୍ତି କରିଥିଲେ ଓ ଆଧୁନିକ ଯୁଗରୁ ପୁଷ୍ଟିକରଣ ସକାଶେ ଥୋରୋ, ରସ୍କିନ୍ ଓ ଟଲ୍‌ଷ୍ଟୟଙ୍କର ପାଖରେ ପହଞ୍ଚିଲେ । କ୍ଷୁଦ୍ର ବିଦ୍ୟାବୁଦ୍ଧିସମ୍ପନ୍ନ ଭାରତୀୟ ବୁଦ୍ଧିଜୀବୀମାନେ ଏ ପର୍ଯ୍ୟନ୍ତ ଏକଥାକୁ ଭୁଲ୍ ଭାବରେ ଅର୍ଥ କରିଆସିଛନ୍ତି । ତାଙ୍କ ମତରେ ଗାନ୍ଧୀ କେବଳ ଜଣେ 'ମହାତ୍ମା' ଓ ନିଛକ ଆଦର୍ଶବାଦୀ ସାଧକ ଥିଲେ । ସେ ନେହେରୁଙ୍କ ଭଳି, ଏମ୍.ଏନ୍. ରାୟଙ୍କ ଭଳି ବା ଜୟପ୍ରକାଶ୍ ନାରାୟଣ୍‌ଙ୍କ ଭଳି (ଯେଉଁମାନେ ୟୁରୋପ୍-ଆମେରିକା ଯାଇ ସୋସାଲିଜିମ୍, ମାର୍କ୍ସବାଦ ଓ ବସ୍ତୁବାଦ ପ୍ରଭୃତି ଶିଖି ଆସିଲେ) ବୁଦ୍ଧିଜୀବୀ ନଥିଲେ । ଜଣେ ଭାରତୀୟ ବୁଦ୍ଧିଜୀବୀ ଗାନ୍ଧୀଙ୍କର ଜୀବନକୁ ଏହି ଦୃଷ୍ଟିରୁ ବିଶ୍ଳେଷଣ କରି ଲେଖିଛନ୍ତି ଯେ ଅନ୍ୟମାନେ ପାଶ୍ଚାତ୍ୟ ଅନୁଭୂତିରୁ ଲାଭ ଉଠାଇ ବିଜ୍ଞାନ, ଶିଳ୍ପ ଓ ରାଜନୈତିକ ବାଦ ପ୍ରଭୃତି ଗ୍ରହଣ କଲାବେଳେ ଗାନ୍ଧୀ ବିଲାତରେ ପତ୍ରପତ୍ରିକାରେ ନିରାମିଷ ଖାଦ୍ୟ ସମ୍ବନ୍ଧରେ ପ୍ରବନ୍ଧ ଲେଖୁଥିଲେ ।

ଏହି ବ୍ୟଙ୍ଗୋକ୍ତିର ରଚୟିତା ଜଣେ କମ୍ୟୁନିଷ୍ଟ୍ ହେଲେ ମଧ୍ୟ ଗାନ୍ଧୀଙ୍କ ଜୀବନ ବିଷୟରେ ସବୁ ଶ୍ରେଣୀର ବୁଦ୍ଧିଜୀବୀଙ୍କର ଏହା ଏକ ସାଧାରଣ ମନ୍ତବ୍ୟ । ସେମାନେ ବୁଝନ୍ତି ନାହିଁ ଯେ ଗାନ୍ଧୀଙ୍କର ବଳିଷ୍ଠ ଓ ମୌଳିକ ବୁଦ୍ଧି ପାଶ୍ଚାତ୍ୟ ସଭ୍ୟତାକୁ ମଧ୍ୟ ପୁରୁଣା ଓ ଅଚଳନୀୟ ଭାବି ନୂଆ ମୂଲ୍ୟବୋଧର କଳ୍ପନା କରୁଥିଲା । ତାହାର ଉପଲବ୍ଧି ପାଇଁ ସେ ନେହେରୁଙ୍କ ଭଳି ବ୍ରିଟିଶ୍ ରାଜନୀତି ଓ ସଂସ୍କୃତି ଭିତରେ ଦୃଷ୍ଟି ନିବଦ୍ଧ ନକରି ବା ଏମ୍.ଏନ୍. ରାୟଙ୍କ ଭଳି ବସ୍ତୁବାଦରେ, ଜୟପ୍ରକାଶ୍ ନାରାୟଣ୍‌ଙ୍କ ଭଳି ଆମେରିକୀୟ ପ୍ରାଗ୍‌ମେଟିଜିମ୍‌ରେ ଭାସି ନଯାଇ, ରୁଷ୍‌ର ଟଲ୍‌ଷ୍ଟୟ, ଆମେରିକାର ଥୋରୋ ଓ ଇଂଲଣ୍ଡ୍‌ର ରସ୍କିନ୍‌ଙ୍କ ପରି ସାରା ଜଗତରୁ ନିଜର ଆଦର୍ଶ ପାଇଁ ପ୍ରେରଣା ଖୋଜିଥିଲେ । ନିଜ ବିଶ୍ୱାସର ପ୍ରଥମ ପ୍ରୟୋଗ ସେ ଭାରତରେ ନୁହେଁ, ଦକ୍ଷିଣ

ଆଫ୍ରିକାରେ କରିଥିଲେ । ତାଙ୍କ ବୁଦ୍ଧିର ବିଶ୍ୱପ୍ରସାର ଓ ଦୂରଦୃଷ୍ଟି ତୁଳନାରେ ପାଶ୍ଚାତ୍ୟ ପୁସ୍ତକ ଶିକ୍ଷାରୁ ବୋଲାଉଥିବା ବୁଦ୍ଧିଜୀବୀ ଯେ କେତେ ହୀନ ଓ କ୍ଷୁଦ୍ର ତାହା ଲକ୍ଷ୍ୟ କରିବା କଥା । ଠିକ୍ ଭାବରେ କହିବାକୁ ଗଲେ ଗାନ୍ଧୀ ସମସାମୟିକ ବିଶ୍ୱବାଦିତାକୁ ଅମାନ୍ୟ କରି ଏକ ନୂଆ ବିଶ୍ୱବାଦିତାର ପ୍ରତିଷ୍ଠା ପାଇଁ ଏତେ ଦୃଢ଼ ଥିଲେ ଯେ ଇଂଲଣ୍ଡ୍ ଓ ଦକ୍ଷିଣ ଆଫ୍ରିକାରେ ଜୀବନର ପ୍ରଥମ ଯୌବନରେ ରହି ସୁଦ୍ଧା ପାଶ୍ଚାତ୍ୟ ସଭ୍ୟତାର ଜାକଜମକରେ ସେ ଭାସିଯାଇ ନଥିଲେ ।

ଭାରତୀୟ ସ୍ୱାଧୀନତା ବିକାଶର ନେତୃତ୍ୱ ଗାନ୍ଧିଜୀ ନେଲେ ଓ ତାଙ୍କ ଦର୍ଶନର ପ୍ରଭାବ ଭାରତୀୟ ମନରେ ପଡ଼ିଛି । କିନ୍ତୁ ନେତୃତ୍ୱର ସଙ୍ଗଠନ ଓ ପରିଚାଳନା ପାଇଁ ଯେଉଁମାନେ ଏହାର ଉତ୍ତରାଧିକାରୀ ହେଲେ ସେମାନେ ଗାନ୍ଧୀଙ୍କର ଦୂରଦୃଷ୍ଟିକୁ ଗ୍ରହଣ କରି ନଥିଲେ ବା ଏହାର ବିରୋଧପକ୍ଷୀୟ ଥିଲେ । ଏହି ଦୁଇ ଶ୍ରେଣୀର ପ୍ରତୀକରୂପେ ଶ୍ରୀ ନେହେରୁ ଓ ଶ୍ରୀ ଦେଶମୁଖ୍ଙ୍କୁ ନିଆଯାଇପାରେ । ଯେଉଁମାନେ ନିଜକୁ ଗାନ୍ଧୀବାଦୀ ବୋଲାଇଲେ, ସେମାନେ ଗାନ୍ଧୀଙ୍କର କେତେକ କାର୍ଯ୍ୟକ୍ରମର ଉପର ଆକୃତିକୁ ହିଁ ରୂଢ଼ି ରୂପେ ଧରି ଏତେ ସଙ୍କୀର୍ଣ୍ଣ ଓ ହୀନବଳ ହୋଇଗଲେ ଯେ ସେମାନଙ୍କର ସାମାଜିକ ମହତ୍ୱ ବିଶେଷ ରହିଲା ନାହିଁ । ପରେ ସର୍ବୋଦୟ ବା ଖଦୀ ନାମରେ ଜନମଙ୍ଗଳ ଓ କମ୍ୟୁନିଟି ପ୍ରୋଜେକ୍ଟ ବିଭାଗଗୁଡ଼ିକ ଜରିଆରେ ଶାସନକଳର ଆଶ୍ରୟ ପ୍ରାର୍ଥୀ ହେଲେ । ଶ୍ରୀ ନେହେରୁଙ୍କ ଭଳି ପାଶ୍ଚାତ୍ୟ ସଭ୍ୟତାର ପ୍ରଶଂସକ ଓ ଚିନ୍ତାମଣି ଦେଶମୁଖ୍ଙ୍କ ଭଳି ଆଇ.ସି.ଏସ୍. ଅଫିସରଙ୍କର ସାଧାରଣ ଚିନ୍ତାଧାରା ଓ ଦୃଷ୍ଟିକୋଣ ହିଁ ଆଜି ଭାରତରେ ରାଜନୈତିକ, ଆର୍ଥିକ ଓ ସାମାଜିକ ବିକାଶ ନିମନ୍ତେ କାର୍ଯ୍ୟକାରୀ ହେଉଛି ।

ଭାରତୀୟ ସ୍ୱାଧୀନତା ବିକାଶର ଏହି ବିବର୍ତ୍ତନ ସାଙ୍ଗରେ ଆହୁରି ଟିକିଏ ପୁରୁଣା କଥା ଯୋଡ଼ିଦେଲେ ଭାରତୀୟ ବୁଦ୍ଧିଜୀବୀର ପୃଷ୍ଠଭୂମି ସ୍ପଷ୍ଟ ହୋଇଯିବ । ବ୍ରିଟିଶ୍ ଶାସନର ପ୍ରତିଷ୍ଠା ଫଳରେ ଭାରତୀୟ ସମାଜର ତାହା ପ୍ରତି ଯେଉଁ ପ୍ରତିକ୍ରିୟା ହେଲା ତାହା ଦୁଇ ଭିନ୍ନ ଧରଣର – ଏକ ଦିଗରେ ପୁରାତନ ଜ୍ଞାନ ଓ ସଭ୍ୟତାର ପୁନରୁତ୍‌ଥାନ କରିବାକୁ ଚେଷ୍ଟା କରି ନିଜର ଜାତୀୟ ଗୌରବ ଜରିଆରେ ବିଦେଶୀ ଧୃଷ୍ଟତାର ସମ୍ମୁଖୀନ ହେବା ଓ ଅନ୍ୟ ଦିଗରେ ପାଶ୍ଚାତ୍ୟ ଜ୍ଞାନ ହାସଲ କରି ବିଦେଶୀ ଅସ୍ତ୍ରବଳରେ ବିଦେଶୀଙ୍କ ଉପରେ ବିଜୟୀ ହେବା ପାଇଁ ତତ୍ପରତା । ଭାରତର ସାଧାରଣ ବୁଦ୍ଧିଜୀବୀ ପରେ ପରେ ଏ ଦୁଇଟିର ମିଶ୍ରଣ ଚାହିଁଲା ଓ ସେହି ଦୃଷ୍ଟିରୁ ରାମ୍‌ମୋହନ୍ ରାୟ ବୋଧହୁଏ ଏହି ଶ୍ରେଣୀର ପିତା ।

କିନ୍ତୁ ଟିକିଏ ଭିତିରିଆ କରି ଦେଖିଲେ ଏହାର ମୂଳରେ ଏକ ଆତ୍ମନ୍ୟୁନତା ଦେଖାଯିବ । ପ୍ରକୃତତଃ ଏହି ମନୋଭାବରେ ପାଶ୍ଚାତ୍ୟ ପ୍ରତି ମୋହ ହେଲା ପ୍ରଧାନ କଥା । ନିଜର ନ୍ୟୂନତାକୁ ଘୋଡ଼ାଇବା ପାଇଁ ଭାରତୀୟ ଆଧ୍ୟାତ୍ମିକତା ଆଦିର ଆସ୍ଫାଳନ ମଧ୍ୟ କରାଯାଏ । ଭାରତୀୟ ଧର୍ମ ଓ ଦର୍ଶନକୁ ୟୁରୋପୀୟ ଚିନ୍ତାର ଛାଞ୍ଚରେ ବ୍ୟାଖ୍ୟା କରିବାକୁ ଚେଷ୍ଟା କରାଯାଏ । ହଜାର ହଜାର ବର୍ଷ ପୂର୍ବର ଏକ ମୃତ ସଭ୍ୟତା ଓ ପ୍ରଚଳିତ ଏକ ଶକ୍ତିଶାଳୀ ସଭ୍ୟତାର ମିଶ୍ରଣ କେବେହେଲେ ସମ୍ଭବପର ନୁହେଁ । ଏହା ଏକ ଛଳନା ମାତ୍ର । ଅସଲ କଥା ହେଲା ବିଦେଶୀ ସଭ୍ୟତା, ସଂସ୍କୃତି ଓ ଭାଷା ପ୍ରତି

ଆନୁଗତ୍ୟ । ଏ ସମ୍ପର୍କରେ ଆହୁରି ଏକ ଐତିହାସିକ ଉଦାହରଣ ଦେବା ଠିକ୍ ହେବ । ରାମ୍‌ମୋହନ୍ ରାୟଙ୍କର ପ୍ରାୟ ସମସାମୟିକ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ମଧ୍ୟ ଗାନ୍ଧୀଙ୍କ ପରି ଭାରତୀୟ ବୁଦ୍ଧିଜୀବୀ ଦ୍ୱାରା ଅବହେଳିତ । ରାମ୍‌ମୋହନ୍‌ଙ୍କଠାରୁ ଅଧିକ ବଳିଷ୍ଠ ଚରିତ୍ର, ଅଧିକ ମୌଳିକ ଓ ସ୍ୱାତନ୍ତ୍ର୍ୟପୂର୍ଣ୍ଣ ବ୍ୟକ୍ତିତ୍ୱ ହୋଇ ସୁଦ୍ଧା ଭାରତୀୟ ବା ବଙ୍ଗାଳୀ ସଂସ୍କୃତିର ଅଭ୍ୟୁଦୟରେ ତାଙ୍କର ସ୍ଥାନ ଅତି ମ୍ଳାନ ଓ ବଙ୍ଗଳା ବାହାରେ ସେ ପ୍ରାୟ ଅପରିଚିତ ।

ଏହାର କାରଣ ଆକସ୍ମିକ ନୁହେଁ, କାରଣ ତାଙ୍କଠାରୁ ନିମ୍ନ ପ୍ରତିଭାର ବହୁ ବ୍ୟକ୍ତି ବଙ୍ଗଳାରେ ଜନ୍ମି ଭାରତ ବିଖ୍ୟାତ ହୋଇଛନ୍ତି ଓ ନିଜ ପ୍ରଦେଶର ପ୍ରତିଭାକୁ ଚାରିଆଡ଼େ ପ୍ରଚାର କରିବା ବିଷୟରେ ବଙ୍ଗାଳୀ ବୁଦ୍ଧିଜୀବୀ ଭାରତରେ ସର୍ବାପେକ୍ଷା ଦକ୍ଷ । ଗାନ୍ଧିଜୀଙ୍କର ଖଦୀ, ରାଷ୍ଟ୍ରଭାଷା ଓ ହରିଜନ ଆନ୍ଦୋଳନର ବହୁପୂର୍ବରୁ, ଗାନ୍ଧୀଙ୍କ ପରି ବିଶଦ ଓ ପୂର୍ଣ୍ଣଭାବରେ ନହେଲେ ସୁଦ୍ଧା ପ୍ରତୀକ ଭାବରେ ଓ ଅଦମ୍ୟ ବଳିଷ୍ଠତାର ସହ ଈଶ୍ୱରଚନ୍ଦ୍ର ଚପଲ-ଜୋତା ସଙ୍ଘର୍ଷ, ବିଧବା ବିବାହ ଆନ୍ଦୋଳନ ଓ ବିଶ୍ୱବିଦ୍ୟାଳୟର ଚରମ ପର୍ଯ୍ୟନ୍ତ ବଙ୍ଗଳା ମାଧ୍ୟମରେ ଶିକ୍ଷା ଦାବି ଜରିଆରେ ସାମାଜିକ ସମାନତାର ବିପ୍ଳବ ଠିଆ କରିବା ଓ ପୁରାତନ ସାମାଜିକ ମୂଲ୍ୟ ବିରୁଦ୍ଧରେ ବିଦ୍ରୋହ କରିବା ସଙ୍ଗେ ସଙ୍ଗେ ପାଶ୍ଚାତ୍ୟ ସଭ୍ୟତା ପ୍ରତି ଆନୁଗତ୍ୟର ମଧ୍ୟ ସିଧାସଳଖ ପ୍ରତିରୋଧ କରିଥିଲେ । ଏଥିପାଇଁ ତାଙ୍କର ଐତିହାସିକ ମହତ୍ତ୍ୱ ବୁଝିବା କଠିନ ହୋଇଛି । ବିଦ୍ୟାସାଗରଙ୍କୁ ଜଣେ ଦାନଶୀଳ ପଣ୍ଡିତ ଛଡ଼ା ଅନ୍ୟରୂପେ ବହୁତ କମ୍ ଲୋକ ଜାଣନ୍ତି, ଅଥଚ ପଶ୍ଚିମା ସଂସ୍କୃତି ଓ ଇଂରାଜୀ ଶିକ୍ଷାର ସ୍ୱାଗତରେ ଅଭିଭୂତ ହୋଇ ପଡ଼ିଥିବା ବହୁବ୍ୟକ୍ତିଙ୍କୁ ଆଜି ଭାରତୀୟ ନବଚୈତନ୍ୟର ପିତା ବୋଲି ଆମର ଇତିହାସକାରମାନେ କହନ୍ତି । ଇଂରାଜୀ ମାଧ୍ୟମ ଓ ଇଂରାଜୀ ପୋଷାକ ପ୍ରତି ବିରୋଧ ବୋଧହୁଏ ବିଦ୍ୟାସାଗରଙ୍କର ଖ୍ୟାତିରେ ପ୍ରତିବନ୍ଧକ ହୋଇଛି ।

ବିଦ୍ୟାସାଗର ଓ ଗାନ୍ଧୀ ଯେଉଁ ଉଦ୍‌ଗମର ପ୍ରତିନିଧିତ୍ୱ କରନ୍ତି ତାହା ପୁରାତନ ସଭ୍ୟତାର ମୂଲ୍ୟ ବ୍ୟବସ୍ଥାକୁ ଆକ୍ରମଣ କରିବା ସଙ୍ଗେ ସଙ୍ଗେ ପ୍ରଚଳିତ ସଭ୍ୟତା ଦ୍ୱାରା ଅଭିଭୂତ ହୋଇନାହିଁ । ଏପରି ମନୋଭାବର ଏକ ବିଶିଷ୍ଟ ପରିଣାମ ହୋଇପାରେ ସମ୍ମୁଖସ୍ଥ ସବୁ ସମସ୍ୟାକୁ ନୂଆ ଦୃଷ୍ଟିରେ ସମାଧାନ କରିବାକୁ ଚେଷ୍ଟା କରି ନୂଆ ସଂସ୍କୃତି ଆଡ଼କୁ ଅଗ୍ରସର ହେବା । ଆମର ଦୁର୍ଭାଗ୍ୟ ଯେ ମୌଳିକତାର ଏହି ବଳିଷ୍ଠ ଉତ୍ସକୁ ଭାରତୀୟ ବୁଦ୍ଧିଜୀବୀମାନେ ଏପର୍ଯ୍ୟନ୍ତ ଅବହେଳାର ବାଲିବନ୍ଧ ଦ୍ୱାରା ରୁଦ୍ଧ କରି ରଖିଛନ୍ତି । ସେମାନେ ପ୍ରବାହିତ ହୋଇ ଚାଲିଛନ୍ତି ଏକ ସହଜ ଧାରାର ସୁଅରେ – ଯେଉଁ ପରମ୍ପରାର ପ୍ରତିନିଧି ହିସାବରେ ରାମ୍‌ମୋହନ୍ ରାୟ, ମୋତିଲାଲ୍ ନେହେରୁ ଓ ଶ୍ରୀ ରାଧାକୃଷ୍ଣନ୍ ପ୍ରଭୃତିଙ୍କୁ ନିଆଯାଇପାରେ ।

ଏଭଳି ଐତିହାସିକ ଅବତାରଣାର ତାତ୍ପର୍ଯ୍ୟ ଏହି ଯେ, ଆଧୁନିକ ଭାରତୀୟ ବୁଦ୍ଧିଜୀବୀ ଶ୍ରେଣୀର ନିଷ୍ଫଳତା ବିଚାର କଲାବେଳେ ତାହାର ପାରିପାର୍ଶ୍ୱିକ ସଙ୍କଟକୁ ମଧ୍ୟ ବିଶ୍ଳେଷଣ କରିବା ଦରକାର । ବୁଦ୍ଧିଜୀବୀ ଶୂନ୍ୟରେ ବୁଦ୍ଧିର ପ୍ରୟୋଗ କରେନାହିଁ । ଯୁଗ ଓ ସମାଜର ସମସ୍ୟା ଉପରେ ତାହାର ବୁଦ୍ଧିର ପ୍ରୟୋଗ ହୁଏ ଓ ଏହି ପ୍ରୟୋଗର

ପ୍ରଭାବ ଓ ଫଳଦ୍ୱାରା ହିଁ ତାହାର ସାର୍ଥକତା ପ୍ରମାଣିତ ହୋଇପାରେ । ଭାରତୀୟ ସମାଜ ଆଗରେ ଗତ ଦେଢ଼ଶହ ବର୍ଷ ଧରି ଯେଉଁ ସଭ୍ୟତା, ସଂସ୍କୃତି, ରାଜନୀତି ଓ ଅର୍ଥନୀତିର ସମସ୍ୟା ଦେଖାଦେଇଛି ମୋଟ ଉପରେ ତାହା ଏକ ଜଡ଼ତାଗ୍ରସ୍ତ ପ୍ରାଚୀନ ସମାଜର ବର୍ତ୍ତମାନ ଦାରିଦ୍ର୍ୟ, ଅନ୍ଧକାର ଓ କ୍ଷୁଦ୍ରତାରୁ ଉଠି ଆଧୁନିକ ପୃଥିବୀରେ ପ୍ରଭାବଶାଳୀ ହେବା । ଏହି ସମସ୍ୟାର ସମାଧାନ ପାଇଁ ଚାରି ରକମର ଚେଷ୍ଟା ହୋଇଛି । ଏକ ଦିଗରେ ଆର୍ଯ୍ୟସମାଜର ଆର୍ଯ୍ୟ ସଂସ୍କୃତି ନାମରେ ପ୍ରାଚୀନ ସଂସ୍କୃତିର ପୁନରୁତ୍‌ଥାନ, ଅନ୍ୟ ଦିଗରେ ପାଶ୍ଚାତ୍ୟ ସଭ୍ୟତାର ଅନୁକରଣ, ତୃତୀୟରେ ପୁରାତନ ଓ ନୂତନର ଅପମିଶ୍ରଣ ଓ ଚତୁର୍ଥରେ ମୂଲ୍ୟ-ବ୍ୟବସ୍ଥା ପ୍ରତି ଘୋର ବିରୋଧ ସଙ୍ଗେ ସଙ୍ଗେ ପାଶ୍ଚାତ୍ୟ ଆଦର୍ଶର ମଧ୍ୟ ପ୍ରତିରୋଧ । ଶେଷୋକ୍ତ ଶ୍ରେଣୀ ଈଶ୍ୱରଚନ୍ଦ୍ର ବା ଗାନ୍ଧୀଙ୍କ ଭଳି ଅତି ଅଳ୍ପ ଲୋକଙ୍କ ମଧ୍ୟରେ ନିବଦ୍ଧ ହେଲେ ସୁଦ୍ଧା ଏକ ବଳିଷ୍ଠ ମଞ୍ଜି ହୋଇ ଆମ ସମାଜରେ ରହିଛି ।

ପୁନରୁତ୍‌ଥାନବାଦୀଙ୍କର ସଂଖ୍ୟା ଭାରତରେ ଅଳ୍ପ ନହେଲେ ସୁଦ୍ଧା ବିଜ୍ଞାନ କ୍ଷେତ୍ରରେ କେତେକ ପ୍ରତିକ୍ରିୟାଶୀଳ ଅନୁଷ୍ଠାନର ସମର୍ଥନ ଛଡ଼ା ଏହାର ଅନ୍ୟ କୌଣସି ନୀତି ନାହିଁ । କିନ୍ତୁ ପରୋକ୍ଷଭାବରେ ଭାରତୀୟ, ବିଶେଷତଃ ହିନ୍ଦୁ ମନରେ ଏହାର ପ୍ରଭାବ ଅତି ବେଶୀ ଓ ପ୍ରତ୍ୟେକ ହିନ୍ଦୁ ବୋଧହୁଏ ନିଜର ଦୁର୍ବଳ ମୁହୂର୍ତ୍ତରେ ଏହି ଦୃଷ୍ଟିକୋଣ ଦ୍ୱାରା ପ୍ରଭାବିତ ହୋଇଥାଏ । ଅନ୍ୟ ଦୁଇଶ୍ରେଣୀକୁ ଅଲଗା ନକରି ଏକାଠି କରିବା ଠିକ୍ ହେବ, କାରଣ ଯେଉଁମାନେ ପ୍ରାଚୀନ ଭାରତୀୟ ସଂସ୍କୃତି ଓ ପାଶ୍ଚାତ୍ୟ ସଭ୍ୟତାକୁ ଏକତ୍ରିତ କରିବା ଚାହାନ୍ତି ସେମାନେ କଥାରେ ଆକର୍ଷକ, କିନ୍ତୁ କାମରେ ଅସମ୍ଭବ କାର୍ଯ୍ୟ କରିବାକୁ ଭାବୁଛନ୍ତି । ଶ୍ରୀ ରାଧାକ୍ରିଷ୍ଣନ୍‌ଙ୍କ ଭଳି ଲେଖିଲା ବେଳେ ପ୍ରାଚୀନ ସଂସ୍କୃତିର ଗୁଣଗାନ କରି ପଶ୍ଚିମା ଲୋକଙ୍କ ମନକୁ ପାଇଲା ଭଳି ବହି ଲେଖନ୍ତି ଓ ପ୍ରତ୍ୟକ୍ଷ ଭାବରେ ଉପରାଷ୍ଟ୍ରପତି ଭଳି ସାରଶୂନ୍ୟ, ବିଳାସ ଓ ଆୟାସର ପଦବୀ ଗ୍ରହଣ କରି ସମାଜକୁ ଗତାନୁଗତିକ ଢଙ୍ଗରେ ପାଶ୍ଚାତ୍ୟ ସଭ୍ୟତାର ଅନୁକରଣ ପଥରେ ଛାଡ଼ି ଦିଅନ୍ତି । କମ୍ୟୁନିଷ୍ଟ୍ ଆଦର୍ଶପନ୍ଥୀଙ୍କୁ ଏଠାରେ ଅଲଗା କରାଯାଇନାହିଁ, କାରଣ ସେମାନଙ୍କର ରାଜନୈତିକ ପଦ୍ଧତି ଅଲଗା ହେଲେ ସୁଦ୍ଧା ସେମାନେ ପାଶ୍ଚାତ୍ୟ ସଭ୍ୟତାର ହିଁ ଅଙ୍ଗ - ଠିକ ଯେପରି ଫାଶିଷ୍ଟ୍, ସୋସିଆଲ୍ ଡେମୋକ୍ରାଟ୍ ବା ରକ୍ଷଣଶୀଳମାନେ ରାଜନୈତିକ ପଦ୍ଧତି ହିସାବରେ ପୃଥକ ପୃଥକ ହେଲେ ସୁଦ୍ଧା ସଭ୍ୟତା କ୍ଷେତ୍ରରେ ଏକ । ଭାରତର ଯେଉଁ ବୁଦ୍ଧିଜୀବୀମାନେ କମ୍ୟୁନିଷ୍ଟ୍ ପ୍ରେରଣା ଦ୍ୱାରା ପୁଷ୍ଟ, ସେମାନେ ଏହି ପାଶ୍ଚାତ୍ୟ ଅନୁକରଣ ଶ୍ରେଣୀରେ ହିଁ ଅନ୍ତର୍ଭୁକ୍ତ ହେବେ । ଏହି ତିନି ପ୍ରକାରର ଲୋକଙ୍କୁ ଏକାଠି କରିବାରେ ଯେ କିଛି ତ୍ରୁଟି ନାହିଁ ତାହା ଆମ ଦେଶର ଶାସନକଳ ଓ ବିଭିନ୍ନ ଅନୁଷ୍ଠାନ ଉପରେ ଆଖି ପକାଇଲେ ଜଣାଯିବ । ଭାରତର ବିକାଶ ପାଇଁ ଯେତେସବୁ ଆର୍ଥିକ, ବୌଦ୍ଧିକ ଓ ସାଂସ୍କୃତିକ ଯୋଜନା କାର୍ଯ୍ୟକାରୀ ହୋଇ ଚାଲିଛି ସେ ସବୁର ଏମାନେ ସମାନ ଭାବରେ ସମର୍ଥକ ଓ ସାହିତ୍ୟ ଏକାଡ଼େମୀ ପ୍ରଭୃତି ଏଭଳି ଯେତେ ଅନୁଷ୍ଠାନ ଅଛି ସବୁଠାରେ ଏମାନଙ୍କୁ ସମାନ ସଂଖ୍ୟାରେ ଦେଖିବାକୁ ମିଳେ ।

ତେଣୁ, ଅବାସ୍ତବ ପୁନରୁତ୍‌ଥାନବାଦୀ ଓ ଲୁପ୍ତପ୍ରାୟ ସଙ୍କୀର୍ଣ୍ଣ ଗାନ୍ଧିବାଦୀଙ୍କୁ ଛାଡ଼ିଦେଲେ ଆମ ଦେଶର ବୁଦ୍ଧିଜୀବୀ କହିଲେ ପ୍ରକୃତରେ ଏହିମାନେ – ଯେଉଁମାନେ ପାଶ୍ଚାତ୍ୟ ସଭ୍ୟତାର ଛାଞ୍ଚରେ ଭାରତୀୟ ସମାଜର ସମାଧାନ ଚାହାନ୍ତି । ଏମାନେ କେବଳ ପ୍ରତିନିଧି ନୁହନ୍ତି, ପ୍ରତିଷ୍ଠିତ ମଧ୍ୟ । ସାହିତ୍ୟ ସଭାରେ, ବିଜ୍ଞାନ ଗବେଷଣାଗାରରେ, ସାଂସ୍କୃତିକ ମଣ୍ଡଳୀରେ, କଳା ପ୍ରଦର୍ଶନୀରେ, ରାଜନୈତିକ କ୍ଷମତାରେ, ଅର୍ଥନୈତିକ ଯୋଜନାରେ ଓ ବିଦ୍ୟାଳୟମାନଙ୍କରେ ଏହିମାନେ ହିଁ ନେତା ଓ କର୍ମୀ । ପତ୍ରପତ୍ରିକାରେ, ଦେଶ ବିଦେଶରେ ଏହିମାନଙ୍କ ମତାମତ ହିଁ ଭାରତ ପକ୍ଷରୁ ପ୍ରକାଶିତ ହୁଏ । ସାଧାରଣ ଜୀବନ ଉପରେ ବୁଦ୍ଧିଜୀବୀର ଯେଉଁ ପ୍ରଭାବ ପଡ଼ିବାର କଥା ତାହା ଏହିମାନଙ୍କଠାରୁ ହିଁ ନିଃସୃତ ହେଉଛି ।

ଭାରତୀୟ ବୁଦ୍ଧିଜୀବୀର ଦୁର୍ବଳତା ବିଷୟରେ ଅନେକ କଥା କୁହାଯାଉଛି । ଗୋଟିଏ ମତରେ, ସେ ଏକ ଚେରହୀନ ବ୍ୟକ୍ତିତ୍ୱ । ଏ ଦେଶର ପରମ୍ପରାରେ ସେ ଗଢ଼ି ଉଠିନାହିଁ, ଏ ଦେଶର ମାଟି ପବନରେ ତାହାର ବୃଦ୍ଧି ହୋଇନାହିଁ । ଅନ୍ୟ ମତରେ, ତାହାର ବ୍ୟକ୍ତିତ୍ୱ ଦ୍ୱିଧାଯୁକ୍ତ, ପ୍ରାଚୀନ ଓ ପାଶ୍ଚାତ୍ୟ ସଭ୍ୟତାର ମାନଦଣ୍ଡର ଟଣା ଓଟରାରେ ସେ ନିଷ୍ପେଷିତ । ପୁଣି ଏକ ମତରେ, ସେ ପ୍ରଚଳିତ ବିଶ୍ୱ ସଂସ୍କୃତି (ଅର୍ଥାତ ପାଶ୍ଚାତ୍ୟ ସଂସ୍କୃତିକୁ) ପୂର୍ଣ୍ଣରୂପେ ଗ୍ରହଣ କରିବାକୁ ପ୍ରସ୍ତୁତ ନଥିବାରୁ ତାହାର ବିକାଶ ହୋଇପାରୁନାହିଁ । କେତେକ ପୁଣି କହନ୍ତି ଯେ ତାହାର ପ୍ରଶଂସକର ଅଭାବ, ସେଥିପାଇଁ ସେ ବାରମ୍ବାର ୟୁରୋପ୍, ଆମେରିକାର ପ୍ରଶଂସା ଉପରେ ନିର୍ଭର କରୁଛି । ସେମାନେ ପ୍ରଶଂସା ନକଲେ ସେ ନିଜର ସାର୍ଥକତା ଉପଲବ୍ଧି କରିପାରୁନାହିଁ । ବିଦେଶୀ ସମାଲୋଚକ ତାହାର କାର୍ଯ୍ୟ ପ୍ରତି ଧ୍ୟାନ ଦେଉନାହାନ୍ତି ।

ଏହି ସବୁଥିରୁ ମୋଟ୍ ଉପରେ ଏତିକି ପ୍ରତୀତ ହେଉଛି ଯେ ଭାରତୀୟ ବୁଦ୍ଧିଜୀବୀର ଅବସ୍ଥା ଭଲ ନୁହେଁ । କିନ୍ତୁ ଦୂରାବସ୍ଥାର ଏହିଗୁଡ଼ିକ କାରଣ ନୁହନ୍ତି – ଲକ୍ଷଣ ମାତ୍ର । ଏହି ସବୁର ମୂଳରେ, ତାହାର ଦୋଷ ଦୁର୍ବଳତାର ଦୁଇଟି ପ୍ରଧାନ କାରଣ ହେଉଛି ଚରିତ୍ରଗତ ଓ ଆଦର୍ଶଗତ । ଚରିତ୍ର କହିଲେ ଏଠାରେ କେବଳ ବୁଦ୍ଧିଜୀବୀର ଧର୍ମକୁ ହିଁ ବୁଝାଉଛି । କଳାକାର ହେଉ ବା ସାହିତ୍ୟିକ ବା ଅର୍ଥନୀତିଜ୍ଞ ହେଉ ସେଥିପାଇଁ ନିଷ୍ଠା ସର୍ବଦା ଦରକାର, ଯାହା ବିନା ସେ କେବେହେଲେ ଉତ୍ତମ ବୁଦ୍ଧିଜୀବୀର କାର୍ଯ୍ୟ ସମ୍ପାଦିତ କରିପାରିବ ନାହିଁ । ବୁଦ୍ଧିଜୀବୀ ହିସାବରେ ନିଜର ସ୍ୱାଧୀନତା ଓ ଗୌରବ ଘୋଷଣା କରିବା ହେଲା ଏହାର ପ୍ରଥମ ସୋପାନ । ସମାଜର ପରୀକ୍ଷା, ଜୀବନର ବିଶ୍ଳେଷଣ, ମୂଲ୍ୟବୋଧର ସୃଷ୍ଟି, ପ୍ରଗତିର ପଥପ୍ରଦର୍ଶକ, ଏସବୁ ଯଦି ବୁଦ୍ଧିଜୀବୀର କାମ ହେଲା ତାହାହେଲେ ସେ ସତ୍ୟ ଛଡ଼ା ଆଉ କାହାର ଆନୁଗତ୍ୟ ସ୍ୱୀକାର ନକରିବା ଉଚିତ । ନିଜର କାର୍ଯ୍ୟ ପ୍ରତି ଆନ୍ତରିକତା ରଖି ତାହାର ଗୌରବ କ୍ଷୁର୍ଣ୍ଣ ନହେବା ସକାଶେ ସତତ ଜାଗ୍ରତ ରହିବା ତାହାର ଧର୍ମ ।

କିନ୍ତୁ ଏହି ମାପଦଣ୍ଡରେ ମାପିଲେ ଭାରତୀୟ ବୁଦ୍ଧିଜୀବୀର ସବୁଠୁ ବଡ଼ ଦୋଷ ଆଖି ଆଗକୁ ଆସିବ ତାହାର ଛୋଟଲୋକୀ, ଗୋଲାମୀ ଓ ପୌରୁଷହୀନତା । ଭାରତୀୟ ବୁଦ୍ଧିଜୀବୀ ନିଜର ପେଶାକୁ ଆପଣାର କରିପାରି ନାହିଁ ଓ ସେଥିରେ ତାହାର ଆତ୍ମଗୌରବ

ନାହିଁ । ଏହି ନିୟମର ଯାହା କିଛି ବ୍ୟତିକ୍ରମ ସ୍ୱାଧୀନତା ପୂର୍ବର ଭାରତରେ ଥିଲା ତାହାକୁ ମୂଳପୋଛ କରି ଏକ ନୂଆ ଆନୁଗତ୍ୟର ପରମ୍ପରା ସୃଷ୍ଟି କଲେ ସ୍ୱର୍ଗୀୟ ଶ୍ରୀରାଧାକ୍ରିଷ୍ଣନ୍ (ତାଙ୍କର ବିଶେଷତ୍ୱ ସ୍ୱାଧୀନତା ଆନ୍ଦୋଳନ ସହିତ ସମ୍ପର୍କ) । କବି, ଦାର୍ଶନିକ ବା ବୁଦ୍ଧିଜୀବୀ ଯେ ରାଜନୈତିକ କ୍ଷମତା ନ ଚାହିଁବ ତାହା ନୁହେଁ । କୌଣସି ଦାର୍ଶନିକ ବା କବି ନିଜର ବୁଦ୍ଧି ଓ ବିଶ୍ୱାସ ପ୍ରତି ବିଶ୍ୱସ୍ତ ରହି ରାଜନୀତିର କର୍ମପ୍ରବାହ ଭିତରୁ କ୍ଷମତାକୁ ଉଠି ନିଜର ଆଦର୍ଶ ଅନୁଯାୟୀ ତାହାର ବ୍ୟବହାର କଲେ ଆମେ ତାଙ୍କୁ ସ୍ୱାଗତ ଜଣାଇବା ଉଚିତ । କିନ୍ତୁ ଜଣେ ଅତି ପ୍ରତିଷ୍ଠିତ, ଦେଶବିଦେଶରେ 'ଦାର୍ଶନିକ' ନାମରେ ଖ୍ୟାତ ବୁଦ୍ଧିଜୀବୀ, ସମାଜର ଏକ ସନ୍ଧିକ୍ଷଣରେ ନିଜ ବୁଦ୍ଧିର ବ୍ୟବହାର ସାମାଜିକ ପ୍ରଗତିର ଅନୁଶୀଳନ, ପରୀକ୍ଷା ଓ ସମାଲୋଚନା ପାଇଁ ନକରି, ଯଦି ଫମ୍ପା କ୍ଷମତା ଓ ଆଡ଼ମ୍ବର ଛଡ଼ା ଅନ୍ୟ କୌଣସି କାର୍ଯ୍ୟକାରିତା ନଥିବା ସରକାରୀ ଗାଦିରେ ପିତୁଳାରୂପେ ବସି ନିଜ ବୁଦ୍ଧି ବିଚାରକୁ ସରକାରୀ ଦୃଷ୍ଟିରୁ ବନ୍ଦ ରଖେ, ଏହାକୁ ବୁଦ୍ଧିଜୀବୀର ସ୍ୱଧର୍ମ ପ୍ରତି ଗର୍ହିତ ବିଶ୍ୱାସଘାତକତା କହିବା ଭୁଲ୍ ହେବନାହିଁ । ଉଚ୍ଚତମ ସ୍ତରରୁ ଆରମ୍ଭ ହୋଇଥିବା ଏହି ସରକାରୀ ବୁଦ୍ଧିଜୀବୀର ପରମ୍ପରା ଆଜି ନିମ୍ନ ଶ୍ରେଣୀର ବୁଦ୍ଧିଜୀବୀମାନଙ୍କ ପର୍ଯ୍ୟନ୍ତ ଭେଦିଛି । କିଏ ଦିଲ୍ଲୀ ଦରବାର ତ କିଏ ରାଜ୍ୟ ଦରବାର ବା ନ ହେବା ବେଳକୁ ଉନ୍ନୟନ ବ୍ଲକ୍ ଦରବାରରେ କବି, ସଙ୍ଗୀତଜ୍ଞ ବା ଅର୍ଥନୀତିଜ୍ଞ ହେବାକୁ ଚେଷ୍ଟା କରୁଛନ୍ତି ।

ଗୋଟିଏ ପରେ ଗୋଟିଏ କରି ବିଭିନ୍ନ ପ୍ରାଦେଶିକ, ରାଷ୍ଟ୍ରୀୟ ବା ପଞ୍ଚାୟତ ସ୍ତରର ବୁଦ୍ଧିଜୀବୀମାନଙ୍କର କାର୍ଯ୍ୟକଳାପ ଓ ଆକାଂକ୍ଷାକୁ ଅନୁଶୀଳନ କଲେ ଏହି କଥାଟି ଜଳ ଜଳ ହୋଇ ଦେଖାଯିବ । ବୁଦ୍ଧିଜୀବୀ ହିସାବରେ ସାଧାରଣ ଲୋକଙ୍କ ମଧ୍ୟରେ ଯେତିକି ପ୍ରଭାବ ଓ ସମ୍ମାନ ହୋଇପାରୁଛି ସେତିକିରେ ସେ ସନ୍ତୁଷ୍ଟ ନୁହନ୍ତି, ତାଙ୍କର ସମ୍ମାନ ଓ ପ୍ରଭାବକୁ ସେ ସରକାରୀ ସଂସ୍ଥା ଜରିଆରେ ବଢ଼ାଇବାକୁ ଚାହାନ୍ତି । ବୁଦ୍ଧିଜୀବୀ ଓ କଳାକାର ହିସାବରେ ଭାରତୀୟ ସାହିତ୍ୟିକ ଯେ ଆତ୍ମଗୌରବ ବୋଧ କରିବା ଦିଗରେ କେତେ କାପୁରୁଷ ତାହାର ଏକ ଭଲ ନମୁନା ଓଡ଼ିଶାରୁ ମିଳେ । ଓଡ଼ିଶାର ଜଣେ ଲବ୍ଧପ୍ରତିଷ୍ଠ ଲେଖକଙ୍କୁ ସାହିତ୍ୟ ଏକାଡ଼େମୀର ପୁରସ୍କାର ମିଳିବା ପରେ ପୁରସ୍କୃତ ବହିର ଏକ ନୂଆ ସଂସ୍କରଣ ବାହାରିଛି । ଏହି ସଂସ୍କରଣର କଳେବରରେ ତିନୋଟି ନୂଆ ଜିଜ ଯୋଡ଼ା ହୋଇଛି । ପୁରସ୍କାର ବଣ୍ଟନ ବେଳେ ଦିଆଯାଇଥିବା ପ୍ରଧାନମନ୍ତ୍ରୀ ଓ ଉପରାଷ୍ଟ୍ରପତିଙ୍କର ଭାଷଣ (ଏହି ବହି ବିଷୟରେ ନୁହେଁ) ଓ ଲେଖକଙ୍କ ତରଫରୁ ଆଉ ଜଣେ ବ୍ୟକ୍ତି ପ୍ରଧାନମନ୍ତ୍ରୀଙ୍କର କରକମଳରୁ ପୁରସ୍କାର ଗ୍ରହଣ କରିବା ବେଳର ଏକ ଫଟୋଚିତ୍ର । ଏପରି କରିବା ଫଳରେ ବହିଟିର ସରକାରୀ କଳ ଜରିଆରେ ଭଲ ବିକ୍ରୟ ହେବ ସତ । କିନ୍ତୁ ସରକାରୀ କୃପାଦୃଷ୍ଟି ନିକଟରେ କଳାକାରର କି ନ୍ୟୂନତା ପ୍ରଦର୍ଶନ !

ବର୍ତ୍ତମାନ ସାହିତ୍ୟ ଜଗତରେ ଏହା ଏକ ବ୍ୟତିକ୍ରମ ନୁହେଁ, ନିୟମ । ଶତକଡ଼ା ଅନେଶତ ଭାଗରେ ସାହିତ୍ୟ, ବିଜ୍ଞାନ, ଦର୍ଶନ ଓ ଇତିହାସରେ ସମ୍ମିଳନୀ ବା ବିଚାର ମଣ୍ଡଳୀରେ ମନ୍ତ୍ରୀ ବା ଅନ୍ୟ କୌଣସି ରାଜନୈତିକ କ୍ଷମତାସମ୍ପନ୍ନ ବ୍ୟକ୍ତିକୁ ପଥ ପ୍ରଦର୍ଶକ

ରୂପେ ନିମନ୍ତ୍ରିତ କରାଯାଏ । ଏଭଳି ଆନୁଗତ୍ୟ ଓ ଆତ୍ମସମ୍ମାନହୀନତା କୌଣସି ସଭ୍ୟ ଗଣତାନ୍ତ୍ରିକ ଦେଶରେ ମିଳିବା ତ ଦୁଷ୍କର, ଅଧିନାୟକବାଦୀ କମ୍ୟୁନିଷ୍ଟ୍ ଦେଶମାନଙ୍କରେ ମଧ୍ୟ ଗୋଟିଏ ମର୍ଯ୍ୟାଦା ଭିତରେ ଏହା ହୁଏ । କାରଣ ସେ ଦେଶମାନଙ୍କରେ ବୁଦ୍ଧିଜୀବୀ ଆଇନତଃ ସରକାରୀ ଆଦର୍ଶକୁ ହିଁ ନିଜର ବୋଲି ଗ୍ରହଣ କରେ । ଆମ ଦେଶର ବୁଦ୍ଧିଜୀବୀ ପାଶ୍ଚାତ୍ୟ ସଭ୍ୟତାର ସାମାଜିକ ଲକ୍ଷ୍ୟକୁ ଗ୍ରହଣ କରିଛି, କିନ୍ତୁ ଦୈନନ୍ଦିନ ଗୁଣାବଳୀକୁ ଗ୍ରହଣ କରିନାହିଁ । ଏହାର ଓଲଟା ହେବା ଉଚିତ । ରାମଚନ୍ଦ୍ର ରାବଣଠାରୁ ତାହାର ସାମାଜିକ ଲକ୍ଷ୍ୟ ଶିଖିବାକୁ ଚାହିଁ ନଥିଲେ, ତାହାର ବ୍ୟକ୍ତିଗତ ଓ ଦୈନନ୍ଦିନ ଜୀବନର ନୀତି ଜାଣିବାକୁ ଲକ୍ଷ୍ମଣଙ୍କୁ ପଠାଇଥିଲେ ।

ଏକ ପ୍ରତିଷ୍ଠିତ ସଭ୍ୟତାର ସାମାଜିକ ଲକ୍ଷ୍ୟକୁ ଗ୍ରହଣ କରିନେବା ଏକ ନୂଆ ରାଷ୍ଟ୍ରର କର୍ତ୍ତବ୍ୟ ନୁହେଁ । ଆମର ବୁଦ୍ଧିଜୀବୀ ମୋଟର୍, ଶୀତତାପ ନିୟନ୍ତ୍ରଣ ଯନ୍ତ୍ର ଓ ଟେଲିଭିଜନ୍‌ର ସଭ୍ୟତାଠାରୁ ତାହାର ସାମାଜିକ ଲକ୍ଷ୍ୟ ଗ୍ରହଣ କରିବାକୁ ଅତି ତତ୍ପର, କିନ୍ତୁ ସମୟାନୁବର୍ତ୍ତିତାର ହିସାବରେ ସାଧୁତା, ବ୍ୟକ୍ତି ଓ ପେଶାର ସ୍ୱାତନ୍ତ୍ର୍ୟ ପ୍ରଭୃତି ଦୈନନ୍ଦିନ ଗୁଣ ଶିଖିବା ପାଇଁ ପଶ୍ଚାତ୍‌ପଦ । ମନେହୁଏ, ଏଗୁଡ଼ିକ ଶିଖିଲେ ଉପରୋକ୍ତ ସାମାଜିକ ଲକ୍ଷ୍ୟକୁ ଛାଡ଼ି ନୂଆ ଲକ୍ଷ୍ୟ ଖୋଜିବାକୁ ପଡ଼ିବ ।

ଯେଉଁଠାରେ ବୁଦ୍ଧିଜୀବୀର ଆତ୍ମଗୌରବ ନାହିଁ, ସେଠାରେ ସେ ଛୋଟଲୋକ । ତେଣୁ ଜନମାନସ ଉପରେ ତାହାର ପ୍ରଭାବ ନ ପଡ଼ିବା ସ୍ୱାଭାବିକ । ସମାଜକୁ ସେ ଚଳାଇ ପାରୁନାହିଁ, କାରଣ ସେ ସ୍ୱଚାଳିତ ନୁହେଁ । ଦେଶ ଭିତରେ କେହି ତାକୁ ଚିହ୍ନି ପାରୁନାହାନ୍ତି ବୋଲି ସେ ବିଦେଶୀ ପ୍ରଶଂସକ ଚାହେଁ । ଏପରି କାହିଁକି ଘଟୁଛି ? ବୁଦ୍ଧିଜୀବୀ କହିପାରେ ଯେ ଦେଶୀଲୋକ ତାକୁ ବୁଝିବା ପାଇଁ ଅନୁପଯୁକ୍ତ । ତେଣୁ ସେ ସମ୍ମାନ ପାଇ ପାରୁନାହିଁ ଓ ବାଧହୋଇ କ୍ଷମତାଶାଳୀ ଦଳ, ଗୋଷ୍ଠୀ ବା ଅନୁଷ୍ଠାନ ପାଖରେ ଆଶ୍ରୟ ନେଉଛି । ସମ୍ମାନ ମିଳୁନାହିଁ ବୋଲି ସ୍ୱଧର୍ମ ବି ତ୍ୟାଗ କରୁଛି ?

ସାଧାରଣ ଲୋକ ନ ଚିହ୍ନି ପାରିବାର ଦୁଇଟି କାରଣ ଯାହା ଯେ କୌଣସି ଦେଶ ଓ ସମୟରେ ଊଣା ଅଧିକ ପରିମାଣର ଥାଏ; ଲୋକେ ଗ୍ରହଣ କରିବାକୁ ଅନୁପଯୁକ୍ତ ହୋଇପାରନ୍ତି କିମ୍ବା ବୁଦ୍ଧିଜୀବୀ ସାଧାରଣ ଲୋକର ମର୍ମକୁ ଛୁଇଁଲା ଭଳି କିଛି କରୁନାହିଁ । ଲୋକଙ୍କୁ ଯୋଗ୍ୟ କରିବା ମଧ୍ୟ ବୁଦ୍ଧିଜୀବୀର ଗୋଟିଏ କର୍ତ୍ତବ୍ୟ ।

ସାଧାରଣ ଲୋକ ଯାହା ହେଲେ ବି ଅତି କମ୍‌ରେ ମଣିଷ । ତାକୁ ଗଭୀର ଭାବରେ ଛୁଇଁଲା ପରି କଳା, ସାହିତ୍ୟ, ବିଜ୍ଞାନ, ଅର୍ଥନୀତି ଓ ରାଜନୀତି ଦ୍ୱାରା ସେ ଅବଶ୍ୟ ପ୍ରଭାବିତ ହେବ । ପ୍ରତ୍ୟେକ ଲୋକ ଯେ ସବୁ ରକମର ଶ୍ରେଷ୍ଠ କଳା ଓ ଥିଓରୀକୁ ବୁଝିବ ତାହା ନୁହେଁ । କିନ୍ତୁ ଜୀବନ ସଙ୍ଗରେ ଗଭୀର ଓ ନିବିଡ଼ ଅନୁଭୂତିର ସମ୍ପର୍କ ରଖି ଯେଉଁ ମନନ, କଳ୍ପନା ବା କାର୍ଯ୍ୟକ୍ରମ ହେବ ତାହାର ବୋଧଗମ୍ୟତା ଅବଶ୍ୟ କିଛି ସମୟ ପରେ ସାଧାରଣ ମନକୁ ବିଭିନ୍ନ ବାଟରେ ଭେଦିଯାଏ । ଏପରି ଅଧିକାଂଶ କାର୍ଯ୍ୟରେ ଏଭଳି ଏକ ମାନସିକ ଆକର୍ଷଣ ଥାଏ ଯେ ସାଧାରଣ ବୁଦ୍ଧି ତାକୁ ବ୍ୟାଖ୍ୟା ନ କରିପାରି ସୁଦ୍ଧା ତା ଦ୍ୱାରା ପ୍ରଭାବିତ ହୋଇପଡ଼େ । ଭାରତୀୟ ବୁଦ୍ଧିଜୀବୀର କାର୍ଯ୍ୟ,

ସୃଷ୍ଟି ବା ପରିଶ୍ରମ ଯଦି ସାଧାରଣ ଲୋକଙ୍କ ଦ୍ୱାରା ଆଦୃତ ନୁହେଁ, ତାହାର ଏକ ମୁଖ୍ୟ କାରଣ ସେ ମଣିଷ ଜୀବନ ସାଙ୍ଗରେ ସ୍ୱାଭାବିକ ଓ ଗଭୀର ସମ୍ପର୍କ ରଖିପାରି ନାହିଁ।

ଅର୍ଥନୀତି, ସାମାଜନୀତି, ଇତିହାସ, ବିଜ୍ଞାନ, ଦର୍ଶନ, ସାହିତ୍ୟ ଓ କଳା – ଯେ କୌଣସି କ୍ଷେତ୍ରରେ ଭାରତୀୟ ବୁଦ୍ଧିଜୀବୀ ଚର୍ବିତଚର୍ବଣ ଛଡ଼ା ଆଉ କିଛି କରୁନାହିଁ। ଆଉ ଗୋଟିଏ ହାସ୍ୟାସ୍ପଦ କଥା ଯେ ଭାରତୀୟ ବୁଦ୍ଧିଜୀବୀ ଏସବୁ କାର୍ଯ୍ୟ ଏକ ବିଦେଶୀ ଭାଷାରେ କରିବାକୁ ଚାହେଁ ଯାହାକୁ ଏ ଦେଶରେ ଶତକଡ଼ା ଏକଭାଗ ଲୋକ ବି ବୁଝନ୍ତି ନାହିଁ। ଯେକୌଣସି ଦେଶ ଓ ସମୟରେ, ଯେତିକି ଲୋକଙ୍କ ପାଖରେ ବୁଦ୍ଧିଜୀବୀର କାର୍ଯ୍ୟ ପହଞ୍ଚିପାରେ ତାହାର ଏକ ଅତି କ୍ଷୁଦ୍ରଅଂଶ ତାକୁ ଗ୍ରହଣ କରି ପ୍ରସାର କରିବାରେ ସାହାଯ୍ୟ କରେ। କିନ୍ତୁ ଏଇଠି ତ ମୂଳରୁ ଏକ ନିହାତି ନଗଣ୍ୟ ସଂଖ୍ୟା ପାଖରେ ପହଞ୍ଚିବା ଭଳି ଉପାୟ ଆମ ବୁଦ୍ଧିଜୀବୀମାନେ ବାଛିଛନ୍ତି। ଅତି ଉନ୍ନତ ଓ ଶିକ୍ଷିତ ଦେଶମାନଙ୍କରେ ମଧ୍ୟ ସବୁଲୋକ ବୁଝୁଥିବା ଓ କହୁଥିବା ଭାଷାରେ ବୁଦ୍ଧିଜୀବୀ ଯାହା ଚିନ୍ତା କରେ ଓ କଳ୍ପନା କରେ ତାହାର ଗ୍ରହଣ ସହଜରେ ହୋଇ ନଥାଏ। ଏହି ଅବସ୍ଥାରେ ଯଦି ଭାରତୀୟ ବୁଦ୍ଧିଜୀବୀ ସବୁ କାମ ଇଂରାଜୀରେ କରିଚାଲେ ଓ ତଥାପି ଆଶା କରେ ଯେ ତାହାର ପ୍ରଭାବ ପଡୁ ଓ ଲୋକେ ତାକୁ ଗ୍ରହଣ କରି ସମ୍ମାନ ଦିଅନ୍ତୁ, ଏହା ଠାରୁ ବଳି ଅସ୍ୱାଭାବିକ କଥା କ'ଣ ହୋଇପାରେ ? ଆମର ଅର୍ଥନୀତିଜ୍ଞ, ବୈଜ୍ଞାନିକ, ଐତିହାସିକ, ସମାଜବିଜ୍ଞାନୀ, ସମାଲୋଚକ – ଏମାନଙ୍କୁ କିଏ, କାହିଁକି ଓ କିପରି ଏ ଦେଶରେ ଗ୍ରହଣ କରିବ ?

ଭାରତ ଇତିହାସର ଏହା ଏକ ନିରବଚ୍ଛିନ ଦୁର୍ଭାଗ୍ୟ। ବୁଦ୍ଧ, କବୀରଙ୍କ ପରି କେତେକ ବ୍ୟତିକ୍ରମକୁ ଛାଡ଼ି ଭାରତୀୟ ବୁଦ୍ଧିଜୀବୀ କେବଳ ସମାଜର ଗୋଟିଏ କ୍ଷୁଦ୍ର ଅଂଶକୁ ହିଁ ପାଠକ, ଶ୍ରୋତା ଓ ସମାଲୋଚକ ହିସାବରେ ରଖି ତାହାର କାର୍ଯ୍ୟ କରିଛି। ଇଂରାଜୀ ଆଜି ସଂସ୍କୃତ, ଆରବୀ ଓ ଫାର୍ଶୀର ଉତ୍ତରାଧିକାରୀ ହୋଇଛି। ଇଂରାଜୀର ଦୋଷ ସଂସ୍କୃତ ଓ ଫାର୍ଶୀଠାରୁ ବେଶୀ, କାରଣ ସାମାଜିକ ଏକତା ଆଜି ଭଳି ପୂର୍ବକାଳରେ ଏକ ଆବଶ୍ୟକୀୟ ଅଙ୍ଗ ନଥିଲା।

ଭାରତୀୟ ବୁଦ୍ଧିଜୀବୀ ଏହି ସ୍ୱାଭାବିକ ସାମାଜିକ ଏକତା ପ୍ରତି ଦୃଷ୍ଟି ନଦେଇ ହଠାତ୍ ଏକ କୃତ୍ରିମ ବିଶ୍ୱ – ଏକତା ଆଡ଼କୁ ଗତି କରିଛି। ତାହାର ଏ ବିଶ୍ୱ ଏକତା ପଛରେ ଚିନ୍ତାର ଉଦାରତା ବା ଅନୁଭୂତିର ଅନୁକମ୍ପା ନାହିଁ, ଅଛି ଏକ ଆତ୍ମନ୍ୟୁନତା, ପଛରେ ପଡ଼ିଯିବାର ଭୟ ଓ ଶୀଘ୍ର ବିଶ୍ୱବିଶ୍ରୁତ ହେବାପାଇଁ ଏକ ବିକଳ ଭାବ। ଭାରତୀୟ ବୁଦ୍ଧିଜୀବୀର ଐତିହାସିକ ଦୃଷ୍ଟି ନାହିଁ। ସେ ଭାବୁଛି ଯେ ବର୍ତ୍ତମାନ ଯେଉଁ ସଭ୍ୟତା ଚାଲିଛି, ତା ଉପରକୁ ଆଉ କିଛି ଇତିହାସ ଗର୍ଭରେ ନାହିଁ – ସାରା ପୃଥିବୀ ଏଇ ସଭ୍ୟତା ଦ୍ୱାରା ଏକ ହୋଇଛି। ଏକ ପୃଥିବୀ, ପୁଣି ଏକ ସଭ୍ୟତା – ତାହା ପାଶ୍ଚାତ୍ୟ ସଭ୍ୟତା, ଏଇ ସଭ୍ୟତାର ପୁଣି ଏକ ସଂସ୍କୃତି – ତାହା ୟୁରୋପୀୟ ସଂସ୍କୃତି। କେତେକ ପୁଣି ଏହା କହିବାକୁ ପଛାନ୍ତି ନାହିଁ ଯେ ଏହାର ଅଛି ଏକ ହିଁ ଭାଷା – ତାହା ଇଂରାଜୀ ଭାଷା ! ଏପରି ସ୍ଥୁଳଦୃଷ୍ଟିର ପରିଣାମ ସ୍ପଷ୍ଟ। ପୃଥିବୀର ଯଦି ଏକ ସଭ୍ୟତା, ଏକ ସଂସ୍କୃତି (ଓ ଏକ ଭାଷା) ହୋଇଗଲାଣି, ତାହାହେଲେ ଭାରତ ପରି

ପଛୁଆ ଦେଶ ବି ଆଗକୁ ବଢ଼ି ଶେଷରେ ସେଇଠି ପହଞ୍ଚିବ, ଦେଶର ଅର୍ଥନୀତି ବଢ଼ି ବଢ଼ି ରୁଷ୍ କି ଆମେରିକା ହେବ, ଦେଶର ସାହିତ୍ୟ ବଢ଼ି ବଢ଼ି ଇଂରାଜୀ ବା ଫରାସୀ ସାହିତ୍ୟ ହେବ । ଅତଏବ ଉତ୍କୃଷ୍ଟ ସାହିତ୍ୟ, କଳା ବା ଦର୍ଶନର ଉପଲବ୍ଧି ନିମନ୍ତେ ସେମାନଙ୍କ ରୁଚି, ପ୍ରଣାଳୀ, ଆଦର୍ଶ ଓ ମାପଦଣ୍ଡ ହିଁ ଉପଯୁକ୍ତ କଷଟି । ଦେଶୀ ଲୋକ ଏତେ ପଛରେ ଅଛନ୍ତି ଯେ, ତାଙ୍କର ଆବଶ୍ୟକତା ଓ ବୋଧଶକ୍ତିକୁ ଜଗି ବସିଲେ ଆମେ ପୃଥିବୀର ଉତ୍ତମ ସାହିତ୍ୟିକ ବା ବୁଦ୍ଧିଜୀବୀ ଭିତରେ ଗଣ୍ୟ ହୋଇପାରିବୁ ନାହିଁ, ତେଣୁ ଏ ବିକଳ ଭାବ ।

ୟୁରୋପ୍ ଓ ଆମେରିକାରେ ଯେଉଁ ସମସ୍ୟାଗୁଡ଼ିକର ଓ ଯେପରି ଭାବରେ ଆଲୋଚନା ହେଉଛି ସେଗୁଡ଼ିକର ସେପରି ଢଙ୍ଗରେ ଏଠାରେ ମଧ୍ୟ ଆଲୋଚନା କରିବା ଉଚିତ । ସେଠି ଅସ୍ତିତ୍ୱବାଦ, ସରରିଅଲିଜିମ୍ ଓ କ୍ୟୁବିଜିମ୍ ଚାଲିଲାଣି ତ ଏଠି ମଧ୍ୟ ତାହା ନ ହେଲେ ଆମେ ବିଶ୍ୱ ସଂସ୍କୃତିରେ ଭାଗ ନେଇପାରିବା ନାହିଁ । ତାଙ୍କର ସମାଜ ଓ ସାହିତ୍ୟରେ 'ରାଗୀ ଯୁବକ' (ଆଙ୍ଗ୍ରି ୟଙ୍ଗ୍ ମ୍ୟାନ୍) ଓ 'ବିଟ୍ ପୁରୁଷ' ଙ୍କର ସମସ୍ୟା ଦେଖାଦେଲାଣି ତ ଆମ ସମାଜରେ ବି ଏଗୁଡ଼ିକର ଆବିର୍ଭାବ ହେବା ଦରକାର । ତାଙ୍କ କବିତାରେ ଯୁଦ୍ଧବିଧ୍ୱସ୍ତ ସମାଜ ଓ ବିଘଟିତ ବ୍ୟକ୍ତିତ୍ୱର ଅସ୍ଫୁଟ ପୀଡ଼ା କୁହୁରି ଉଠୁଛି, ତେଣୁ ତତ୍ସମ୍ବନ୍ଧରେ କଳ୍ପନା ଓ ଇମେଜ୍ ଆମ କବିତାରେ ନରହିଲେ ଆମର କବିତା ଯୁଗଧର୍ମୀ ହୋଇପାରିବ ନାହିଁ । ତେଣୁ ଆମେ ବି ସେଇ ଢଙ୍ଗରେ, ସେସବୁ ପ୍ରସଙ୍ଗରେ ଓ ସେଭଳି ଇମେଜ୍ ଓ କଳ୍ପନା ନେଇ କବିତା ଲେଖି ବିଶ୍ୱ ସାହିତ୍ୟରେ ଆଦର ପାଇବା ।

ଏହା ପଛକୁ ଆଉ ଏକ କଥା ଆସିଯାଉଛି । ଉତ୍କର୍ଷର ମାନଦଣ୍ଡ ଯଦି ସେଠି ରହିଲା, ତା'ହେଲେ ଯାହାକିଛି ସେସବୁ ଦେଶର ସମାଲୋଚକଙ୍କ ଦ୍ୱାରା ଆଦୃତ ହୋଇପାରିନାହିଁ, ନିଜ ଦେଶରେ ତାହାର ଯେତେ ସମାଦର ହେଲେ ସୁଦ୍ଧା ଲେଖକ ଓ ଚିନ୍ତକର ସନ୍ତୋଷ ହେବନାହିଁ । ପୁନଶ୍ଚ, ଓଲଟା ଭାବରେ, ସେମାନଙ୍କ ଦ୍ୱାରା ଆଦୃତ ହେବାକୁ ଚାହିଁଲେ ସେମାନେ ବୁଝିଲାଭଳି ଶବ୍ଦ ଯୋଜନା, ପ୍ରାସଙ୍ଗିକତା, ବିଷୟବସ୍ତୁ ଓ ସନ୍ଦର୍ଭର ଆଶ୍ରୟ ନେବାକୁ ପଡ଼ିବ । ଏହା ଏକ ଦୂଷିତ ଆବର୍ତ୍ତ । ଭାରତୀୟ ସାହିତ୍ୟିକ ଓ ଚିନ୍ତକ ପାଶ୍ଚାତ୍ୟ ପାଠକ ଓ ସମାଲୋଚକଙ୍କ ପାଖରେ ପହଞ୍ଚିବା ପାଇଁ ଏତେ ବିକଳ ଯେ ନିଜ ଦେଶର ପାଠକ ଓ ସମାଲୋଚକ ତାହାର ଗୌଣ ଉଦ୍ଦେଶ୍ୟ, ଇଂରାଜୀରେ ଲେଖିବା ତାହାର ପ୍ରଥମ ଲକ୍ଷ୍ୟ । ଦେଶୀ ଭାଷାରେ ଲେଖିଲେ ମଧ୍ୟ ଆରମ୍ଭରୁ ତାହାର ଚିନ୍ତା, ଯେ ପାଶ୍ଚାତ୍ୟ ଭାଷାରେ ଅନୁବାଦ ହେବ କି ନାହିଁ? ହେଲେ ବି, ଇଂରାଜୀ ବା ରୁଷୀୟ ବହି ଭଳିଆ ଲାଗିବ କି ନାହିଁ? ବୋଦ୍‌ଲେୟାର୍, କାମ୍ୟୁ ଓ ରସେଲ୍ ସାଙ୍ଗରେ ଏହାର ତୁଳନା ହେବ କି ନାହିଁ? ବିଦେଶୀ ଲୋକର କି ଗରଜ ପଡ଼ିଛି ଭାରତୀୟ ବୁଦ୍ଧିଜୀବୀଙ୍କ ବିଷୟରେ ଏତେ ମୁଣ୍ଡ ଖେଳାଇବାକୁ? ସେ ଯଦି ଏଲିୟଟ୍, ବୋଦ୍‌ଲେୟାର୍, କ୍ୟାମୁ ବା ରସେଲ୍‌ଙ୍କର ଚିନ୍ତା ଓ କଳା ଜାଣିବାକୁ ଚାହେଁ, ଭାରତୀୟ ବୁଦ୍ଧିଜୀବୀ ପରି ସେକେଣ୍ଡହ୍ୟାଣ୍ଡ୍ ମୁଣ୍ଡରୁ ସେ କାହିଁକି ଏସବୁ ଜାଣିବାକୁ ଚେଷ୍ଟା କରିବ? ଭାରତୀୟ ପୁସ୍ତକ ସେ ପଢ଼ିପାରେ କେବଳ ଭାରତୀୟ ମୌଳିକତା, ଭାରତୀୟ ପ୍ରସଙ୍ଗ ଓ ବିଚିତ୍ରତାର ସନ୍ଧାନ ପାଇବାକୁ ।

ଗୋଟିଏ ଦେଶର ଲୋକ ଅନ୍ୟ ଦେଶର କିଭଳି ସାହିତ୍ୟ ଓ ଚିନ୍ତା ପ୍ରତି କୌତୁହଳୀ ହୁଅନ୍ତି ? ଗୋଟିଏ ସଭ୍ୟତା ଭିତରେ ଥାଇ ସୁଦ୍ଧା ଇଂଲଣ୍ଡ୍‌ର ପାଠକ ଓ ସମାଲୋଚକ ଏକ ଭାଷାଭାଷୀ ଆମେରିକା ବା ଅତି ପଡ଼ୋଶୀ ଫ୍ରାନ୍ସର ସାହିତ୍ୟ ବା ବୌଦ୍ଧିକ କ୍ଷେତ୍ରରୁ କେବଳ ସେଇମାନଙ୍କର କଥା ବୁଝିବାକୁ ଚେଷ୍ଟା କରନ୍ତି ଯେଉଁମାନଙ୍କୁ ତାଙ୍କର ସ୍ୱଦେଶୀୟ ପାଠକ ଓ ସମାଲୋଚକ ପ୍ରତିଷ୍ଠା ଦିଅନ୍ତି । ଭାରତୀୟ ବୁଦ୍ଧିଜୀବୀ ଯେପରି ଦ୍ୱିତୀୟ, ତୃତୀୟ ଶ୍ରେଣୀୟ ଇଂରାଜୀ ଲେଖକଙ୍କ ପଛରେ ସମୟ ବିତାଇ ସେମାନଙ୍କୁ ବିଶ୍ୱ ବୁଦ୍ଧିଜୀବୀ ମନେ କରି ଶକ୍ତି ନଷ୍ଟ କରେ; ଇଂଲଣ୍ଡ୍ ବା ଫ୍ରାନ୍ସର ବୁଦ୍ଧିଜୀବୀ ତାହା ନ କରି ଅନ୍ୟ ଦେଶର କେବଳ ପ୍ରମାଣିତ ଓ ପ୍ରତିଷ୍ଠିତ ବ୍ୟକ୍ତି ବା କୃତି ବିଷୟରେ ଚର୍ଚ୍ଚା କରେ ।

ଏହା ପଛରେ ଇତିହାସ ଓ ମାନବ ସମାଜ ବିଷୟକ ଏକ ଗଭୀର ଓ ମହତ୍ତ୍ୱପୂର୍ଣ୍ଣ ସତ୍ୟ ଅଛି, ଯେଉଁଥିରୁ ଭାରତୀୟ ବୁଦ୍ଧିଜୀବୀଙ୍କୁ ଅପାର ଆଶା ଓ ପ୍ରେରଣା ମିଳିବା କଥା । ତାହା ଏହି ଯେ ବିଶ୍ୱ ଏକତା ପରି ଅବଧାରଣା ବାସ୍ତବ ଅନୁଭୂତିରୁ ଆସିନାହିଁ । ଏ ପର୍ଯ୍ୟନ୍ତ କୌଣସି ବିଶ୍ୱ ସଭ୍ୟତା, ବିଶ୍ୱ ସଂସ୍କୃତି ବା ବିଶ୍ୱ ଭାଷାର ଜନ୍ମ ହୋଇନାହିଁ । ଅନେକ ଭୂଖଣ୍ଡରେ ଏ ପର୍ଯ୍ୟନ୍ତ ସାମାଜିକ ଏକତା ମଧ୍ୟ ଆସିପାରି ନାହିଁ । ଭାଷା, ସାହିତ୍ୟ ବା ସଂସ୍କୃତିର ସୃଷ୍ଟି ହୁଏ ମଣିଷ ଓ ସମାଜର ଦୈନନ୍ଦିନ ଅଭାବ, ଇଚ୍ଛା, ସମସ୍ୟା ଓ ଅନୁଭୂତିକୁ କେନ୍ଦ୍ର କରି । ବିଶ୍ୱସାରା ଏଗୁଡ଼ିକର ସାମ୍ୟ ନ ଆସିବା ପର୍ଯ୍ୟନ୍ତ ଏକ ସଂସ୍କୃତି, ଏକ ସାହିତ୍ୟ, ଏକ ଭାଷା ହୋଇପାରିବ ନାହିଁ । ଏହି ଆଦର୍ଶରୁ ଆଜି ଆମେ ବହୁତ ଦୂରରେ – ଯେଉଁଠି ଚମଡ଼ାର ରଙ୍ଗ ମଣିଷ ମଣିଷ ଭିତରେ ପାଚେରୀ ହୋଇ ଠିଆ ହୋଇଛି ।

ଅତୀତରେ ଭାରତୀୟ, ଇଜିପ୍‌ସୀୟ, ଗ୍ରୀକ୍ ଓ ରୋମାନ୍ ସଭ୍ୟତା ଯେପରି ସ୍ୱଳ୍ପକାଳରେ ପୃଥିବୀର ସର୍ବୋଚ୍ଚ ସଭ୍ୟତା ରୂପେ ଅନ୍ୟମାନଙ୍କର ଅନୁକରଣୀୟ ହୋଇଥିଲେ, ବର୍ତ୍ତମାନ ଯୁଗରେ ୟୁରୋପୀୟ ସଭ୍ୟତା ସେପରି ହୋଇଚି ଓ କିଛିଦିନ ପରେ ତାହାର ଅବସାନ ଘଟି ନୂଆ ଅଞ୍ଚଳରୁ ନୂଆ ସଭ୍ୟତାର ଉଦ୍ଭବ ହେବ । ଏହିପରି ଏକ ପରେ ଏକ ନୂଆ ଅଭିଜ୍ଞତା ଓ ଦୃଷ୍ଟି ନେଇ ଯେତେ ଆଞ୍ଚଳିକ ସଭ୍ୟତା ଗଢ଼ି ଉଠିବ ତାହା ଭିତରୁ ସବୁ ମନୁଷ୍ୟଙ୍କୁ ସାମାଜିକ, ଆର୍ଥିକ ଓ ଆଧ୍ୟାତ୍ମିକ କ୍ଷେତ୍ରରେ ଏକ କଲାଭଳି କୌଣସି ଏକ ସଂସ୍କୃତି ଜରିଆରେ ଏକ ବିଶ୍ୱ ସଂସ୍କୃତିର ଗଠନ ହୋଇପାରେ । ଯେ ପର୍ଯ୍ୟନ୍ତ ତାହା ହୋଇନାହିଁ, ଅବିକଶିତ ସମାଜ, ଅବିକଶିତ ସଂସ୍କୃତି ଓ ଅବିକଶିତ ଭାଷାର ଏକ ଐତିହାସିକ ବିଶେଷତ୍ୱ ରହିଛି । ବିକଶିତ ଜୀବନପ୍ରଣାଳୀ, ବିକଶିତ ଭାଷା, ବିକଶିତ ସଂସ୍କୃତି ଏକ ନିର୍ଦ୍ଦିଷ୍ଟ ସଭ୍ୟତା-ଧାରାର ସାର୍ଥକ ଉପଲବ୍ଧି ହୋଇପାରେ କିନ୍ତୁ ଏମାନଙ୍କ ଜରିଆରେ ପୁଣି ଏକ ନୂଆ ଐତିହାସିକ ପ୍ରୟୋଗ ସମ୍ଭବପର ନୁହେଁ ।

ସଭ୍ୟତାର ନୂତନ ସ୍ୱର୍ଣ୍ଣ ଫସଲ ନିମନ୍ତେ ନୂତନ କୁମାରୀ ଭୂଇଁର ନୂଆ ଅଞ୍ଚଳ, ନୂଆ ମଣିଷ ଓ ନୂଆ ଭାଷାର ଆବଶ୍ୟକତା ହୁଏ । ଯେଉଁମାନେ କୁହନ୍ତି ଆମ ଦେଶୀଭାଷା ପ୍ରଚଳିତ ସଭ୍ୟତା ଓ ସଂସ୍କୃତିର ଉପଯୁକ୍ତ ମାଧ୍ୟମ ହେବାକୁ ଅକ୍ଷମ,

ସେମାନେ ଅନ୍ତତଃ ଆଂଶିକ ସତକଥା କହୁଛନ୍ତି । କିନ୍ତୁ ସେମାନେ ଭୁଲି ଯାଉଛନ୍ତି ଯେ ଆମ ଭାଷା ଜରିଆରେ ଓ ଆମର ମଣିଷ, ହାୱା ଓ ଅନୁଭୂତି ଜରିଆରେ ନୂଆ ସଭ୍ୟତାର ଦିଗ ଫିଟିପାରେ, ଯାହା ଇଂରାଜୀ ବା ଅନ୍ୟାନ୍ୟ ବିକଶିତ ଭାଷା ଜରିଆରେ ସମ୍ଭବ ନୁହେଁ । ପାଶ୍ଚାତ୍ୟ ସଭ୍ୟତାର ଅବସାନ ଆରମ୍ଭ ହୋଇଗଲାଣି ବୋଲି ପଶ୍ଚିମୀ କହିଲେଣି । କିନ୍ତୁ ଭାରତର ପ୍ରଧାନମନ୍ତ୍ରୀଙ୍କଠାରୁ ଆରମ୍ଭ କରି ଭାରତର ସାହିତ୍ୟିକ, କଳାକାର ଓ ଗାଁ ଟାଉଟର କହୁଛନ୍ତି ଯେ ପାଶ୍ଚାତ୍ୟ ସଭ୍ୟତା ଆମକୁ ହାସଲ କରିବାକୁ ହେବ – ତେଣୁ ଆମେ ଇଂରାଜୀ କିପରି ଛାଡ଼ିବା ?

ଏହା ସାଙ୍ଗକୁ ଆଉ ଏକ ସତ୍ୟ ମନେ ରଖିବାକୁ ହେବ । ମହାନ ଦର୍ଶନ, ସାହିତ୍ୟ କିମ୍ବା କଳା କେବଳ ନିବିଡ଼ ଅନୁଭୂତିରୁ ଜନ୍ମ । ଯେତେଦିନ ପର୍ଯ୍ୟନ୍ତ ଆତ୍ମା, ମସ୍ତିଷ୍କ ଓ ହୃଦୟର ଲୀଳାସ୍ଥଳ ରକ୍ତ ମାଂସ ଓ ଅସ୍ଥିର କଳେବର ହୋଇଥିବ, ସେ ପର୍ଯ୍ୟନ୍ତ ମଣିଷର ନିବିଡ଼ ଅନୁଭୂତି କେବଳ ନିଜର ସୀମିତ ପରିବେଶରେ ଥିବା ଛୋଟ ଛୋଟ ମଣିଷ, ଜନ୍ତୁ, କୀଟ, ଗଛଲତା, ଅଭାବ, ଇଚ୍ଛା, ପାପ-ପୁଣ୍ୟ, ପାଣି, ପବନରୁ ହିଁ ଆସିବ । କୌଣସି ଆରୋପିତ ଅନୁଭୂତି ଦ୍ୱାରା ମଣିଷର ମନ ବହୁତ ଉଚ୍ଚକୁ ବା ଗଭୀରତାକୁ ସ୍ପର୍ଶ କରିପାରେ ନାହିଁ । ବଡ଼ ବଡ଼ କଳା ଓ ସାହିତ୍ୟର ସୃଷ୍ଟି କେବଳ ଗଭୀର ସ୍ଥାନୀୟ ଅନୁଭୂତିରୁ ହିଁ ହୁଏ । ଦାର୍ଶନିକ, ବୈଜ୍ଞାନିକ, କବି ଓ କଳାକାର ଉପରେ ପାରିପାର୍ଶ୍ୱିକ ପାଣିପବନ, ଗଛଲତା, ପଶୁ, ମଣିଷର ପ୍ରଭାବ ଦୀର୍ଘସ୍ଥାୟୀ ହୁଏ ଓ ସେହି ଅନୁଭୂତିର ଗଭୀରତା ବଳରେ ସେମାନେ ବିଶ୍ୱ-କଳା ଓ ବିଶ୍ୱ-ସାହିତ୍ୟ ସୃଷ୍ଟି କରିପାରନ୍ତି । ଅନ୍ୟପକ୍ଷରେ, କୃତ୍ରିମ ଭାବରେ ଆରୋପିତ ବିଶ୍ୱ-ଅନୁଭୂତିର ଫଳ ଅତି ସ୍ଥୂଳ ଓ ଖର୍ବ ହୋଇଥାଏ । ସେଥିପାଇଁ ଲାକ୍‌ସନେସ୍‌ଙ୍କର ଆଇସ୍‌ଲାଣ୍ଡୀୟ ଅନୁନ୍ନତ ଲୋକଙ୍କ ବିଷୟରେ ଗଳ୍ପ, ପର୍ଲ୍ ବକ୍‌ଙ୍କର 'ସୁନ୍ଦର ପୃଥିବୀ' ଓ ଗୋପୀନାଥ ମହାନ୍ତିଙ୍କ 'ପରଜା'ର ବିଷୟବସ୍ତୁ ଅତି ସ୍ଥାନୀୟ ଓ ସଙ୍କୀର୍ଣ୍ଣ ହୋଇ ସୁଦ୍ଧା ବିଶ୍ୱ ଅନୁଭୂତିର ବାହକ ହୋଇପାରିଛି । କେବଳ ସ୍ଥାନୀୟ ଅନୁଭୂତି ବିଶ୍ୱ ଅନୁଭୂତିର ବାହକ ହୋଇପାରେ । ଏହା ସହିତ ସ୍ଥାନୀୟ ଭାଷାର ଏକ ବିଚିତ୍ର ଓ ରହସ୍ୟମୟ ସମ୍ପର୍କ ରହିଛି ।

ଉପରୋକ୍ତ କେତେକ ସମାଲୋଚନାରୁ କେହି ଭୁଲ୍ ନବୁଝିବା ଉଚିତ ଯେ ଅନୁଭୂତି ବା ବୁଦ୍ଧିକୁ ନିଜର ରାଷ୍ଟ୍ର ବା ସମାଜ ଭିତରେ ଯୁଗର ସାଧାରଣ ଅନୁଭୂତିଠାରୁ ଅଲଗା ଓ ସଙ୍କୁଚିତ କରି ରଖିବା ଆମର ଧ୍ୟେୟ । ସମାଜ ଓ ପରିବେଶ ଭିନ୍ନ ହେଲେ ସୁଦ୍ଧା କଳାର ଏକ ସ୍ନାୟୁ ପରିଧି ରହିଛି ଓ ସମୟର ଏକତ୍ୱ ଏଗୁଡ଼ିକୁ ଏକାଠି ବାନ୍ଧି ରଖେ । ବିଶେଷକରି ଉଡ଼ାଜାହାଜ ଓ ରକେଟ୍ ଯୁଗରେ ବିଭିନ୍ନ ସମାଜ ସମୟର ଏକତ୍ୱ ଦ୍ୱାରା ବାନ୍ଧି ହେବା ସ୍ୱାଭାବିକ । ବୁଦ୍ଧିଜୀବୀଙ୍କର ଚେତନାଶୀଳତା ଓ ଯୁଗ ଓ ସମାଜ ଉଭୟର ପରିଧି ଦୁଇ ଭିନ୍ନ କେନ୍ଦ୍ରରୁ ସ୍ୱତଃ ବୃତ୍ତ କାଟନ୍ତି ଓ ଉଭୟ ପରିଧିର ସାଧାରଣ ବୃତ୍ତାଂଶ ଭିନ୍ନ ଭିନ୍ନ ସମାଜର ବୃତ୍ତାଂଶ ପାଇଁ ପୃଥକ୍ ହେବ । ଏହି ସାଧାରଣ ହିଁ ବୁଦ୍ଧିଜୀବୀର ଉପଯୁକ୍ତ ଅନୁଭୂତି-ଭୂମି । ଏହିଠାରେ ଯୁଗ-ଅନୁଭୂତି ସାମାଜିକ ଅନୁଭୂତି ସାଙ୍ଗରେ ସଂଶ୍ଳିଷ୍ଟ, ଏହିଠାରେ ଯୁଗ-ଅନୁଭୂତି ପରିବେଶର ଅନୁଭୂତି ଜରିଆରେ ପ୍ରାଣବନ୍ତ ହୁଏ

ଓ ସାମାଜିକ ଅନୁଭୂତି ଯୁଗ-ଅନୁଭୂତି ଦ୍ୱାରା ମାର୍ଜିତ ହୁଏ । ଉଦାହରଣସ୍ୱରୂପ, ଭାରତୀୟ ବୁଦ୍ଧିଜୀବୀଙ୍କୁ କୁହାଯାଉ ନାହିଁ ଯେ ସେ କେବଳ ଭାରତୀୟ ସମାଜ ଓ ପରିବେଶର ବିଶେଷ ଅନୁଭୂତିଗୁଡ଼ିକୁ ନେଉ ଓ ରକେଟ୍, ଆଣବିକ ବୋମା ବା ଶୀତଳଯୁଦ୍ଧ ପରି ଏ ଯୁଗର ସାଧାରଣ ଅନୁଭୂତିଗୁଡ଼ିକୁ ଛାଡ଼ି ଦେଉ । ଏହା କଲେ କାଳକୁ ଛାଡ଼ି ସ୍ଥାନ ସଙ୍କୁଚିତ ହୋଇଯିବ । ତାହା ଭିତରେ ଯୁଗ ଚେତନା ରହିବ ନାହିଁ । ସାମାଜିକ ଚେତନା ଓ ଯୁଗ ଚେତନାର ସଂଶ୍ଲେଷଣ ପ୍ରକୃତ କଳାକାରର ଆଦର୍ଶ ହେବା ଉଚିତ । ସ୍ଥାନକୁ ଛାଡ଼ିଲେ ସେପରି କାଳର ଅନୁଭୂତି ଫମ୍ପା ଓ ଅବାସ୍ତବ ହୋଇଯିବ ନିଶ୍ଚିତ । ତେଣୁ ଭାରତୀୟ ବୁଦ୍ଧିଜୀବୀ ଯେତେବେଳେ ଏଠାକାର ଜାତିଭେଦ ବିଷୟରେ ନୀରବ ରହି ଶ୍ରେଣୀଭେଦ ଓ ଶ୍ରେଣୀ ସଂଘର୍ଷର କଥା କହେ, ଚୁଲିର ଧୂଆଁ ଓ ଗୃହିଣୀର ଚକ୍ଷୁଦାହକୁ ମନେ ନ ପକାଇ ରକେଟ୍ ଓ ବିଜୁଳି ଛାଞ୍ଚୁଣୀର କବିତା ଲେଖେ, ବା ଦେଶର ଦାରିଦ୍ର୍ୟ ଓ ବ୍ୟାଧିର ସମସ୍ୟା ବିଷୟରେ କେବେ ନ ଭାବି ଆଣବିକ ଯୁଦ୍ଧରୁ ପୃଥିବୀକୁ ରକ୍ଷା କରିବା ପାଇଁ ସମାଧାନ ଖୋଜିବାକୁ ସିଗାରେଟ୍ ଓ ମଦ୍ୟ ଦ୍ୱାରା ମସ୍ତିଷ୍କକୁ ଉତ୍ତେଜିତ କରେ, ତାହାର ଅନୁଭୂତିକୁ ସ୍ୱାଭାବିକ ଓ ସୁସ୍ଥ ବିଶ୍ୱଚେତନା ନ କହି ଅନୁକରଣଗ୍ରସ୍ତ ଆରୋପିତ ଅନୁଭୂତି କହିବା ହିଁ ଠିକ୍ ମନେହୁଏ ।

ଏସବୁ ଭୁଲିଯିବା ହିଁ ଭାରତୀୟ ବୁଦ୍ଧିଜୀବୀର ଆଦର୍ଶଗତ ଦୁର୍ବଳତା । ସେ ତାହାର ଐତିହାସିକ ସମସ୍ୟାକୁ ଭୁଲିଯାଇଛି । ବାହାରର ନିର୍ଦ୍ଦେଶିତ ପଥରେ ଚାଲି ସେ କେବେହେଲେ ନିଜତ୍ୱ ଉପଲବ୍ଧି କରିପାରିବ ନାହିଁ । ଦେଶରେ ତାହାର ଆଦର ହୋଇପାରିବ ନାହିଁ କିମ୍ୱା ବିଦେଶରେ ପ୍ରତିଷ୍ଠା ହୋଇପାରିବ ନାହିଁ । ସ୍ଥାନୀୟ ଅନୁଭୂତି, ସ୍ଥାନୀୟ ସମସ୍ୟା, ସ୍ଥାନୀୟ ଭାଷା ସାହାଯ୍ୟରେ ସେ ଯଦି କାମ କରିବ ତାହାହେଲେ ସ୍ୱଦେଶରେ ପ୍ରତିଷ୍ଠା ଓ ପ୍ରଭାବ ବଢ଼ିବା ନିଶ୍ଚିତ ଓ ସେଇ ପ୍ରତିଷ୍ଠା ଓ ପ୍ରଭାବ ଏକ ନୂଆ ଯୁଗର ଦ୍ୟୋତକ ହୋଇପାରେ ଓ ବିଦେଶର ଲୋକେ ବଳେ ତା ପ୍ରତି ଆକୃଷ୍ଟ ହେବେ । କିନ୍ତୁ ଏଥିପାଇଁ ଧୈର୍ଯ୍ୟ ଓ ସତ୍ ସାହସ ଦରକାର । ଏତିକି କଷ୍ଟ ତାକୁ ବରଣ କରିବାକୁ ହେବ ।

ଆଦର୍ଶଗତ ଦୁର୍ବଳତା କହିଲେ ବୁଝାଉ ନାହିଁ ଯେ କୌଣସି ଏକ ନିର୍ଦ୍ଦିଷ୍ଟ ଆଦର୍ଶବାଦକୁ ସେ ଗ୍ରହଣ କରୁ । ତାହାର ଆଦର୍ଶବାଦ କ'ଣ ହେବା ଉଚିତ, କେଉଁ ଦର୍ଶନ, କେଉଁ ରାଜନୀତି, କେଉଁ ଅର୍ଥନୀତି ଦ୍ୱାରା ସେ ଚାଳିତ ହେବ, ତାହାର ପୂର୍ବ ଉତ୍ତର ବର୍ତ୍ତମାନ ମିଳି ନପାରେ, ମିଳିବା ଆବଶ୍ୟକ ମଧ୍ୟ ନୁହେଁ । ସେ ଆରମ୍ଭ କରିବ ଦୈନନ୍ଦିନ ଜୀବନର, ନିଜ ପରିପାର୍ଶ୍ୱର ସୁଖ ଦୁଃଖ, ଅଭାବ, ଇଚ୍ଛା ଓ ସମସ୍ୟା ସମାଧାନଠାରୁ । ଯେଉଁଠି ଭୁଲ୍ ହେଉଛି, ଯେଉଁଠି ଦୁର୍ନୀତି ହେଉଛି, ଯେଉଁଠି ମଇଳା ଓ ଅନ୍ଧକାର ବ୍ୟାପିଛି ସେଇଠି ଚେତନଶୀଳ ହେଲେ ତାହାର ଅନ୍ତରର ବୀଣା ଝଙ୍କୃତ ହୋଇଉଠିବ ଓ ସେଇ ଝଙ୍କାରର ଉତ୍ତରୋତ୍ତର ବ୍ୟାପକତାରେ ସ୍ଥାନୀୟ ଅନୁଭୂତି କ୍ରମେ ବିଶ୍ୱ ଅନୁଭୂତିରେ ପରିଣତ ହେବ । ଖଣ୍ଡିତ ସମସ୍ୟାର ସମାଧାନ ପାଇଁ ଚେଷ୍ଟା କଲେ, ଖଣ୍ଡିତ ଇଚ୍ଛା ଓ ଅଭିଳାଷର ପରୀକ୍ଷା କରି ତାହାର ସନ୍ତୋଷ ଖୋଜିଲେ ତାହା ଭିତରୁ ଏକ ସମ୍ପୂର୍ଣ୍ଣ ଆଦର୍ଶ ଓ ସମ୍ପୂର୍ଣ୍ଣ ଦୃଷ୍ଟିର ଆବିର୍ଭାବ ହେବ । ଭାରତୀୟ ବୁଦ୍ଧିଜୀବୀ

ଆରୋପିତ ଅନୁଭୂତି ଓ ସମସ୍ୟାକୁ ଛାଡ଼ି ନିଜର ପ୍ରାକୃତିକ ଅନୁଭୂତି ଓ ସମସ୍ୟା ପ୍ରତି ସଜାଗ ହେଲେ ନୂତନ ଆଦର୍ଶର ଇନ୍ଦ୍ରଧନୁ ତାହାର ମନର ଆକାଶରେ ସଞ୍ଚାରିତ ହେବ ।

ଏ ସମ୍ପର୍କରେ ବଙ୍ଗଳାର ଜଣେ ଶ୍ରେଷ୍ଠ ଆଧୁନିକ କବି ଓ ସାହିତ୍ୟିକଙ୍କର ଉଦାହରଣ ଦେବା ଅପ୍ରାସଙ୍ଗିକ ହେବ ନାହିଁ । ତାଙ୍କୁ ଯେତେବେଳେ ପଚରା ଗଲା ଯେ ଭାରତୀୟ ସାହିତ୍ୟରେ କାହିଁକି ଉଚ୍ଚ ଧରଣର ସୃଷ୍ଟି ହୋଇପାରୁ ନାହିଁ, ସେ କହିଲେ ଆମ ଦେଶର ଲୋକେ କୌଣସି ବିରାଟ ଦୁଃଖ ଭିତର ଦେଇ ଗତି କରିନାହାନ୍ତି । ୟୁରୋପ୍‌ର ଯୁଦ୍ଧ, ଏକଛତ୍ରବାଦର ତୀବ୍ର ଯାତନା ଭିତରୁ ତାଙ୍କର ମହାନ ଉପନ୍ୟାସମାନ ରଚିତ ହୋଇଛି । ଏଭଳି କହୁଥିବା ଜଣେ ପ୍ରସିଦ୍ଧ ବୁଦ୍ଧିଜୀବୀଙ୍କ ଉପରେ ହଠାତ୍ ରାଗି ନଯାଇ ଭାବିବା ଉଚିତ୍ ଯେ ଏପରି ଆଶ୍ଚର୍ଯ୍ୟଜନକ ମୂର୍ଖତା କିପରି ସମ୍ଭବ ହୋଇପାରେ ?

ଭାରତରେ ଯଦି ଦୁଃଖ ଯାତନା ନାହିଁ, ଭାରତର ଗତ ଦେଢ଼ଶହ ବର୍ଷର ଇତିହାସରେ ଯଦି ଏକଛତ୍ରବାଦ ନଥିଲା, ତାହାହେଲେ ଏ ଶବ୍ଦଗୁଡ଼ିକର ତାତ୍ପର୍ଯ୍ୟ କ'ଣ ? ସ୍ୱାଧୀନତା ସଙ୍ଘର୍ଷ ବେଳର ଅତ୍ୟାଚାର, ଉତ୍ପୀଡ଼ନ ଓ ଆକାଂକ୍ଷାକୁ ଲେଖକମାନେ ଏତେ ଶୀଘ୍ର ଭୁଲିଗଲେ ? ୟୁରୋପ୍‌ରେ ମହାଯୁଦ୍ଧ ଚାଲିଥିବାବେଳେ ଭାରତରେ, ବିଶେଷ କରି ବଙ୍ଗଳାରେ, ଦୁର୍ଭିକ୍ଷରେ ଲକ୍ଷ ଲକ୍ଷ ଲୋକ ମଲେ । ଯୁଦ୍ଧ ସରିଲାପରେ ହିନ୍ଦୁ-ମୁସଲ୍‌ମାନ୍ ବିଭେଦରେ କୋଟି କୋଟି ନରନାରୀ, ଶିଶୁ, ବୃଦ୍ଧ ଗୃହଶୂନ୍ୟ, ଅବଲମ୍ବନ ଶୂନ୍ୟ ହେଲେ; ଲକ୍ଷ ଲକ୍ଷ ଲୋକ ପଡ଼ୋଶୀର ଛୁରୀ ଓ ଅତ୍ୟାଚାରରେ ପ୍ରାଣ ହରାଇଲେ । ଏସବୁ ବ୍ୟତୀତ ୟୁରୋପୀୟ ଲୋକ ବ୍ୟକ୍ତିଗତ ଜୀବନର ଯେଉଁ ଦୈନନ୍ଦିନ ଦୁର୍ବହ ଯନ୍ତ୍ରଣାକୁ କଳ୍ପନା ମଧ୍ୟ କରିପାରିବ ନାହିଁ, ତାହା ଏଠାରେ ଶତକଡ଼ା ନବେ ଜଣଙ୍କର ଭାଗ୍ୟଲିଖନ । ତଥାପି ଏପରି ଭାବିବାର କାରଣ କେବଳ ଦୁଇ ପ୍ରକାର ହୋଇପାରେ ଓ ଏଠାରେ ଉଭୟ ପ୍ରଯୁଜ୍ୟ । ଭାରତୀୟ ବୁଦ୍ଧିଜୀବୀ ଏତେ ଅନୁକରଣ ପ୍ରିୟ ଯେ ସେ ବଡ଼ ସାହିତ୍ୟ ଲେଖିବା ପାଇଁ ୟୁରୋପୀୟ ସାହିତ୍ୟରେ ଯେଉଁଭଳି ଦୁଃଖ ଓ ଯନ୍ତ୍ରଣାର ବର୍ଣ୍ଣନା ଅଛି ଠିକ୍ ସେଭଳି ଦୁଃଖଯନ୍ତ୍ରଣା ଦେଖିବାକୁ ଚାହେଁ । ଅନ୍ୟ ରକମର ଦୁଃଖର ଓ ଯନ୍ତ୍ରଣାର ଅନୁଭୂତିରୁ ଉଚ୍ଚକୋଟିର ସାହିତ୍ୟ ହେବ କିପରି ? ଦ୍ୱିତୀୟତଃ, ଭାରତରେ ଯାହା କୋଟି କୋଟି ଲୋକଙ୍କର ଅନୁଭୂତି, ତାହାର ସେହି ଅନୁଭୂତି ନାହିଁ କିମ୍ବା ସହାନୁଭୂତି ମଧ୍ୟ ନାହିଁ । ଗୋରା ଜାତିର ଲୋକ ମଲେ ଯେତିକି କଷ୍ଟ, ଭାରତର ହରିଜନ ଆଦିବାସୀ ଅତ୍ୟାଚାରିତ ବା ନିହତ ହେଲେ ସେତିକି କଷ୍ଟ ଜଣାପଡ଼େ ନାହିଁ ।

ଭାରତୀୟ ଜାତି ପ୍ରଥା ମଣିଷ ଭିତରେ ଏପରି ଏକ ଅତୁଳନୀୟ ପ୍ରତିବନ୍ଧକ ହୋଇ ଠିଆ ହୋଇଛି ଯେ କୋଟି କୋଟି ଲୋକଙ୍କର ଅନୁଭୂତି ସମାଜର ବୁଦ୍ଧିଜୀବୀମାନଙ୍କର ଅନୁଭୂତି ହୋଇପାରୁ ନାହିଁ । ସେମାନଙ୍କର ସମସ୍ୟା ଓ ଆବଶ୍ୟକତା ବୁଦ୍ଧିଜୀବୀମାନଙ୍କର ସମସ୍ୟା ଓ ଆବଶ୍ୟକତା ନୁହେଁ । ଦୁର୍ଭିକ୍ଷ ପଡ଼ିଲେ, ହାଣକାଟ ହେଲେ ଏଇ ଲକ୍ଷ ଲକ୍ଷ ଲୋକ ଯନ୍ତ୍ରଣା ଭୋଗନ୍ତି, ଯେଉଁମାନଙ୍କ ସଙ୍ଗେ ଏକା ଘରେ ପଡ଼ୋଶୀ ହୋଇ ବା ସମ୍ପର୍କୀୟ ଭାବେ ରହିବାର ସୁଯୋଗ ବୁଦ୍ଧିଜୀବୀର ଆଦୌ ନଥାଏ । ଶହ ଶହ ବର୍ଷ

ଧରି ସେମାନଙ୍କର ରକ୍ତ ଓ ମାଂସର ସମ୍ବନ୍ଧ ଭାରତୀୟ ବୁଦ୍ଧିଜୀବୀ ଶ୍ରେଣୀର ରକ୍ତମାଂସଠାରୁ ବିଚ୍ଛିନ୍ନ ହୋଇଯାଇଛି, ତେଣୁ ଅନୁଭୂତି ଓ ସହାନୁଭୂତିର ଏ ଦୁର୍ଭିକ୍ଷ । ଅନୁଭୂତିର ଏହି ଦାରିଦ୍ର୍ୟ ଓ ସହାନୁଭୂତିର ଅଭାବକୁ ମନର ଜୋରରେ ଭାଙ୍ଗିବାକୁ ହେବ । ସେମାନଙ୍କର ଅନୁଭୂତିକୁ ସହାନୁଭୂତି ଦ୍ୱାରା ଗ୍ରହଣ କରି ତାଙ୍କର ସମସ୍ୟାରେ ଜଡ଼ିତ ହେବାକୁ ପଡ଼ିବ । ନହେଲେ, ଅପୂର୍ବ ସୃଷ୍ଟିର ମୂଳସ୍ରୋତ ଯେଉଁ ଅନୁଭୂତିର କଥା ବଙ୍ଗାଳୀ ସାହିତ୍ୟିକ କହିଲେ, ସେ ଅନୁଭୂତି ଆମ ବୁଦ୍ଧିଜୀବୀଙ୍କ ଭାଗ୍ୟରେ ଘଟିବ ନାହିଁ ।

ଅନୁଭୂତିର ବିଚ୍ଛିନ୍ନତାକୁ ବଢ଼େଇବା ପାଇଁ ନାନା ରକମର କୃତ୍ରିମ ସୁବିଧା ଆମର ବୁଦ୍ଧିଜୀବୀ ଶ୍ରେଣୀକୁ ଆମ ଦେଶର ଯୋଜନା ଜରିଆରେ ମିଳୁଛି । ଏ ଯୋଜନା ଏକ ଅନୁକରିତ ଯୋଜନା । ପାଶ୍ଚାତ୍ୟ ଜୀବନ ପ୍ରଣାଳୀର ଆଦର୍ଶରେ ଅନୁପ୍ରାଣିତ ଏହି ଯୋଜନା ସମାଜର ଥୋକେ ଲୋକଙ୍କୁ ସେଭଳି ଜୀବନସ୍ତରକୁ ନେଇଯିବାରେ ସାହାଯ୍ୟ କରୁଛି । ଋଣ ସୂତ୍ରରେ ଲବ୍ଧ ଅଜସ୍ର ଧନ ବ୍ୟୟ ଫଳରେ ଦେଶର ବିଜ୍ଞାନ, ଶିକ୍ଷା, ଶିଳ୍ପ ବା ସାହିତ୍ୟ ପାଶ୍ଚାତ୍ୟ ସ୍ତରକୁ ଉଠୁନାହିଁ । କିନ୍ତୁ ଏପରି ବହୁତ ଦ୍ୱୀପ ତିଆରି ହେଉଛି ଯେଉଁଠି ପାଶ୍ଚାତ୍ୟର ବୈଭବ ଦ୍ୱାରା ଅନୁପ୍ରାଣିତ କୋଠା, ବଗିଚା ଓ ହୋଟେଲ୍ ଗଢ଼ିଉଠୁଛି । ବଡ଼ ବଡ଼ ଅଟ୍ଟାଳିକା ବିଜ୍ଞାନାଗାର ନାମରେ ନିର୍ମିତ ହେଉଛି । ଯଦିଓ ଉଦ୍ଭାବନ କିଛି ନାହିଁ । କାଳିଦାସଙ୍କର ନାମରେ ବିରାଟ ଗବେଷଣା ମନ୍ଦିର ଲକ୍ଷ ଲକ୍ଷ ଟଙ୍କା ବ୍ୟୟରେ ତୋଳା ହେଉଛି – ଯଦିଚ କାଳିଦାସ ସମାରୋହରେ ଭାରତୀୟ ସାହିତ୍ୟିକଙ୍କ ମୁଖରୁ ଇଂରାଜୀ ବକ୍ତୃତା ଶୁଣି କାଳିଦାସଙ୍କ ସାହିତ୍ୟ ଅଧ୍ୟୟନ କରିଥିବା ସୋଭିଏତ୍ ରୁଷ୍‌ର ବିଦ୍ୱାନ ଘୃଣାରେ ସଭା ତ୍ୟାଗ କରୁଛନ୍ତି । ଏନ୍‌ସାଇକ୍ଲୋପେଡ଼ିଆ ନାମରେ ଦେଶୀ ଭାଷାରେ ବିଶ୍ୱଜ୍ଞାନ ସଂଗ୍ରହ କରିବା ଉଦ୍ଦେଶ୍ୟରେ ମୋଟା ଦରମାର ଚାକିରି ଖୋଲାଯାଉଛି, ଯେତେବେଳେ ଦେଶୀ ଭାଷାକୁ ସ୍କୁଲ୍ ଓ କଲେଜ୍‌ର ପାଠର ମାଧ୍ୟମରୂପେ ସ୍ୱୀକାର କରାଯାଉ ନାହିଁ । ଏସବୁ ଭିତରେ ପଶି ଭାରତୀୟ ବୁଦ୍ଧିଜୀବୀର ଅନୁଭବ କରିବାର ଶକ୍ତି ଆହୁରି କମିଯାଉଛି । ଶୀତତାପ ନିୟନ୍ତ୍ରିତ ରୂପେଲୀ ମିନାରରେ ରହି ସେ ସାରା ଦେଶର ଖରା ଓ ଶୀତକୁ ଭୁଲିଯାଉଛି । ଏହି ଅନୁଭୂତିର ବିଚ୍ଛିନ୍ନତାକୁ କାଟିବା ପାଇଁ ସତ୍‌ସାହସ୍ ଦରକାର । ତ୍ୟାଗ ଓ ବିଦ୍ରୋହ ମଧ୍ୟ ଆବଶ୍ୟକ ।

ଏହି ବିଚ୍ଛିନ୍ନତାକୁ କାଟି, ପାଶ୍ଚାତ୍ୟ ସଭ୍ୟତାର ପ୍ରତିଷ୍ଠା ଆଗରେ କୌଣସି ଆତ୍ମନ୍ୟୁନତା ବୋଧ ନକରି ନିଜ ଦେଶର ଅଶିକ୍ଷିତ ଲୋକ, ପଛୁଆ ଅର୍ଥନୀତି ଓ ଅବିକଶିତ ଭାଷା ଲାଗି ଲଜ୍ଜାବୋଧ ନକରି ଭାରତୀୟ ବୁଦ୍ଧିଜୀବୀ ଯଦି ନିଜର ପରିପାର୍ଶ୍ୱ ସଙ୍ଗରେ ନିବିଡ଼ ସୂତ୍ରରେ ବାନ୍ଧି ହେବ, ତାହାହେଲେ ସଙ୍ଗେ ସଙ୍ଗେ ତାକୁ ଏକ ନୂତନ ଜଗତ ଦେଖାଯିବ । ସେ ଜାଣିବ ଯେ ପ୍ରତିଷ୍ଠିତ ପାଶ୍ଚାତ୍ୟ ସଭ୍ୟତାର ମାନଦଣ୍ଡ, ପ୍ରସଙ୍ଗ ଓ ସମସ୍ୟାକୁ ନିଜ ଉପରେ ଆରୋପିତ କରି, ତାହାର ପ୍ରଶଂସା ଖୋଜି ନ୍ୟୁନ ହେବା ତାହାର ଭାଗ୍ୟ ନୁହେଁ, ତାହାର ଭାଗ୍ୟ ନୂଆ ନୂଆ ପ୍ରସଙ୍ଗ ନେଇ ନୂଆ ସଂସ୍କୃତିର ସ୍ଥାପନ କରିବା ।

ଏଠାରେ ରାଜନୀତିର ସମସ୍ୟାଗୁଡ଼ିକ ନୂଆ, ଏଠାରେ ଅର୍ଥନୀତିର ସମସ୍ୟାଗୁଡ଼ିକ ନୂଆ; କାରଣ ପାଶ୍ଚାତ୍ୟ ଜଗତର ରାଜନୀତିଶାସ୍ତ୍ର ଓ ଅର୍ଥବିଜ୍ଞାନ ତିଆରି ହେଲାବେଳେ

ସମସ୍ୟା ସ୍ଥାନୀୟ ଦୃଷ୍ଟିରୁ ଲେଖାଯାଇଛି । ତାକୁ ଏକ ବିଶ୍ୱଦୃଷ୍ଟିରୁ ଲେଖିବା ଦରକାର ହେଲାଣି । ଅଥବା ଅତି କମ୍‌ରେ, ବର୍ତ୍ତମାନ ପାଇଁ ପୃଥିବୀର ଅଧିକତର ଜନସଂଖ୍ୟାର ଅର୍ଥାତ୍ ଏସିଆ, ଆଫ୍ରିକା ଓ ଦକ୍ଷିଣ ଆମେରିକାର, ଦୃଷ୍ଟିରୁ ଲେଖିବାକୁ ପଡ଼ିବ । ସେହିପରି ଦର୍ଶନର ସମସ୍ୟାରେ ବା ସାହିତ୍ୟର ଗଠନ ଓ ଶୈଳୀରେ ନୂଆ ମାନକର ସୃଷ୍ଟି ହେବା ଆବଶ୍ୟକ । ସାହିତ୍ୟରେ ଯେଉଁ ଢଙ୍ଗ, ଯେଉଁ ରୂପ ଓ ଉପନ୍ୟାସ କବିତାର ଯେଉଁ ଶୈଳୀ ପାଶ୍ଚାତ୍ୟ ସମାଜରେ ବର୍ତ୍ତମାନ ଠିକ୍ ବୋଲି ମନେ ହେଉଛି, ଆମ ସମାଜରେ ସେସବୁ ପୂର୍ଣ୍ଣଭାବରେ କାଟୁ କରୁନାହିଁ । କେବଳ ବିଶେଷଜ୍ଞ ଦଳ ଭିତରେ ଅନେକ ଆବଦ୍ଧ ହୋଇଯାଉଛି । ଏସବୁ ବିଷୟରେ ନୂତନ ପ୍ରୟୋଗର ଅବକାଶ ରହିଛି । ଭାରତର ପରିବେଶକୁ ନେଇ ଏଭଳି ଯେତେ ନୂଆ ପ୍ରୟୋଗ ହେବ ତାହା ପ୍ରାନ୍ତୀୟତାର ସୂଚକ ହେବନାହିଁ । ବରଂ ଏପରି ପରୀକ୍ଷାନିରୀକ୍ଷା ଭବିଷ୍ୟତର ବିଶ୍ୱର ମାନଦଣ୍ଡ ହେବାର ପ୍ରଚୁର ଆଶା ରହିଛି ।

ଅତଏବ, ମୂଳତଃ ଦେଖିବାକୁ ଗଲେ ଭାରତୀୟ ବୁଦ୍ଧିଜୀବୀକୁ ଚେରହୀନ, ଦ୍ୱିଧାଯୁକ୍ତ ବା ପରନିର୍ଭରଶୀଳ କହିବା ସତ୍ୟ ହେଲେ ସୁଦ୍ଧା, ସତ୍ ସାହସର ଅଭାବ ଓ ଆଦର୍ଶହୀନତା ଫଳରେ ହିଁ ସେ ଏତେ ଗୌଣ ଓ ଅନୁପ୍ରାଦକ ହୋଇ ରହିଛି । ନୂଆ ସୃଷ୍ଟି ନିମନ୍ତେ ତାହାର ଦୂରନ୍ତ ଅଭିଳାଷ ନାହିଁ । ପରସୃଷ୍ଟିର ସମକକ୍ଷ ହେବା ପାଇଁ ଅଛି ବିକଳ ଭାବ । ଆଦର୍ଶ ଓ ଚରିତ୍ର ମଧ୍ୟରୁ କେଉଁଟି ପ୍ରଥମେ ଆସିବ ? ଗୋଟିଏ ଭାବରେ କହିବାକୁ ଗଲେ, ଆଦର୍ଶ ସେ ନିଜେ ସୃଷ୍ଟି କରିପାରିବ ନିଜର ଅନୁଭୂତିରୁ । ତେଣୁ ଚରିତ୍ରର ଆବଶ୍ୟକତା ପ୍ରଥମ । ସେ ଯଦି ନିଜର ପେଶା ପ୍ରତି ସତ୍ୟନିଷ୍ଠ ହୋଇ ସ୍ୱାଧୀକାର ଘୋଷଣା କରିବ ଓ ସମାଜର ସବୁ ଅମଙ୍ଗଳ ଓ ଅନ୍ଧକାର ବିରୁଦ୍ଧରେ ବଳିଷ୍ଠ ଭାବରେ ପ୍ରତିକ୍ରିୟା କରିବ, ଆପେ ଆପେ ନୂତନ ଆଦର୍ଶର ଅରୁଣାଲୋକରେ ତାହାର ସୃଷ୍ଟି ବଳିଷ୍ଠ ଓ ସ୍ୱାଭାବିକ ହେବ । ଏହା କରିବା ପାଇଁ ତାକୁ ନିଜ ସମାଜ ପରିବେଷ୍ଟନୀ, ଜଳବାୟୁ ଓ ଭାଷାଠାରୁ ଅଲଗା ହୋଇ ରହିଲେ ଚଳିବ ନାହିଁ । ଯେପର୍ଯ୍ୟନ୍ତ ସେ ଏହି ଅଭାବର ଭାବ କାଟି ପାରିନାହିଁ, ସେ ଅନ୍ଧ ହୋଇ ରହିବ; କିଛି ଦେଖିପାରିବ ନାହିଁ ।

ସାଧାରଣ ସମ୍ମାନ, ସାଧାରଣ ଉନ୍ନତି, ସାଧାରଣ ପ୍ରଭାବର ଅଧିକାରୀ ହେବା ଭାରତୀୟ ବୁଦ୍ଧିଜୀବୀର ଐତିହାସିକ ଭାଗ୍ୟ ନୁହେଁ । ହୁଏତ ସେ ସାଧାରଣ ଆରାମ ଓ ସମ୍ମାନର ମୋହରେ ନିଜକୁ ବିରାଟ ଐତିହାସିକ ଦାୟିତ୍ୱରୁ ବଞ୍ଚିତ କରି ଇତିହାସର ରଥଚକ୍ର ତଳେ ଧୂଳିରେ ମିଶିଯିବ, ଅବା ଇତିହାସର ସାରଥି ହୋଇ ନୂତନ ଯୁଗର ଆବାହକ ହେବ । ଏ ଦୁଇଟିରୁ କୌଣସି ଗୋଟିଏକୁ ବାଛିନେବାକୁ ହେବ । ପୃଥିବୀରେ ନୂଆ ସଭ୍ୟତା ଓ ସଂସ୍କୃତି ପାଇଁ ପ୍ରୟୋଗର ଜରୁରୀ ଆବଶ୍ୟକତା ରହିଛି । ତାହା ପୂରଣ କରିବାର ବିରାଟ ଆକାଂକ୍ଷା ହିଁ ଭାରତୀୟ ବୁଦ୍ଧିଜୀବୀର ଉତ୍‌ଥାନର ଏକମାତ୍ର ବାଟ । (୧୯୬୦)

# ଦେଶରକ୍ଷା ଓ ଭାରତୀୟ ମସ୍ତିଷ୍କ

୧

ବେଳେ ବେଳେ ଏପରି କିଛି ଘଟିଯାଏ ଯାହାର ସାମ୍ନାରେ ଠିଆ ହୋଇ ଆମର ଅନ୍ତରର ଚରିତ୍ରଟିକୁ ଆମେ ଦେଖିପାରୁ । ସେଇ ଘଟଣାର ଦର୍ପଣରେ ଆମର ଗୋଷ୍ଠୀ ଚରିତ୍ର ପ୍ରତିବିମ୍ବିତ ହୋଇଯାଏ । ଏକ ସମଷ୍ଟି ଭାବରେ ଆମର ମସ୍ତିଷ୍କ ଓ ହୃଦୟ କିପରି କାମ କରୁଛି ତାହା ଧରା ପଡ଼ିଯାଏ । ଗତ ୧୧ ମଇ ୧୯୯୮ରୁ ୨୮ ମଇ ୧୯୯୮ ଏହିଭଳି ଏକ ଘଟଣା ପ୍ରବାହର ସମୟ ଥିଲା । ଏଗାର ମଇ ଦିନ ଭାରତ ସରକାର ପରମାଣୁ ପରୀକ୍ଷଣ କଲେ ଓ ଅଠେଇଶ୍ ମଇରେ ପାକିସ୍ତାନ୍ ତାହା କଲା ।

ଆମ ସମାଜର ଏକ ମିଶ୍ରିତ ଶ୍ରେଣୀ ଅଛି ଯାହାର କାର୍ଯ୍ୟଶୈଳୀ ଓ ଭାବଭଙ୍ଗିମା ଆମର ଜାତୀୟ ଚରିତ୍ରକୁ ପରିଭାଷିତ କରିଥାଏ । ଏହି ଶ୍ରେଣୀର ଅନୁପାତ ଜନସଂଖ୍ୟାର ବହୁତ ବଡ଼ ଭାଗ ନହେଲେ ମଧ୍ୟ ଆମ ରାଷ୍ଟ୍ରର ଦିଗ ଓ ଦିଗନ୍ତକୁ ନିରୂପଣ କରିବାରେ ତାହାର ନିଷ୍ପତ୍ତିମୂଳକ ଭୂମିକା ଥାଏ । ୧୧ ମଇରୁ ୨୮ ମଇ ପର୍ଯ୍ୟନ୍ତ ଓ କିଛିଟା ତାହାପରେ ମଧ୍ୟ ଏହି ଶ୍ରେଣୀର ତର୍କ-ବିତର୍କ ଉତ୍ସାହ-ଉଦ୍ଦୀପନା ଆଦିକୁ ସ୍ମରଣ କଲେ ଆମର ରାଷ୍ଟ୍ରୀୟ ଚରିତ୍ର ଓ ରାଷ୍ଟ୍ରୀୟ କ୍ଷମତାର ଗୋଟିଏ ଝଲକ ଦୃଶ୍ୟମାନ ହୁଏ ।

ଏଗାର ମଇର ଘଟଣା ଦିନେ ଦେଢ଼ ଦିନ ଭିତରେ ଟି.ଭି. ଓ ଖବରକାଗଜମାନଙ୍କର ଜରିଆରେ ସମ୍ବାଦରେ ଚହଳ ପକେଇବା ସଙ୍ଗେ ସଙ୍ଗେ ଆମ ଭାବନାର ବେଲୁନ୍‌ରେ ହାଓ୍ବା ଭରିଦେଲା । ଅଠେଇଶି ତାରିଖ ପରେ ସେଥିରୁ ଅଧା ହାଓ୍ବା ଫୁସ୍ କରି ବାହାରିଗଲା । ଆମେ ଉପରକୁ ଉଠି ଯାଇଥିଲୁ, ପାକିସ୍ତାନ୍ ଆମର ଗୋଡ଼ ଟାଣି ତଳେ ପକେଇ ଦେଲା ଓ ଆମେ ଦୁହେଁ ସମାନ ହୋଇଗଲୁ । ଆମେ ନିଜକୁ ମହାଶକ୍ତି ବୋଲି ଭାବି ସାରିଥିଲୁ, ପାକିସ୍ତାନ୍ ଜଣାଇଦେଲା ଯେ ପାକିସ୍ଥାନ୍ ଯେଉଁ ଶ୍ରେଣୀର ଶକ୍ତି ଆମେ ବି ସେଇ ଶ୍ରେଣୀର । ଜୁନ୍ ତିନି ତାରିଖରେ ବିଭିନ୍ନ ରାଜ୍ୟକୁ ମିଶାଇ ଗୁଡ଼ାଏ ଉପନିର୍ବାଚନ ଥିଲା । ଯେଉଁ ଦଳର ନିଷ୍ପତ୍ତି ଓ ନୀତି ଫଳରେ ଆମକୁ ଏକ ମହାଶକ୍ତିର ଭାବନା ମିଳିଥିଲା ତାହାକୁ ଏହି ନିର୍ବାଚନମାନଙ୍କରୁ କୌଣସି ବିଶେଷ ଭୋଟ୍ ମିଳିଥିବାର ଜଣାପଡ଼ିଲା ନାହିଁ । ଅର୍ଥାତ ଗୌରବାନୁଭୂତିର ତୀବ୍ରତା କମି ସାରିଥିଲା ।

ତେବେ ସେଇ ମହାନ ଅନୁଭବର ତୀବ୍ରତା କମିଗଲେ ସୁଦ୍ଧା ସେଇ ବାସନା

ରହିଗଲା । ଯେଉଁ ବୋମା ଆମକୁ ଏତେ ଉପରକୁ ଉଠାଇ ଦେଇଥିଲା ଓ ଏକ ଅଭୂତପୂର୍ବ ବିଜୟର ଶିହରଣ ଆଣି ଦେଇଥିଲା, ତାକୁ ଆମେ ନିନ୍ଦା କରିବୁ କିପରି ? ତାହାର ପରୀକ୍ଷଣକୁ ଅନୁଚିତ ବୋଲି କହିବୁ କିପରି ? ଯେଉଁମାନେ ଛଅ ଅଗଷ୍ଟ ହିରୋସୀମା ଦିବସ ପାଳନ କଲେ ନିଶ୍ଚୟ ଆମ ରାଷ୍ଟ୍ରୀୟ ଚରିତ୍ରର ପରିପନ୍ଥି ଏକ ଅସାମାଜିକ ଗୋଷ୍ଠୀ ।

ଏଗାର ମଇ ଦିନ ଭାରତୀୟ ଜନତା ପାର୍ଟି (ଭା.ଜ.ପା.)ର ବଡ଼ ବଡ଼ ଶତ୍ରୁମାନେ ସ୍ତବ୍ଧ ହୋଇଯାଇଥିଲେ । ପ୍ରଚଳିତ ରାଜନୀତିରେ ଭା.ଜ.ପା.ର ସବୁଠାରୁ ବଡ଼ପାଟିଆ ଶତ୍ରୁ ହେଉଛନ୍ତି କମ୍ୟୁନିଷ୍ଟମାନେ । କେତେଦିନ ପର୍ଯ୍ୟନ୍ତ ସେମାନଙ୍କ ମୁହଁରୁ କଥା ବାହାରିଲା ନାହିଁ । ସେମାନେ ପ୍ରଥମେ ଯେତେବେଳେ ମୁହଁ ଖୋଲିଲେ ସେତେବେଳେ ନିନ୍ଦା କରିବେ କି ପ୍ରଶଂସା କରିବେ ଏହାର ଦ୍ୱନ୍ଦ୍ୱ ସରି ନଥାଏ । ମାର୍କ୍ସବାଦୀ ଦଳର ମହାସଚିବ ହରିକିଶନ୍ ପ୍ରଶଂସା କଲେ । କହିଲେ ଯେ ଭାରତୀୟ ବୈଜ୍ଞାନିକ ଓ ଇଞ୍ଜିନିୟରମାନେ ଏହି ଅତ୍ୟାଧୁନିକ ଟେକ୍ନୋଲଜି କ୍ଷେତ୍ରରେ ଅଭୂତପୂର୍ବ ସଫଳତା ହାସଲ କରି ଧନ୍ୟବାଦର ପାତ୍ର ହୋଇଛନ୍ତି । ଏଭଳି ବିବୃତି ଯେ ବୋମା ବିସ୍ଫୋରଣକୁ ଗୌରବାନ୍ୱିତ ନ କରିଛି, ତାହା କମ୍ୟୁନିଷ୍ଟ ବୁଦ୍ଧିଜୀବୀମାନେ କହିପାରିବେ କି ? ଅଠେଇଶ୍ ମଇରେ ଯେତେବେଳେ ପାକିସ୍ତାନ୍ ବୋମା ବିସ୍ଫୋରଣ କଲା, ଏସିଆର ଆଉ ଏକ ଦେଶ ଏହି ଆଧୁନିକତମ ଟେକ୍‌ନୋଲୋଜିରେ ପାରଙ୍ଗମ ହୋଇଗଲା ବୋଲି ସେମାନେ ପୁନର୍ବାର ବିବୃତି ଦେଇଥାନ୍ତେ । ତାଙ୍କର ରାଷ୍ଟ୍ରଭକ୍ତି ବାଧା ଦେଲା କି? ଭାରତୀୟ ଜନତା ପାର୍ଟିରୁ ମାର୍କ୍ସବାଦୀ କମ୍ୟୁନିଷ୍ଟ ପାର୍ଟି ପର୍ଯ୍ୟନ୍ତ ସଭିଙ୍କର ମସ୍ତିଷ୍କ କ'ଣ ଏକା ଭଳି କାମ କରୁଛି ?

ପରମାଣୁ ବୋମାକୁ 'ସମସ୍ତେ' ସ୍ୱାଗତ କଲେ ବୋଲି କହିଲେ ବେଶୀ ଭୁଲ ହେବନାହିଁ । ଯେଉଁମାନେ ବିରୋଧ କଲେ ସେମାନଙ୍କୁ କୌଣସି ଗୋଟିଏ ଭାବଧାରାରେ ବାନ୍ଧି ହେବନାହିଁ । କେତେକ ଗାନ୍ଧିବାଦୀ ମଧ୍ୟ ସ୍ୱାଗତ କରିଛନ୍ତି ବୋଲି ଜଣାପଡ଼ିଛି । ସେଥିରୁ ବୁଝି ହୁଏ ଯେ ରାଷ୍ଟ୍ରୀୟ ମାନସର ଉତ୍ସାହ କେତେ ତୀବ୍ର ଥିଲା । ଯେଉଁମାନେ ବିରୋଧ କଲେ ସେମାନଙ୍କ ଭିତରେ ଗାନ୍ଧିବାଦୀ, ମାନବତାବାଦୀ, ବୈଜ୍ଞାନିକ ଓ ପରିବେଶବାଦୀଙ୍କର ଛୋଟ ଛୋଟ ଗୋଷ୍ଠୀ ଥିଲେ । କେତେ ପ୍ରକାରର ବୁଦ୍ଧିଜୀବୀ ଅଛନ୍ତି ଯେଉଁମାନେ ନିଜକୁ ବିଶ୍ୱ ବଜାର ସାଙ୍ଗରେ ଏପରି ମିଶାଇ ଦେଲେଣି ଯେ ଦେଶ ଓ ରାଷ୍ଟ୍ରର ଭାବନାକୁ ସଙ୍କୀର୍ଣ୍ଣ ବୋଲି ବିଚାର କରନ୍ତି । ଦାରିଦ୍ର୍ୟ ହଟେଇବା ପାଇଁ ଖର୍ଚ୍ଚ ନକରି ବୋମା ତିଆରିରେ ଖର୍ଚ୍ଚ ହେଉଛି ବୋଲି ସେମାନେ ଆକ୍ଷେପ କରନ୍ତି । ସତେ ଯେପରି ପ୍ରତିରକ୍ଷା ଖର୍ଚ୍ଚରେ ବୃଦ୍ଧି ଯୋଗୁଁ ହିଁ ଦେଶରେ ଦାରିଦ୍ର୍ୟ ବଢ଼ିଚାଲିଛି । ଆଉ ଏକ ଗୋଷ୍ଠୀ ଉତ୍ତର ଆଧୁନିକତାବାଦର ଫେଶନକୁ ଅନୁସରଣ କରୁଛନ୍ତି । ରାଷ୍ଟ୍ର ଏକ ଅତ୍ୟାଚାରୀ ସଂସ୍ଥା । ତାକୁ ଆଉ ବେଶୀ ଅସ୍ତ୍ରଶସ୍ତ୍ର ଦେବାଦ୍ୱାରା ମଣିଷମାନେ ଅସହାୟ ହୋଇପଡ଼ିବେ ବୋଲି ସେମାନେ ତର୍କ କରନ୍ତି । କଥାଗୁଡ଼ିକ ବେଶ୍ ଉଚ୍ଚ ବିଚାର ମଣ୍ଡିତ । କିନ୍ତୁ ଏହି ଉଚ୍ଚ ବିଚାରର ଗୋଷ୍ଠୀଦ୍ୱୟ ବଜାରର ସାର୍ବଭୌମିକତାରେ ଚିନ୍ତିତ ହେଉ ନାହାନ୍ତି । ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ଦ୍ୱାରା ନିୟନ୍ତ୍ରିତ

ଖୋଲାବଜାରର ଶକ୍ତି ଯେପରି ବଢ଼ିଚାଲିଛି ଓ ତାହା ଫଳରେ ଜନସାଧାରଣଙ୍କର ଜୀବନ ଯେପରି ଅସହାୟ ହୋଇଯାଉଛି, ସେଥି ପ୍ରତି ଏମାନେ ସମ୍ବେଦନଶୀଳ ନୁହନ୍ତି । ନିତ୍ୟନୂତନ ଉପଭୋଗ ସାମଗ୍ରୀର ଉଦ୍ଭାବନରେ ବୈଜ୍ଞାନିକ ଓ ଇଞ୍ଜିନିୟରମାନେ ଯେପରି ଲାଗିପଡ଼ିଛନ୍ତି ଓ ଯାହା ଫଳରେ ଭୋଗବିଳାସ ଓ ଆରାମଦାୟକ ଜିନିଷ ଉପରେ ଖର୍ଚ୍ଚ ସବୁ ବଢ଼ିଚାଲିଛି, ଏଥିପ୍ରତି ସେମାନେ ଉଦାସୀନ । ଏହିସବୁ ଅନାବଶ୍ୟକ ଓ ଅପସଂସ୍କୃତିକାରକ ଖର୍ଚ୍ଚ ଦାରିଦ୍ର୍ୟକୁ ବଢ଼ାଉଛି ବୋଲି ସେମାନେ ବିବେଚନା କରନ୍ତି ନାହିଁ ।

ଅତଏବ, ବୋମାର ବିରୋଧ କରିବା ଆପଣାଛାଏଁ ଏକ ପବିତ୍ର କାର୍ଯ୍ୟ ହୋଇଯାଏନା । ରାଷ୍ଟ୍ରର ପ୍ରତିରକ୍ଷା ଏକ ପାପକାର୍ଯ୍ୟ ନୁହେଁ । ରାଜ୍ୟ ବା ରାଷ୍ଟ୍ର ଏକ ଅପରିହାର୍ଯ୍ୟ ଅନୁଷ୍ଠାନ । ଏହାର ପ୍ରତିରକ୍ଷା ମଧ୍ୟ ବାଞ୍ଛନୀୟ । ତେଣୁ ବୋମାକୁ ବିରୋଧ କରିବାର କେବଳ ଦୁଇଟି ତର୍କସଙ୍ଗତ ଉପାୟ ଅଛି । ପ୍ରଥମଟି ଏହା ଯେ, ବୋମାଦ୍ୱାରା ପ୍ରତିରକ୍ଷା ହୋଇପାରିବ ନାହିଁ; ଅନ୍ୟଭାବରେ କହିବାକୁ ଗଲେ ପ୍ରତିରକ୍ଷାର ବିକଳ୍ପ ଉପାୟ ଖୋଜିବାକୁ ହେବ । ଦ୍ୱିତୀୟତଃ, ପରମାଣୁ ବୋମା ଏପରି ଏକ ମାନବ ସମାଜ ବିରୋଧୀ ଅସ୍ତ୍ର ଯେ ଆମେ ପରାଜୟ ସ୍ୱୀକାର କରିବା ହେଲେ ଏହି ଅସ୍ତ୍ରର ନିର୍ମାଣ ବା ବ୍ୟବହାର କରିବା ନାହିଁ । ଦୁଇଟି ମଧ୍ୟରୁ ଯେ କୌଣସି ବକ୍ତବ୍ୟ ପ୍ରକାଶ କରିବା ପାଇଁ ମାନସିକ ସାହସ ଦରକାର ।

ବୋମାର ସମର୍ଥନ କରିବା ମଧ୍ୟ କୌଣସି ବୀରତ୍ୱପୂର୍ଣ୍ଣ କାର୍ଯ୍ୟ ନୁହେଁ, କି ଦେଶଭକ୍ତିର ପରିଚାୟକ ନୁହେଁ । ଦେଶଭକ୍ତି ଏକ ତ୍ୟାଗର ଭାବନା ଅଟେ । ବୋମାର ସମର୍ଥନ ଯଦି ତ୍ୟାଗଭାବନାଯୁକ୍ତ ନୁହେଁ ତାହାହେଲେ ଏହା ଏକ ପ୍ରକାରର ଆତ୍ମପ୍ରବଞ୍ଚନା । ତ୍ୟାଗବିହୀନ ଦେଶଭକ୍ତିରୁ ଦେଶକୁ କିଛି ମିଳିବାର ନାହିଁ । ଭାରତର ଶାସକ ଶ୍ରେଣୀ (ଭାରତ ପରି ଦେଶରେ ଶିକ୍ଷିତ ଶ୍ରେଣୀ ହିଁ ଶାସକ ଶ୍ରେଣୀ) ପ୍ରତିରକ୍ଷା ସଚେତନ ନୁହନ୍ତି । ରାଷ୍ଟ୍ରର ପ୍ରତିରକ୍ଷା ପାଇଁ କେଉଁ ଉପାଦାନ ଦରକାର, ସେଥିରେ କୂଟନୀତି ଓ ଅର୍ଥନୀତିର ଭୂମିକା କ'ଣ, ଏ ସମ୍ପର୍କରେ ଉଚ୍ଚ ଶିକ୍ଷିତ ଓ ବିଶେଷଜ୍ଞମାନେ ମଧ୍ୟ ଅନୁଧ୍ୟାନ କରୁନାହାନ୍ତି । ତେଣୁ ଶିକ୍ଷିତରୁ ଆରମ୍ଭ କରି ନିରକ୍ଷର ଗ୍ରାମବାସୀ ପର୍ଯ୍ୟନ୍ତ ପ୍ରତିରକ୍ଷା କହିଲେ ସୈନ୍ୟବାହିନୀ ଓ ହତିଆରକୁ ବୁଝନ୍ତି ।

ଜଣେ ଶାସକ ଭାବରେ ପ୍ରଧାନମନ୍ତ୍ରୀ ନେହେରୁଙ୍କର ମଧ୍ୟ ଏହିପରି ଧାରଣା ଥିଲା । ୧୯୬୨ ମସିହାର ଚୀନ୍ ଦ୍ୱାରା ଆକ୍ରମଣ ଯେତେବେଳେ ଆରମ୍ଭ ହେଲା, ନେହେରୁ କୌଣସି ଏକ ଗସ୍ତରେ ବାହାରିଥିଲେ, ସାମ୍ବାଦିକମାନେ ଆକ୍ରମଣ ବିଷୟରେ ପଚାରିବାରୁ ସେ ଉତ୍ତରଦେଲେ, ଆମ ସେନାବାହିନୀକୁ କହିଦିଆ ହୋଇଛି ଯେ ସେମାନେ ଆକ୍ରମଣକାରୀଙ୍କୁ ବାହାର କରିଦେବେ । ଏହାର କେତୋଟି ଦିନ ମଧ୍ୟରେ ଭାରତର ଅପମାନଜନକ ପରାଜୟ ହେଲା ଓ ଦୁନିଆର ଚକ୍ଷୁରେ ଭାରତର ପ୍ରତିଷ୍ଠା କମିଗଲା । ୧୯୪୭ ମସିହା ପୂର୍ବରୁ ଗାନ୍ଧିଜୀ ସ୍ୱାଧୀନ ଭାରତର ବିଦେଶନୀତି ସମ୍ପର୍କରେ ପରାମର୍ଶ ଦେଇଥିଲେ ଯେ ସର୍ବପ୍ରଥମେ ପଡ଼ୋଶୀ ଦେଶମାନଙ୍କ ସହିତ ସହଯୋଗର ଦୃଢ଼ ସମ୍ପର୍କ ବିକଶିତ କରିବାକୁ ହେବ । ସେତେବେଳେ ଚୀନ୍ ଆମର ପଡ଼ୋଶୀ

ଦେଶ ନଥିଲା । ୧୯୬୨ ମସିହାର ଆକ୍ରମଣ ବେଳେ ଗୋଟିଏ ମଧ୍ୟ ପଡ଼ୋଶୀ ଦେଶ ଚୀନ୍‌କୁ ଆକ୍ରମଣକାରୀ କହିବା ପାଇଁ ପ୍ରସ୍ତୁତ ନଥିଲେ । ଏହା ଥିଲା ଆମର ବିଦେଶନୀତି ବା କୂଟନୀତିର ଚରମ ବିଫଳତା ।

ଅତ୍ୟାଧୁନିକ ଅସ୍ତ୍ରଶସ୍ତ୍ରର ବଜାର ଦାମ୍ ବହୁତ ବେଶୀ ଓ କିଣିବା ବେଳେ ମୋଟା କମିଶନି ମିଳିଥାଏ । ତେଣୁ ଇନ୍ଦିରା ଗାନ୍ଧୀ ଓ ରାଜୀବ ଗାନ୍ଧୀଙ୍କ ସମୟରୁ ହତିଆର କିଣିବା ଆମର ପ୍ରତିରକ୍ଷା ମନ୍ତ୍ରଣାଳୟର ଏକ ପ୍ରିୟକାର୍ଯ୍ୟ ହୋଇପଡ଼ିଛି । ନୂଆ ହତିଆର କିଣାଯାଇ ଖବରକାଗଜ ଦ୍ୱାରା ସେଗୁଡ଼ିକୁ ପ୍ରଚାରିତ କରାଯାଏ । ଲୋକେ ତାକୁ ଦେଖି ଭାବନ୍ତି ଯେ ଆମର ପ୍ରତିରକ୍ଷା ମଜବୁତ୍ ହେଉଛି । ଏହି ମନୋବିଜ୍ଞାନ ଆମର ମସ୍ତିଷ୍କରେ ଥିଲା, ତେଣୁ ପରମାଣୁ ବୋମା ଫୁଟିବା ମାତ୍ରେ ଆମକୁ ଲାଗିଲା ଯେ ବ୍ରହ୍ମାସ୍ତ୍ର ମିଳିଗଲା ।

ଭାରତ ପ୍ରତିରକ୍ଷାର ଅସଲ ସମସ୍ୟାଗୁଡ଼ିକ କ'ଣ ଓ ସେହି ସମସ୍ୟାଗୁଡ଼ିକ ପାଇଁ ଏହି ବ୍ରହ୍ମାସ୍ତ୍ରର ପ୍ରାସଙ୍ଗିକତା କେତେ ? ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ କେତେବର୍ଷ ମଧ୍ୟରେ ଯେଉଁ ଭୂତପୂର୍ବ ଉପନିବେଶ ଦେଶଗୁଡ଼ିକ ସ୍ୱାଧୀନତା ହାସଲ କଲେ, ସେମାନେ ଆଉ ନିଜର କିମ୍ବା ବିଶ୍ୱର ଭବିଷ୍ୟତ ବିଷୟରେ ମୌଳିକ ଚିନ୍ତନ କଲେନାହିଁ । ସମସ୍ତେ ଚାହିଁଲେ ଯେ ଗୋରା ଦେଶମାନେ ଯେଉଁ ଦିଗରେ ଯାଉଛନ୍ତି ଆମେ ମଧ୍ୟ ସେଇ ଆଡ଼କୁ ଯିବା । ଭାରତ ଓ ପାକିସ୍ତାନ୍ ଭାବିଲେ ଯେ ବ୍ରିଟେନ୍ ଓ ଆମେରିକା ଯେଉଁ ଅସ୍ତ୍ରଶସ୍ତ୍ର ରଖୁଛନ୍ତି, ଆମେ ମଧ୍ୟ ସେହି ଅସ୍ତ୍ରଶସ୍ତ୍ର ରଖି ନିଜର ପ୍ରତିରକ୍ଷାକୁ ମଜବୁତ କରିବା । ପ୍ରତିରକ୍ଷାର ବିକଳ୍ପ ଉପାୟ ସେମାନେ ଖୋଜିଲେ ନାହିଁ । ଏହା ମଧ୍ୟ ବୁଝିଲେ ନାହିଁ ଯେ ବ୍ରିଟେନ୍ ଓ ଆମେରିକାର ଶକ୍ତି କେବଳ ସୈନ୍ୟବାହିନୀ କିମ୍ବା ଅସ୍ତ୍ରଶସ୍ତ୍ରକୁ ନେଇ ନୁହେଁ । ଆମେରିକାର ପ୍ରତିରକ୍ଷା କହିଲେ ଯାହା ବୁଝାଏ, ଭାରତର ପ୍ରତିରକ୍ଷା ସମସ୍ୟା ତାହାଠାରୁ ଭିନ୍ନ । ଖବରକାଗଜ ପଢ଼ିବା ବେଳେ ବାରମ୍ବାର ଆମର ଉତ୍ତର-ପଶ୍ଚିମ ଓ ଉତ୍ତର-ପୂର୍ବ ସୀମା ଅଞ୍ଚଳର ଘଟଣା ପଢ଼ି ଆମର ମନ ବ୍ୟାକୁଳ ହୋଇଉଠେ । ବୁଦ୍ଧି ବଣା ହୋଇଯାଏ । ସୀମା ଆମର ଦୁର୍ବଳ, ଅସ୍ପଷ୍ଟ ଓ ଭଙ୍ଗୁର । ସୀମାନ୍ତବର୍ତ୍ତୀ ଅଞ୍ଚଳମାନ ଅଶାନ୍ତ ଓ ଉପଦ୍ରୁତ । ଆମର ପ୍ରତିରକ୍ଷାର ମୁଖ୍ୟ ପ୍ରଶ୍ନ ହେଉଛି ସୀମାର ଭଙ୍ଗୁରତା ଓ ସୀମାବର୍ତ୍ତୀ ଅଞ୍ଚଳର ଅସ୍ଥିରତା । ପରମାଣୁ ବୋମା ଏହି ସମସ୍ୟାର ସମାଧାନରେ କ'ଣ ସାହାଯ୍ୟ କରିବ ?

୨

ବାମନ ମସ୍ତିଷ୍କ ତାହାର ଆହ୍ୱାନ ଓ ଦାୟିତ୍ୱଗୁଡ଼ିକ କମେଇ କରି ଦେଖେ । କାରଣ ଛୋଟ ମସ୍ତିଷ୍କ କେବଳ ଛୋଟ ଦାୟିତ୍ୱକୁ ହିଁ ତୁଲାଇପାରିବ । ଏକ ବିରାଟ ଆହ୍ୱାନ ତା ଆଗରେ ଆସି ଠିଆ ହେଲେ ସେ ତାହା ପ୍ରତି ଆଖି ବୁଜିଦିଏ । ଭାରତୀୟ ଶିକ୍ଷିତ ଶ୍ରେଣୀ କେବଳ ପାକିସ୍ତାନ୍‌କୁ ବିପଦର ମୁଖ୍ୟ ବିନ୍ଦୁ ଭାବରେ ଚିହ୍ନିତ କରିବାକୁ ଚାହେଁ । ଏପରି କଲେ ମଥାଟି ଥଣ୍ଡା ରହେ । ଭୌଗୋଳିକ, ଆର୍ଥିକ ଓ ସାମରିକ ଦୃଷ୍ଟିରୁ ପାକିସ୍ତାନ୍ ଆମଠାରୁ ଅନେକ ଛୋଟ । ସାମାଜିକ ଓ ବୌଦ୍ଧିକ ଚେତନାରେ ମଧ୍ୟ

ଭାରତ ପାକିସ୍ତାନ୍‌ର ଊର୍ଦ୍ଧ୍ୱରେ । ପାକିସ୍ତାନ୍ ଭାରତ ସାଙ୍ଗରେ ଦୁଇଥର ଯୁଦ୍ଧ କରିଛି ଓ ପରାସ୍ତ ହୋଇଛି ।

୧୯୪୮ ରେ ପାକିସ୍ତାନ୍ ଭାରତ ଉପରେ ଆକ୍ରମଣ କରିନଥିଲା । ପାକିସ୍ତାନ୍ ବିରୁଦ୍ଧରେ ଭାବପ୍ରବଣ ହେବାବେଳେ ଅନେକ ବନ୍ଧୁ ଭୁଲିଯାନ୍ତି ଯେ ସ୍ୱାଧୀନତା ବେଳେ ଭାରତର ମାନଚିତ୍ରରେ କାଶ୍ମୀର୍ ନଥିଲା । ମୁସଲ୍‌ମାନ୍ ବହୁଳ କାଶ୍ମୀର୍‌ର ହିନ୍ଦୁ ମହାରାଜା ଭାରତରେ ମିଶିବେ କି ଅଲଗା ଦେଶ ହୋଇ ରହିବେ, ସ୍ଥିର କରିପାରି ନଥିଲେ । ସେତିକିବେଳେ ପାକିସ୍ତାନ୍ କାଶ୍ମୀର୍ ଉପରେ ଆକ୍ରମଣ କରିଥିଲା, ଭାରତ ଉପରେ ନୁହେଁ । ଆକ୍ରମଣ ଚାଲିଥିବା ଭିତରେ କାଶ୍ମୀର୍ ଭାରତ ସଙ୍ଗେ କେତେଗୁଡ଼ିଏ ସର୍ତ୍ତ ଦେଇ ମିଶିଲା । ଭାରତୀୟ ସେନା ପାକିସ୍ଥାନୀ ସେନାକୁ ଅଟକେଇ ଦେଲା । କିନ୍ତୁ ଗୋଟିଏ ଅଞ୍ଚଳ ସେମାନଙ୍କର ନିୟନ୍ତ୍ରଣ ଭିତରକୁ ଚାଲିଯାଇଥିଲା । ଅନ୍ତଃରାଷ୍ଟ୍ରୀୟ ଚାପରେ ନେହେରୁ କାଶ୍ମୀର୍‌ର ପ୍ରଶ୍ନକୁ ଜାତିସଂଘ ପାଖକୁ ନେଇଗଲେ । ସେଇଦିନଠାରୁ ଏହା ଏକ ଆନ୍ତର୍ଜାତିକ ସମସ୍ୟାର ରୂପନେଲା । ଆଜି ଯଦି ପାକିସ୍ତାନ୍ କାଶ୍ମୀର୍‌କୁ ଏକ ଆନ୍ତର୍ଜାତିକ ପ୍ରଶ୍ନ କରି ତୋଳିବାକୁ ଚାହୁଁଛି, ଏଥିପାଇଁ କେବଳ ସେ ଦୋଷୀ ନୁହେଁ ।

୧୯୬୫ ଓ ୧୯୭୧ ମସିହାମାନଙ୍କରେ ଯେଉଁ ଭାରତ-ପାକିସ୍ତାନ୍ ଯୁଦ୍ଧ ହେଲା, ଉଭୟରେ ଭାରତର ସ୍ପଷ୍ଟ ସାମରିକ ବିଜୟ ହୋଇଥିଲା । କିନ୍ତୁ ସେତିକିରେ ଭାରତକୁ କିଛି ମିଳିଲା ନାହିଁ । ଯଦି ବିଜୟ ହେଲା, ସେତେବେଳେ କାଶ୍ମୀର୍ ବିଷୟରେ ଏକ ପକ୍କା ମୀମାଂସା ଆମେ କରାଇ ପାରିଥାଆନ୍ତୁ । ନ ହେବାର କାରଣ ଏହି ଯେ ବିଶ୍ୱରେ ଯେଉଁ ଦାଦା-ଶକ୍ତିମାନେ ଅଛନ୍ତି ସେମାନେ ଦୁନିଆର ଯେ କୌଣସି ସ୍ଥାନରେ ଯୁଦ୍ଧ ବା ସନ୍ଧି ହେବା ସମୟରେ ଦୃଶ୍ୟ ବା ଅଦୃଶ୍ୟ ଭାବରେ ପହଞ୍ଚି ଯାଆନ୍ତି । ଅଧିକାଂଶ ସ୍ଥଳରେ ଯୁଦ୍ଧକୁ ଉତ୍ସାହିତ କରନ୍ତି ଓ ସନ୍ଧିକୁ ଅମୀମାଂସିତ ରଖିବାର ଚେଷ୍ଟା କରନ୍ତି । ବିଜୟୀ ଦେଶମାନେ ମଧ୍ୟ ତାଙ୍କର ଚାପରେ ପଡ଼ିଯାନ୍ତି । ଭାରତ ସବୁବେଳେ ସେମାନଙ୍କର ଚାପ ଆଗରେ ନଇଁଛି । ତାସ୍‌କେଣ୍ଟ୍ ଓ ଶିମ୍‌ଲା ଚୁକ୍ତି ଭାରତକୁ କୌଣସି ସୁଫଳ ଦେଲାନାହିଁ । ପାକିସ୍ତାନ୍ ସାଙ୍ଗରେ ବିବାଦ ଯେଉଁଠି ଥିଲା ସେଇଠି ରହିଲା । ମହାଶକ୍ତିମାନେ ଚାହାନ୍ତି ଯେ ତୃତୀୟ ବିଶ୍ୱର କଳହଗୁଡ଼ିକ ନ ଛିଣ୍ଡୁ; ତାହାହେଲେ ସେମାନେ ସାମ୍ରାଜ୍ୟବାଦୀ ମାନଙ୍କ ପାଇଁ ଦୁର୍ବଳ ଶିକାର ହୋଇ ରହିବେ ।

ଭାରତରେ ଶାସକ ବର୍ଗ ଶିକ୍ଷିତ ଶ୍ରେଣୀ ଚାହେଁ ନାହିଁ ଯେ ଭାରତର ବିବାଦ କୌଣସି ଏକ ଶକ୍ତିଶାଳୀ ଦେଶ ସାଙ୍ଗରେ ହେଉ । ଯଦି ବିବାଦ ହୋଇଯାଏ, ତାକୁ ଲୁଚାଇବାକୁ ଚାହେଁ । ଚୀନ୍ ସାଙ୍ଗରେ ଭାରତର ବିବାଦକୁ କେହି ଯଦି ଚର୍ଚ୍ଚାରେ ଉଠାଏ ତାହାହେଲେ ଆଲୋଚନାରେ ଆଉ ଉତ୍ସାହ ରହେନାହିଁ । କଂଗ୍ରେସ୍ ହୁଅନ୍ତୁ, କମ୍ୟୁନିଷ୍ଟ୍ ହୁଅନ୍ତୁ ବା ଭା.ଜ.ପା. ହୁଅନ୍ତୁ, ଯେତେ ଶୀଘ୍ର ହୋଇପାରେ ଚର୍ଚ୍ଚାକୁ ବନ୍ଦ କରିଦିଅନ୍ତି । ଏଥର ସେଇୟା ହେଲା । ପରମାଣୁ ପରୀକ୍ଷଣର ଠିକ୍ ପୂର୍ବରୁ ପ୍ରଧାନମନ୍ତ୍ରୀ ତାଙ୍କର ରକ୍ଷାମନ୍ତ୍ରୀ ଜର୍ଜ୍ ଫର୍ଣ୍ଣାଣ୍ଡେଜ୍‌ଙ୍କୁ ଅତି ଚତୁରତାର ସହିତ ବ୍ୟବହାର କଲେ । ଜର୍ଜ୍ ମହାଶୟଙ୍କର ଚୀନ୍-ବିରୋଧୀ ମନୋଭାବକୁ ଜାଣି ଚୀନ୍ ବିରୁଦ୍ଧରେ ବିବୃତି

ଦେବାପାଇଁ ତାଙ୍କୁ ପ୍ରବର୍ତ୍ତାଇଲେ । ସେହି ବିବୃତିରେ ଖିଅଧରି ପ୍ରଧାନମନ୍ତ୍ରୀ ବାଜପେୟୀ ଆମେରିକାର ରାଷ୍ଟ୍ରପତିଙ୍କୁ ଚିଠି ଲେଖିଲେ ଯେ, ଚୀନ୍ ଆମପାଇଁ ଅତି ବିପଦଜ୍ଜନକ ଓ ତାହା ପାଖରେ ପରମାଣୁ ବୋମାର ଏକ ବଡ଼ ଶସ୍ତ୍ରାଗାର ରହିଛି । ଏଥିପାଇଁ ଆମେ ମଧ୍ୟ ପରମାଣୁ ବୋମା ପରୀକ୍ଷଣ କରିବାକୁ ବାଧ୍ୟ ହେଲୁ । ଲିଖିତ ଭାବରେ ଆମେରିକାର ସରକାରକୁ କୈଫିୟତ୍ ଦେବାକୁ କୌଣସି ଦରକାର ନଥିଲା । ଦିଲ୍ଲୀରେ ରହୁଥିବା ଆମେରିକା ରାଷ୍ଟ୍ରଦୂତଙ୍କୁ ଡାକି ମୌଖିକ ଭାବରେ ଏକଥା ସେ କହିପାରିଥାଆନ୍ତେ ।

ଇତିମଧ୍ୟରେ ରକ୍ଷାମନ୍ତ୍ରୀଙ୍କର ବିବୃତିକୁ ନେଇ ଦେଶର ଚାରିଆଡୁ ଶିକ୍ଷିତ ମହଲର ଓ ରାଜନୈତିକ ନେତାମାନଙ୍କର କଟୁ ମନ୍ତବ୍ୟ ଆସିଲା ଯେ, ଚୀନ୍ ସାଙ୍ଗରେ ଏଭଳି କିଛି ଖରାପ ସମ୍ବନ୍ଧ ଆମର ନାହିଁ, ତେଣୁ ତାକୁ ଅଯଥାରେ ଗାଳିଦେବା ଠିକ୍ ନୁହେଁ । କ୍ଲିଣ୍ଟନ୍ ସାହେବଙ୍କୁ ଚିଠି ଲେଖିବା ପରେ ଭା.ଜ.ପା.ର ନେତାମାନେ ମଧ୍ୟ ଚୀନ୍ ସମ୍ପର୍କରେ ନରମ କଥା ସବୁ କହିବା ଆରମ୍ଭ କରିଦେଲେ । ସେଇ ଚାପରେ ଜର୍ଜ୍ ମଧ୍ୟ କହି ବସିଲେ ଯେ, ମୋ କଥାକୁ ଖବରକାଗଜଗୁଡ଼ିକ ଭୁଲ୍ ଭାବରେ ଚିତ୍ରଣ କଲେ । ବର୍ତ୍ତମାନ ଚୀନ୍ ପ୍ରସଙ୍ଗକୁ ନେଇ ସରକାର ଚୁପ୍, ରାଜନୈତିକ ଦଳମାନେ ଚୁପ୍ ଓ ବୁଦ୍ଧିଜୀବୀମାନେ ଚୁପ୍ ।

ବାଜପେୟୀ ମନ୍ତ୍ରୀମଣ୍ଡଳ ଚୀନ୍ ସମ୍ପର୍କରେ ସମୀକ୍ଷା କରି ଚୀନ୍ ନୀତିକୁ ନୂଆମୋଡ଼ ଦେବାର କୌଣସି ନିଷ୍ପତ୍ତି କରିନଥିଲେ । ତେଣୁ ଜର୍ଜ୍ ଭଳି ଜଣେ କେବିନେଟ୍ ମନ୍ତ୍ରୀ ଚୀନ୍‌କୁ ଆମର ବଡ଼ ଶତ୍ରୁ ବୋଲି ଚିହ୍ନିତ କରିବା ନିଶ୍ଚୟ ଅନୁଚିତ ଓ ମୂର୍ଖତାପୂର୍ଣ୍ଣ ଥିଲା । କିନ୍ତୁ ମନ୍ତ୍ରୀ ନହୋଇ ସାଧାରଣ ସଦସ୍ୟ ଭାବରେ ସେ ଯଦି ଏକଥା ଲୋକସଭାରେ ଉଠାଇ ପାରିଥାନ୍ତେ, ତାହାହେଲେ ସରକାର ଅଡୁଆରେ ପଡ଼ିଥାନ୍ତା, କାରଣ ଉତ୍ତର ଓ ଉତ୍ତରପୂର୍ବ ଦିଗରେ ଆମର ଅଧିକାଂଶ ସୀମା ଚୀନ୍ ସାଙ୍ଗରେ ରହିଛି । ଭାରତ ଯାହାକୁ ନିଜର ସୀମା ବୋଲି ମାନେ ଚୀନ୍ ତାହାକୁ ମୋଟେ ସ୍ୱୀକାର କରେନାହିଁ । ମାକ୍‌ମୋହନ୍ ରେଖାକୁ ମଧ୍ୟ ଚୀନ୍ ସ୍ୱୀକାର କରେନାହିଁ । ଯେଉଁ ଅଞ୍ଚଳରେ ଭାରତର ପ୍ରତ୍ୟକ୍ଷ ଶାସନ ଚାଲୁଛି ସେଭଳି ଏକ ଅଞ୍ଚଳକୁ ଚୀନ୍ ନିଜର ବୋଲି ଦାବୀ କରୁଛି । ସୀମାର ସ୍ପଷ୍ଟ ନିର୍ଦ୍ଧାରଣ ତ ହୋଇପାରୁ ନାହିଁ; ବାସ୍ତବିକ ନିୟନ୍ତ୍ରଣ ରେଖାଟି ମଧ୍ୟ ଏପର୍ଯ୍ୟନ୍ତ ନିରୂପିତ ହୋଇପାରିନାହିଁ । ଆମ ଉତ୍ତର-ପୂର୍ବାଞ୍ଚଳର ବହୁ ସଶସ୍ତ୍ର ବିଚ୍ଛିନ୍ନତାବାଦୀ ଗୋଷ୍ଠୀ ଚୀନ୍ ଦ୍ୱାରା ପ୍ରଶିକ୍ଷିତ ଓ ପ୍ରୋତ୍ସାହିତ । ସର୍ବୋପରି ପାକିସ୍ତାନ୍‌ର ଭାରତ ବିରୋଧୀ ସାମରିକ ପ୍ରସ୍ତୁତିକୁ ଚୀନ୍ ନିରନ୍ତର ସାହାଯ୍ୟ କରୁଛି ବୋଲି ସମସ୍ତେ ଅନୁଭବ କରୁଛନ୍ତି ।

ଏହା ସତ୍ତ୍ୱେ ସମସ୍ତେ ଚୁପ୍ ହୋଇଗଲେ କାହିଁକି ? ହୁଏତ ସରକାର ପରିସ୍ଥିତି ଓ କୌଶଳ ଦୃଷ୍ଟିରୁ ପ୍ରକାଶ୍ୟ ଭାବରେ କିଛି କହୁନାହିଁ । କିନ୍ତୁ ବେସରକାରୀ ସଭ୍ୟମାନେ ଓ ବୁଦ୍ଧିଜୀବୀମାନେ କାହିଁକି ନୀରବ ହୋଇଗଲେ ? କାରଣ ସେମାନଙ୍କର ଭୟ । ଚୀନ୍ ପ୍ରତି ଶାସକ ଓ ଶିକ୍ଷିତ ଉଭୟେ ଶ୍ରେଣୀର ଏକ ଭୀରୁଭାବ ଅଛି । ଚୀନ୍ ସାଙ୍ଗରେ ସଂଘର୍ଷ କରିବାର ଛବି ସେମାନେ ନିଜ କଳ୍ପନାରେ ଆଙ୍କିପାରନ୍ତି ନାହିଁ । ଜର୍ଜ୍

ଫର୍ଣ୍ଣାଣ୍ଡେଜ୍‌ଙ୍କ ଉପରେ ସେମାନେ ଏଥିପାଇଁ ରାଗିଲେ ନାହିଁ ଯେ, ସରକାରୀ ମନ୍ତ୍ରୀ ପଦରେ ଥାଇ ସେ ଏପରି ଅନୁଚିତ୍ ଭାଷା ବ୍ୟବହାର କଲେ । ସେମାନେ ଭାବିଲେ ଯେ ଚୀନ୍ ଯଦି ରାଗିଯିବ, ଆମେ ତାହାର ମୁକାବିଲା କରିବା କିପରି ? ପାକିସ୍ତାନ୍‌କୁ ଯୁଦ୍ଧ ପାଇଁ ଡାକରା ଦେବା ସହଜ, କାରଣ ପାକିସ୍ତାନ୍‌ର ଶିକ୍ଷିତ ଶ୍ରେଣୀ ଅଳସୁଆ, ସ୍ୱାର୍ଥପର ଓ ବିଳାସୀ । ଚୀନ୍‌ର ଶାସକ ଓ ମଧ୍ୟବିତ୍ତ ଶ୍ରେଣୀ ତଥା ମଜ୍‌ଦୁର୍ ବର୍ଗ ବହୁବର୍ଷ ଧରି ତ୍ୟାଗ, ଅନୁଶାସନ ଓ କଠୋର ଶ୍ରମର ଭିତର ଦେଇ ଗତି କରିଛନ୍ତି । ଭାରତର ଶିକ୍ଷିତ ଶ୍ରେଣୀ ସର୍ବଦା ତ୍ୟାଗ ଓ କଠିନ ଶ୍ରମକୁ ଭୟ କରିଆସିଛି । ଏହି କାରଣରୁ ସେମାନେ ଗାନ୍ଧୀଙ୍କୁ ମଧ୍ୟ ଘୃଣା କରନ୍ତି । କାରଣ ଗାନ୍ଧୀ ସେମାନଙ୍କୁ କଠିନ ଶ୍ରମ କରିବା ପାଇଁ ବାଧ୍ୟ କରନ୍ତି ।

ବାଜପେୟୀ ସରକାର ଚୀନ୍ ବିବାଦ ସମ୍ପର୍କରେ ପ୍ରକଟ ଭାବରେ ଆଉ କିଛି କହୁନାହାନ୍ତି । ପ୍ରଚ୍ଛନ୍ନ ଭାବରେ, କାର୍ଯ୍ୟରେ କିଛି କରୁଛନ୍ତି କି ? ଆମର ଅନୁମାନ ଯେ କିଛି କରୁନାହାନ୍ତି ଓ ଏହାର କୁପରିଣାମ ଭବିଷ୍ୟତ ବଂଶଧରମାନେ ଭୋଗିବେ । ଚୀନ୍ ଭାରତକୁ କହୁଛି, ସୀମା ବିବାଦ ବିଷୟରେ ବ୍ୟସ୍ତ ହୁଅନାହିଁ । ଆମେ କିଛି ଅଶାନ୍ତି ସୃଷ୍ଟି କରୁନାହୁଁ । ତେଣୁ ଏପରି ଗଡ଼ିଚାଲୁ । ଚୀନ୍ ସାଙ୍ଗରେ ଦୃଢ଼ତାପୂର୍ଣ୍ଣ କଥାବାର୍ତ୍ତା କରିପାରୁ ନଥିବା ଶାସକମାନେ ମଧ୍ୟ ଏହି ଶସ୍ତା ବାଟକୁ ପସନ୍ଦ କରିଛନ୍ତି । ସୀମାର ଅସ୍ପଷ୍ଟତା ଯେତେ ବେଶୀ ପୁରୁଣା ହେବ, ଚୀନ୍‌ର ଦାବୀ ସେତିକି ସୁଦୃଢ଼ ହେବ । ଚୀନ୍ ନିଶ୍ଚୟ ଆମ ଅପେକ୍ଷା ବେଶୀ ଶକ୍ତିଶାଳୀ । ତେଣୁ ସୁବିଧା ସମୟ ଦେଖି, କିମ୍ବା ପାକିସ୍ତାନ୍ ସାଙ୍ଗରେ କେତେବେଳେ ଯଦି ଆମ ପଶ୍ଚିମ ପଟରେ ଯୁଦ୍ଧ ହୁଏ ସେତେବେଳେ ପୂର୍ବ ବା ଉତ୍ତର ପଟେ ଚୀନ୍ ତାହାର ନାଟ ଆରମ୍ଭ କରିଦେବ । ଭାରତ-ଚୀନ୍ ସୀମାକୁ ଅସ୍ପଷ୍ଟ ଓ ଅନିର୍ଦ୍ଧାରିତ ରଖିବା ମୋଟେ ନିରାପଦ ନୁହେଁ । ଯେଉଁମାନେ ଦେଶଭକ୍ତ ଶାସକ, ସେମାନେ ପୁରୁଣା ଓ ବର୍ତ୍ତମାନ ବିବାଦ ଗୁଡ଼ିକର ମୀମାଂସା କରାଇ ଭବିଷ୍ୟତ ବଂଶଧରମାନଙ୍କର ପଥକୁ ସୁଗମ କରନ୍ତି । ଭାରତରେ ଓଲଟା ହେଉଛି ।

ଚୀନ୍ ସାଙ୍ଗରେ ଭାରତର ବିବାଦ ଯେତିକି ବିଳମ୍ବିତ ହେଉଛି, ପାକିସ୍ତାନ୍‌ର ଚୀନ୍ ସହିତ ସମ୍ପର୍କ ସେତିକି ଘନିଷ୍ଠ ହେଉଛି । ଭାରତର ବିଶାଳ ବଜାର ଉପରେ ଲୋଲୁପ ଦୃଷ୍ଟି ପକେଇ ଆମେରିକା ଭାରତର ବନ୍ଧୁତା ଚାହେଁ । କିନ୍ତୁ ପାକିସ୍ତାନ୍ ତାହାର ଗେହ୍ଲା ପୁଅ । ପାକିସ୍ତାନ୍‌ର ଶାସକ ଶ୍ରେଣୀ ଆମେରିକାର ପୁରା ଗୋଲାମୀ ସ୍ୱୀକାର କରିଛନ୍ତି । ଭାରତର ଶିକ୍ଷିତ ଶ୍ରେଣୀ ଦ୍ୱିଧାଯୁକ୍ତ ହୋଇ ଆମେରିକାର ଗୋଲାମୀ ଚାହାନ୍ତି । ତେଣୁ ବଜାର ହରାଇବାର ଭୟ ଆମେରିକାର ନାହିଁ । ଯୁଦ୍ଧରେ ଜୟ ପରାଜୟ ଯାହା ହେଉ, ଆମେରିକା ପାକିସ୍ତାନ୍‌କୁ ଅପମାନିତ ହେବାକୁ ଦେବନାହିଁ । ଏପର୍ଯ୍ୟନ୍ତ ବାଜପେୟୀ ସରକାର ଯାହା କରିଛି ତଦ୍ୱାରା ପାକିସ୍ତାନ୍-ଚୀନ୍-ଆମେରିକାର ତ୍ରିକୋଣ ମଜ୍‌ବୁତ୍ ହୋଇଛି । କେତେକ ଭା.ଜ.ପା. ମନ୍ତ୍ରୀଙ୍କର ମୁଣ୍ଡ ଖରାପ ହୋଇଛି ଓ ଯୁଦ୍ଧଂଦେହି ସ୍ୱରରେ କଥାବାର୍ତ୍ତା କରୁଛନ୍ତି । ଏଭଳି ନୀତି ଅନୁସରଣ କରି ସେମାନେ କେବେ ହେଲେ କାଶ୍ମୀର୍ ସମସ୍ୟାର ସମାଧାନ କରିପାରିବେ ନାହିଁ । ବାଜପେୟୀ

ସରକାର ପୂରା ପାଞ୍ଚବର୍ଷ କାଳ ଗାଦୀରେ ରହିଲେ ମଧ୍ୟ ସେମାନେ ଏହା କରିପାରିବେ ନାହିଁ । ବିଦେଶ ନୀତି ବା କୂଟନୀତି ସ୍ତରରେ ଭାରତ କୌଣସି ଆନ୍ତର୍ଜାତିକ ଆଧାର ସୃଷ୍ଟି କରିନାହିଁ ।

ନେହେରୁଙ୍କ ସମୟରେ ବିଦେଶୀ ନୀତିର ଗୋଟିଏ ଲୋକପ୍ରିୟତା ଥିଲା । ସାଧାରଣ ଶିକ୍ଷିତ ଲୋକମାନେ ବିଦେଶ ନୀତିର ଚର୍ଚ୍ଚା କରୁଥିଲେ । କିନ୍ତୁ ନେହେରୁଙ୍କ ନୀତିରେ କେବଳ ଉପରେ ଖୋଳପାଟି ସୁନ୍ଦର ଥିଲା । ଭିତରେ କୂଟନୀତିର ଗଭୀରତା ନଥିଲା । ପଡ଼ୋଶୀ ଦେଶମାନଙ୍କ ସାଙ୍ଗରେ ସମ୍ପର୍କକୁ ମଜବୁତ ନକରି ସେ ଗୋରା ଦେଶମାନଙ୍କର 'କମନ୍‌ୱେଲଥ୍'କୁ ବିଦେଶ ସମ୍ପର୍କର ମୂଳଦୁଆ କରିବାକୁ ଚାହିଁଲେ ଓ ବାରମ୍ବାର ସେସବୁ ଦେଶକୁ ଗସ୍ତ କଲେ । ଏହି ସମ୍ପର୍କ ଭାରତର ଆପଦ ବିପଦରେ କେବେ କୌଣସି କାମରେ ଆସିବ ନାହିଁ । ପଡ଼ୋଶୀମାନଙ୍କୁ ଆମେ ହୀନ ଦୃଷ୍ଟିରେ ଦେଖିଲୁ । ଗୋଷ୍ଠୀ ନିରପେକ୍ଷ ମଞ୍ଚରେ ବହୁତ ସମ୍ଭାବନା ଥିଲା । କିନ୍ତୁ ଏହାର ଏକ ନିଜସ୍ୱ ନୀତି ବା ଚରିତ୍ର ବିକଶିତ ହୋଇପାରିଲା ନାହିଁ । କେତେ ଦେଶ ସୋଭିଏତ୍ ରୁଷ୍ ଓ ଅନ୍ୟ କେତେକ ଆର୍ଥିକ ସାହାଯ୍ୟ ପାଇଁ ଆମେରିକୀୟ ଗୋଷ୍ଠୀ ଉପରେ ଓ ପ୍ରତିରକ୍ଷା ପାଇଁ ସୋଭିଏତ ରୁଷ୍ ଉପରେ ଆଶ୍ରିତ ହେଲେ । ୧୯୯୦ ମସିହାରେ ସୋଭିଏତ୍ ରୁଷ୍‌ର ପତନ ପରେ ଏ ମଝିବାଲାଙ୍କର ସଙ୍ଗଠନର ଗୁରୁତ୍ୱ ରହିଲା ନାହିଁ । ଏବେ ଭାରତ ସମ୍ପୂର୍ଣ୍ଣ ଏକଲା । କୌଣସି ସଙ୍ଘ ବା ମହାସଙ୍ଘ ତା ପଛରେ ନାହିଁ । କିମ୍ବା ତାହାର ବଶ୍ୟତା ସ୍ୱୀକାର କରିବା ପାଇଁ ମଧ୍ୟ କେହି ପ୍ରସ୍ତୁତ ନୁହନ୍ତି ।

କୂଟନୀତିର ବ୍ୟାପକ ଆଧାର ନଥିଲେ ସେନା ବା ହତିଆର କୌଣସି କାମରେ ଆସିବ ନାହିଁ । ଅର୍ଥନୀତି ପ୍ରତିରକ୍ଷାର ଅଙ୍ଗ ନୁହେଁ । କିନ୍ତୁ ଏକ ସବଳ ଅର୍ଥନୀତି ହେଉଛି ଉତ୍ତମ କୂଟନୀତିର ଭିତ୍ତି । ଯେଉଁ ଦେଶ ନିଜର ଅର୍ଥନୀତିକୁ ସବଳ ଓ ଗତିଶୀଳ କରିପାରି ନାହିଁ, ଲୋକଙ୍କୁ ଖାଇବାକୁ ଯୋଗାଇପାରୁ ନାହିଁ କି ପିଲାଙ୍କୁ ପ୍ରାଥମିକ ଶିକ୍ଷା ଦେଇପାରୁ ନାହିଁ, ତାହା ସଙ୍ଗେ ସମ୍ପର୍କ ରଖିବାକୁ ଅନ୍ୟ ଦେଶମାନଙ୍କର ଉତ୍ସାହ ହେବନାହିଁ କି ସମ୍ମାନ ଜାତ ହେବନାହିଁ । ବାହ୍ୟ ଦେଶମାନଙ୍କୁ ସେ ଗୋଟିଏ 'ଶକ୍ତି' ଭାବରେ ଦେଖାଯିବ ନାହିଁ । ଚୀନ୍‌ର ଆର୍ଥିକ ବିକାଶ ବିଷୟରେ ଯେତିକି ଚର୍ଚ୍ଚା ବଢ଼ୁଛି, ଏକ ଶକ୍ତି ବା ସମ୍ଭାବିତ ମହାଶକ୍ତି ଭାବରେ ତାହାର ଛବି ବ୍ୟାପୁଛି ।

ଭାରତର ଶିକ୍ଷିତ ଶ୍ରେଣୀ କୂଟନୀତି କହିଲେ କୁଟିଳ ନୀତି ବୋଲି ବୁଝିଥାନ୍ତି । କୁଟିଳତା ସାଙ୍ଗରେ ଏହାର ବିଶେଷ ସମ୍ପର୍କ ନାହିଁ । ଆପଣା ଦେଶର ଦୀର୍ଘକାଳୀନ ସ୍ୱାର୍ଥକୁ କେନ୍ଦ୍ରରେ ରଖି ବିଶ୍ୱର ବିଭିନ୍ନ ଦେଶ ସାଙ୍ଗରେ ବିବିଧ ସ୍ତରର ସମ୍ପର୍କ ରକ୍ଷା କରି ବୁଦ୍ଧିମତ୍ତାର ସହ ଆନ୍ତର୍ଜାତିକ ଘଟଣାମାନଙ୍କରେ ହସ୍ତକ୍ଷେପ କରିବା ହେଉଛି କୂଟନୀତି ଓ ବିଦେଶ ନୀତିର ସାରକଥା । ବ୍ରିଟେନ୍‌ର କୂଟନୀତି ଇଂରେଜୀ ଭାଷା ଓ ସେକ୍ସପିୟରଙ୍କୁ ମାଧ୍ୟମ କରିଥାଏ । ଯେଉଁଠି ସେକ୍ସପିୟର୍ ଆଦୃତ ହେଉଛନ୍ତି ଓ ଇଂରାଜୀ ଭାଷାର ପ୍ରଚଳନ ଅଛି ସେଇଠି ବ୍ରିଟେନ୍ ତାହାର ପ୍ରଭାବ ବିସ୍ତାର କରିବାକୁ ଯୋଜନା କରେ । ଭାରତରେ ଇଂରାଜୀ ଭାଷାକୁ ବ୍ୟାପକ ଓ ଦୃଢ଼ କରିବା ଭାରତରେ ବ୍ରିଟିଶ୍ ନୀତିର ଏକ ଅପରିହାର୍ଯ୍ୟ ଅଙ୍ଗ । ଏହିପରି ଯେଉଁଠି ପେପ୍‌ସି କୋଲା ଓ ଜିନ୍‌ପ୍ୟାଣ୍ଟ୍‌ର ଆଦର ଅଛି, ସେଠି ଆମେରିକା ତାହାର ପ୍ରଭାବ ବିସ୍ତାର କରିପାରିବ ବୋଲି ସ୍ଥିର

କରେ । ଯେଉଁଠି ମଙ୍ଗୋଲୀୟ ଚେହେରା ଦେଖାଦିଏ ସେଇଠି ଚୀନ୍ ତାହାର ଆଧିପତ୍ୟ ଅଞ୍ଚଳ ସୃଷ୍ଟି କରିବ ବୋଲି ବିଚାର କରେ ।

ଭାରତର ଶାସକମାନେ ସାଂସ୍କୃତିକ, ଭୌଗୋଳିକ ଓ ବ୍ୟାପାରିକ ସାମଞ୍ଜସ୍ୟ ଗୁଡ଼ିକରେ କୂଟନୀତିର ବ୍ୟବହାର କରିବାକୁ କେବେ ଚେଷ୍ଟା ମଧ କରିନାହାନ୍ତି । ପାକିସ୍ତାନ୍, ବଙ୍ଗଳାଦେଶ, ନେପାଳ ଆଦି ରାଷ୍ଟ୍ରମାନଙ୍କର ଭାଷା ଓ ଭାରତୀୟ ଭାଷାର ଏତେ ସମାନତା ଥାଇ ସୁଦ୍ଧା ଆମେ ଏହି ସବୁ ଦେଶ ସାଙ୍ଗରେ ଉର୍ଦ୍ଦୁ, ବଙ୍ଗଳା ଓ ନେପାଳୀ ପ୍ରଭୃତି ଭାଷାକୁ ବ୍ୟବହାର ନକରି ଗୋଟିଏ ୟୁରୋପୀୟ ଭାଷା ମାଧମରେ ଉକ୍ତ ଦେଶମାନଙ୍କ ସଙ୍ଗେ ପତ୍ର ବିନିମୟ କରୁ । ସେମାନଙ୍କ ସହ ଚର୍ଚ୍ଚା ଓ ଆଲୋଚନା ମଧ ଇଂରାଜୀ ଭାଷାରେ କରିଥାଉ । ଏସବୁ ଦେଶର ଜନସାଧାରଣ ସଙ୍ଗେ ଭାରତୀୟ ଜନସାଧାରଣଙ୍କର ବନ୍ଧୁତା ବଢ଼ାଇବା ପାଇଁ ଯେଉଁ ସ୍ୱାଭାବିକ ଓ ସାଂସ୍କୃତିକ ବାଟଗୁଡ଼ିକ ଅଛି ସେଗୁଡ଼ିକୁ ରୁଦ୍ଧ କରି ଆମେ ବିଶ୍ୱରେ ଏକ ଶକ୍ତି ହେବାକୁ ଚେଷ୍ଟା କରୁ ।

ଭାରତର ଇସ୍‌ଲାମ୍ ଧର୍ମ ଆନ୍ତର୍ଜାତିକ ସମ୍ପର୍କ ପାଇଁ ଆଉ ଏକ ଆଧାର । ମଧ ଏସିଆ, ଦକ୍ଷିଣ ଏସିଆ ଓ ପୂର୍ବ ଏସିଆର ମୁସଲ୍‌ମାନ୍ ନେତାମାନଙ୍କ ସହ ସାଂସ୍କୃତିକ ବନ୍ଧୁତା ରକ୍ଷା କରିବାର ଏହା ଏକ ମାଧମ । ଅତୀତର ଏକ ସମୟରେ ଏହି ଧର୍ମ ଭାରତ ପାଇଁ ଆକ୍ରମଣକାରୀ ଥିଲା । କିନ୍ତୁ ଅତୀତର କୋଇଲା ଗର୍ତ୍ତ ଭବିଷ୍ୟତର ହୀରାଖଣି ମଧ ହୋଇପାରେ । ଭାରତର ଶିକ୍ଷିତମାନେ ଏପର୍ଯ୍ୟନ୍ତ ଏକ ସମ୍ୟକ୍ ଧର୍ମନୀତି ଗ୍ରହଣ କରିପାରି ନାହାନ୍ତି । ଏପରିକି ବୌଦ୍ଧଧର୍ମକୁ ମଧ ଆମେ ଏକ ସାଂସ୍କୃତିକ ସମ୍ପର୍କର ବାହକ କରି ଜାଣିନାହୁଁ । ଯୋଗ ଆଉ ତନ୍ତ୍ରର ବ୍ୟବହାର କରିଛୁ । କିନ୍ତୁ ଏସିଆ ବା ଆଫ୍ରିକା ସଙ୍ଗେ ସାଂସ୍କୃତିକ ପରିଚୟ ପାଇଁ ନୁହେଁ । ଗୋରାଦେଶର ଧନୀମାନଙ୍କର ମନୋରଞ୍ଜନ ଓ ସ୍ୱାସ୍ଥ୍ୟବର୍ଦ୍ଧନ ଉଦ୍ଦେଶ୍ୟରେ । ଧର୍ମର ସୃଜନାତ୍ମକ ଓ ବିସ୍ଫୋଟକ ଉଭୟ ତତ୍ତ୍ୱ ଅଛି । କାଶ୍ମୀର୍ ସୀମାର ଏପଟେ ଓ ସେପଟେ ଗୋଟିଏ ଧର୍ମର ଅନୁଗାମୀମାନେ ରହନ୍ତି । ସେହି ଧର୍ମ ପ୍ରତି ବିଦ୍ୱେଷ ଭାବନା ପୋଷଣ କରୁଥିବା କୌଣସି ଭାରତୀୟ ଶାସକ କାଶ୍ମୀର୍ ସମସ୍ୟାର ସ୍ଥାୟୀ ସମାଧାନ କରିପାରିବ ନାହିଁ ।

୩

ବିଶ୍ୱର ରଣସଜ୍ଜାକୁ ଦେଖନ୍ତୁ । ଖ୍ରୀଷ୍ଟାନ୍ ଧର୍ମୀୟ ଗୋରା ଜାତିମାନେ ଜନସଂଖ୍ୟାରେ ଅତି ଅଳ୍ପ ହେଲେ ମଧ ସବୁଠାରୁ ବେଶୀ ସଙ୍ଗଠିତ ଓ ପୃଥିବୀର କୋଣେ କୋଣେ ସେମାନେ ଆର୍ଥିକ ଓ ସାଂସ୍କୃତିକ ପ୍ରଭାବ ବିସ୍ତାର କରିଛନ୍ତି । ବିଜ୍ଞାନ ଓ ଟେକ୍ନୋଲୋଜିକୁ ମଧ ସେମାନେ ପ୍ରଭାବ ବିସ୍ତାରର ମାଧମ କରିଛନ୍ତି । ସବୁଠାରୁ ବେଶୀ ଅସ୍ତ୍ରଶସ୍ତ୍ର ସେମାନଙ୍କ ପାଖରେ ଗଚ୍ଛିତ ଅଛି । କିନ୍ତୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ସେମାନେ ଆଉ ଅସ୍ତ୍ରଗୁଡ଼ିକୁ ପ୍ରତ୍ୟକ୍ଷ ଯୁଦ୍ଧରେ ବେଶୀ ବ୍ୟବହାର କରୁନାହାନ୍ତି । ତାହାର ବେପାର କରୁଛନ୍ତି, ତାହାକୁ ଦେଖାଇ ଦୁର୍ବଳ ଦେଶମାନଙ୍କୁ ଭୟଭୀତ କରାଉଛନ୍ତି ଓ ଦୁର୍ବଳ ଦେଶମାନଙ୍କରେ କଳହ ଓ ଆଭ୍ୟନ୍ତରୀଣ ବିଦ୍ରୋହକୁ ବଢ଼ାଇବା ପାଇଁ ଅସ୍ତ୍ରର କୂଟନୀତି ଚଳାଉଛନ୍ତି । ବର୍ତ୍ତମାନ ସମୟରେ ସେମାନେ ଆର୍ଥିକ ସମ୍ପର୍କକୁ ବେଶୀ ପ୍ରକଟ ଭାବରେ

ବଢ଼ାଉଛନ୍ତି । ଏହାଦ୍ୱାରା ଦେଶମାନଙ୍କର ଅର୍ଥନୀତିକୁ ନିର୍ଭରଶୀଳ ଓ ପରାବଲମ୍ବୀ କରି ସେମାନଙ୍କର ଲଗାମ ନିଜ ହାତରେ ରଖୁଛନ୍ତି । ସଂସ୍କୃତିକୁ ମଧ୍ୟ ବ୍ୟାପାରିକ ଉଦ୍ଦେଶ୍ୟରେ ସଞ୍ଚାଳିତ କରୁଛନ୍ତି ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ସେମାନେ ଆଉ ନିଜ ଭିତରେ ଯୁଦ୍ଧ କରୁନାହାନ୍ତି । 'ନାଟୋ' ଓ ୟୁରୋପୀୟ ସଙ୍ଘର ନିର୍ମାଣ କରି ପ୍ରତିରକ୍ଷା ଓ ଅର୍ଥ ବ୍ୟବସ୍ଥାମାନଙ୍କୁ ଏକତାର ସୂତ୍ରରେ ବାନ୍ଧିଛନ୍ତି । ୧୯୪୫ ସମୟରେ ୟୁରୋପୀୟ ଜନତାର ମନରେ ଯୁଦ୍ଧର ଭୟ ବହୁତ ବ୍ୟାପକ ଥିଲା । ତେଣୁ ସେମାନେ ଏକ ବିଶ୍ୱବ୍ୟାପୀ ପ୍ରତିରକ୍ଷାର ଢାଞ୍ଚା ରୂପେ ଜାତିସଙ୍ଘକୁ ଗଢ଼ିବାରେ ଉତ୍ସାହ ଦେଖାଇଥିଲେ । ନାଟୋ ଓ ୟୁରୋପୀୟ ସଙ୍ଘ ଶକ୍ତିଶାଳୀ ହେବା ପରେ ଓ ସୋଭିଏତ ରୁଷ୍‌ର ପତନ ପରେ ସେମାନେ ଜାତିସଙ୍ଘ ପରି ବିଶ୍ୱସଙ୍ଘରେ ବେଶୀ ରୁଚି ଦେଖାଉ ନାହାନ୍ତି । ଏସିଆ, ଆଫ୍ରିକା ଓ ଦକ୍ଷିଣ ଆମେରିକାର ରାଷ୍ଟ୍ରମାନଙ୍କର ପ୍ରତିରକ୍ଷା ପାଇଁ ସେମାନଙ୍କର କୌଣସି ଚିନ୍ତା ନାହିଁ ।

ପୀତବର୍ଣ୍ଣ ଓ କୃଷ୍ଣବର୍ଣ୍ଣ ଲୋକଙ୍କର ଦେଶମାନେ କେହି ସଙ୍ଘବଦ୍ଧ ହୋଇପାରିନାହାନ୍ତି । ୧୯୪୦ର ଦଶନ୍ଧି ବେଳେ ଯେତେବେଳେ ଚାରିଆଡ଼େ ଉପନିବେଶମାନଙ୍କରେ ଦେଶଗୁଡ଼ିକର ମୁକ୍ତିସଂଗ୍ରାମ ଚାଲିଥିଲା, ସେତେବେଳେ ଏଇ ଦେଶମାନେ ବିଭିନ୍ନ ଆୟତନର ସଙ୍ଘ ଓ ମହାସଙ୍ଘର ନିର୍ମାଣ କରି ଚିନ୍ତା କରୁଥିଲେ – ଯଥା, ଆଫ୍ରିକାର ମହାସଙ୍ଘ, ଇସ୍‌ଲାମୀୟ ବା ଆରବୀୟ ସଙ୍ଘ, ଏସିଆର ମହାସଙ୍ଘ ଇତ୍ୟାଦି । ଗୋରା ମହାଶକ୍ତିମାନେ ତାଙ୍କର କୂଟନୀତି ବଳରେ ଏସବୁକୁ ଭଣ୍ଡୁର କରିଦେଲେ । ନୂଆ ଭାବରେ ସ୍ୱାଧୀନ ହୋଇଥିବା ଦେଶଗୁଡ଼ିକର ନେତୃମଣ୍ଡଳୀର ମନରେ ଏକ ନୂଆ ବିଶ୍ୱ ଗଢ଼ିବାର କୌଣସି କଳ୍ପନା ରହିପାରିଲା ନାହିଁ । କଳା ଓ ପୀତବର୍ଣ୍ଣ ଲୋକଙ୍କର ଦେଶମାନେ, ଇସ୍‌ଲାମୀୟ ଦେଶମାନେ ଓ ଆଫ୍ରିକୀୟ ଦେଶମାନେ ନିଜ ଭିତରେ ଯୁଦ୍ଧ ଓ କଳହରେ ଲିପ୍ତ ରହୁଛନ୍ତି ।

ଗୋରା ଶକ୍ତିମାନେ ପୀତବର୍ଣ୍ଣକୁ କଳାବର୍ଣ୍ଣ ତୁଳନାରେ ଟିକିଏ ବେଶୀ ଇଜ୍ଜତ୍ ଦେଇଥାନ୍ତି । ଏଥିପାଇଁ ନୁହେଁ ଯେ ପୀତବର୍ଣ୍ଣ ଗୋରାବର୍ଣ୍ଣ ପାଖାପାଖି । ବରଂ ଏଇଥିପାଇଁ ଯେ ସେମାନେ ଇତିହାସରେ କଳା ଲୋକଙ୍କ ପରି ଏତେ ବେଶୀ ଶାରୀରିକ ଓ ମାନସିକ ଗୋଲାମୀକୁ ସ୍ୱୀକାର କରିନଥିଲେ । ଚୀନ୍, ଜାପାନ୍, ଥାଇଲାଣ୍ଡ୍ କିମ୍ବା କୋରିଆ, ଭାରତ ଭଳି ଗୋରାମାନଙ୍କର ପ୍ରତ୍ୟକ୍ଷ ଶାସନ ତଳେ ଦୀର୍ଘ କାଳ ଧରି ରହିନାହାନ୍ତି । ପଚାଶ ବର୍ଷ ପୂର୍ବେ ଜାପାନ୍ ଏକ ମହାଶକ୍ତି ହେବାର ଯୋଜନା କରିଥିଲା । ବର୍ତ୍ତମାନ କାଳରେ ଚୀନ୍ ଏକ ଉପମହାଶକ୍ତି ହେବାର ବାଟ ଧରିଛି । ଚୀନ୍‌ର ବହୁ ପ୍ରଚାରିତ ଆର୍ଥିକ ଅଭିବୃଦ୍ଧି ଯୋଗୁଁ ତାହାର ସାମ୍ରାଜ୍ୟବାଦୀ କଳ୍ପନା ସାକାର ହୋଇପାରେ ବୋଲି ପର୍ଯ୍ୟବେକ୍ଷକମାନେ ବିଚାରୁଛନ୍ତି । ଅନ୍ୟ ଦିଗରେ ଏକଛତ୍ରବାଦୀ ରାଜନୈତିକ ବ୍ୟବସ୍ଥା ଆଉ ପୁଞ୍ଜିବାଦ ଜନିତ ବଢ଼ି ଚାଲିଥିବା ଆର୍ଥିକ ବିଷମତା ଦେଶ ଭିତରେ ନାନା ରକମର ଅନ୍ତର୍ବିରୋଧ ସୃଷ୍ଟି କରିବ, ଓ ଚୀନ୍ ଦୁର୍ବଳ ହୋଇଯାଇପାରେ ବୋଲି ମଧ୍ୟ କଳ୍ପନା ଓ ବିଶ୍ଳେଷଣ ଚାଲିଛି ।

ଇନ୍ଦିରା ଗାନ୍ଧୀ ଓ ରାଜୀବ ଗାନ୍ଧୀଙ୍କ ସମୟରୁ ଭାରତକୁ ଏକ ଉପମହାଶକ୍ତି ବା ଆଞ୍ଚଳିକ ମହାଶକ୍ତି ରୂପେ ଗଢ଼ିବାର ହାସ୍ୟାସ୍ପଦ କଳ୍ପନାଜଳ୍ପନା ଚାଲିଛି । ୧୯୮୯-୯୦ ମସିହାର ଆର୍ଥିକ ସଙ୍କଟ ତାହାର ଯବନିକା ଟାଣିଦେଲା । ଭାରତ ଏକ ମହାଶକ୍ତି ବା ଉପମହାଶକ୍ତି ହୋଇପାରିବ ନାହିଁ ଏହାର ସୂଚନା ୧୯୫୦ ମସିହାରେ ମିଳିଯାଇଥିଲା । ବ୍ରିଟିଶ୍ ସରକାର ତିବ୍ବତ୍ ଉପରେ ଚୀନ୍‌ର ଆଧିପତ୍ୟକୁ ସ୍ୱୀକାର କରିଥିଲା, କିନ୍ତୁ ତିବ୍ବତ୍ ଚୀନ୍‌ର ଏକ ଅଙ୍ଗ ନଥିଲା । ତେଣୁ ଚୀନ୍ ଭାରତର ପଡ଼ୋଶୀ ରାଷ୍ଟ୍ର ମଧ୍ୟ ନଥିଲା । ୧୯୪୭ ମସିହା ଠାରୁ ଭାରତର ଶାସକମାନେ ପଡ଼ୋଶୀମାନଙ୍କର ସଙ୍ଗେ ସୁଦୃଢ଼ ପାରସ୍ପରିକ ସମ୍ପର୍କ ସ୍ଥାପିତ କଲେ ନାହିଁ । ୧୯୪୯ ମସିହାରେ ଚୀନ୍‌ରେ କମ୍ୟୁନିଷ୍ଟ୍ ସରକାର ସ୍ଥାପିତ ହେଲା ଓ ଚୀନ୍ ବର୍ଷକ ଭିତରେ ତିବ୍ବତ୍ ଆକ୍ରମଣର ଯୋଜନା କରିନେଲା । ଭାରତର ଶାସକମାନେ ଏହାକୁ ପ୍ରତିରୋଧ କଲେନାହିଁ । ୧୯୬୨ ମସିହାରେ ଭାରତ ନିଜେ ଚୀନ୍ ଆକ୍ରମଣର ଶିକାର ହେଲା ଓ ଏପର୍ଯ୍ୟନ୍ତ ଚୀନ୍ ସାଙ୍ଗରେ ସୀମା ନିର୍ଦ୍ଧାରଣ ହୋଇପାରି ନାହିଁ । ଏତେ ସବୁ ଦୁର୍ବଳତାକୁ ବୋମାର ବିସ୍ଫୋରଣ ଲୁଚେଇ ଦେବ କିପରି ? ବାଜପେୟୀ ସରକାର ଯଦି ଚୀନ୍ ସାଙ୍ଗରେ ସୀମା ନିର୍ଦ୍ଧାରଣ ବୁଝାମଣାକୁ ଅଧବାଟ ପର୍ଯ୍ୟନ୍ତ ବି ନେଇଯାଇ ପାରିବ, ତାହାହେଲେ ଜଣାପଡ଼ିବ ଯେ ବୋମାରୁ ଆତ୍ମବିଶ୍ୱାସ ବଢ଼ିଲା ।

ଭାରତର ଶାସକଶ୍ରେଣୀ ତାହାର ଶକ୍ତି ହରାଇଛି ପ୍ରାୟ ଦେଢ଼ ହଜାର ବର୍ଷ ଆଗରୁ । ପାନିପଥ ଓ ପଲାସୀ ବାରମ୍ବାର ଘଟିଛି ଏଇ ଦେଢ଼ ହଜାର ବର୍ଷର ଇତିହାସରେ । ଆକ୍ରମଣକାରୀମାନେ ମୁଷ୍ଟିମେୟ ସଂଖ୍ୟକ ସୈନ୍ୟଦଳ ନେଇ ଆସିଛନ୍ତି । ଏହି ବିଶାଳ ଦେଶର କୌଣସି ଏକ ମଝି ଜାଗାରେ ଚାରିଆଡ଼େ ଭାରତ ଦ୍ୱାରା ପରିବେଷ୍ଟିତ ହୋଇ ଯୁଦ୍ଧ କରିଛନ୍ତି ଓ ସମଗ୍ର ଦେଶକୁ କରଗତ କରିଛନ୍ତି । କାରଣ ଭାରତରେ ରାଷ୍ଟ୍ରବାଦର ସାମାଜିକ ଓ ଆର୍ଥିକ ଆଧାର ନଥିଲା । ନା ଥିଲା ହିନ୍ଦୁ ଏକତା, ନା ଥିଲା ମୁସଲମାନ ଏକତା, ନା ଥିଲା ହିନ୍ଦୁ-ମୁସଲମାନ ଏକତା । ଭାରତର ଶାସକଶ୍ରେଣୀ ଏପରି ଏକ ସାମାଜିକ ନୀତିର ପ୍ରଚଳନ କରାଇଥିଲା ଯାହା ପ୍ରତି ଗ୍ରାମ, ପ୍ରତି ପ୍ରଦେଶକୁ ଶତଖଣ୍ଡରେ ବିଭାଜିତ କରୁଥିଲା । ସାମାଜିକ ଏକତ୍ୱର ସର୍ବଥା ଅଭାବ ଥିଲା । ସାମ୍ପ୍ରଦାୟିକ ଦ୍ୱେଷ ଓ ସାମାଜିକ ବିଭାଜନ ଯୋଗୁଁ ଭାରତରେ ରାଷ୍ଟ୍ରୀୟ ଏକତା ଅସମ୍ଭବ ଥିଲା । ସ୍ୱାଧୀନତା ଆନ୍ଦୋଳନର ନବ ଜାଗରଣ ସମୟରେ ସାମାଜିକ, ଆର୍ଥିକ ଓ ଧାର୍ମିକ, ସବୁପ୍ରକାରର ବିଭେଦକାରୀ ପ୍ରଥାଗୁଡ଼ିକ ବିରୁଦ୍ଧରେ ବିଦ୍ରୋହ ଆରମ୍ଭ ହୋଇଯାଇଥିଲା ବୋଲି ଭାରତର ରାଷ୍ଟ୍ରବାଦ ସାମ୍ରାଜ୍ୟବାଦର ମୁକାବିଲା କରିପାରିଲା । କିନ୍ତୁ ସ୍ୱାଧୀନତା ପ୍ରାପ୍ତି ପରେ ଏହି ନବଜାଗରଣ ବାଧାପ୍ରାପ୍ତ ହେଲା । ପୁଣି ଥରେ ସବୁ ପ୍ରକାରର ବିଭେଦକାରୀ ପ୍ରବୃତ୍ତି ମୁଣ୍ଡ ଟେକିଛନ୍ତି । ଜାତିପ୍ରଥା, ଧାର୍ମିକ ଦ୍ୱେଷ ଓ ଆର୍ଥିକ ବିଷମତା ରାଷ୍ଟ୍ରଶକ୍ତିକୁ ଦୁର୍ବଳ କରୁଛି ।

ପରମାଣୁ ପରୀକ୍ଷଣର କିଛିଦିନ ପରେ ଆସିଲା ୧୯୯୮-୯୯ ମସିହାର କେନ୍ଦ୍ରୀୟ ବଜେଟ୍ । ଅର୍ଥମନ୍ତ୍ରୀ ଯଶବନ୍ତ ସିହ୍ନା ତାଙ୍କ ବଜେଟ୍‌ର ମୁଖବନ୍ଧରେ କହିଲେ ଯେ ଏଗାର ମଇର ବିସ୍ଫୋରଣ ଏକ ନୂଆ ଭାରତ ଗଠନର ପ୍ରଥମ ପାହାଚ ଥିଲା ଓ ଏହି

ବଜେଟ୍ ଦ୍ୱିତୀୟ ପାହାଚ ହେବ । କିନ୍ତୁ ବଜେଟ୍‌ର ଆୟବ୍ୟୟର ଟିକସ ଓ ଅନୁଦାନର ହିସାବ ଭିତରେ କେଉଁଠି ବି ରାଷ୍ଟ୍ରର ନବନିର୍ମାଣ କଳ୍ପନା ନଥିଲା । ଗୋଟିଏ ମଧ୍ୟ ସାହସିକ ପଦକ୍ଷେପ ତା ଭିତରେ ନଥିଲା । ବିସ୍ଫୋରଣ ପରେ ଆମେରିକା ଯେଉଁ ଆର୍ଥିକ ପ୍ରତିବନ୍ଧକର ଘୋଷଣା କଲା, ତାହାର ପ୍ରତ୍ୟୁତ୍ତର ଦେବାକୁ ଯାଇ ସରକାରର ସମର୍ଥକ ଶୋଭାଯାତ୍ରାମାନଙ୍କରେ ଗୋଟିଏ ସ୍ଲୋଗାନ ଶୁଣାଯାଉଥିଲା । ସ୍ଲୋଗାନର ଅର୍ଥ ଥିଲା, 'ଅଧା ରୁଟି ପଛକେ ଖାଇବୁ କିନ୍ତୁ ପରମାଣୁ ବୋମା କରିବୁ' । ଏହା ଯଦି ସତ୍ୟ ହୋଇଥାନ୍ତା ତା'ହେଲେ ବଜେଟ୍‌ର ସ୍ୱରୂପ ଅନ୍ୟ ପ୍ରକାରର ହୋଇଥାନ୍ତା ।

ପ୍ରତିରକ୍ଷା ପାଇଁ ସଙ୍କଳ୍ପବଦ୍ଧ ଏକ ଶାସକ ଶ୍ରେଣୀ ବଜେଟ୍ ନିଅଣ୍ଟକୁ ଭରଣା କରିବା ପାଇଁ ଦାୟିତ୍ୱ ନେଇଥାନ୍ତା । ଅର୍ଥାତ୍, ଧନୀ ଓ ସ୍ୱଚ୍ଛଳ ଶ୍ରେଣୀମାନଙ୍କ ଉପରେ ପ୍ରତ୍ୟକ୍ଷ କର ଲଗାଇ ଆମେରିକାର ପ୍ରତିବନ୍ଧକ ଓ ବୋମା ନିର୍ମାଣ କାରଣରୁ ହେଉଥିବା ନିଅଣ୍ଟକୁ ପୂରା କରିଥାନ୍ତା । ପ୍ରତ୍ୟକ୍ଷ କର ବସାଇବା ପାଇଁ କିମ୍ବା ଆହ୍ୱାନ ଦେବାପାଇଁ ଅର୍ଥମନ୍ତ୍ରୀଙ୍କ ସାହସ ହେଲାନାହିଁ । ବରଂ ଆମଦାନୀ ବ୍ୟବସାୟ ଉପରେ ପ୍ରସ୍ତାବିତ ଶୁଳ୍କ ବୃଦ୍ଧିକୁ ସେ ଦେଶୀ ବିଦେଶୀ ଚାପରେ ପଡ଼ି ପ୍ରତ୍ୟାହାର କରିନେଲେ । ୧୯୯୧ ମସିହାରୁ ଲଗାତାର୍ ବଜେଟ୍‌ମାନଙ୍କରେ ଧନୀଶ୍ରେଣୀଙ୍କୁ ଓ ବ୍ୟବସାୟୀଙ୍କୁ କର ମୁକ୍ତ କରାଯାଉଛି । ଏହା ଏକ ଅଶୁଭ ଲକ୍ଷଣ । ଫଳରେ ଆମର ପ୍ରଶାସନ ବିଦେଶୀ ସାହାଯ୍ୟ ଉପରେ ନିର୍ଭରଶୀଳ ହୋଇଚାଲିଛି । କେବଳ ତାହା ନୁହେଁ, ଧନୀଶ୍ରେଣୀ ଓ ଶିଳ୍ପପତିମାନଙ୍କ ଉପରେ ପ୍ରତ୍ୟକ୍ଷ କର ନ ଲଗାଇବାର ପରମ୍ପରା ସୃଷ୍ଟି ହେଉଛି ।

ବୋମା ପରବର୍ତ୍ତୀ ସମୟରେ ରାଜଧାନୀର ସଡ଼କରେ ସରକାରୀ ଓ ଅର୍ଦ୍ଧ ସରକାରୀ କର୍ମଚାରୀମାନଙ୍କୁ ସଙ୍ଗଠିତ ହୋଇ ବିକ୍ଷୋଭ ପ୍ରଦର୍ଶନ କରିବାର ଦେଖାଗଲା । ଦେଶ ଓ ସମାଜର ହିତ ଦୃଷ୍ଟିରୁ ପରିବର୍ତ୍ତନ ଦାବୀ କରି ଏମାନଙ୍କୁ କେବେ ସଡ଼କ ଉପରେ ସଙ୍ଘବଦ୍ଧ ହେବାର ଦେଖାଯାଏ ନାହିଁ । ଭାରତୀୟ ଶିକ୍ଷିତ ଶ୍ରେଣୀର ଅଧିକାଂଶ ହେଉଛନ୍ତି ସରକାରୀ ବା ଅର୍ଦ୍ଧ ସରକାରୀ ଚାକିରିଆ । ସେଇମାନେ ଦେଶର ସଞ୍ଚାଳକ, ବୁଦ୍ଧିଦାତା ଓ ନୀତିନିର୍ମାତା । ସେମାନେ ତାଙ୍କର ଦରମା ଓ ଭତ୍ତାଗୁଡ଼ିକୁ ତିନି ଚାରି ଗୁଣ ବଢ଼ାଇବାକୁ ଚାହାନ୍ତି । ଏଥିରେ ଆପତ୍ତି କରିବା କାହିଁକି ? କେବଳ ଗୋଟିଏ ନିବେଦନ । ସେମାନେ ତାଙ୍କ ସଭା ସମିତିରେ ଆଲୋଚନା କରି ଲୋକଙ୍କୁ ଜଣାଇବା ପାଇଁ ଗୋଟିଏ ପୁସ୍ତିକା ପ୍ରକାଶିତ କରି କହନ୍ତୁ ଯେ ସବୁ ଚାକିରିଆଙ୍କ ଦରମା ବୃଦ୍ଧି ପରେ ସରକାର ଓ ସମାଜ ଉପରେ ମୋଟ୍ ଏତିକି ଟଙ୍କାର ଅତିରିକ୍ତ ଭାର ପଡ଼ିବ ଓ ଏହି ଅତିରିକ୍ତ ଖର୍ଚ୍ଚ ପାଇଁ ଅମୁକ ସ୍ରୋତରୁ ଟଙ୍କା ଆସିପାରିବ । ଆମର ପ୍ରଶ୍ନରେ ସେମାନେ ରାଗିଯାଇପାରନ୍ତି । ଆମେ ନରମ ସ୍ୱରରେ ପଚାରୁଛୁ, ଆପଣମାନେ ଏହି ହିସାବକୁ ନ ବୁଝାଇଲେ ଆଉ କିଏ ବୁଝାଇପାରିବ ? ଆପଣମାନେ ପରା ଦେଶକୁ ଚଳାଉଛନ୍ତି ? ଆପଣ ନିଜେ ଆଣିବାର ବାଟ ବାହାର କରିବେ ଓ ନିଜେ ନେବେ । ଆମେ ଆପତ୍ତି କାହିଁକି କରିବୁ ? କିନ୍ତୁ ବାଟଟା ବତାଇ ଦିଅନ୍ତୁ ।

ସମଗ୍ର ଦେଶବାସୀ ମନେ ରଖନ୍ତୁ ଯେ ରାଷ୍ଟ୍ରପତି, ମନ୍ତ୍ରୀ, ବିଚାରପତି, ଏମ୍.ପି., ବିଧାନସଭା ସଦସ୍ୟଙ୍କ ଠାରୁ ଆରମ୍ଭ କରି ସବୁ ପ୍ରକାରର ସରକାରୀ କର୍ମଚାରୀ ଏହି

ବୋମା ପରୀକ୍ଷଣ ବର୍ଷରେ ଯେତିକି ଦରମା ବଢ଼ାଇବାକୁ ଚାହୁଁଛନ୍ତି ତାହାର ବୋଝ କଦାପି ଆମର ଅର୍ଥ ବ୍ୟବସ୍ଥା ସହିପାରିବ ନାହିଁ । ପ୍ରଥମ କେତେ ବର୍ଷ ସରକାରୀ କଳକାରଖାନାକୁ ବିକ୍ରି କରି ଏହି ଖର୍ଚ୍ଚ ତୁଲାଇବାକୁ ହେବ । ଚାରି-ପାଞ୍ଚ ବର୍ଷ ପରେ ନିଶ୍ଚୟ ଏକ ସଙ୍କଟ ଦେଖାଯିବ । ପ୍ରଥମେ କେନ୍ଦ୍ରର ସରକାରୀ କର୍ମଚାରୀଙ୍କ ଦରମା ବଢ଼ିଲା । ଏବେ ଏମ୍.ପି., ବିଧାନସଭା ସଦସ୍ୟଙ୍କର, ରାଜ୍ୟ କର୍ମଚାରୀ ଓ ଅର୍ଦ୍ଧସରକାରୀ ଲୋକଙ୍କର ଦରମା ବଢ଼ିବାକୁ ଯାଉଛି । ଦେଶର ସୁରକ୍ଷା ଓ ପ୍ରତିରକ୍ଷା ପାଇଁ ଚିନ୍ତିତ ଶାସକ ଓ ଶିକ୍ଷିତଶ୍ରେଣୀ ଗାଡ଼ି, ମୋଟର, କମ୍ପ୍ୟୁଟର ଓ ମୋବାଇଲ୍ ଫୋନ୍ କିଣିବା ପାଇଁ ରାଷ୍ଟ୍ରକୁ ତଳିତଳାନ୍ତ କରିବାକୁ ଯାଉଛନ୍ତି ।

ଭାରତର ଲୋକେ ଧରିନେବା ଉଚିତ ଯେ ସେମାନେ ଏକ ଅତି ଦୁର୍ବଳ ରାଷ୍ଟ୍ର ହୋଇ ପଡ଼ିଛନ୍ତି । ପାକିସ୍ତାନ୍ ସଙ୍ଗେ ବିବାଦର ପଚାଶ ବର୍ଷ ପରେ ଓ ଚୀନ୍ ଆକ୍ରମଣର ପଇଁତିରିଶ ବର୍ଷ ପରେ ଆଉ ବାହାସ୍ଫୋଟ ମାରିବା ଦରକାର ନାହିଁ । ଆମେ ଯୁଦ୍ଧ ଦ୍ୱାରା କିମ୍ବା ନିଜର ସର୍ତ୍ତ ଉପରେ ଏ ସମସ୍ୟାଗୁଡ଼ିକର ସମାଧାନ କରିପାରିବା ନାହିଁ । ଅଥଚ ଏ ସମସ୍ୟାର ତତ୍କାଳ ସମାଧାନ ନହେଲେ ପରିସ୍ଥିତି ଅଧିକ ଜଟିଳ ହେବ ଓ ମହାଶକ୍ତି ଓ ଉପମହାଶକ୍ତିମାନେ ତାଙ୍କ ସର୍ତ୍ତ ଅନୁସାରେ ସନ୍ଧି କରିବା ପାଇଁ ଆମକୁ ବାଧ କରିବେ । ତେଣୁ ତୃତୀୟ ପକ୍ଷଟିଏ ଖୋଜିବାକୁ ପଡ଼ିପାରେ । ଅବଶ୍ୟ ସ୍ୱାଧୀନମନା ତୃତୀୟପକ୍ଷ ପାଇବା ଅତି କଠିନ । କିନ୍ତୁ ଏହି ସ୍ଥିତିରେ ଯିଏ ଅଧିକ ନିରପେକ୍ଷ ସେଭଳି ଏକ ମଧ୍ୟସ୍ଥ ଖୋଜିବାକୁ ପଡ଼ିବ । ସମାଧାନ ସିଧାସଳଖ ଓ ସ୍ଥାୟୀ ହେବା ଦରକାର । ତାହାହେଲେ କେତେକ ଭାବରେ କ୍ଷତି ସହି ମଧ୍ୟ ତୃତୀୟ ପକ୍ଷର ନିଷ୍ପତ୍ତିକୁ ଗ୍ରହଣ କରାଯାଇପାରେ । ଗୋଟିଏ ବହୁତ ବଡ଼ ବୋଝ ଆମ କାନ୍ଧରୁ ଚାଲିଯିବ ।

ଏହା କେତେବେଳେ ହୋଇପାରିବ ? ଯେତେବେଳେ ଆମେ ପ୍ରକୃତରେ ରାଷ୍ଟ୍ରର ଦୀର୍ଘକାଳୀନ ଉଦ୍ଦେଶ୍ୟକୁ ନିଷ୍ଠାର ସହିତ ଗ୍ରହଣ କରିବା ଓ ଆମର ଅର୍ଥନୀତି, ସମାଜନୀତି ତଥା ବିଶ୍ୱନୀତିକୁ ନୂଆ ଢାଞ୍ଚାରେ ପକାଇବାକୁ ଏକମନ ହେବା, ସେତେବେଳେ କିଛି କ୍ଷତି ସହିଯିବାର ସାହସ ମଧ୍ୟ ଜାତ ହେବ । ଏହାପରେ ପାକିସ୍ତାନ୍, ବଙ୍ଗଳାଦେଶ, ଶ୍ରୀଲଙ୍କା ଓ ନେପାଳ ଇତ୍ୟାଦି ପଡ଼ୋଶୀ ଦେଶମାନଙ୍କୁ ନେଇ ଏକ ଆଞ୍ଚଳିକ ମହାସଙ୍ଘ ଗଠନ ହିଁ ଆମର ଭବିଷ୍ୟତ ପ୍ରତିରକ୍ଷାର ମୁଖ୍ୟ କୌଶଳ ହେବ ।

ରାଷ୍ଟ୍ରବାଦର ମଧ୍ୟ ସୀମା ଅଛି । ଅନ୍ୟ ଦେଶମାନଙ୍କର ଓ ମାନବ ସମାଜର ସ୍ୱାର୍ଥ ସାଙ୍ଗରେ ଖାପଖୁଆଇ ରାଷ୍ଟ୍ରବାଦର ବ୍ୟାଖ୍ୟା ଦରକାର ହେଉଛି । କେତେକ ବୌଦ୍ଧିକ ମହଲରେ ଜାତୀୟ ରାଷ୍ଟ୍ର (ନେସନ୍ ଷ୍ଟେଟ୍) ଓ ରାଷ୍ଟ୍ରର ସାର୍ବଭୌମ କ୍ଷମତା ଆଦି ଅବଧାରଣାକୁ ତ୍ୟାଗ କରିବା ପାଇଁ ଆଲୋଚନା ହେଉଛି । କେତେକ ଆଲୋଚନା କେବଳ ଫେଶନ ସ୍ତରରେ ହେଉଛି । କିନ୍ତୁ କେତେକ ଆଲୋଚନାରେ ଗାମ୍ଭୀର୍ଯ୍ୟ ମଧ୍ୟ ଅଛି । ମହାଶକ୍ତିମାନ ଓ ତାଙ୍କର ଆର୍ଥିକ ସାମ୍ରାଜ୍ୟବାଦ ଥିବା ପର୍ଯ୍ୟନ୍ତ ରାଷ୍ଟ୍ର ଓ ରାଷ୍ଟ୍ରବାଦ ଉଭୟର ଗୁରୁତ୍ୱ ରହିଛି । କିନ୍ତୁ ଏଗୁଡ଼ିକୁ ଯୁଗୋପଯୋଗୀ କରିବା ପାଇଁ କେତେକ ସଂଶୋଧନ ଦରକାର । ରାଷ୍ଟ୍ରବାଦକୁ ସୀମିତ କରିବା ତିନୋଟି ଦିଗରୁ ଆରମ୍ଭ କରାଯାଇପାରେ:

କ) କେଉଁ ପଡ଼ୋଶୀ ଦେଶମାନଙ୍କ ମଧ୍ୟରେ ଦୀର୍ଘକାଳରୁ ସୀମା ଓ ଅଞ୍ଚଳ ବାବଦରେ ସଂଘର୍ଷ ଲାଗିରହିଛି, ସେମାନେ ତୃତୀୟ ପକ୍ଷକୁ ମଧ୍ୟସ୍ଥ କରି ଶୀଘ୍ର ସମାଧାନର ମାର୍ଗ ପ୍ରଶସ୍ତ କରନ୍ତୁ ।

ଖ) ଏସିଆ, ଆଫ୍ରିକା ଓ ଦକ୍ଷିଣ ଆମେରିକାର ଦେଶମାନେ ନିଜ ନିଜ ମହାଦେଶର ନିର୍ଦ୍ଦିଷ୍ଟ ଅଞ୍ଚଳକୁ ନେଇ ମହାସଙ୍ଘମାନଙ୍କର ସ୍ଥାପନା କରନ୍ତୁ । ମହାସଙ୍ଘର ପ୍ରଥମ ଉଦ୍ଦେଶ୍ୟ ହେବ ପ୍ରତିରକ୍ଷା । ତାହାହେଲେ ଆର୍ଥିକ ଓ ରାଜନୈତିକ ସମନ୍ୱୟର ପ୍ରଶ୍ନ ଆପେ ଆପେ ଉଠିବ । 'ସାର୍କ୍' ଦେଶମାନଙ୍କର ସଙ୍ଘ ଆଗେଇ ପାରୁନି, କାରଣ ପ୍ରତିରକ୍ଷା ସେମାନଙ୍କର ମୁଖ୍ୟ ବିଷୟ ନୁହେଁ ।

ଗ) ଯଦି ପ୍ରତିରକ୍ଷା ମହାସଙ୍ଘ ହେବ, ତାହାହେଲେ କେତେକ ଦେଶ ରାଷ୍ଟ୍ରୀୟ ସେନାକୁ ପୁରାପୁରି ତ୍ୟାଗ କରିପାରନ୍ତି । ତାଛଡ଼ା କେତେ ପ୍ରକାରର ଅସ୍ତ୍ରକୁ ଯଦି ମାନବ ସମାଜର ଧ୍ୱଂସକାରୀ ବୋଲି ପରିଗଣିତ କରାଯାଏ, ସେହି ଅସ୍ତ୍ରକୁ ଏକତରଫା ତ୍ୟାଗ କରିବାର ଘୋଷଣା ମଧ୍ୟ କେତେକ ଦେଶ ଓ ସେମାନଙ୍କର ସଙ୍ଘ କରିବା ଉଚିତ୍ ହେବ । ପରମାଣୁ ବୋମାକୁ ଏକ ନିଷିଦ୍ଧ ଅସ୍ତ୍ରରୂପେ ଚିହ୍ନିତ କରାଯିବା ସର୍ବପ୍ରଥମେ ଦରକାର ।

ଏସବୁ ସୂତ୍ର ସାଙ୍ଗେ ସାଙ୍ଗେ କାର୍ଯ୍ୟକାରୀ ହୋଇଯିବ ନାହିଁ । ବିଭିନ୍ନ ଦେଶର ରାଜନୈତିକ ଓ ବୌଦ୍ଧିକ ଗୋଷ୍ଠୀମାନେ ଯଦି ଆଜିଠାରୁ ନିରବଚ୍ଛିନ୍ନ ଭାବରେ ପ୍ରଚାର, ଆଲୋଚନା ଓ ଅଭିଯାନ ଚଳାଇବେ ତାହାହେଲେ ଏକବିଂଶ ଶତାବ୍ଦୀରେ ଏହାର ସୁଫଳ ମିଳିବ ।

# ଏକବିଂଶ ଶତାବ୍ଦୀରେ ଗଣତନ୍ତ୍ରର ଭବିଷ୍ୟତ

ବିଂଶ ଶତାବ୍ଦୀର ଅନ୍ତିମ ଓ ଏକବିଂଶ ଶତାବ୍ଦୀର ପ୍ରାରମ୍ଭିକ କାଳ ଗଣତନ୍ତ୍ରର ବିଚାର ଓ ଗଣତାନ୍ତ୍ରିକ ବ୍ୟବସ୍ଥା ପାଇଁ ଏକ ଅବକ୍ଷୟର ସମୟ । ବିଗତ ତିରିଶି ଓ ଚାଳିଶି ଦଶନ୍ଧିରେ ୟୁରୋପୀୟ ଗଣତନ୍ତ୍ରର ଯେଉଁ କ୍ଷୟ ଘଟିଥିଲା ତାହାଠାରୁ ଏହା ଭିନ୍ନ । ଉଭୟ ମଧ୍ୟରେ ଗୁଣାତ୍ମକ ଫରକ୍ ରହିଛି । ସେତେବେଳେ ୟୁରୋପ୍‌ର ଉଦାରବାଦୀ ଓ ପ୍ରଗତିଶୀଳ ମସ୍ତିଷ୍କକୁ ଫାସିବାଦର ଆକ୍ରମଣ ଯୋଗୁଁ ଗୋଟିଏ ବଡ଼ ଆଘାତ ଲାଗିଥିଲା । କିନ୍ତୁ ସେଥିରେ ୟୁରୋପୀୟ ମାନସ ଭୟଭୀତ କିମ୍ବା ନିଶ୍ଚଳ ହୋଇଯାଇ ନଥିଲା; ବରଂ ଗଣତନ୍ତ୍ରକୁ ଯୁଦ୍ଧରେ ବିଜୟୀ କରିବା ପାଇଁ ଓ ଯୁଦ୍ଧ ପରେ ସାରା ବିଶ୍ୱରେ ପ୍ରସାରିତ କରିବା ପାଇଁ ଇଚ୍ଛା ଶକ୍ତି ଜାଗ୍ରତ ହୋଇଥିଲା ।

ଫାସିବାଦ ଓ ନାଜିବାଦର ଆକ୍ରମଣ କେବଳ କ୍ଷମତା ରାଜନୀତିର ସ୍ତରରେ ହୋଇ ନଥିଲା, ଗଣତନ୍ତ୍ରର ବିଚାର ଓ ଦର୍ଶନ ଉପରେ ଏହା ଏକ ବୌଦ୍ଧିକ ଆକ୍ରମଣ ମଧ୍ୟ ଥିଲା । ସାମ୍ୟବାଦ (କମ୍ୟୁନିଜିମ୍) ଗଣତନ୍ତ୍ରର ପ୍ରତ୍ୟକ୍ଷ ବିରୋଧ କରୁନଥିଲା; ବରଂ କମ୍ୟୁନିଷ୍ଟ୍‌ମାନେ କହୁଥିଲେ ଯେ ସାମ୍ୟବାଦୀ ସମାଜରେ ହିଁ ପ୍ରକୃତ ଗଣତନ୍ତ୍ର ମିଳିପାରିବ । ଅଥଚ ଷ୍ଟାଲିନ୍‌ବାଦର ଏକଛତ୍ରବାଦୀ ରୂପ କାହାରିକୁ ଅଜଣା ନଥିଲା । ଏହି ପରିସ୍ଥିତିରେ ୟୁରୋପୀୟ ଗଣତନ୍ତ୍ରକୁ ଫାସିବାଦ ଓ ଷ୍ଟାଲିନ୍‌ବାଦ ଉଭୟର ପ୍ରତ୍ୟୁତ୍ତର ଦେବାକୁ ପଡ଼ିଥିଲା । ୟୁରୋପ୍ ଓ ଆମେରିକାର ବାହାରେ ଥିବା ଦେଶମାନେ ଦ୍ୱିତୀୟ ବିଶ୍ୱଯୁଦ୍ଧକୁ ଗଣତନ୍ତ୍ର ଓ ଏକଛତ୍ରବାଦର ଲଢ଼େଇ ଭାବରେ ଦେଖୁ ନଥିଲେ । କିନ୍ତୁ ତୃତୀୟ ବିଶ୍ୱର ଦେଶମାନଙ୍କରେ ଯେଉଁ ଜାତୀୟ ଆନ୍ଦୋଳନ ମାନ ଚାଲୁଥିଲା ସେମାନଙ୍କ ଉପରେ ଗଣତନ୍ତ୍ର ଓ ସାମ୍ୟବାଦର ବୈଚାରିକ ପ୍ରଭାବ ପଡୁଥିଲା । ଫାସିବାଦର ବୈଚାରିକ ପ୍ରଭାବ ନଥିଲା । ନେତାଜୀ ସୁବାସ୍ ଚନ୍ଦ୍ର ବୋଷ୍ ଶତ୍ରୁର ଶତ୍ରୁକୁ ବନ୍ଧୁ କରିବାର ରଣକୌଶଳ ଗ୍ରହଣ କରିଥିଲେ, କିନ୍ତୁ ତାଙ୍କର ସାମାଜିକ ଓ ରାଜନୈତିକ ବିଚାର ଫାସିବାଦୀ ନଥିଲା ।

ଫାସିବାଦ ଓ ଷ୍ଟାଲିନ୍‌ବାଦ ଉଭୟଙ୍କର ଆହ୍ୱାନର ସମ୍ମୁଖୀନ ହୋଇ ୟୁରୋପୀୟ ଗଣତନ୍ତ୍ରକୁ ନିଜର ଉତ୍କୃଷ୍ଟତା ପ୍ରମାଣ କରିବାର ଥିଲା । ଏହି ସମୟରେ (ଅର୍ଥାତ୍, ୧୯୪୦ ମସିହାରୁ ୧୯୬୦ ମସିହା ମଧ୍ୟରେ) ୟୁରୋପ୍‌ରେ ଗଣତାନ୍ତ୍ରିକ ବିଚାରଧାରା ଅଧିକ ମାର୍ଜିତ ହେଲା ଓ ତାହାର ସଂସ୍ଥାଗତ ରୂପ ମଧ୍ୟ ସୁଦୃଢ଼ ହେଲା । ଘମାଘୋଟ

ଯୁଦ୍ଧ ଚାଲିଥିବା ସମୟରେ ଯେତେବେଳେ ବ୍ରିଟେନ୍‌ର ଆକାଶ ଧ୍ୱଂସ ଓ ପରାଜୟର ଆଶଙ୍କାରେ ମେଘାଚ୍ଛନ୍ନ ଥିଲା, ସେତେବେଳେ ମଧ୍ୟ ତାହାର ପାର୍ଲିଆମେଣ୍ଟ୍ ଅବିରତ ଚାଲିଥିଲା । ଯୁଦ୍ଧର ପରବର୍ତ୍ତୀ ଅବସ୍ଥାରେ ବ୍ରିଟେନ୍ ସମେତ ଅନେକ ୟୁରୋପୀୟ ଦେଶରେ ଗଣତନ୍ତ୍ରର ଏକ ଜନକଲ୍ୟାଣକାରୀ ରୂପ ବିକଶିତ ହେଲା । ଗଣତନ୍ତ୍ର କହିଲେ କେବଳ ନାଗରିକମାନଙ୍କର ଆଇନ୍‌ଗତ ଅଧିକାରକୁ ବୁଝାଇଲା ନାହିଁ; ନାଗରିକମାନଙ୍କ ମଧ୍ୟରେ ସାମାଜିକ ସମାନତା ଆଣିବା ପାଇଁ ଲୋକ-କଲ୍ୟାଣକାରୀ ରାଜ୍ୟ (ୱେଲ୍‌ଫେୟାର୍ ଷ୍ଟେଟ୍)ର ଅବଧାରଣା ସୃଷ୍ଟି ହେଲା । ୟୁରୋପ୍‌ରେ ଯେଉଁମାନେ ନିଜକୁ ଗଣତାନ୍ତ୍ରିକ-ସମାଜବାଦୀ କିମ୍ବା ସାମାଜିକ-ଗଣତନ୍ତ୍ରବାଦୀ (ସୋସାଲ୍-ଡେମୋକ୍ରେଟ୍) ବୋଲି ଅଭିହିତ କରୁଥିଲେ ସେମାନେ ଲୋକ-କଲ୍ୟାଣକାରୀ କାର୍ଯ୍ୟକ୍ରମର ମୁଖ୍ୟ ପୁରୋଧା ଥିଲେ । ଏହି ଦଳମାନଙ୍କର ବାରମ୍ବାର ଶାସନ ଫଳରେ ୟୁରୋପ୍‌ର କେତେକ ରାଷ୍ଟ୍ରରେ, ବିଶେଷକରି ସ୍କାଣ୍ଡିନେଭୀୟ ଦେଶ, ଅର୍ଥାତ୍ ଫିନ୍‌ଲ୍ୟାଣ୍ଡ୍, ନର୍‌ୱେ, ସୁଇଡେନ୍ ଆଦି ଦେଶମାନଙ୍କରେ ଲୋକ କଲ୍ୟାଣକାରୀ ବ୍ୟବସ୍ଥାର ଚେର ଏତେ ମାଡ଼ିଯାଇଛି ଯେ ପୃଥିବୀର ସବୁଠାରୁ ବେଶୀ ସାମାଜିକ ସମାନତା ସେହିଠାରେ ଦେଖାଯାଏ ।

ୟୁରୋପ୍‌ର ଏହି ସୋସାଲ୍-ଡେମୋକ୍ରେଟିକ୍ ଦଳମାନଙ୍କର ନେତୃତ୍ୱରେ 'ସୋସାଲିଷ୍ଟ୍ ଇଣ୍ଟର୍‌ନ୍ୟାସନାଲ୍' ନାମକ ଏକ ଆନ୍ତର୍ଜାତିକ ସଙ୍ଗଠନ ଗଢ଼ା ହୋଇଥିଲା । ଭାରତରେ ଜୟପ୍ରକାଶ୍ ନାରାୟଣ୍ ଓ ରାମ୍‌ମନୋହର୍ ଲୋହିଆଙ୍କ ନେତୃତ୍ୱରେ ପରିଚାଳିତ ସେତେବେଳର ସମାଜବାଦୀ ଦଳ ୟୁରୋପ୍‌ର ଗଣତାନ୍ତ୍ରିକ ସମାଜବାଦ ଦ୍ୱାରା ଅତ୍ୟଧିକ ପ୍ରଭାବିତ ହୋଇଥିଲା ଓ ସୋସାଲିଷ୍ଟ୍ ଇଣ୍ଟର୍‌ନ୍ୟାସ୍‌ନାଲ୍‌ର ସଭ୍ୟ ମଧ୍ୟ ହୋଇଥିଲା । ଭାରତର ସମାଜବାଦୀମାନେ ବହୁଦିନ ପର୍ଯ୍ୟନ୍ତ ନର୍‌ୱେ, ସ୍ୱିଡ଼େନ୍‌ର ଲୋକ କଲ୍ୟାଣକାରୀ ବ୍ୟବସ୍ଥାକୁ ନିଜର ଆଦର୍ଶ ରୂପେ ଗ୍ରହଣ କରିଥିଲେ । ୧୯୭୦ ଦଶକରୁ ଭାରତରେ ସମାଜବାଦୀମାନେ ପୁଞ୍ଜିବାଦର ବିରୋଧ କରିବା ଛାଡ଼ିଦେଲେ । ସେତେବେଳର ନେତା ଥିଲେ ମଧୁ ଦଣ୍ଡବତେ ଓ ଜର୍ଜ୍ ଫର୍ଣ୍ଣାଣ୍ଡେଜ୍ । ବୈଚାରିକ ଦୃଷ୍ଟିରୁ ସେମାନେ ପରାବଲମ୍ବୀ ଥିଲେ । ୟୁରୋପ୍‌ର ଗଣତାନ୍ତ୍ରିକ-ସମାଜବାଦୀମାନେ ପୁଞ୍ଜିବାଦକୁ ହଟେଇବାର ଲକ୍ଷ୍ୟ ଛାଡ଼ିଦେବାରୁ ଭାରତର ସମାଜବାଦୀମାନେ ମଧ୍ୟ ସେମାନଙ୍କର ଅନୁସରଣ କଲେ । ୧୯୭୭ ମସିହାରେ ସୋସାଲିଷ୍ଟ୍ ପାର୍ଟିକୁ ଭାଙ୍ଗିଦେଇ ସେମାନେ ମୋରାର୍‌ଜୀ ଦେଶାଇଙ୍କ ନେତୃତ୍ୱରେ ଚାଲିଥିବା ଜନତା ପାର୍ଟିର ସରକାରରେ ଯୋଗଦେଲେ । ୟୁରୋପ୍‌ର ସମାଜବାଦୀମାନେ ଓ ସାମାଜିକ ଗଣତନ୍ତ୍ରବାଦୀମାନେ କାହିଁକି ପୁଞ୍ଜିବାଦର ବିରୋଧ ଛାଡ଼ିଦେଲେ ତାହାର କାରଣ ଏମାନେ ବୁଝିବାକୁ ଚାହିଁଲେ ନାହିଁ । ବୁଝିବା କଥା ହେଉଛି ଯେ, ସାମ୍ରାଜ୍ୟବାଦୀ ନୀତି ସାହାଯ୍ୟରେ ପୁଞ୍ଜିବାଦ ୟୁରୋପ୍ ଓ ଆମେରିକାକୁ ସମୃଦ୍ଧ କରିଛି । ଏତେ ବେଶୀ ସମୃଦ୍ଧ କରିଛି ଯେ ଦରିଦ୍ର ଶ୍ରେଣୀକୁ ମଧ୍ୟ ସମୃଦ୍ଧିର ଭାଗ ମିଳିଛି । ବିକାଶଶୀଳ ଦେଶମାନଙ୍କୁ ପୁଞ୍ଜିବାଦ ଦେଇଛି କେବଳ ଔପନିବେଶିକ ଦାରିଦ୍ର୍ୟ ଓ ଅନଗ୍ରସରତା ।

ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଗଣତାନ୍ତ୍ରିକବାଦୀ ଦେଶମାନେ ବିଜୟୀ ହେଲେ । ଇଟାଲୀ ଓ ଜର୍ମାନୀ ଫାସିବାଦର ଅବସାନ ପରେ ଗଣତନ୍ତ୍ରକୁ ଫେରିଆସିଲେ । ପୂର୍ବ ୟୁରୋପ୍‌ର ଦେଶମାନେ ଷ୍ଟାଲିନ୍‌ବାଦୀ ଏକଛତ୍ରବାଦ ବିରୁଦ୍ଧରେ ବିଦ୍ରୋହ କରିବା ଆରମ୍ଭ କରିଦେଲେ । ଏହାର ଶେଷ ପରିଣତି ହେଲା ସୋଭିଏତ୍ ଋଷ୍‌ର ପତନ ଓ ବିଖଣ୍ଡନ । ତେଣୁ ଦେଖିବାକୁ ଗଲେ ଗଣତନ୍ତ୍ରର ଶତ୍ରୁମାନେ ନିଶ୍ଚିହ୍ନ ହୋଇଗଲେ । ଆମେରିକା ସବୁଠାରୁ ବେଶୀ ପରାକ୍ରମୀ ଦେଶ ହେଲା । ଇତିହାସର ବିଡ଼ମ୍ବନା ଏପରି ଯେ ଗଣତନ୍ତ୍ରର ସବୁ ଶତ୍ରୁ ନିହତ ହୋଇଯିବା ପରେ ପଶ୍ଚିମର ଧନୀ ରାଷ୍ଟ୍ରମାନେ ବାକୀ ଦୁନିଆକୁ ଗଣତାନ୍ତ୍ରିକ କରିବାର ଉଦ୍ଦେଶ୍ୟକୁ ନିଜେ କୋହଳ କରିଦେଲେ । ୟୁରୋପ୍‌ର ଗଣତାନ୍ତ୍ରିକ ଦେଶମାନେ ଦ୍ୱିତୀୟ ବିଶ୍ୱର ଗଣତନ୍ତ୍ର ବିଷୟରେ ସମ୍ପୂର୍ଣ୍ଣ ଉଦାସୀନ ହେଲେ; ଏପରିକି ପୂର୍ବ ୟୁରୋପୀୟ ଦେଶମାନଙ୍କର ଗଣତନ୍ତ୍ର ବିଷୟରେ ମଧ୍ୟ ସେମାନଙ୍କର କୌଣସି ଚିନ୍ତା ରହିଲା ନାହିଁ ।

ତୃତୀୟ ବିଶ୍ୱର ଦେଶମାନଙ୍କରେ ସରକାର ଭାଙ୍ଗିବା ଗଢ଼ିବାର କାମ ଆମେରିକା ନିଜ ହାତକୁ ନେଇଛି । ତାହାର ବୋଲକରା ଏକଛତ୍ରବାଦୀ ଶାସକମାନେ ଯେତେବେଳେ ପୁରୁଣା ହୋଇ ଲୋକଙ୍କର ଅପ୍ରିୟ ହୋଇଯାଆନ୍ତି, ସେତେବେଳେ ସେମାନଙ୍କୁ ହଟାଇବା ପାଇଁ ସେଇ ଦେଶର ଜନତାନ୍ତ୍ରିକ ଆନ୍ଦୋଳନକୁ ଟଙ୍କା ପଇସା ଦେଇ ଆମେରିକା ସାହାଯ୍ୟ କରେ ଓ ତାହାର ନେତାମାନଙ୍କୁ ନିଜ ପଟିଆ କରିନିଏ । ନିକଟରେ ଇଣ୍ଡୋନେସିଆର ସୁହର୍ତୋ ସରକାରକୁ ଏହିପରି ଭାବରେ ହଟାଇ ଦିଆଗଲା । ଏହି ପ୍ରଣାଳୀରେ ଲାଟିନ୍ ଆମେରିକାର ଅନେକ ଦେଶରେ ଗଣତନ୍ତ୍ରର ପୁନଃ ପ୍ରତିଷ୍ଠା କରାଇଥିବାର ବାହାଦୂରୀ ଆମେରିକା ନେଉଛି । ଏହା ସତ୍ତ୍ୱେ ପୃଥିବୀର ଅଧିକାଂଶ ଭୂଭାଗ ଆଜି ଗଣତନ୍ତ୍ରବିହୀନ, କିମ୍ବା କୁହାଯାଇପାରେ ଯେ ଅନେକ ଦେଶ ଅଛନ୍ତି ଯେଉଁଠି ଗଣତାନ୍ତ୍ରିକ ବ୍ୟବସ୍ଥା ଆସୁଛି, ପୁଣି ଚାଲିଯାଉଛି । ବିକାଶଶୀଳ ଦେଶମାନଙ୍କ ଭିତରେ ଭାରତର ଅବସ୍ଥା ଭିନ୍ନ । ତାହାର ବିଶେଷ କାରଣ ବିଷୟରେ ଏହି ନିବନ୍ଧରେ ଅନ୍ୟତ୍ର ଆଲୋଚନା ହୋଇଛି ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ସରିବାର ଦୁଇ-ତିନି ଦଶନ୍ଧି ମଧ୍ୟରେ ଏସିଆ, ଆଫ୍ରିକା ଓ ଲାଟିନ୍ ଆମେରିକାର ଅଧିକାଂଶ ଦେଶ ରାଜନୈତିକ ଭାବରେ ସ୍ୱାଧୀନତା ପାଇଗଲେ । ଏହି ଦେଶମାନଙ୍କର ଶିକ୍ଷିତ ଶ୍ରେଣୀ ପଶ୍ଚିମର ଗଣତନ୍ତ୍ର ଓ ସମୃଦ୍ଧି ପ୍ରତି ଆକୃଷ୍ଟ ହୋଇଥିଲେ । ତେଣୁ ସ୍ୱାଧୀନତା ପାଇବା ପରେ ସେମାନେ ମଧ୍ୟ ନିଜ ନିଜ ଦେଶର ଗଣତାନ୍ତ୍ରିକକରଣ ଓ ସମୃଦ୍ଧିକରଣ ଚାହିଁଲେ । ଏପର୍ଯ୍ୟନ୍ତ ସେମାନଙ୍କର ଏହି ଚେଷ୍ଟା ବ୍ୟର୍ଥ ହୋଇଛି କହିଲେ ଚଳେ । ଆଂଶିକ ଗଣତନ୍ତ୍ର କେତେକ ରାଷ୍ଟ୍ରରେ ସ୍ଥାପିତ ହୋଇଛି; ସମୃଦ୍ଧିର ସ୍ୱପ୍ନ ମଉଳିବାକୁ ବସିଲାଣି । ୟୁରୋପ୍ ଓ  ଆମେରିକାକୁ ଯଦି ସମୃଦ୍ଧିର ମାପକାଠି ଧରାଯାଏ ତାହାହେଲେ ତାହା ହାସଲ କରିବାର ସ୍ୱପ୍ନ ଚୀନ୍ ଓ ଭାରତର ନେତୃତ୍ୱ ମନରେ ଏକଦା ଥିଲା । ଏବେ କୌଣସି ଦାୟିତ୍ୱସମ୍ପନ୍ନ ବ୍ୟକ୍ତି ସେକଥା କହୁନାହାନ୍ତି । ସେମାନେ ଏବେ ଦକ୍ଷିଣକୋରିଆ, ସିଙ୍ଗାପୁର୍ କିମ୍ବା ମାଲେସିଆକୁ ଆଦର୍ଶ ବୋଲି ଧରୁଛନ୍ତି । କିନ୍ତୁ କାହିଁକି ? ଆମେ କାହିଁକି ଦକ୍ଷିଣ କୋରିଆର ସମୃଦ୍ଧି ଚାହିଁବା, ଆମେ

କାହିଁକି ଆମେରିକାର ବା ଜର୍ମାନୀର ସମୃଦ୍ଧି ଚାହିଁବା ନାହିଁ ? ଯେଉଁ କାରଣରୁ ଆମେରିକା ବା ଜର୍ମାନୀର ସମୃଦ୍ଧି ଆମକୁ ମିଳିବାର ନାହିଁ, ହୁଏତ ପ୍ରାୟ ସେହିପରି କାରଣରୁ ଦକ୍ଷିଣ କୋରିଆର ସମୃଦ୍ଧି ମଧ୍ୟ ଆମର ହସ୍ତଗତ ହୋଇପାରିବ ନାହିଁ । ଦକ୍ଷିଣ କୋରିଆ ଥିଲା ଏସୀୟ ବ୍ୟାଘ୍ରମାନଙ୍କ ମଧ୍ୟରୁ ଜଣେ । ଏସୀୟ ଆର୍ଥିକ ସଙ୍କଟ ପରେ ଏସିଆର ବ୍ୟାଘ୍ରମାନେ ଆଉ ହୁଙ୍କାର ଦେଉନାହାନ୍ତି କାହିଁକି ?

ପଶ୍ଚିମର ସମୃଦ୍ଧି ପାଇଁ ଲାଳାୟିତ ହୋଇ ଆମେ ପଶ୍ଚିମୀ ବିଚାର ଦର୍ଶନକୁ ମଧ୍ୟ ଗ୍ରହଣ କରୁଛୁ । ଉଦାରବାଦ ଓ ମାର୍କ୍ସବାଦ ଉଭୟ ହେଉଛି ଆଧୁନିକ ପଶ୍ଚିମର ବିଚାର ଦର୍ଶନ । ସେମାନେ ପରସ୍ପର ବିରୋଧୀ ହେଲେ ମଧ୍ୟ କେତେକ ମୁଖ୍ୟ ବିନ୍ଦୁରେ ସେମାନଙ୍କର ମତୈକ୍ୟ ରହିଛି । ଉଭୟଙ୍କ ମତରେ ମନୁଷ୍ୟ ସମାଜ ପାହାଚ ପାହାଚ ଚଢ଼ି ଚଢ଼ିକା ନିରବଚ୍ଛିନ୍ନ ଭାବରେ ଅଧିକ ସମୃଦ୍ଧି ଓ ଅଧିକ ବିକାଶ ଆଡ଼କୁ ଗତି କରିଚାଲିଛି । ତାହା ଯଦି ସତ ଓ ଗଣତନ୍ତ୍ର ଓ ସମୃଦ୍ଧି ଯଦି ବିକାଶର ଅନିର୍ବାର୍ଯ୍ୟ ଅଙ୍ଗ, ତାହାହେଲେ ଅଧିକାଂଶ ପୃଥିବୀ କାହିଁକି ଅଗଣତାନ୍ତ୍ରିକ ଓ ଅସମୃଦ୍ଧ ହୋଇରହିଛି ? ପଶ୍ଚିମ ଓ ପୂର୍ବ ତଥା ଉତ୍ତର  ଓ ଦକ୍ଷିଣ ମଧ୍ୟରେ ଆର୍ଥିକ ବୈଷମ୍ୟ ବଢ଼ିଚାଲିଛି । ଅଧା ମନୁଷ୍ୟ ଦରିଦ୍ର, ଅସହାୟ ଓ ଅସୁସ୍ଥ ଅନୁଭବ କରୁଛନ୍ତି । ଏକ ତୃତୀୟାଂଶ ମନୁଷ୍ୟ କାଙ୍ଗାଳ ଅବସ୍ଥାରେ ରହିଛନ୍ତି । ମାନବ ସମାଜର ପ୍ରଗତି ନିଶ୍ଚୟ ହେଉନାହିଁ । କିମ୍ୱା ପଶ୍ଚିମ ୟୁରୋପ୍ ଓ ଉତ୍ତର ଆମେରିକାକୁ ହିଁ ମାନବ ସମାଜ ବୋଲି ଧରି ସମାଜ ଓ ଇତିହାସର ନିୟମମାନ ତିଆରି ହୋଇଛି । ବିଶ୍ୱର ସମଗ୍ର ମାନବଜାତିକୁ ଯଦି ମାନବ ସମାଜ ବୋଲି ଧରାଯାଏ ଓ ମାନବକୁ ଏକ ପ୍ରଜାତି ଭାବରେ ନିଆଯାଏ, ତା ହେଲେ ପାଶ୍ଚାତ୍ୟ ବିଚାର ଦର୍ଶନର ଏହି ସରଳ ରୈଖିକ ନିରବଚ୍ଛିନ୍ନ ପ୍ରଗତିର ଅବଧାରଣା ସମ୍ପୂର୍ଣ୍ଣ ଭୁଲ୍ ଅଟେ । ସମୃଦ୍ଧି, ବିକାଶ, ପତନ ଓ ଉତ୍ଥାନର ନୂଆ ସମାଜଶାସ୍ତ୍ରୀୟ ବିଚାର ଓ ଦର୍ଶନ ଦରକାର ହେଉଛି । ତାହା ବିନା ଆମେ ପୃଥିବୀର ବର୍ତ୍ତମାନ ତଥା ଭବିଷ୍ୟତକୁ ବୁଝିପାରିବା ନାହିଁ ।

ଏହାକୁ ଅସ୍ୱୀକାର କରିହେବ ନାହିଁ ଯେ ଆଧୁନିକ ଗଣତନ୍ତ୍ରର ଆରମ୍ଭ ୟୁରୋପ୍‌ର ବ୍ରିଟେନ୍‌ରେ ହୋଇଥିଲା । ସେମାନେ ପ୍ରାଚୀନ ଗ୍ରୀକ୍ ସଭ୍ୟତାରୁ ଏହାର ପ୍ରେରଣା ପାଇଥିଲେ । ପ୍ରାଚୀନ ଭାରତରେ ରାଜତନ୍ତ୍ରକୁ ମର୍ଯ୍ୟାଦିତ ବା ଅନୁଶାସିତ କରିବା ପାଇଁ ସମୟ ସମୟରେ ଚେଷ୍ଟା ହେଉଥିଲା, ଧର୍ମାନୁମୋଦିତ ସାମାଜିକ ସଙ୍ଘମାନଙ୍କର ନିଜସ୍ୱ ଅଧିକାର ଥିଲା । ଗଣରାଜ୍ୟମାନଙ୍କରେ କୌଣସି ରାଜବଂଶର ରାଜତ୍ୱ ଚଳୁନଥିଲା । କେତେକ ପ୍ରକାରର ନିର୍ବାଚନ ମଧ୍ୟ ପ୍ରଚଳିତ ଥିଲା । କିନ୍ତୁ ସବୁ ସାବାଳକ ନାଗରିକମାନଙ୍କର ମତଦାନର ଅଧିକାର, ବ୍ୟକ୍ତି ସ୍ୱାତନ୍ତ୍ର୍ୟର ଅଧିକାର ଓ ଶାସକମାନଙ୍କର କାର୍ଯ୍ୟକଳାପକୁ ନିୟନ୍ତ୍ରିତ କରିବା ପାଇଁ ସଂସଦ ଓ ନ୍ୟାୟପାଳିକାର ଅଧିକାରଗୁଡ଼ିକ କୌଣସି ପ୍ରାଚୀନ ସଭ୍ୟତାରେ ପ୍ରଚଳିତ ଥିଲା ବୋଲି ଜଣାପଡ଼େ ନାହିଁ । ଏହି ଅର୍ଥରେ ଗଣତନ୍ତ୍ର ହେଉଛି ଆଧୁନିକ ୟୁରୋପୀୟ ସଭ୍ୟତାର ଏକ ଅବଦାନ ।

ସାବାଳକ ମତଦାନ ଅଧିକାର, ବ୍ୟକ୍ତି ସ୍ୱାତନ୍ତ୍ର୍ୟ ଓ ବିଭିନ୍ନ ସଂସ୍ଥା ଦ୍ୱାରା ଶାସକମାନଙ୍କୁ ନିୟନ୍ତ୍ରଣରେ ରଖିବା – ଏହି ତିନୋଟିଯାକ ଗୁଣ ଗଣତନ୍ତ୍ରର ବିଭିନ୍ନ ଢାଞ୍ଚା ବା ପ୍ରଣାଳୀ ।

କିନ୍ତୁ ରାଜନୀତି ଶାସ୍ତ୍ରର ବିଦ୍ୟାର୍ଥୀମାନେ ଜାଣନ୍ତି ଯେ ବ୍ରିଟେନ୍, ଜର୍ମାନୀ ଓ ଆମେରିକାର ଗଣତାନ୍ତ୍ରିକ ବ୍ୟବସ୍ଥା ପରସ୍ପରଠାରୁ ଭିନ୍ନ । ଅତଏବ ବିକାଶଶୀଳ ବା ନବସ୍ୱାଧୀନ ଦେଶମାନଙ୍କରେ ଏହାର ରୂପ ପାଶ୍ଚାତ୍ୟ ଦେଶମାନଙ୍କଠାରୁ ବିଲ୍‌କୁଲ୍ ଭିନ୍ନ ହୋଇପାରିଥାନ୍ତା । ତାହା ନ ହେବାର କାରଣ ହେଉଛି ଯେ ଔପନିବେଶିକ ଦାସତ୍ୱରୁ ମୁକ୍ତ ହୋଇଥିବା ଶିକ୍ଷିତ ଶ୍ରେଣୀମାନେ ସମ୍ପୂର୍ଣ୍ଣ ନୂଆ ଭାବରେ ଚିନ୍ତା କରିବାକୁ ଭୟ କରିଛନ୍ତି । ତେଣୁ ଗଣତନ୍ତ୍ରର ସ୍ଥାପନା କରିବାକୁ ହେଲେ ବ୍ରିଟେନ୍, ଆମେରିକା ବା ଅନ୍ୟ କୌଣସି ପାଶ୍ଚାତ୍ୟ ଦେଶର ସାମ୍ବିଧାନିକ ଢାଞ୍ଚାରୁ କିଛି କିଛି ସଂଗ୍ରହ କରି ନିଜର ଏକ ବ୍ୟବସ୍ଥା ଗଢ଼ି ନେବା ସହଜ ପନ୍ଥା ହୋଇଯାଇଛି । ଏହା ଫଳରେ ବିକାଶଶୀଳ ଦେଶମାନଙ୍କର ଐତିହାସିକ ପୃଷ୍ଠଭୂମି, ସାମାଜିକ ବାସ୍ତବତା ଓ ସାଂସ୍କୃତିକ ବିବିଧତା ସାଙ୍ଗରେ ଉପରୁ ଆସିଥିବା ଢାଞ୍ଚାଟି ତାଳ ଦେଇପାରୁନାହିଁ । ପରିଣାମତଃ ବହୁ ପ୍ରକାରର ବିକୃତି ଓ ଅସଙ୍ଗତି ଦେଖା ଦେଉଛି ।

ସାମ୍ପ୍ରତିକ ଭାରତରେ ଆମେ ଆମର ବୌଦ୍ଧିକ ଚର୍ଚ୍ଚାମାନଙ୍କରେ ବହୁ ଅସଙ୍ଗତିର ଦୃଷ୍ଟାନ୍ତ ଦେଇ ଆଲୋଚନା ସମାଲୋଚନା କରିଥାଉ । ଏହି ଅସଙ୍ଗତିଗୁଡ଼ିକର ଆଳ ଦେଖାଇ ଭାରତୀୟ ଜନତା ପାର୍ଟି ନେତୃତ୍ୱରେ ଚାଲିଥିବା କେନ୍ଦ୍ର ସରକାର 'ସମ୍ବିଧାନ ସମୀକ୍ଷା' ନାମକ ଏକ ଆୟୋଗ ଗଠନ କରିଛନ୍ତି । ଭାରତୀୟ ଜନତା ପାର୍ଟି ଓ ତାହାର 'ସଙ୍ଘ-ପରିବାର' ଏକ ରକ୍ଷଣଶୀଳ ହିନ୍ଦୁତ୍ୱବାଦୀ ସାମାଜିକ ବ୍ୟବସ୍ଥାର ପୁନଃପ୍ରତିଷ୍ଠା ଚାହାନ୍ତି । ଏହାର ଅନୁରୂପ ଏକ ନୂଆ ସମ୍ବିଧାନ ପ୍ରଣୟନର ସୂତ୍ରପାତ ଏହି ଆୟୋଗ ଜରିଆରେ କରାଯାଉଛି ବୋଲି ସନ୍ଦେହ କରାଯାଉଛି । ଏହି ସନ୍ଦେହର ଯଥାର୍ଥତା ଯାହା ହେଉନା କାହିଁକି, କେତେକ ଆଇନ୍-ବିଶେଷଜ୍ଞଙ୍କ ଦ୍ୱାରା ସମ୍ବିଧାନର ସମୀକ୍ଷା କରାଇଦେଲେ ଭାରତୀୟ ଗଣତନ୍ତ୍ରର ଅସଙ୍ଗତି ଦୂର ହେବନାହିଁ । କାରଣ ସମ୍ବିଧାନକୁ ଏକ ଆଇନ-ବ୍ୟବସ୍ଥା ଭାବରେ ସେମାନେ ଦେଖୁଛନ୍ତି । ଆଇନ୍ ବ୍ୟବସ୍ଥାର ମୂଳଦୁଆ ହେଉଛି ନ୍ୟାୟର ଅବଧାରଣା । କେଉଁ ନ୍ୟାୟ ? ଗଣତାନ୍ତ୍ରିକ ନ୍ୟାୟର ଅବଧାରଣା ନିଶ୍ଚିତ ଭାବରେ ରାଜତନ୍ତ୍ରୀୟ ନ୍ୟାୟ କିମ୍ବା 'ମନୁ ସଂହିତା'ର (ମନୁବାଦୀ) ନ୍ୟାୟଠାରୁ ଭିନ୍ନ ।

ଆଧୁନିକ ମାନସ, ତାହା ଯେଉଁ ଦେଶର ହେଉ ନା କାହିଁକି, ଗଣତାନ୍ତ୍ରିକ ନ୍ୟାୟର ଆକାଂକ୍ଷୀ । ମନେ ରଖିବାକୁ ହେବ ଯେ ଆଧୁନିକ ଓ ପାଶ୍ଚାତ୍ୟ ମଧ୍ୟରେ ଫରକ ଅଛି । ପାଶ୍ଚାତ୍ୟ କହିଲେ ୟୁରୋପ ଓ ଉତ୍ତର ଆମେରିକାର ଇତିହାସରୁ ବିକଶିତ ହୋଇଥିବା ସାଂସ୍କୃତିକ ଦୃଷ୍ଟିକୋଣ; ଆଧୁନିକ କହିଲେ ମାନବ ଜାତି ଓ ବିଭିନ୍ନ ସଂସ୍କୃତି ମଧ୍ୟରେ ଚାଲିଥିବା ସଙ୍ଘାତରୁ ଉପୁଜିଥିବା ଏକ ବିଶ୍ୱମାନବୀୟ ଦୃଷ୍ଟିକୋଣ । ଏହାକୁ ବିଭିନ୍ନ ଭୂଭାଗର ସଂସ୍କୃତିସବୁ ନିଜ ନିଜ ଦୃଷ୍ଟିକୋଣ ସାଙ୍ଗରେ ମିଶାଇ ପରିଭାଷିତ କରିବେ । ରାଜନୈତିକ ଭାବରେ ମୁକ୍ତିଲାଭ କରିଥିବା ଔପନିବେଶିକ ଶିକ୍ଷିତ ଶ୍ରେଣୀମାନେ ନିଜ ନିଜ ଅଞ୍ଚଳର ପୃଷ୍ଠଭୂମିରେ ଚେର ମଡ଼ାଇ ନିଜସ୍ୱ ଆଧୁନିକତାର ଅବତାରଣା କରିବା ପାଇଁ ସାହସ ଦେଖାଇ ନାହାନ୍ତି । ସେହି କାରଣରୁ ଏବେ ମଧ୍ୟ ଆଧୁନିକ କହିଲେ ପାଶ୍ଚାତ୍ୟ ହିଁ ବୁଝାଉଛି । ଏହାର ଊର୍ଦ୍ଧ୍ୱକୁ ଉଠିବାକୁ

ହେବ । ଆଧୁନିକତା ଓ ଗଣତନ୍ତ୍ରର ଅବଧାରଣାକୁ ଦେଶଜ ପୁଟ ଦେଇ ପରିମାର୍ଜିତ କରିବାକୁ ହେବ । ତା ହେଲେ ଯାଇ ବିକାଶଶୀଳ ଦେଶଗୁଡ଼ିକରେ ଗଣତନ୍ତ୍ର ସମ୍ପର୍କୀୟ ଅସଙ୍ଗତିକୁ ବୁଝି ହେବ । ସେଇ ଅସଙ୍ଗତିକୁ ବୁଝିବା ପୂର୍ବରୁ ଭାରତର ଏକ ଅଦ୍ୱିତୀୟ ସ୍ଥିତି ବିଷୟରେ ଜାଣିବା ଦରକାର ।

ସମଗ୍ର ତୃତୀୟ ବିଶ୍ୱରେ, ଅର୍ଥାତ ଯେଉଁସବୁ ଦେଶ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ରାଜନୈତିକ ସ୍ୱାଧୀନତା ଲାଭ କଲେ, ସେମାନଙ୍କ ମଧ୍ୟରେ ଭାରତର ଗଣତନ୍ତ୍ର ବିଶେଷ ଭାବରେ ଉଲ୍ଲେଖଯୋଗ୍ୟ । ଏହାର ବିଶାଳ ଭୂଖଣ୍ଡ ଓ ନାନାବିଧ ଭାଷା, ଜାତି, ଧର୍ମ ଓ ସଂସ୍କୃତି ଦେଖି କେତେ ଲୋକ ଏହାକୁ ଉପମହାଦେଶ କହିଥାଆନ୍ତି, ଯାହାର କୌଣସି ଯଥାର୍ଥତା ନାହିଁ । ଏହି ତର୍କରେ ସଂଯୁକ୍ତ ରାଷ୍ଟ୍ର ଆମେରିକା ଓ ଚୀନ୍‌କୁ ଉପମହାଦେଶ କୁହାଯାଉ ନାହିଁ କାହିଁକି ? ବିଶାଳତା ଓ ବିବିଧତା ସାଙ୍ଗକୁ ସାମ୍ରାଜ୍ୟବାଦର ଅବଦାନ ସ୍ୱରୂପ ଭାରତରେ ଭରି ରହିଛି ଦାରିଦ୍ର୍ୟ, ନିରକ୍ଷରତା ଓ ଆଞ୍ଚଳିକ ବୈଷମ୍ୟ । ଏହା ସତ୍ତ୍ୱେ ପଚାଶ ବର୍ଷରୁ ଊର୍ଦ୍ଧ୍ୱ ସମୟ ଧରି ଏଠାରେ ଗଣତାନ୍ତ୍ରିକ ବ୍ୟବସ୍ଥା ଅକ୍ଷୁର୍ଣ୍ଣ ରହିଛି । ୧୯୭୫-୭୭ ର ଜରୁରୀକାଳୀନ ପରିସ୍ଥିତି ଏହାର ଚରିତ୍ରକୁ ବଦଳାଇ ପାରିଲା ନାହିଁ । ବରଂ ତାପରେ ଜରୁରୀକାଳିନ ପରିସ୍ଥିତିର ସମ୍ଭାବନାକୁ ସୀମିତ କରିଦିଆଗଲା । ଭାରତରେ ଗଣତାନ୍ତ୍ରିକ ବ୍ୟବସ୍ଥାର ଏଭଳି ସ୍ଥାୟୀତ୍ୱର କାରଣ କ'ଣ ଓ ଏହା ପ୍ରକୃତରେ କେତେ ସ୍ଥାୟୀ ?

ଏହି ସ୍ଥାୟୀତ୍ୱର କାରଣ ବ୍ରିଟିଶ୍ ପାର୍ଲିଆମେଣ୍ଟ୍‌ର ଛାଞ୍ଚରେ ଗଢ଼ା ଯାଇଥିବା ସମ୍ବିଧାନ ନୁହେଁ । ଭାରତ ସ୍ୱାଧୀନ ହେବାର ଓ ସମ୍ବିଧାନ ପ୍ରଣୟନ ହେବାର ବହୁତ ପୂର୍ବରୁ, ଭାରତର ସ୍ୱାଧୀନତା ଆନ୍ଦୋଳନ ସମୟରୁ ହିଁ ଗଣତନ୍ତ୍ରର ମୂଳଦୁଆ ପଡ଼ିସାରିଥିଲା । ୧୯୫୦ ରେ ଯେଉଁ ସମ୍ବିଧାନ ଲାଗୁ ହେଲା, ତାହା ଯେ ଗଣତାନ୍ତ୍ରିକ ହେବ ଏହା ସମସ୍ତେ ଜାଣିସାରିଥିଲେ । ତାହା କେତେ ମୌଳିକ ହେବ, କେତେ ଲୋକାଭିମୁଖୀ ହେବ ଓ ଲୋକାଧିପତ୍ୟର କେଉଁ ସଂସ୍ଥା ରହିବ, ତାହାହିଁ ସନ୍ଦେହର ବିଷୟ ଥିଲା । କାରଣ ଭାରତର ସମ୍ବିଧାନ ରଚନା ବେଳେ ତିନି ପ୍ରକାରର ଲୋକ ଥିଲେ । ଯେଉଁମାନେ ପାଶ୍ଚାତ୍ୟ ଶିକ୍ଷା ପ୍ରାପ୍ତ ହୋଇ ପେଶାଦାର ଆଇନଜ୍ଞ ହୋଇଥିଲେ, ଯେଉଁମାନେ ଗାନ୍ଧୀଙ୍କର ସ୍ୱାୟତ୍ତତା 'ଗ୍ରାମ ସ୍ୱରାଜ' ଓ ସମାନତାର ନୀତିକୁ ମାନୁଥିଲେ; ଓ ଯେଉଁମାନେ ସ୍ୱାଧୀନତା ଆନ୍ଦୋଳନରେ ଗାନ୍ଧୀଙ୍କର ଅନୁଗାମୀ ହେଲେ ମଧ୍ୟ ୟୁରୋପୀୟ ଲୋକ କଲ୍ୟାଣକାରୀ ଗଣତନ୍ତ୍ରକୁ ଆଦର୍ଶ ରୂପେ ମାନୁଥିଲେ । ସମ୍ବିଧାନ ନିର୍ମାଣରେ ଗାନ୍ଧୀଙ୍କର ନୀତିର ବଳିଷ୍ଠ ପ୍ରତିନିଧିତ୍ୱ କରିବା ପାଇଁ କେହି ନଥିଲେ ।

ଆଇନଜ୍ଞମାନେ ପ୍ରଭାବଶାଳୀ ଥିଲେ ଓ ନେହେରୁଙ୍କ ଭଳି ନେତାମାନେ ଲୋକ କଲ୍ୟାଣକାରୀ ରାଜ୍ୟରେ ବିଶ୍ୱାସ କରୁଥିଲେ ମଧ୍ୟ ସେମାନଙ୍କର କୌଣସି ମୌଳିକ ଚିନ୍ତା ନଥିବାରୁ ଆଇନଜ୍ଞମାନଙ୍କ ଉପରେ ବେଶୀ କାମ ଛାଡ଼ି ଦେଇଥିଲେ । ସେ ଯାହାହେଉ ଗଣତନ୍ତ୍ରର କୌଣସି ବିରୋଧ ନଥିଲା । କାରଣ ରାଜନୀତି ଓ ଜନସାଧାରଣ ଗଣତାନ୍ତ୍ରିକ ହୋଇସାରିଥିଲେ । ସାମ୍ରାଜ୍ୟବାଦ ବିରୋଧୀ ସଂଘର୍ଷକୁ ଅହିଂସା ନୀତିରେ ଚଳାଇବା ଦ୍ୱାରା ଭାରତର ରାଜନୀତି ସ୍ୱାଧୀନତା ଆଗରୁ ଗଣତାନ୍ତ୍ରିକ ହୋଇସାରିଥିଲା ।

ନେତାମାନଙ୍କର ନିର୍ବାଚନ, ଆନ୍ଦୋଳନର ନିଷ୍ପତ୍ତି ଓ ପରିଚାଳନା ଗଣତାନ୍ତ୍ରିକ ବିଧିରେ ହେଉଥିଲା । ସେମାନଙ୍କର ମତଭେଦ, କଳହ, ଭୁଲତ୍ରୁଟି ସବୁ କଥା ଲୋକେ ଜାଣିପାରୁଥିଲେ; ତେଣୁ ଲୋକମାନେ ନେତାମାନଙ୍କର ଓ ସଙ୍ଗଠନର ଅନେକ କଥାରେ ମତ ପ୍ରକାଶ କରୁଥିଲେ । ଅତଏବ୍ ରାଜନେତା ଓ ଜନତା ଉଭୟଙ୍କର ଜନତନ୍ତ୍ରରେ ଦୀକ୍ଷା ହୋଇସାରିଥିଲା । ଯେତେବେଳେ ଆନ୍ଦୋଳନରେ ସତ୍ୟାଗ୍ରହୀମାନେ ଜେଲ୍‌ଦଣ୍ଡ ଭୋଗୁଥିଲେ, ସେତେବେଳେ ଜଣାପଡୁଥିଲା ଯେ ଭାରତ ଗଣତାନ୍ତ୍ରିକ କିନ୍ତୁ ବ୍ରିଟେନ୍ ଅଗଣତାନ୍ତ୍ରିକ ।

ଭାରତୀୟ ସ୍ୱାଧୀନତା ଆନ୍ଦୋଳନରେ ହିଂସା ବା ଶସ୍ତ୍ରକୁ ସମ୍ପୂର୍ଣ୍ଣ ଭାବରେ ପରିତ୍ୟାଗ କରିବାରେ ଗୋଟିଏ ସୁଫଳ ହେଲା ଯେ ଏ ଦେଶରେ ସେନାବାହିନୀର କୌଣସି ରାଜନୈତିକ ଗୁରୁତ୍ୱ ରହିଲା ନାହିଁ । ଯୁଦ୍ଧ ବା ସଙ୍କଟର ସ୍ଥିତିରେ ମଧ୍ୟ ଭାରତର ସେନା ଭିତରେ ରାଜନୀତିରେ ହସ୍ତକ୍ଷେପ କରିବା ପ୍ରବୃତ୍ତି ଦେଖାଯାଏ ନାହିଁ । ରାଜନୀତିରେ ସେନାବାହିନୀର ହସ୍ତକ୍ଷେପ ବହୁଦେଶର ରାଜନୀତିକୁ କଳଙ୍କିତ କରୁଛି, ଗଣତନ୍ତ୍ରକୁ ଭାଙ୍ଗି ଦେଉଛି । ପଡ଼ୋଶୀ ଦେଶ ପାକିସ୍ତାନ୍ ଏହାର ଏକ ଦୃଷ୍ଟାନ୍ତ ।

ଗଣତନ୍ତ୍ରର ଆଉ କେତେକ ଅଭିନବ ଦିଗ ଭାରତର ରାଷ୍ଟ୍ରୀୟ ଆନ୍ଦୋଳନକୁ ଗୌରବାନ୍ୱିତ କରିଥିଲା । ସ୍ୱାଧୀନତା ଆନ୍ଦୋଳନ ବେଳୁ ହିଁ ଭାରତର ବିବିଧତାକୁ ନିଷ୍ଠାପର ଭାବରେ ସ୍ୱୀକାର କରାଯାଇଥିଲା । ଭାଷାମାନଙ୍କୁ ସ୍ୱାୟତ୍ତତା ଦେବା ପାଇଁ, ସବୁ ଧର୍ମକୁ ସମାନ ଭାବରେ ସମ୍ମାନ କରିବା ପାଇଁ, ଗ୍ରାମମାନଙ୍କର ରାଜନୈତିକ କ୍ଷମତାକୁ ସ୍ୱୀକାର କରିବା ସଙ୍ଗେ ସଙ୍ଗେ ତାହାର ସ୍ୱାବଲମ୍ବନ ଅର୍ଥନୀତିକୁ ଏକ ନୂଆ ଗତିଶୀଳତା ପ୍ରଦାନ କରିବା ପାଇଁ ଓ ସର୍ବୋପରି ଭୋଗବାଦକୁ ତ୍ୟାଗ କରି ଆର୍ଥିକ ସମାନତାର ମୂଳଦୁଆ ପକାଇବା ପାଇଁ ଲୋକେ ଅନୁଭବ କରୁଥିଲେ ଯେ ଭାରତୀୟ ଗଣତନ୍ତ୍ରର ଏସବୁ ହେଉଛି ଅପରିହାର୍ଯ୍ୟ ଅଙ୍ଗ ।

ଜବାହରଲାଲ୍ ନେହେରୁ, ସର୍ଦ୍ଦାର୍ ପଟେଲ୍ ଓ ଡା. ରାଜେନ୍ଦ୍ର ପ୍ରସାଦ୍ ପରି ନେତାମାନେ ଗାନ୍ଧୀଙ୍କ କଥାର ବିରୋଧ କରୁନଥିଲେ ହେଁ ଏସବୁ କଥାକୁ – ଭାଷାର ସ୍ୱାୟତ୍ତତା, ଗ୍ରାମର ସ୍ୱରାଜ, ଶାରୀରିକ ଶ୍ରମର ଅନିର୍ବାର୍ଯ୍ୟତା, ଭୋଗବାଦ ଓ ତଦ୍‌ଜନିତ ବିଷମତାର ବିନାଶ – ଏସବୁକୁ ଗଣତନ୍ତ୍ରର ମୌଳିକ ତତ୍ତ୍ୱ ବୋଲି ଭାବୁ ନଥିଲେ; କାରଣ ପାଶ୍ଚାତ୍ୟ ଗଣତନ୍ତ୍ରର ଅବଧାରଣାରେ ଏସବୁ ଅଙ୍ଗୀଭୂତ ନୁହନ୍ତି । ତେଣୁ ଏମାନଙ୍କ ଦ୍ୱାରା ନିର୍ମିତ ସମ୍ବିଧାନରେ ଆର୍ଥିକ ବୈଷମ୍ୟ ଓ ଭୋଗବାଦକୁ ରୋକିବା ନିମନ୍ତେ ଓ ଗ୍ରାମ ତଥା ଅଞ୍ଚଳକୁ ସ୍ୱାୟତ୍ତତା ଦେବା ନିମନ୍ତେ କୌଣସି ବ୍ୟବସ୍ଥା ନାହିଁ । ସବୁ କ୍ଷମତା କେନ୍ଦ୍ରିତ ହୋଇଛି ରାଜଧାନୀରେ; ସଙ୍ଘ ଓ ରାଜ୍ୟର ରାଜଧାନୀରେ । ସେଇ ରାଜଧାନୀ ଦ୍ୱାରା ନିଯୁକ୍ତ ଅମଲାମାନେ ଲକ୍ଷ ଲକ୍ଷ ଗ୍ରାମ ଓ ଅଞ୍ଚଳକୁ ଶାସନ କରୁଛନ୍ତି ।

ସରକାରିଆ କମିଶନ୍‌ର ସୁପାରିଶ୍ ଅନୁସାରେ ସଙ୍ଘର ଅଧିକାରକୁ କମେଇ ରାଜ୍ୟର ଅଧିକାର ବଢ଼େଇଦେଲେ ଅମଲାତନ୍ତ୍ରର ଗଣତାନ୍ତ୍ରିକ ଚରିତ୍ର ବଦଳିବ ନାହିଁ । ରାଜ୍ୟର ଶାସନ କହିଲେ ମୁଖ୍ୟ ସଚିବ, ଜିଲ୍ଲା କଲେକ୍ଟର ଓ ପୋଲିସି ସାହେବ ଏସ୍.ପି.ଙ୍କର

ଶାସନ । ସବୁ ପ୍ରକାର ଜନ ଆକାଂକ୍ଷା ଓ ସ୍ୱାୟତ୍ତତାକୁ ଦମନ କରିବା ପାଇଁ ଏହି ଅମଲାତାନ୍ତ୍ରିକ ବାହିନୀକୁ ସାମ୍ରାଜ୍ୟବାଦୀମାନେ ଗଠନ କରିଥିଲେ । ସ୍ୱାଧୀନ ଭାରତରେ ଅମଲାତନ୍ତ୍ରର କାର୍ଯ୍ୟପ୍ରଣାଳୀକୁ ଅପରିବର୍ତ୍ତିତ ରଖିବା ଫଳରେ ଏହାର ସ୍ୱଭାବ ଓ ମନୋଭାବ ପୂର୍ବପରି ଜନାକାଂକ୍ଷା ବିରୋଧୀ ହୋଇ ରହିଛି । ଏହିମାନଙ୍କର ଦମନମୂଳକ କାର୍ଯ୍ୟପ୍ରଣାଳୀ ଯୋଗୁଁ ଜନାକାଂକ୍ଷା ଓ ଆଞ୍ଚଳିକ ଆକାଂକ୍ଷାର ଆନ୍ଦୋଳନମାନଙ୍କୁ ସବୁବେଳେ ଅତ୍ୟାଚାରର ଶିକାର ହେବାକୁ ପଡୁଛି । ଅମାନବୀୟ ଦମନ ଫଳରେ ଲୋକେ ତାଙ୍କର ନୈତିକ ସାହସ ହରାଉଛନ୍ତି କିମ୍ବା ହିଂସାତ୍ମକ ହେଉଛନ୍ତି । କେତେକ ସ୍ଥଳରେ ସେମାନେ ବିଚ୍ଛିନ୍ନତାବାଦୀ ଓ ଆତଙ୍କବାଦୀର ରୂପ ନେଇ ଗଣତନ୍ତ୍ର ତଥା ରାଷ୍ଟ୍ରୀୟ ଏକତାକୁ ବିପନ୍ନ କରୁଛନ୍ତି ।

ଉପରେ ଯେଉଁ ଅତିକେନ୍ଦ୍ରୀକରଣ ବା ରାଜଧାନୀର କ୍ଷମତାର କେନ୍ଦ୍ରୀକରଣ କଥା କୁହାଗଲା, ସେଥିପାଇଁ ସ୍ୱାୟତ୍ତତାର ବିକାଶ ହୋଇପାରୁ ନାହିଁ । ତାହା କିନ୍ତୁ ଔପନିବେଶିକ ପୁଞ୍ଜିବାଦ ପାଇଁ ଦରକାରୀ । ସାମ୍ରାଜ୍ୟ-ଉପନିବେଶର ଢାଞ୍ଚା ଭିତରେ ପୁଞ୍ଜିବାଦ ସାମ୍ରାଜ୍ୟବାଦୀ ଦେଶମାନଙ୍କୁ ଅତି ସମୃଦ୍ଧ କରାଏ ଓ ଉପନିବେଶ ମାନଙ୍କୁ ଦରିଦ୍ର କରିଦିଏ । ତେଣୁ ଏ ଦେଶମାନଙ୍କରେ ଯନ୍ତ୍ରବିଦ୍ୟାର ଫଳାଫଳ ମଧ୍ୟ ଭିନ୍ନ ପ୍ରକାରର ହୁଏ । ସାମ୍ରାଜ୍ୟବାଦୀ ଦେଶମାନଙ୍କର ସବୁ ଅଞ୍ଚଳରେ, ଏପରିକି ଗ୍ରାମମାନଙ୍କରେ ମଧ୍ୟ ସମାନ ପରିମାଣରେ ପୁଞ୍ଜି ଓ ଟେକ୍‌ନୋଲୋଜିର ପ୍ରୟୋଗ ହୁଏ । ତେଣୁ ଆଞ୍ଚଳିକ ବିଷମତା ନଗଣ୍ୟ ଅବସ୍ଥାକୁ ଆସିଯାଏ । ଗ୍ରାମ ଓ ସହରର ଦୂରତା ମଧ୍ୟ କମିଯାଏ । କିନ୍ତୁ ବିକାଶଶୀଳ ଦେଶମାନଙ୍କରେ ପୁଞ୍ଜିବାଦ ଗୋଟିଏ ଦେଶର କେବଳ ଅଳ୍ପ କେତେକ ସ୍ଥାନକୁ ସମୃଦ୍ଧ କରିପାରେ । ବାକି ସବୁ ଅଞ୍ଚଳରେ ଏତେ ବେଶୀ ପୁଞ୍ଜି ଲଗାଇବା ସମ୍ଭବ ହୁଏ ନାହିଁ । ତେଣୁ ସମୃଦ୍ଧ, ଅଳ୍ପ ସମୃଦ୍ଧ, ପଛୁଆ ଓ ଅତି ପଛୁଆ ଏପରି ବିଷମତାମାନଙ୍କର ଏକ ପିରାମିଡ୍ (ଓଲଟା ବରଗଛ) ଠିଆ ହୁଏ । ତେଣୁ ପ୍ରତ୍ୟେକ ବିକାଶଶୀଳ ଦେଶର ଆଞ୍ଚଳିକ ବିଷମତା ଏକ ଅପରିହାର୍ଯ୍ୟ ଅଙ୍ଗ । କେଉଁ ଅଞ୍ଚଳକୁ ବେଶୀ ଉନ୍ନତ କରାଯିବ, କେଉଁ ଅଞ୍ଚଳକୁ ପଛୁଆ ରଖାଯିବ ତାହା କେନ୍ଦ୍ରରେ ସ୍ଥିର ହୁଏ । ତେଣୁ କେନ୍ଦ୍ର ଅଧିକ କ୍ଷମତାସମ୍ପନ୍ନ ହୋଇ ଅଞ୍ଚଳମାନଙ୍କୁ ଦୁର୍ବଳ କରିଦିଏ । ଅଞ୍ଚଳମାନେ ଛଟପଟ ହୋଇ ନିଜର ଦାବୀ ଜଣାଇଲେ ଦମନ ଚାଲେ । କଠୋର ଦମନ କରିବା ନିମନ୍ତେ ଟାଡ଼ା ଓ ମୀସା ଭଳି ଅଗଣତାନ୍ତ୍ରିକ ଆଇନ୍ ପ୍ରଣୟନ ହୁଏ । ସଶସ୍ତ୍ର ଓ ଶତ୍ରୁଦେଶ ସମର୍ଥିତ ବିଚ୍ଛିନ୍ନତାବାଦୀ ଆନ୍ଦୋଳକମାନେ ନିର୍ଭୟରେ କାମ କରନ୍ତି । ତେଣୁ ଟାଡ଼ା ଭଳି କଠୋର ଦମନକାରୀ ଆଇନ୍‌ର ସହଜ ଶିକାର ହୁଅନ୍ତି ଶାନ୍ତିପୂର୍ଣ୍ଣ ଗଣତାନ୍ତ୍ରିକ ଆନ୍ଦୋଳକମାନେ ।

ସାଧାରଣ ବୁଦ୍ଧିର ଜ୍ଞାନରୁ ଆମେ ଜାଣୁ ଯେ ସରକାରର ହିଂସାବଳ ଓ ଧନବଳ ରାଜ୍ୟ ଭିତରେ ଥିବା ଯେକୌଣସି ବ୍ୟକ୍ତି ବା ସଂସ୍ଥାର ହିଂସାବଳ ବା ଧନବଳ ଅପେକ୍ଷା ବହୁତ ବେଶୀ । ଏଥିରେ ଏକ ଭାରସାମ୍ୟ ଥାଏ ଯଦି ବ୍ୟକ୍ତି କିମ୍ବା ସଂସ୍ଥା ରାଜ୍ୟ ତୁଳନାରେ ସମକକ୍ଷ ହୋଇଯାଏ କିମ୍ବା ତାଠାରୁ ଅଧିକ ହିଂସା ଓ ଧନ ଏକତ୍ରିତ କରେ, ତାହାହେଲେ ରାଜ୍ୟର ନିର୍ଦ୍ଦେଶକୁ ନମାନି ସେ ନିଜର ଏକ ସମାନ୍ତରାଳ

ସରକାର ଗଠନ କରିବ । ତା ଉପରେ ରାଜ୍ୟର ଶାସନ ଚାଲିପାରିବ ନାହିଁ । ଔପନିବେଶିକ ପୁଞ୍ଜିବାଦ ଓ ଆର୍ଥିକ ଜଗତିକରଣ ଫଳରେ ଯେଉଁ ବଡ଼ ବଡ଼ ଦୈତ୍ୟାକାର ବହୁରାଷ୍ଟ୍ରୀୟ କମ୍ପାନୀମାନେ ଗରିବ ଦେଶମାନଙ୍କରେ ପ୍ରବେଶ କରନ୍ତି, ସେମାନଙ୍କର ଧନଶକ୍ତି ଓ ଯୁଦ୍ଧଶକ୍ତି ରାଷ୍ଟ୍ର ତୁଳନାରେ ଅଧିକ ହୋଇଯାଏ । ଏପରି ଏକ ସ୍ଥିତିରେ ଇଷ୍ଟ୍ ଇଣ୍ଡିଆ କମ୍ପାନୀ ଭାରତକୁ ଦଖଲ କରିଥିଲା । ରାଜ୍ୟମାନେ କମ୍ପାନୀକୁ ଟିକସ ଦେଉଥିଲେ । ପାଉଣା ନ ପାଇଲେ କମ୍ପାନୀ ଆକ୍ରମଣ କରୁଥିଲା । ସେତେବେଳେ ବ୍ରିଟିଶ୍ କମ୍ପାନୀ, ଫ୍ରାନ୍ସ ଓ ପର୍ତ୍ତୁଗାଲ୍‌ର କମ୍ପାନୀମାନଙ୍କୁ ବାହାର କରି ଦେଇଥିଲା ।

ଏବେ ୟୁରୋପ୍ ଓ ଆମେରିକାର ସବୁ ଦେଶ ମିଳିତ ଭାବରେ ପ୍ରବେଶ କରିଛନ୍ତି । ସେମାନେ ସ୍ଥିର କରିବେ କେଉଁଠି ସେମାନେ ପୁଞ୍ଜି ଲଗାଇବେ । ତେଣୁ ଅର୍ଥନୀତିର ନିୟମକାନୁନ୍ ସେମାନଙ୍କ ଇଚ୍ଛା ଅନୁସାରେ ହେବ । ଅବଶ୍ୟ ଆଇନ୍‌ଗୁଡ଼ିକୁ ଦେଶର ଶାସକମାନେ ତିଆରି କରିବେ । ସେମାନେ ଯଦି କରିବାକୁ ଅମଙ୍ଗ ହେବେ ତାହାହେଲେ ସେହି ଶାସକମାନଙ୍କୁ ହଟାଇ ବୋଲକରା ଶାସକମାନଙ୍କୁ ବସେଇବାକୁ ହେବ । ସେମାନେ ଦେଶ ଭିତରର ହିଂସାଗତ ଆନ୍ଦୋଳନକୁ ଧନ ଓ ଅସ୍ତ୍ରଶସ୍ତ୍ର ଦେଇ ଆହୁରି ବେଶୀ ଉଗ୍ର କରିଦିଅନ୍ତି । ଏସବୁ କାମ ପାଇଁ ସେମାନେ ପଡ଼ୋଶୀ ରାଜ୍ୟମାନଙ୍କୁ ବ୍ୟବହାର କରନ୍ତି । ଗୃହଯୁଦ୍ଧ ଓ ପଡ଼ୋଶୀଦେଶ ସହିତ ଯୁଦ୍ଧର ଭଉଁରୀରେ ପଡ଼ି ସରକାରମାନେ ଲୋକଙ୍କର ବିଶ୍ୱାସ ହରାଇ ଦିଅନ୍ତି । ଅଧିକ ଭ୍ରଷ୍ଟ ଓ ଅଧିକ ଅଗଣତାନ୍ତ୍ରିକ ହୁଅନ୍ତି । ଯେଉଁ ଢଙ୍ଗରେ ଏହା ହୁଏ ତାହା ବର୍ତ୍ତମାନର ଭାରତରେ ସମସ୍ତେ ଦେଖିପାରିବେ ।

ବହୁରାଷ୍ଟ୍ରୀୟ କମ୍ପାନୀମାନେ ବିଶ୍ୱବ୍ୟାଙ୍କ୍ ଓ ବିଶ୍ୱବାଣିଜ୍ୟ ସଙ୍ଗଠନର ଚାପ ପକାନ୍ତି ଯେ ସରକାରମାନେ ଶିଳ୍ପ ଓ ବ୍ୟବସାୟ ଉପରେ ନୂଆ କର ନ ଲଗାନ୍ତୁ । ଯଦି ପଇସା ଦରକାର, ବିଦେଶରୁ ଋଣ ନିଅନ୍ତୁ । କେବଳ କେନ୍ଦ୍ର ନୁହେଁ, ରାଜ୍ୟମାନେ ମଧ୍ୟ ବିଦେଶରୁ ଋଣ ସଙ୍ଗ୍ରହ କରନ୍ତୁ । ଋଣ ମିଳିବାର ସର୍ତ୍ତ ହେଲା ଯେ ଅର୍ଥର ବିନିଯୋଗ କିପରି ହେବ ତାହାର ପରାମର୍ଶ ସେମାନେ ଦେବେ । ଓଡ଼ିଶାର ଅଳ୍ପ ଲୋକ ଜାଣନ୍ତି, ଓଡ଼ିଶା ସରକାର ନୂଆ ଚାକିରି ସୃଷ୍ଟି ନ କରିବା ପାଇଁ ଓ ଅନେକ ପୁରୁଣା ଚାକିରି ଉଠାଇ ଦେବାପାଇଁ ଚୁକ୍ତିବଦ୍ଧ ହୋଇଛନ୍ତି । ଗତ ଫେବୃୟାରୀ ମାସରେ ଗୋଟିଏ ବ୍ରିଟିଶ୍ ସଂସ୍ଥା ସେମାନଙ୍କୁ ଯେଉଁସବୁ ନିର୍ଦ୍ଦେଶ ଦେଇଛନ୍ତି ସେଗୁଡ଼ିକ ଏହି ଚୁକ୍ତିରେ ଲିପିବଦ୍ଧ ଅଛି । ଅର୍ଥାଭାବରେ ଚାରିଆଡ଼େ ବିକାଶର କାର୍ଯ୍ୟ ବନ୍ଦ ହେଉଛି, ବେକାରୀ ଓ ଦରିଦ୍ରମାନଙ୍କ ପାଇଁ ଯେଉଁ ରିହାତି (ସବ୍‌ସିଡ଼ି) ଯୋଜନା ଥିଲା ସେ ସବୁ ଉଠିଯାଉଛି । ଅସୁରକ୍ଷାର ଏହି ବାୟୁମଣ୍ଡଳରେ ଅପରାଧ ଓ ହିଂସା ଆଉ କେବଳ ଅପରାଧ ହୋଇନାହିଁ । ତାହା ଆତଙ୍କରାଜରେ ପରିଣତ ହୋଇଛି ।

ଗୋଟିକ ପରେ ଗୋଟିଏ ରାଜ୍ୟ ଆତଙ୍କରାଜର କବଳକୁ ଆସୁଛନ୍ତି । କାଶ୍ମୀର୍ ଓ ନାଗାଲାଣ୍ଡ୍ ଠାରୁ ଆରମ୍ଭ କରି ଆଭ୍ୟନ୍ତରୀଣ ଭାରତରେ ମଧ୍ୟ କ୍ଷେତ୍ର ପ୍ରସ୍ତୁତ ହେଲାଣି । ବିହାରରେ ଅପରାଧୀମାନେ ବିଧାୟକ ଓ ମନ୍ତ୍ରୀ ହେଉଛନ୍ତି । ବିହାରର ସିୱାନ୍ ଜିଲ୍ଲାରେ ଡକେଇତ ସର୍ଦ୍ଦାର ଶାହବୁଦ୍ଦିନ୍‌ଙ୍କର ସମାନ୍ତରାଳ ସରକାର ଚାଲିଛି, ତାଙ୍କର ହୁକୁମ୍

କଲେକ୍ଟର ମାନୁଛନ୍ତି । ସତରଟି ହତ୍ୟା ମକଦ୍ଦମା ତାଙ୍କ ବିରୁଦ୍ଧରେ ଚାଲୁଥିଲେ ମଧ୍ୟ ସେ ଜେଲ୍‌ରେ ନାହାନ୍ତି । ସେ ଲାଲୁ ପ୍ରସାଦଙ୍କର ଦଳର ସାଂସଦ ହୋଇଛନ୍ତି । ହଜାରିବାଗ୍ ଓ ପାଲ୍‌ଗୁ ଜିଲ୍ଲାର ଅନେକ ନିର୍ବାଚନ ମଣ୍ଡଳୀରେ ଏମ.ସି.ସି.ର ଅନୁମତି ନ ନେଇ ଭୋଟ ଦେବା ଲୋକଙ୍କର ଆଙ୍ଗୁଳି କାଟି ଦିଆ ହେଉଛି । ବୀରପ୍ପନ ସାତ ଶହ ହାତୀଙ୍କୁ ମାରି ହାତୀଦାନ୍ତର ଅବୈଧ ବାଣିଜ୍ୟ କରିଚାଲିଛନ୍ତି । ରାଜନୀତିର ଦୁର୍ବଳ ଅବସ୍ଥା ଦେଖି, ସେ ତାଙ୍କ ହୁକୁମରେ ରାଜନୈତିକ ସମସ୍ୟାମାନଙ୍କର ସମାଧାନ କରାଉଛନ୍ତି । ଦୁଇଟି ରାଜ୍ୟର ମୁଖ୍ୟମନ୍ତ୍ରୀ ତାଙ୍କ ଉପରେ ଥିବା ମକଦ୍ଦମା ଉଠାଇ ନେବାକୁ ରାଜି ହୋଇଗଲେଣି । ଏସବୁର ଉଦାହରଣ ଦେଖି ଦେଶର ସବୁ ରାଜ୍ୟ ଓ ଜିଲ୍ଲାମାନଙ୍କରେ ହିଂସ୍ରକ ଗୋଷ୍ଠୀମାନେ ରାଜନୈତିକ ହୋଇଯିବେ । ସେହି ଅଞ୍ଚଳରେ ରାଜନୈତିକ ଦଳ ଓ ଶାସନ କାର୍ଯ୍ୟ କରିପାରିବେ ନାହିଁ, ସେଇମାନେ ହିଁ କରିବେ । ରାଜନୈତିକ ଫାସିବାଦ ଆସିବ କି ନାହିଁ ଆମେ କହିପାରୁ ନାହୁଁ । ଔପନିବେଶିକ ପୁଞ୍ଜିବାଦ ଓ ଜଗତିକରଣ ମିଶି ଆଜି ସାରା ପୃଥିବୀର, ସବୁ ମହାଦେଶର, ଗଣତାନ୍ତ୍ରିକ ତଥା ଅଗଣତାନ୍ତ୍ରିକ ଦେଶମାନଙ୍କରେ ଏହି ସାମାଜିକ ଫାସିବାଦ ଉପୁଜାଉଛନ୍ତି । ଅଧିକାଂଶ ଗୃହଯୁଦ୍ଧ ଏଥିରୁ ଉପୁଜିଛି । ଆଫ୍ରିକୀୟ ଦେଶମାନଙ୍କର ଗୃହଯୁଦ୍ଧ ଓ ପଡ଼ୋଶୀ-ପଡ଼ୋଶୀ ଯୁଦ୍ଧ ପଛରେ ରହିଛି କେଉଁଠି ହୀରାର ଖଣି, କେଉଁଠି ହାତୀ ଦାନ୍ତ, ଆଉ କେଉଁଠି ପେଟ୍ରୋଲିୟମ୍‌ର ଭଣ୍ଡାର ଓ ତାହା ଉପରେ ଲୋଲୁପ ଦୃଷ୍ଟି ପକାଉଥିବା ବହୁରାଷ୍ଟ୍ରୀୟ କମ୍ପାନୀ । ନିଜ ଦେଶରେ ସଭ୍ୟ ଗଣତାନ୍ତ୍ରିକ ବୋଲାଉଥିବା ଏହି ଦେଶମାନେ ହେଉଛନ୍ତି ଆଜିର ଆନ୍ତର୍ଜାତିକ ଫାସିବାଦୀ ଶକ୍ତି ।

ଆଧୁନିକ ଗଣତନ୍ତ୍ରର ଏହି ଚାରିତ୍ରିକ ଦୋଷ ମୂଳରୁ ରହିଛି । ବ୍ରିଟେନ୍‌ର ପାର୍ଲିଆମେଣ୍ଟ୍‌କୁ ଗଣତନ୍ତ୍ରର ଜନନୀ ବୋଲି କୁହାଯାଏ । ୧୯୪୭ ପୂର୍ବରୁ ଭାରତ ସେହି ବ୍ରିଟିଶ୍ ରାଜ୍ୟର ଅନ୍ତର୍ଗତ ଥିଲା । ସେ ରାଜ୍ୟ ଏତେ ବଡ଼ ଥିଲା ଯେ ତାକୁ ସାମ୍ରାଜ୍ୟ ବୋଲି କୁହାଯାଉଥିଲା । କିନ୍ତୁ ତାହାର ଗଣତନ୍ତ୍ର ସାମ୍ରାଜ୍ୟବ୍ୟାପୀ ନଥିଲା । ତାହାର ଏକ ଶତାଂଶ ଅଞ୍ଚଳରେ, ଯେଉଁଠି ଗୋରାମାନେ ରହୁଥିଲେ କେବଳ ସେଇଠି ଥିଲା ଗଣତନ୍ତ୍ର । ତାହାହେଲେ ଏକ ଅପ୍ରୀତିକର ଉପସଂହାରରେ ପହଞ୍ଚିବାକୁ ହେବ । ଆଧୁନିକ ପାଶ୍ଚାତ୍ୟ ଗଣତନ୍ତ୍ର ବିଶେଷାଧିକାରଯୁକ୍ତ ଗୋଷ୍ଠୀମାନଙ୍କ ପାଇଁ ଉଦ୍ଦିଷ୍ଟ । ଯେଉଁଠି ସମୃଦ୍ଧି ବହୁତ ଓ ଆର୍ଥିକ ସ୍ଥିରତା ସାଙ୍ଗରେ ସାଧାରଣ ନାଗରିକର ଆର୍ଥିକ ସୁରକ୍ଷାର ଗ୍ୟାରେଣ୍ଟି ରହୁଛି, ଗଣତାନ୍ତ୍ରିକ ଅଧିକାରଗୁଡ଼ିକ ସେଇଠି ଚଳିପାରୁଛି । ଅତି ସମୃଦ୍ଧିର ଏହି ଢାଞ୍ଚାରେ ଯେଉଁ ଗଣତନ୍ତ୍ର କଳ୍ପିତ ହୋଇଛି, ନିର୍ଦ୍ଧନ ଦେଶମାନଙ୍କରେ ତାହା ସ୍ଥାୟୀ ହୋଇ ରହିବ କିପରି ?

ବିକାଶଶୀଳ ଦେଶଗୁଡ଼ିକର ଗଣତନ୍ତ୍ରରେ ଯେଉଁମାନେ ବିଧାୟକ ମନ୍ତ୍ରୀ ଆଦି ହୋଇ ଶାସକ ହେଉଛନ୍ତି, ସେମାନଙ୍କର ଉତ୍ପତ୍ତି ଦେଶର ଗରିବ ମଧ୍ୟବିତ୍ତ ପରିବାରମାନଙ୍କରେ । ଥରେ ମନ୍ତ୍ରୀ ବିଧାୟକ ହେବାପରେ ସେମାନେ ଯେଉଁ ସୁଖସୁବିଧାର ଅଧିକାରୀ ହେଉଛନ୍ତି, ସେଥିରୁ ବଞ୍ଚିତ ହେଲେ ସେମାନଙ୍କର ପରିବାରଗୁଡ଼ିକ ଆର୍ଥିକ ଅସୁରକ୍ଷାର ସମୁଦ୍ରରେ ଭାସିଯିବେ । ତେଣୁ ସମୃଦ୍ଧ ଦେଶମାନଙ୍କ ତୁଳନାରେ ଏହି ଦେଶମାନଙ୍କର

ଜନପ୍ରତିନିଧିମାନେ ନିଜ ପାଇଁ ଅଧିକରୁ ଅଧିକ ବିଶେଷାଧିକାର ସୃଷ୍ଟି କରନ୍ତି । ବିଧାୟକ ହେବାପରେ ମଧ୍ୟ ଏକ ନିର୍ଦ୍ଦିଷ୍ଟ ଆୟ, ବାସଗୃହ, ରେଳଯାତ୍ରା ଇତ୍ୟାଦିର ସୁବିଧା କରିନିଅନ୍ତି । ପୂର୍ବର ବିଶେଷାଧିକାରମାନଙ୍କୁ ସଂଶୋଧନ କରି ଆହୁରି ବେଶୀ କରିନିଅନ୍ତି । ଏଥିରେ ଦଳମତ ନିର୍ବିଶେଷରେ ଏକାଠି ହୋଇଯାଆନ୍ତି । ସେମାନଙ୍କର ଏକ ଅଲଗା ସୁବିଧାପ୍ରାପ୍ତ ଗୋଷ୍ଠୀ ତିଆରି ହୋଇଯାଏ । ଶାସକ ହେବାର ଭାଗ୍ୟ କେତେକ ବଂଶ ଓ ପରିବାର ମଧ୍ୟରେ ସୀମିତ ହୋଇଯାଏ । ନେହେରୁ ବଂଶରୁ ଲାଲୁ ବଂଶ ଓ ବିଜୁ ବଂଶ ପର୍ଯ୍ୟନ୍ତ । ଏହି କ୍ଲବ୍ ଭିତରେ ଦୁର୍ନୀତିର ଘଟଣା ହେଲେ ଜଣେ ଅନ୍ୟକୁ ସାହା ହୁଅନ୍ତି ଓ ଘଟଣାଟିକୁ ଲୁଚାଇ ଦିଅନ୍ତି । ପୁଣି ଥରେ ଶାସକ ଗାଦିକୁ ଫେରି ଆସିବା ପାଇଁ ସେମାନେ ହିଂସା, ଅପରାଧ, ଲୁଟ୍ ସବୁକିଛି କରିପାରନ୍ତି । ଏଇଥିରେ ସେମାନେ ଗୁଣ୍ଡାଦଳ ଓ ହିଂସ୍ରକ ଶକ୍ତିମାନଙ୍କର ସାହାଯ୍ୟ ନିଅନ୍ତି । ତାହାର ଖର୍ଚ୍ଚ ଜୁଟାଇବା ନିମନ୍ତେ ବହୁରାଷ୍ଟ୍ରୀୟ କମ୍ପାନୀମାନେ ସେମାନଙ୍କୁ ସାହାଯ୍ୟ କରନ୍ତି । ସାଧାରଣ ସଚ୍ଚୋଟ ରାଜନୈତିକ କର୍ମୀ ନିର୍ବାଚନରେ ଠିଆ ହୋଇପାରେ ନାହିଁ । ଗଣତନ୍ତ୍ର ଗୁଣ୍ଡାମାନଙ୍କ ହାତରେ ବନ୍ଦୀ ହୁଏ, ଧନଶକ୍ତିମାନଙ୍କର ଖେଳନା ହୁଏ ।

ପାଶ୍ଚାତ୍ୟର ଗଣତନ୍ତ୍ର ଗୁଣ୍ଡାରାଜରୁ ମୁକ୍ତ ହେଲେ ମଧ୍ୟ ଧନଶକ୍ତିର ନିୟନ୍ତ୍ରଣରୁ ମୁକ୍ତ ନୁହେଁ । ଯେତେବେଳେ ଗଣତନ୍ତ୍ର ଆକ୍ରମଣାତ୍ମକ ଓ ପୁଞ୍ଜିବାଦ ବିରୋଧୀ ଥିଲା, ସେତେବେଳେ ଏ ଦେଶମାନଙ୍କରେ ମଜ୍‌ଦୁର୍‌ମାନଙ୍କର ପ୍ରତିନିଧିମାନେ ପ୍ରଧାନମନ୍ତ୍ରୀ ଓ ରାଷ୍ଟ୍ରପତି ହେବାପାଇଁ ନିର୍ବାଚନ କ୍ଷେତ୍ରରେ ଅବତୀର୍ଣ୍ଣ ହେଉଥିଲେ । କିନ୍ତୁ ଜଗତିକରଣ ତୀବ୍ରରୁ ତୀବ୍ରତର ହେବା ସଙ୍ଗେ ସଙ୍ଗେ ବ୍ରିଟେନ୍ ଓ ଆମେରିକାର ସବୁ ପ୍ରମୁଖ ରାଜନୈତିକ ଦଳ ପୁଞ୍ଜିପତିମାନଙ୍କର ଆଶ୍ରିତ ହୋଇଯାଇଛନ୍ତି । ଗଣତନ୍ତ୍ରରେ ହଜାର ହଜାର ସଂଖ୍ୟାରେ କର୍ମୀ ଦରକାର ହୁଅନ୍ତି । ସେମାନଙ୍କ ଭିତରୁ ବହୁତଙ୍କୁ ପୂରା ସମୟ ରାଜନୀତିରେ ଦେବାକୁ ପଡ଼େ । ସେମାନଙ୍କୁ କିଏ ପାରିଶ୍ରମିକ ଦେବ ? ସେମାନଙ୍କର ପରିବାର ଓ ରାଜନୈତିକ କର୍ମ ପାଇଁ ଖର୍ଚ୍ଚ କେଉଁଠୁ ଆସିବ ? ପାଶ୍ଚାତ୍ୟ ଗଣତନ୍ତ୍ର ଏହି ମୌଳିକ ପ୍ରଶ୍ନର କୌଣସି ସମାଧାନ କରିନାହିଁ । ରାଜନୀତିକ ଜ୍ଞାନରେ ଏହି ପ୍ରଶ୍ନକୁ ଉଠାଯାଏ ନାହିଁ । ତେଣୁ ଦଳମାନେ ପୁଞ୍ଜି ପାଖରେ ବନ୍ଧା ପଡ଼ିଯାନ୍ତି । ଏବେ ବିକାଶଶୀଳ ଦେଶମାନଙ୍କରେ ସାମାଜିକ ସେବା କାର୍ଯ୍ୟ ମଧ୍ୟ ବିଦେଶୀ ପାଣ୍ଠି ଉପରେ ନିର୍ଭରଶୀଳ ହୋଇ ରହିଲାଣି । ଗଣତାନ୍ତ୍ରିକ କାର୍ଯ୍ୟ ପାଇଁ ପ୍ରତ୍ୟେକ ସମାଜରେ ଆୟର ଏକ ଉଦ୍‌ଗମ ହେବା ଦରକାର । ଏହା ବ୍ୟତୀତ ଗଣତନ୍ତ୍ରର ଅବଧାରଣା ବିକାଶଶୀଳ ଦେଶମାନଙ୍କରେ ଅପୂର୍ଣ୍ଣ ରହିଯିବ ।

ଗଣତନ୍ତ୍ରକୁ ବିସ୍ତୃତ ଓ ସୁରକ୍ଷିତ କରିବାକୁ ହେଲେ ବିକାଶଶୀଳ ଦେଶମାନଙ୍କୁ ନିମ୍ନଲିଖିତ ପଦକ୍ଷେପ ଗ୍ରହଣ କରିବାକୁ ହେବ:

ପ୍ରଥମ, ଅନ୍ତତଃ ରାଷ୍ଟ୍ରୀୟ ଫାଶୀବାଦ ଶକ୍ତିମାନଙ୍କ କବଳରୁ ମୁକ୍ତ ହେବାକୁ ପଡ଼ିବ । ସେମାନଙ୍କ ସାଙ୍ଗରେ ଯୁଦ୍ଧ କରି ହେବନାହିଁ । ତେଣୁ ଅସହଯୋଗର ରଣକୌଶଳକୁ ଗ୍ରହଣ କରିବାକୁ ହେବ । ଗୋଟିଏ ସମୟ ପାଇଁ ୟୁରୋପ୍-ଆମେରିକାର ଧନୀ ଦେଶମାନଙ୍କ ଠାରୁ ଆର୍ଥିକ ଭାବରେ ବିଚ୍ଛିନ୍ନ ହେବାକୁ ପଡ଼ିବ ।

ଦ୍ୱିତୀୟ, ଏହା ଦ୍ୱାରା ସେମାନଙ୍କଠାରୁ ଋଣ କିମ୍ବା ଯନ୍ତ୍ରପାତି (ଟେକ୍ନୋଲୋଜି) ପାଇପାରିବା ନାହିଁ । ତାହା ଏକ ଆଶୀର୍ବାଦ ହେବ । କାରଣ ନିଜର ପୁଞ୍ଜି ଓ ନିଜେ ତିଆରି କରିପାରୁଥିବା ଯନ୍ତ୍ରପାତି ଉପରେ ଆମେ ଏକ ବଳିଷ୍ଠ ଭିତ୍ତିଭୂମି ପ୍ରସ୍ତୁତ କରିବାର ସମ୍ଭାବନା ସୃଷ୍ଟି ହେବ । ସ୍ୱଦେଶୀ ପୁଞ୍ଜି ଯୋଗାଡ଼ କରିବା ପାଇଁ ଭୋଗବାଦର ଓ ବିଳାସୀ ଖର୍ଚ୍ଚର ମୂଳୋତ୍ପାଟନ କରିବାକୁ ହେବ ଓ ସବୁ ପ୍ରକାରର କଳାଧନ ଉତ୍‌ଖାତ କରିବାକୁ ହେବ । ଯେଉଁ କଳାଧନ ବିଦେଶରୁ ଅବୈଧ ଭାବରେ (ହାୱାଲା ବାଟ ଦେଇ) ଭାରତକୁ ଚାଲିଆସୁଛି କେବଳ ତାହାର ପରିମାଣ ହେଉଛି ବାର୍ଷିକ ତିରିଶି ହଜାର୍ କୋଟି ଟଙ୍କା । ଏସବୁ ପ୍ରକ୍ରିୟାରୁ ବିଚ୍ଛିନ୍ନ ହେବା ଫଳରେ ଏକ ସରଳ ଜୀବନ ଦର୍ଶନର ବାୟୁମଣ୍ଡଳ ତିଆରି ହେବ । ବିଶେଷାଧିକାର ଓ ଆଡ଼ମ୍ବରକୁ ଲୋପ କରାଯିବ । ବଳକା ଧନରେ ଅଳ୍ପ ପୁଞ୍ଜି ଓ ନିଜ ଦେଶରେ ତିଆରି ହେଉଥିବା ଯନ୍ତ୍ରପାତି ସାହାଯ୍ୟରେ ଯେଉଁ ଶିଳ୍ପ ଓ କୃଷି ବ୍ୟବସ୍ଥା ତିଆରି ହେବ ତହିଁରେ ସମସ୍ତଙ୍କୁ ଧନ୍ଦା ଯୋଗାଇ ଦିଆଯାଇପାରିବ, ତଥା ସର୍ବସାଧାରଣଙ୍କ ପାଇଁ ଶିକ୍ଷା ଓ ସ୍ୱାସ୍ଥ୍ୟର ଆୟୋଜନ କରିବାକୁ ହେବ । କେରଳରେ ସମସ୍ତଙ୍କୁ ଶିକ୍ଷା ମିଳୁଥିବାରୁ ଶିକ୍ଷା କର୍ମନିଯୁକ୍ତିର ଏକ ବିରାଟ କ୍ଷେତ୍ର ହୋଇଛି ।

ଏହିପରି ଭାବରେ ଆର୍ଥିକ ସୁରକ୍ଷା ଲୋକମାନଙ୍କ ପାଇଁ ଫେରିଆସିପାରିବ । ସାମ୍ରାଜ୍ୟବାଦୀ ଦେଶମାନେ ଅତିସମୃଦ୍ଧି ବଳରେ ଲୋକଙ୍କୁ ଯେଉଁ ଆର୍ଥିକ ସୁରକ୍ଷା ଓ ସାମାଜିକ ସମାନତା ଦେଇପାରିଛନ୍ତି, ବିକାଶଶୀଳ ଦେଶ ଭୋଗବାଦ ଓ ବେକାରୀର ଉତ୍ପାଟନ କରି ତାହା ହାସଲ କରିପାରିବେ । କେବଳ ଚାକିରୀରେ ସ୍ଥାନ ସଂରକ୍ଷଣ ସାମାଜିକ ସମାନତା ଦେଇପାରିବ ନାହିଁ, ଆର୍ଥିକ ସୁରକ୍ଷା ହିଁ ଏହା ପୂରଣ କରିପାରିବ । ସମସ୍ତଙ୍କୁ ଆର୍ଥିକ ସୁରକ୍ଷା ଓ ଶିକ୍ଷା ମିଳିଯିବା ପରେ ସ୍ଥାନ ସଂରକ୍ଷଣକୁ ଲୋପ କରିଦିଆଯିବ । ଗଣତନ୍ତ୍ର ସମାଜବାଦ ନୁହେଁ, ତେଣୁ ଧନୀ ରହିବେ । କିନ୍ତୁ ତଳେ ଥିବା ଲୋକଙ୍କଠାରୁ ପାଞ୍ଚ ପ୍ରତିଶତ ଲୋକ ଯାହାର ଆୟ ପାଞ୍ଚଗୁଣରୁ ଦଶଗୁଣ ପର୍ଯ୍ୟନ୍ତ ହେବ, ସେମାନେ ଧନୀ ହେବେ । ତାହା ଉପରକୁ ଏକ ଅତି ଧନୀ ଶ୍ରେଣୀ ରହିବେ ନାହିଁ ।

ତୃତୀୟ, ବିବିଧତାକୁ ସମ୍ମାନ ଓ ସମାନତା ଦେବା ଏକ ମୂଳମନ୍ତ୍ର ହେବ । ସ୍ୱାୟତ୍ତତା ବା ବିକେନ୍ଦ୍ରୀକରଣ ନୂତନ ଗଣତାନ୍ତ୍ରିକ ବ୍ୟବସ୍ଥାର ଅନିର୍ବାର୍ଯ୍ୟ ଅଙ୍ଗ ରୂପେ ଗଣାଯିବ । କେନ୍ଦ୍ର ସରକାର ପାଖରେ ଅତି ସୀମିତ କାର୍ଯ୍ୟ ରହିବ । ତାହାଠାରୁ ବେଶୀ ରହିବ ରାଜ୍ୟ ପାଖରେ । କିନ୍ତୁ ସବୁଠାରୁ ଅଧିକ କାମ ଓ କ୍ଷମତା ରହିବ ଗ୍ରାମପଞ୍ଚାୟତ ଓ ଅଞ୍ଚଳ ପାଖରେ । ନାଗରିକମାନଙ୍କର ଦୈନନ୍ଦିନ କାର୍ଯ୍ୟକଳାପ ସାଙ୍ଗରେ ସମ୍ପୃକ୍ତ ସବୁ ବିଭାଗ ଗ୍ରାମ ଓ ପ୍ରଖଣ୍ଡ କରିବେ । ପୁଲିସି ଓ ଅଦାଲତ୍ ବ୍ୟବସ୍ଥାର ବଡ଼ଭାଗ ଗ୍ରାମ ଓ ପ୍ରଖଣ୍ଡରେ ରହିବ । ବିଶ୍ୱବିଦ୍ୟାଳୟର ଶିକ୍ଷିତ ଲୋକମାନଙ୍କୁ ତାଙ୍କର ମୂର୍ଖତା ଯୋଗୁଁ ଏହା ୟୁଟୋପିଆ ଭଳି ଲାଗିବ । ସେମାନେ କ'ଣ ଜାଣନ୍ତି ୟୁରୋପ୍‌ର ଗଣତାନ୍ତ୍ରିକ ଦେଶମାନଙ୍କରେ ସ୍ଥାନୀୟ ଶାସନ ଅଧିନରେ ପୁଲିସ ଓ ଅଦାଲତ୍‌ର ବିଭାଗମାନ ଥାଏ ।

ଚତୁର୍ଥ, ପ୍ରଶାସନର ସଂରଚନା ଓ ସ୍ୱଭାବର ପରିବର୍ତ୍ତନ ଔପନିବେଶିକ ଦେଶମାନଙ୍କରେ ସୁସ୍ଥ ଗଣତନ୍ତ୍ର ସ୍ଥାପନାର ଏକ ଗୁରୁତ୍ୱପୂର୍ଣ୍ଣ ଦିଗ । ଯେଉଁଦିନ ଗ୍ରାମର କ୍ଷୁଦ୍ର ଚାଷୀ ତାହାର ହକ୍ କାମ ପାଇଁ ପ୍ରଶାସନ ପାଖକୁ ଯିବ ଓ ଖାଲି ହାତରେ ଫେରିଆସିବ ନାହିଁ, ଅଦାଲତରେ ମାଲିମକଦ୍ଦମା ଛିଣ୍ଡିବାକୁ ବର୍ଷ ବର୍ଷ ଧରି ସମୟ ଲାଗିବ ନାହିଁ, ସେହିଦିନ ଭାରତର ପ୍ରଜା ଜାଣିବ ଯେ ତାକୁ ସ୍ୱରାଜ ମିଳିଛି ଓ ଅଧିକାର ମିଳିଛି । ଯେଉଁ ଶିକ୍ଷିତ ବ୍ୟକ୍ତିମାନେ ପାଶ୍ଚାତ୍ୟର ଅବଗୁଣ ଓ ଅନାବଶ୍ୟକ ଗୁଣମାନଙ୍କୁ ଗୌରବାନ୍ୱିତ କରନ୍ତି, ସେମାନେ ଜାଣନ୍ତି ନାହିଁ ଯେ ଯେଉଁ ଧନୀ ଦେଶମାନେ ଆମ ଦେଶରେ ଏଭଳି ଏକ ଅମଲାତାନ୍ତ୍ରିକ ଯନ୍ତ୍ରୀଘର ତିଆରି କଲେ, ସେମାନଙ୍କ ଦେଶରେ ସାଧାରଣ ଭାବରେ କୌଣସି ନାଗରିକ ଚାହିଁଲେ ପ୍ରଶାସନଠାରୁ ନିଜର ପ୍ରାପ୍ୟ ନେଇପାରେ । ଅଦାଲତରେ ବିଳମ୍ବ ହୁଏନାହିଁ । ସରକାର ଉପରେ ଯଦି ନାଗରିକର ପଇସା ରହିଛି, ନାଗରିକକୁ ଗୋଡ଼ାଇବାକୁ ପଡ଼େ ନାହିଁ । ବିଳମ୍ବ ହେଲେ ସରକାର ନିଜେ ନାଗରିକ ପାଖକୁ ଯାଇ ପଇସା ଦେଇଆସେ । ପ୍ରଫେସର୍‌ମାନେ ଚାକିରି ଛାଡ଼ିବାର ତିନିବର୍ଷ ପରେ ମଧ୍ୟ ପେନ୍‌ସନ୍ ନ ପାଇବା ଘଟଣାରେ ଯଦି ଲଜ୍ଜିତ ହେଉଥାଆନ୍ତେ, ତାହାହେଲେ ପ୍ରଫେସର୍‌ମାନେ ଦରମା ବଢ଼ାଇବା ପାଇଁ ନୁହେଁ, ପ୍ରଶାସନର ଢଙ୍ଗ ବଦଳାଇବାକୁ ଆନ୍ଦୋଳନ କରନ୍ତେ ।

ପଞ୍ଚମ, ସାଧାରଣ ସଚ୍ଚୋଟ ମଣିଷ ରାଜନୈତିକ କର୍ମୀ ହୋଇପାରିବ ଓ ନିଜର କାର୍ଯ୍ୟଦକ୍ଷତାର ଯୋଗ୍ୟତା ଅନୁସାରେ ଦେଶର ଶାସକ ହୋଇପାରିବ । ଏଥିପାଇଁ ଏକ ଆର୍ଥିକ ବ୍ୟବସ୍ଥା ରାଜକୋଷରୁ ନୁହେଁ, ସମାଜରେ ତିଆରି କରିବାକୁ ହେବ । କେବଳ ପ୍ରାରମ୍ଭ ପାଇଁ ସରକାରୀ କୋଷରୁ କେତେକ ସଂସ୍ଥା ଗଢ଼ିବାକୁ ହେବ । ଏହି ସଂସ୍ଥାମାନେ ରାଜନୈତିକ କର୍ମୀମାନଙ୍କର ଭାର ଗ୍ରହଣ କରିବେ । ସର୍ତ୍ତ ରହିବ ଯେ କର୍ମୀମାନେ ସରଳ ଜୀବନଯାପନ କରିବେ ଓ କେତେ ପ୍ରକାରର ସାଧୁତାର ଅନୁଶାସନରେ ରହିବେ । ଭାରତର ସ୍ୱାଧୀନତା ଆନ୍ଦୋଳନ ବେଳେ ଏହିଭଳି ସଂସ୍ଥାମାନଙ୍କର ଆବିର୍ଭାବ ହୋଇଥିଲା ।

# ଇଣ୍ଟରନେଟ୍ ଓ ବଳଦଗାଡ଼ି ବିରୁଦ୍ଧରେ ଏକ ଘୋଷଣାପତ୍ର

ସଭ୍ୟ ମନୁଷ୍ୟର ହିସାବ୍‌କିତାବ୍ ଅନୁଯାୟୀ ସେ ଏବେ ଏକବିଂଶ ଶତାବ୍ଦୀର ଦ୍ୱାରଦେଶରେ ଉପନୀତ । ଲିଖିତ ଇତିହାସକୁ ଧରିବସିଲେ ବିଭିନ୍ନ ଅଞ୍ଚଳର ସଭ୍ୟତାକୁ ମିଶାଇ ମନୁଷ୍ୟ ସଭ୍ୟତାକୁ ଛଅ ସାତ ହଜାର୍ ବର୍ଷ ହୋଇଗଲାଣି । ଆଧୁନିକ ସଭ୍ୟତାକୁ ତିନିଶହ ବର୍ଷ ହୋଇଗଲାଣି ବୋଲି ଧରାଯାଏ । ପଶ୍ଚିମର ଲୋକଙ୍କ ମତାନୁଯାୟୀ ମନୁଷ୍ୟ ସଭ୍ୟତା ଆଧୁନିକ ଯୁଗରେ ଉନ୍ନତିର ଚରମ ବିନ୍ଦୁକୁ ସ୍ପର୍ଶ କରିଛି । ସେମାନେ କହନ୍ତି ଯେ ପୂର୍ବ ସଭ୍ୟତାମାନଙ୍କ ଭଳି ଏହା ଏକ ଆଞ୍ଚଳିକ ସଭ୍ୟତା ନୁହେଁ । ଏହା ହେଉଛି ସମଗ୍ର ବିଶ୍ୱର ସଭ୍ୟତା । ପଶ୍ଚିମର ଶିକ୍ଷା ପାଇଁ ଆମେ ମଧ୍ୟ ଏପରି ଧାରଣା କରିଥାଉ । ଆଧୁନିକ ସଭ୍ୟତାର ବିଶ୍ଳେଷଣ ଏ ପ୍ରବନ୍ଧର ଉଦ୍ଦେଶ୍ୟ ନୁହେଁ । କିନ୍ତୁ ଏହି ଆଧୁନିକତାର ଏକ ଅନିର୍ବାର୍ଯ୍ୟ ଉପାଦାନ ହେଉଛି ଆଧୁନିକ ବିଜ୍ଞାନ ବା ଟେକ୍ନୋଲୋଜି (ପ୍ରଯୁକ୍ତି ବିଦ୍ୟା) । ଏହା ହିଁ ଆମ ପ୍ରବନ୍ଧର ଆଲୋଚ୍ୟ ବିଷୟ ।

ଭାଷା ଓ ବ୍ୟାକରଣଗତ ଅଙ୍କକୁ ଧରିବସିଲେ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ଗୋଟିଏ କଥା ନୁହନ୍ତି । କିନ୍ତୁ ଗତ ପଚାଶ ବର୍ଷରୁ ଊର୍ଦ୍ଧ୍ୱ ସମୟ ଧରି ପ୍ରସିଦ୍ଧ ଓ ପଣ୍ଡିତ ଲୋକମାନେ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାକୁ ଏକାର୍ଥବାଚକ ଭାବରେ ବ୍ୟବହାର କରିଆସୁଛନ୍ତି । ଆମେରିକାର ରାଷ୍ଟ୍ରପତି, ଭାରତର ପ୍ରଧାନମନ୍ତ୍ରୀ ଓ ପ୍ରୟୋଗଶାଳାରେ କାମ କରୁଥିବା ବୈଜ୍ଞାନିକମାନେ ଯନ୍ତ୍ରବିଦ୍ୟା ବା ପ୍ରଯୁକ୍ତି ବିଦ୍ୟାକୁ ଆଧୁନିକ ବିଜ୍ଞାନ ବୋଲି କହିବାରେ କୁଣ୍ଠାବୋଧ କରନ୍ତି ନାହିଁ । ବର୍ଷକ ପୂର୍ବେ ଯେତେବେଳେ ଭାରତର ବୈଜ୍ଞାନିକମାନେ ପରମାଣୁ ବୋମାର ନିର୍ମାଣ କରି ଏକ ସଫଳ ପରୀକ୍ଷା କଲେ ପ୍ରଧାନମନ୍ତ୍ରୀ ବାଜପେୟୀ ଉଲ୍ଲସିତ ହୋଇ 'ଜୟ ବିଜ୍ଞାନ୍' ଧ୍ୱନି ଦେଲେ । 'ଜୟ କିଷାନ୍' ଓ 'ଜୟ ଜବାନ୍' ସାଙ୍ଗରେ 'ଜୟ ବିଜ୍ଞାନ୍' ଯୋଡ଼ିବା ତାଙ୍କର ଅଭିପ୍ରାୟ ଥିଲା ।

ଅଟଳ ବିହାରୀ ବାଜପେୟୀ 'ଜୟ ବିଜ୍ଞାନ୍' ଧ୍ୱନି ଦେବାର ବହୁପୂର୍ବରୁ ବିଜ୍ଞାନର ଜୟଜୟକାର ଚାଲିଛି । ଯେ କେହି ଶିକ୍ଷିତ ଲୋକ ବିଜ୍ଞାନ ବିଷୟକ କୌଣସି ଦୀର୍ଘ ଚର୍ଚ୍ଚାର ଆରମ୍ଭରେ ବିଜ୍ଞାନର ସ୍ତୁତି ଗାନ କରେ । ଯେଉଁମାନେ ଆଧୁନିକ ବିଜ୍ଞାନର କେତେକ ସମାଲୋଚନା କରିବାକୁ ଠିଆ ହୁଅନ୍ତି ସେମାନେ ମଧ୍ୟ ଲୋକେ ତାଙ୍କୁ ଭୁଲ୍ ନ ବୁଝନ୍ତୁ ଭାବି ଆରମ୍ଭରେ ହିଁ ବିଜ୍ଞାନର ଅଭୂତପୂର୍ବ ସାଫଲ୍ୟଗୁଡ଼ିକର ଉଦାହରଣ ଦିଅନ୍ତି । ସାଧାରଣ ମଣିଷକୁ ଆଜି ଯେତିକି ସୁଖ ସୁବିଧା ମିଳୁଛି, ପୂର୍ବେ ତାହା କେବେ ମିଳୁ ନଥିଲା । ପ୍ରଯୁକ୍ତି ବିଦ୍ୟାର ସୁଲଭତା ଯୋଗୁଁ ଦାସ ପ୍ରଥାର ଉନ୍ମୂଳନ

କରାଯାଇପାରିଛି । ଯେଉଁ ବ୍ୟାଧିଗୁଡ଼ିକର ଉପଶମ ହୋଇପାରୁ ନଥିଲା ସେଗୁଡ଼ିକର ଅବ୍ୟର୍ଥ ଔଷଧ ବାହାରି ସାରିଲାଣି । ସର୍ବୋପରି ମନୁଷ୍ୟର ଗତି ବଢ଼ିଯାଉଛି ଓ ଦୂରତ୍ୱ ଉପରେ ସେ ବିଜୟ ଲାଭ କରିଛି ।

ଏହି ପ୍ରକାରର ସ୍ତୁତିଗାନ ପରେ ବିଜ୍ଞାନର ଯେଉଁସବୁ ସମାଲୋଚନା ହୁଏ ସେଗୁଡ଼ିକରେ ଆଉ ଗୁରୁତ୍ୱ ନଥାଏ । ସମାଲୋଚନାର ଉଦ୍ଦେଶ୍ୟ ସୀମିତ ବୋଲି ମନେହୁଏ । ବିଜ୍ଞାନ କିମ୍ବା ପ୍ରଯୁକ୍ତି ବିଦ୍ୟାର ମୌଳିକ ପରିବର୍ତ୍ତନର ଆବଶ୍ୟକତା ଅନୁଭୂତ ହୁଏନାହିଁ । ଅର୍ଥାତ, ଯଦି କିଛି ଅପୂର୍ଣ୍ଣତା ରହିଛି ତାକୁ ଦୂର କରିବା ଆବଶ୍ୟକ, କିନ୍ତୁ ବିଜ୍ଞାନର ବିଜୟକୁ ପ୍ରଶ୍ନ କରାଯାଇ ନପାରେ ।

ଅଶିକ୍ଷିତ ମଣିଷ ଜଟିଳ ଶବ୍ଦ କିମ୍ବା ବାକ୍ୟମାନଙ୍କର ରଚନା କରିପାରେ ନାହିଁ । ତାକୁ ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ବିଷୟରେ ପ୍ରଶ୍ନ କଲେ ସେ କହିବ, ବିଜ୍ଞାନ ବହୁତ ଉନ୍ନତି କରିଛି ଓ ଚମତ୍କାର କାର୍ଯ୍ୟମାନ କରୁଛି । ଏହାହିଁ ସତ୍ୟ ବୋଲି ମନେହୁଏ । କିନ୍ତୁ ମଣିଷ ଜାତିର ତଦ୍ୱାରା କଲ୍ୟାଣ ବା ଉତ୍‌ଥାନ ହେଲା ବୋଲି ଉପରୋକ୍ତ କଥନରୁ ବାହାରୁଛି କି ? ଚମତ୍କାର ଜିନିଷଗୁଡ଼ିକ ପ୍ରାୟ ଜନସାଧାରଣଙ୍କର ମୌଳିକ କାର୍ଯ୍ୟରେ ଲାଗନ୍ତି ନାହିଁ, ଯାଦୁକର ତାହାର ଟୋପି ଭିତରୁ ବାହାର କରୁଥିବା ଅଣ୍ଡା ଭଳି । ଟୋପିରୁ ଅଣ୍ଡା – ଅତି ଚମତ୍କାର । କିନ୍ତୁ ଏହା କେତେ କାମରେ ଲାଗେ ? ଏକଥାକୁ କେହି କାଟିପାରିବେ ନାହିଁ ଯେ ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ମଣିଷ ସମାଜ ପାଇଁ ଏକ ନୂଆ ଯୁଗ ସୃଷ୍ଟି କରିଛି । ମାନବୀୟ ଭୂଗୋଳର ଏପରି କୌଣସି ବିଭାଗ ନାହିଁ ଯାହାର କାୟା ପରିବର୍ତ୍ତନ ଏହି ପ୍ରଯୁକ୍ତି ବିଦ୍ୟାର ପ୍ରଭାବରେ ହୋଇନାହିଁ । କିନ୍ତୁ ଏହି କାୟା ପରିବର୍ତ୍ତନ ଦ୍ୱାରା ମଣିଷ ସମାଜର ସ୍ଥିତି କେତେ ବେଶୀ ଯୁକ୍ତିଯୁକ୍ତ ଓ ସୁଖପ୍ରଦ ହୋଇଛି ?

ବଳଦଗାଡ଼ି ଯୁଗରେ ସବୁ ଦେଶର କିଛି ଲୋକ ବହୁତ ଆରାମ ଓ ବିଳାସରେ ରହୁଥିଲେ । ଆଜି ଯେପରି ପ୍ରତ୍ୟେକ ଛୋଟ ଇଲାକାରେ ଗୋଟିଏ ଗୋଟିଏ ଧନୀ ପରିବାର ଦେଖିବାକୁ ମିଳନ୍ତି ସେତେବେଳେ ମଧ ପ୍ରତ୍ୟେକ ଛୋଟ ଇଲାକାରେ ଜଣେ ସାମନ୍ତ ରହୁଥିଲେ । ସେମାନେ ଭୋଗ ବିଳାସରେ ଦିନ କାଟୁଥିଲେ । ମଧ୍ୟଯୁଗରେ ଭୋଗର ପରିମାଣ ବହୁତ ବଢ଼ିଗଲା । ତେଣୁ ଏବେ ମଧ କେଉଁଠାରେ ବିଳାସର ଆଧିକ୍ୟ ଦେଖିଲେ ଆମେ ତାକୁ ସାମନ୍ତୀ ବା ମୋଗଲ୍‌କାଳୀନ ବୋଲି କହୁ । ମଝିମଝିକିଆ ଲୋକମାନେ ଥିଲେ ଯେଉଁମାନେ ମର୍ଯ୍ୟାଦାର ସହିତ ଜୀବନ ଅତିବାହିତ କରିପାରୁଥିଲେ । ବଡ଼ ଭାଗ ଲୋକ ଦୁଃଖ କଷ୍ଟରେ ଚଳୁଥିଲେ । ଏବେ ମଧ ପୃଥିବୀର ବଡ଼ ଭାଗ ଲୋକେ ଦୁଃଖ କଷ୍ଟରେ ଚଳୁଛନ୍ତି ।

ପୃଥିବୀର ଏକ ତୃତୀୟାଂଶ ଲୋକ ଏପରି ଅମାନବୀୟ ସ୍ଥିତିରେ ରହିଛନ୍ତି ଯେ ପ୍ରାଚୀନ ସଭ୍ୟତାମାନଙ୍କରେ ଏତେ ସଂଖ୍ୟାରେ କାଙ୍ଗାଳ ଲୋକ ଥିଲେ ବୋଲି ଅନୁମାନ କରିହୁଏ ନାହିଁ । ଏହା ସତ୍ୟ ଯେ ନାନାବିଧ ଔଷଧ ଓ ଚିକିତ୍ସାର ଆବିଷ୍କାର ହୋଇଛି । କିନ୍ତୁ ଏତେ ବେଶୀ ବେମାରୀ ଏତେ ବ୍ୟାପକ ଭାବରେ କେବେ ଦେଖା ଦେଇ

ନଥିଲା, ଯାହା ଆଜି ଘଟୁଛି । ଏପରି କୌଣସି ଦିନ ନାହିଁ ଯେଉଁଦିନ ଆଫ୍ରିକା ବା ଦକ୍ଷିଣ ଏସିଆରେ ମହାମାରୀ ଲାଗି ନରହିଛି । ବିଜ୍ଞାନର ଜୟଗାନ କରିବା ପାଇଁ ଆମେ ଔଷଧ ଦୋକାନକୁ ଦେଖାଇବା, ନା ମଣିଷ ଜୀବନର ସ୍ଥିତିକୁ ଦେଖାଇବା ? ଆପଣ କହିପାରନ୍ତି, ଏଥିରେ ବିଜ୍ଞାନର ଦୋଷ ନାହିଁ । ମଣିଷର ଦୋଷ, ସମାଜର ଦୋଷ । ତାହା ହିଁ ହେଉ । କିନ୍ତୁ ଏହି କଥାଟିକୁ ଶିକ୍ଷିତ ଲୋକମାନେ କହିପାରିବେ ନାହିଁ । 'ଆଧୁନିକ ବିଜ୍ଞାନ ମାଧ୍ୟମରେ ମନୁଷ୍ୟ ତାହାର ସମାଜକୁ ସୁଖପ୍ରଦ ଓ ଯୁକ୍ତିଯୁକ୍ତ କରିପାରି ନାହିଁ' - ଏହି କଥାକୁ ଯଦି କିଛି ବିଦ୍ୟାଳୟର ପାଠ୍ୟ ପୁସ୍ତକମାନଙ୍କରେ ଲେଖାଯାଇ ପାରିବ, କିମ୍ବା ଶିକ୍ଷିତ ଲୋକମାନେ ସ୍ପଷ୍ଟଭାବରେ ଏହି କଥାକୁ କହିପାରିବେ, ତାହାହେଲେ ବିଜ୍ଞାନ ବିଷୟକ ଆମର ଚେତନା ବଦଳିଯିବ । ଆଧୁନିକ ସଭ୍ୟତା ସମ୍ବନ୍ଧରେ ସତ୍ୟର ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ ଉଦ୍‌ଘାଟିତ ହେବ ।

ଆଧୁନିକ ବିଜ୍ଞାନ ମଣିଷ ସମାଜକୁ କେତେ ପ୍ରଭାବିତ କରିଛି ସେ ବିଷୟରେ ବିଶ୍ୱବିଦ୍ୟାଳୟର ଛାତ୍ରମାନେ ଅନେକ ପାଠ ଓ ପ୍ରବନ୍ଧ ପଢ଼ନ୍ତି । 'ବିଜ୍ଞାନ ଓ ସମାଜ', 'ଆଧୁନିକ ଶିଳ୍ପ ଓ ମନୁଷ୍ୟ ଜୀବନ' ଆଦି ଶିରୋନାମାରେ ସନ୍ଦର୍ଭମାନ ପଢ଼ିବା ଶୁଣିବା ପରେ ପ୍ରତ୍ୟେକ ଶିକ୍ଷିତ ଲୋକର ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ବିଷୟରେ ଏକ ଧାରଣା ବଦ୍ଧମୂଳ ହୋଇଯାଏ ଯେ ବୃହତ ଶିଳ୍ପ ଓ ନଗର ଜୀବନର କେତେକ ଅସଙ୍ଗତି ଯୋଗୁଁ ମାନସିକ ଦୁଶ୍ଚିନ୍ତା ବଢ଼ିଛି ସତ, କିନ୍ତୁ ମୋଟ ଉପରେ ମନୁଷ୍ୟ ସମାଜର କାର୍ଯ୍ୟ ଅଧିକ ଯୁକ୍ତିସଙ୍ଗତ ହୋଇଛି ଓ ଭୌତିକ ସୁଖସୁବିଧା ସମସ୍ତଙ୍କ ପାଇଁ ଉପଲବ୍ଧ ହୋଇପାରିଛି, ଯାହା ଆଗରୁ କେବେ ନଥିଲା । ସମାଜଶାସ୍ତ୍ରରେ ବଡ଼ ବଡ଼ ପଣ୍ଡିତମାନେ ମଧ୍ୟ ଏକଥା ଲେଖିଛନ୍ତି ଯେ ସମାଜ ଓ ଜୀବନ ଅଧିକ ଯୁକ୍ତିସଙ୍ଗତ ଓ ନ୍ୟାୟସଙ୍ଗତ ହୋଇପାରିଛି । ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଏହିସବୁ ଧାରଣା ବିକାଶଶୀଳ ଦେଶମାନଙ୍କରେ ପ୍ରଚାରିତ ହୋଇସାରିଥିଲା । ସେତେବେଳେର ଉଦାରବାଦୀ ଓ ପ୍ରଗତିଶୀଳ ନେତା ଓ ଚିନ୍ତକମାନେ ଏହା ଉପରେ ବିଶ୍ୱାସ ରଖି ଭାବୁଥିଲେ ଯେ ଆମ ଦେଶମାଟି ଔପନିବେଶିକ ଦାସତ୍ୱରୁ ମୁକ୍ତ ହୋଇଯିବା ପରେ ଆଧୁନିକ ବିଜ୍ଞାନର ବାଟ ଧରି ୟୁରୋପୀୟ ଦେଶମାନଙ୍କ ପରି ସଭ୍ୟ ଓ ସମୃଦ୍ଧ ହୋଇଯିବେ । ଏପରି ଭାବିବା ପଛରେ ସେମାନଙ୍କର ବିଶ୍ୱାସ ଥିଲା ଯେ ୟୁରୋପ୍ ଓ ଆମେରିକାର ଅଭୁତପୂର୍ବ ସମୃଦ୍ଧି କେବଳ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ଦ୍ୱାରା ସମ୍ଭବ ହୋଇଛି ।

ଆଜି ମଧ୍ୟ ଉଚ୍ଚଶିକ୍ଷିତ ଲୋକମାନଙ୍କ ମୁଣ୍ଡ ଭିତରେ ଏହି ଧାରଣା ଅପରିବର୍ତ୍ତିତ ରହିଛି । ସାରା ଦୁନିଆରେ ବିଜ୍ଞାନ ସଂକ୍ରାନ୍ତରେ ଲୋକମାନଙ୍କର ବୁଦ୍ଧି ଗୋଳମାଳିଆ ଅବସ୍ଥାରେ ଅଛି । ଯଦି କୌଣସି ଭାରତୀୟ ବିଶ୍ୱବିଦ୍ୟାଳୟ ପ୍ରଫେସରଙ୍କୁ ପଚାରିବା - 'ଭାରତ, ପାକିସ୍ତାନ୍ କିମ୍ବା ବଙ୍ଗଳାଦେଶ କ'ଣ ୟୁରୋପ୍ ଓ ଆମେରିକା ପରି ସମୃଦ୍ଧ ହୋଇ ପାରିବେ ?' ସେ ଭାରି ଅଡୁଆରେ ପଡ଼ିଯିବେ । ମୁଣ୍ଡ ଭିତରର ବୁଦ୍ଧି ଅନୁସାରେ ସେ କହନ୍ତି, 'ହଁ' । କିନ୍ତୁ ଚାରିଆଡ଼ର ବାସ୍ତବତାକୁ ମନେପକେଇ ସେ ଦ୍ୱିଧାରେ ପଡ଼ିଯିବେ । ବିଜ୍ଞାନ ଓ ବିକାଶର ଅନ୍ତର୍ସମ୍ବନ୍ଧ ବିଷୟରେ ବିଶ୍ୱବିଦ୍ୟାଳୟରୁ ମିଳିଥିବା ଶିକ୍ଷା ଓ ସଞ୍ଚାର ମାଧ୍ୟମ ଦ୍ୱାରା ଅହରହ ପ୍ରଚାରିତ ଚଟପଟିଆ ଜ୍ଞାନଗୁଡ଼ିକ

ଦ୍ୱାରା ପ୍ରଭାବିତ ହୋଇ ସେ ଭାବିବେ ଯେ ବିଜ୍ଞାନ ଦ୍ୱାରା ଏହା ସମ୍ଭବ । ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାକୁ ବ୍ୟବହାର କରି ଭାରତ ଅଚିରେ ଏକ ଆର୍ଥିକ ମହାଶକ୍ତି ହୋଇଯିବ ନାହିଁ କାହିଁକି ? ଅନ୍ୟ ଆଡ଼େ ପୃଥିବୀର ନଗ୍ନ ବାସ୍ତବତାକୁ ମନେପକାଇ ସେ ଅଟକିଯିବେ ଓ ଥଙ୍ଗେଇ ଥଙ୍ଗେଇ କହିବେ, 'ଆମେରିକା ହୋଇପାରିବ ନାହିଁ ତ କ'ଣ ହେଲା, ଦକ୍ଷିଣ କୋରିଆ ଭଳି ହୋଇପାରିବ ନିଶ୍ଚୟ' ।

ପ୍ରଥମ କଥା, ଦକ୍ଷିଣ କୋରିଆ ଭଳି ହୋଇପାରିବ କି ? କିନ୍ତୁ ଧରାଯାଉ ଦକ୍ଷିଣ କୋରିଆ ଭଳି ହେବାଟା ସମ୍ଭବ ଓ ଏହା ଏକ ବ୍ୟବହାରିକ ଲକ୍ଷ୍ୟ । ତେବେ ଜାଣିବା କଥା ଯେ ଦକ୍ଷିଣ କୋରିଆ ଆମେରିକାର ପାଖାପାଖି ନୁହେଁ । ଆମେରିକାର ପ୍ରତି ବ୍ୟକ୍ତିର ଆୟ ତିରିଶି ହଜାର ଡଲାର୍ ହେବା ବେଳକୁ ଦକ୍ଷିଣ କୋରିଆର କେବଳ ଆଠ ହଜାର ଡଲାର୍ । ଦ୍ୱିତୀୟ ପ୍ରଶ୍ନ ଉଠିବ ଯେ ଦକ୍ଷିଣ କୋରିଆ କାହିଁକି ଆମେରିକା ଭଳି ହୋଇପାରୁ ନାହିଁ ? ଭାରତ କାହିଁକି ବା ଦକ୍ଷିଣ କୋରିଆକୁ ଆଦର୍ଶ ରୂପେ ଗ୍ରହଣ କରିବ ? କାହିଁକି ଆମେରିକା ବା ବ୍ରିଟେନ୍‌ର ସମୃଦ୍ଧିକୁ ଆଦର୍ଶ ରୂପେ ନେବନାହିଁ ? ଏହି ପ୍ରଶ୍ନର ଉତ୍ତର ଖୋଜିବାକୁ ଗଲେ କେତେଗୁଡ଼ିଏ ସତ୍ୟର ଦର୍ଶନ ମିଳିପାରିବ । କିନ୍ତୁ ବିଶ୍ୱବିଦ୍ୟାଳୟର ପାଠରେ କିମ୍ବା ସଞ୍ଚାର ମାଧ୍ୟମରେ ଏହି ପ୍ରଶ୍ନଗୁଡ଼ିକୁ ପଚାରିବା ମନା ।

୧୯୫୦ ରୁ ୧୯୭୦ ମଧ୍ୟରେ ପୃଥିବୀର ଅଧିକାଂଶ ଦେଶକୁ, ପ୍ରାୟ ସବୁ ଗୁରୁତ୍ୱପୂର୍ଣ୍ଣ ଦେଶଗୁଡ଼ିକୁ, ରାଜନୈତିକ ସ୍ୱାଧୀନତା ମିଳିଯାଇଥିଲା । ୧୯୫୦ ଦଶନ୍ଧିରୁ ଏସିଆ, ଆଫ୍ରିକା ଓ ଲାଟିନ୍ ଆମେରିକାର ନବ-ସ୍ୱାଧୀନ ଦେଶମାନେ ଆଧୁନିକ ବିଜ୍ଞାନ ସାହାଯ୍ୟରେ ନିଜର ସମାଜକୁ ସମୃଦ୍ଧ କରିବା ପାଇଁ କାର୍ଯ୍ୟରତ ଅଛନ୍ତି । ସେମାନେ ସଞ୍ଜୁକ୍ତ ଭାବରେ କୌଣସି ବିକାଶ ଯୋଜନା ଚଳାଉ ନାହାନ୍ତି କିମ୍ବା ପରସ୍ପର ମଧ୍ୟରେ ଆର୍ଥିକ ନୀତି ସମ୍ବନ୍ଧୀୟ ପରାମର୍ଶ ଆଲୋଚନା କରୁନାହାନ୍ତି । ବରଂ ପ୍ରତ୍ୟେକ ନିଜର ବୁଦ୍ଧିରେ ଚାଲୁଛନ୍ତି ଓ ନିୟମିତ ଭାବରେ ୟୁରୋପ୍ ଓ ଆମେରିକାର ବିଶେଷଜ୍ଞମାନଙ୍କର ସହିତ ପରାମର୍ଶ କରୁଛନ୍ତି । ଆଶ୍ଚର୍ଯ୍ୟର କଥା ଏହି ଯେ ବିଭିନ୍ନ ପରିସ୍ଥିତିରୁ ବାହାରିଥିବା ଏହି ପଛୁଆ ରାଷ୍ଟ୍ରମାନେ ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାକୁ ଗ୍ରହଣ କରିବା ପରେ ସମାନ ରକମର ଅଧିକ ବିପତ୍ତି ଓ ସଙ୍କଟ ଭିତରେ ପଡ଼ିଛନ୍ତି । କୌଣସି ରାଷ୍ଟ୍ର ୟୁରୋପ୍-ଆମେରିକାର ସମକକ୍ଷ ହୋଇନାହାନ୍ତି । 'ଏସିଆର ବ୍ୟାଘ୍ର' ବୋଲି ଦକ୍ଷିଣ କୋରିଆ, ମାଲେସିଆ ଓ ତାଇୱାନ୍ ଭଳି ଯେଉଁ ଚାରି ପାଞ୍ଚଟି ଦେଶର ଉଦାହରଣ ଦିଆଯାଏ, ସେଗୁଡ଼ିକ ୟୁରୋପ୍-ଆମେରିକାର ଧନୀ ଦେଶମାନଙ୍କର ତୁଳନାରେ କିଛି ନୁହନ୍ତି । ଅବଶ୍ୟ ମଧ୍ୟ ଆଫ୍ରିକା ବା ଦକ୍ଷିଣ ଏସିଆର ଦେଶମାନଙ୍କ ତୁଳନାରେ ସେମାନଙ୍କୁ ସମୃଦ୍ଧ ବୋଲି କୁହାଯିବ । ଏହି ଆପେକ୍ଷିକ ସମୃଦ୍ଧି କେତେକ ରାଜନୈତିକ ଓ କୂଟନୈତିକ କାରଣରୁ ସମ୍ଭବ ହେଲା ।

୧୯୪୫ ମସିହା ପରେ ସୋଭିଏତ୍ ତଥା ଚୀନ୍ ଦେଶର ସାମ୍ୟବାଦ ବିଶ୍ୱର ଧନୀ ପୁଞ୍ଜିବାଦୀ ଦେଶମାନଙ୍କ ମନରେ ଏକ ଆତଙ୍କ ସୃଷ୍ଟି କରିଥିଲା । ଏସିଆର ଅନ୍ୟ ଦେଶମାନଙ୍କୁ ସାମ୍ୟବାଦୀ ପ୍ରଭାବର କବଳରୁ ସୁରକ୍ଷିତ କରିବା ଉଦ୍ଦେଶ୍ୟରେ ଧନୀ

ସାମ୍ରାଜ୍ୟବାଦୀ ଦେଶମାନେ ପୂର୍ବ ଏସିଆର ଉପରୋକ୍ତ ଦେଶମାନଙ୍କୁ ବିଶେଷ ଭାବରେ ସାହାଯ୍ୟ କଲେ । ଏହି ଦେଶମାନଙ୍କର ବାଣିଜ୍ୟରେ ଅଭିବୃଦ୍ଧି ପାଇଁ ବିଶେଷ ଧ୍ୟାନ ଦେଲେ । ଜାପାନ୍ ୧୯୪୫ ମସିହା ଆଗରୁ ଏକ ମହାଶକ୍ତି ଓ ସାମ୍ରାଜ୍ୟବାଦୀ ଦେଶ ଭାବରେ ଉଠିସାରିଥିଲା । କିନ୍ତୁ ପଶ୍ଚିମର ଧନୀ ଦେଶମାନେ ଜାପାନ୍‌କୁ ମଧ୍ୟ ଅଭିବୃଦ୍ଧିରେ ସହଯୋଗ କଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧର ପରାଜିତ 'ଶତୃ' ଦେଶ ହୋଇଥିଲେ ସୁଦ୍ଧା, ଯୁଦ୍ଧ ପରବର୍ତ୍ତୀ କାଳରେ ଆମେରିକାର ସହଯୋଗରେ ଜାପାନ୍ ଏକ ଆର୍ଥିକ ମହାଶକ୍ତିରେ ପରିଣତ ହେଲା । ତେଣୁ ଯେଉଁ ଉଦାରୀକରଣର ବିକାଶ ପଦ୍ଧତିକୁ ଭାରତ ଆଜି ଅନୁସରଣ କରୁଛି, ସେଇ ପଦ୍ଧତିରେ ଜାପାନ କିମ୍ବା ଏସିଆର 'ବ୍ୟାଘ୍ର' ମାନେ ସମୃଦ୍ଧ ହେଲେ ବୋଲି କହିବା ଭୁଲ୍ ହେବ । ଆଧୁନିକ ବିଶ୍ୱର ଯେଉଁ ଦେଶମାନେ ସମୃଦ୍ଧ କିମ୍ବା ଆର୍ଥିକ ମହାଶକ୍ତି ବୋଲାଉଛନ୍ତି ସେମାନଙ୍କର ଏକ ସାମ୍ରାଜ୍ୟବାଦୀ ପୃଷ୍ଠଭୂମି ଅଛି ଓ ଏବେ ମଧ୍ୟ ଆର୍ଥିକ କ୍ଷେତ୍ରରେ ସେମାନେ ବିକାଶଶୀଳ ଦେଶମାନଙ୍କୁ ଉପନିବେଶ ପରି ବ୍ୟବହାର କରୁଛନ୍ତି । ତେଣୁ ଆଧୁନିକ ପ୍ରଯୁକ୍ତିବିଦ୍ୟା ଦ୍ୱାରା ଯେକୌଣସି ଦେଶ ଧନୀ ଓ ଶିଳ୍ପୋନ୍ନତ ହୋଇପାରିବ ବୋଲି ଯେଉଁ ପ୍ରଚଳିତ ଧାରଣା ଅଛି, ତାହା ଠିକ୍ ନୁହେଁ । ଆଧୁନିକ ବିକାଶ ପଦ୍ଧତି କହିଲେ ଆର୍ଥିକ କ୍ଷେତ୍ରରେ ଅତ୍ୟାଧୁନିକ ଯନ୍ତ୍ରବିଦ୍ୟାର ଉତ୍ତରୋତ୍ତର ପ୍ରୟୋଗ । ଯେଉଁ ଦେଶର ନିଜସ୍ୱ ପୁଞ୍ଜି ନାହିଁ, ସେ ଧନୀ ଦେଶରୁ ଋଣ ନେଉ, କିମ୍ବା ବିଦେଶୀ କମ୍ପାନୀମାନଙ୍କୁ ଡାକି ଆଣୁ, ଏହାହିଁ ଆଧୁନିକ ବିକାଶ ପଦ୍ଧତି । ଗତ ଅର୍ଦ୍ଧଶତାବ୍ଦୀ ଧରି ବିକାଶଶୀଳ ଦେଶମାନେ ଆର୍ଥିକ କ୍ଷେତ୍ରରେ ବିଜ୍ଞାନର ଏତାଦୃଶ ପ୍ରୟୋଗ କରିବା ଫଳରେ କେତେ ଲାଭ କ୍ଷତି ହୋଇଛି, ତାହାର ବିଧିବଦ୍ଧ ସମୀକ୍ଷା ହୋଇନାହିଁ ।

କିନ୍ତୁ ସଂଯୁକ୍ତ ରାଷ୍ଟ୍ର ସଙ୍ଘ (ୟୁ.ଏନ୍.ଓ.)ର ମାନବୀୟ ବିକାଶ ସର୍ବେକ୍ଷଣର ରିପୋର୍ଟ୍ ଆଜିକାଲି ପ୍ରତିବର୍ଷ ପ୍ରକାଶିତ ହେଉଛି । ଏହାକୁ ଅନୁଧ୍ୟାନ କଲେ ଜଣାପଡ଼ିବ ଯେ ଆଧୁନିକ ବୈଜ୍ଞାନିକ କୌଶଳରୁ ପାରୁ ପର୍ଯ୍ୟନ୍ତ ବ୍ୟବହାର କରିବାର ଚେଷ୍ଟା କରି ସେମାନେ କେଉଁ ଅବସ୍ଥାରେ ପହଞ୍ଚିଛନ୍ତି । କ୍ଷୁଧାର୍ତ୍ତ ଓ ବାସହୀନ ଲୋକମାନଙ୍କର ସଂଖ୍ୟା ପ୍ରାଚୀନ ଓ ମଧ୍ୟଯୁଗ ତୁଳନାରେ ବଢ଼ିଛି । ଜୀବନଧାରଣ ଓ ଜୀବିକା ଦୃଷ୍ଟିରୁ ପୃଥିବୀର ଏକ ତୃତୀୟାଂଶ ଲୋକ ଅସହାୟ । ପ୍ରାଚୀନ ଓ ମଧ୍ୟଯୁଗ ମାନଙ୍କରେ ୧୫-୨୦ ବର୍ଷରେ କେବେ ଥରେ ମହାମାରୀ କିମ୍ବା ନିରବଚ୍ଛିନ୍ନ ଅନାବୃଷ୍ଟି ଆସିଲେ ଲୋକମାନେ କୀଟପତଙ୍ଗ ପରି ମରୁଥିଲେ । କିନ୍ତୁ ପ୍ରତିଦିନ, ଜୀବନ ଯାକ ଅଧାଖିଆ ହୋଇ ବାସହୀନ ହୋଇ ରହୁଥିବା ଲୋକଙ୍କର ସଂଖ୍ୟା ଅନେକ ପ୍ରାଚୀନ ବା ମଧ୍ୟଯୁଗୀୟ ସଭ୍ୟତା ତୁଳନାରେ ଆଜି ବହୁତ ବେଶୀ ।

ତେଣୁ ଏ କଥାରୁ ଠିକ୍ ଭାବରେ ବୁଝିବାକୁ ହେବ ଯେ ଆଧୁନିକ ବିଜ୍ଞାନ କାହାକୁ, କେଉଁଠାରେ, କିପରି ସୁଖ ଦେଇଛି । ଅଳ୍ପ କେତେକ ଦେଶକୁ ଓ ସବୁ ଦେଶର କେତେକ ଅଳ୍ପ ସଂଖ୍ୟକ ଗୋଷ୍ଠୀଙ୍କୁ ଆଧୁନିକ ବିଜ୍ଞାନ ନିଶ୍ଚୟ ଶକ୍ତିଶାଳୀ କରିଛି ଓ ସୁଖ ଦେଇଛି । ପୃଥିବୀଯାକର ଉପଯୋଗୀ ଓ ଉପଭୋଗ୍ୟ ଜିନିଷମାନଙ୍କୁ ତାଙ୍କ ପାଖରେ ଠୁଳ କରିଦେଇଛି । ବସ୍ତୁମାନଙ୍କର ଉପଭୋଗରୁ ସୁଖ ମିଳେ । ଆଉ

ଗୋଟିଏ ପ୍ରକାରର ସୁଖ କ୍ଷମତାରୁ ମିଳିଥାଏ । ବିଶେଷ ପ୍ରୟୋଜନ ନହେଲେ ମଧ୍ୟ ଯିଏ ବହୁତ ଜିନିଷ ନିଜ ପାଖରେ ରଖିଥାଏ, ବଞ୍ଚିତ ଲୋକମାନଙ୍କ ସମକ୍ଷରେ ତାହାର ଏକ କ୍ଷମତା ସୃଷ୍ଟି ହୁଏ । ଏହି କ୍ଷମତା ଯୋଗୁଁ ସେ ଗର୍ବ ଓ ସନ୍ତୋଷ ଅନୁଭବ କରେ । ଏହା ହେଉଛି କ୍ଷମତାର ସୁଖ । ଯେଉଁ ଉପାୟରେ ଓ ଯେପରି ଭାବରେ ଆଧୁନିକ ପ୍ରଯୁକ୍ତି ବିଦ୍ୟା କେତେକ ଦେଶକୁ ବା କେତେକ ଶ୍ରେଣୀ ବିଶେଷଙ୍କୁ ଉପଭୋଗ ତଥା କ୍ଷମତାର ସୁଖ ଦେଇଛି, ସେହି ଉପାୟରେ ସବୁ ଲୋକଙ୍କ ପାଇଁ ସୁଖ କିମ୍ବା ସବୁ ଦେଶକୁ ଶକ୍ତିସମ୍ପନ୍ନ କରାଯାଇପାରିବ ନାହିଁ । କାରଣ ଏହି ଯେ ପ୍ରଯୁକ୍ତି ବିଦ୍ୟାର ମୁଖ୍ୟ କୌଶଳ ହେଉଛି ଠୁଳ କରିବା (କେନ୍ଦ୍ରୀକରଣ), ସୃଷ୍ଟି କରିବା ନୁହେଁ ।

ଗାନ୍ଧୀଜୀଙ୍କର ଚରଖାନୀତିକୁ ବହୁତ ସମାଲୋଚନା କରାଯାଏ । କରାଯିବା ଉଚିତ ମଧ୍ୟ । ଗାନ୍ଧିବାଦୀ ନୀତିରେ ଉନ୍ନତିର ଆବଶ୍ୟକତା ଅଛି ଓ ତାହା ଆଲୋଚନା ସମାଲୋଚନା ମାଧ୍ୟମରେ ହିଁ ହୋଇ ପାରିବ । କିନ୍ତୁ ଆଧୁନିକ ପ୍ରଯୁକ୍ତି ବିଦ୍ୟା ବିଷୟରେ ଗାନ୍ଧୀଙ୍କର ଯେଉଁ ବ୍ୟବହାରିକ ଆପତ୍ତି ଥିଲା ତାହାର ଖଣ୍ଡନ ଆଧୁନିକତାବାଦୀ ମାନେ କରିପାରି ନାହାନ୍ତି । ଏସିଆ ଓ ଆଫ୍ରିକାର ଦେଶମାନେ ସ୍ୱାଧୀନ ହେବାର ବହୁ ପୂର୍ବରୁ ଗାନ୍ଧୀ ଦୃଢ଼ତାର ସହ କହିଥିଲେ ଯେ ଆଧୁନିକ ପ୍ରଯୁକ୍ତି ବିଦ୍ୟା ଏହି ଦେଶମାନଙ୍କୁ ସମୃଦ୍ଧ କରିପାରିବ ନାହିଁ । ପୃଥିବୀର ସବୁ ଦେଶ ଓ ସବୁ ଲୋକଙ୍କୁ ୟୁରୋପ୍ ଓ ଆମରିକାର ଜୀବନ ସ୍ତରକୁ ନିଆଯିବାର ଅର୍ଥ ହେଉଛି ଯେ ପୃଥିବୀ ପୃଷ୍ଠରୁ ଉପନିବେଶବାଦକୁ ହଟେଇ ମହାକାଶରେ ଥିବା ଗ୍ରହ ନକ୍ଷତ୍ରକୁ ଯାଇ ସେଠାରେ ପୃଥିବୀର ଉପନିବେଶ ସ୍ଥାପନ କରିବା ।

ଗାନ୍ଧିଜୀ ତାଙ୍କ ନିଜ ଭାଷାରେ ଠିକ୍ ଏହି କଥା କହିଛନ୍ତି । କେବଳ ଉପନିବେଶବାଦ ମାଧ୍ୟମରେ ହିଁ ଧନର ଏପରି ଏକତ୍ରୀକରଣ ସମ୍ଭବ । ଏହାର ଅନ୍ୟ ଏକ ତାତ୍ପର୍ଯ୍ୟ ହେଉଛି ଯେ ବିଶ୍ୱରୁ ଯଦି ଆର୍ଥିକ ଉପନିବେଶବାଦକୁ ପୂରାପୂରି ହଟେଇ ଦିଆଯିବ, ତାହାହେଲେ ୟୁରୋପ୍-ଆମେରିକାର ସମୃଦ୍ଧି ଭୁଷୁଡ଼ି ପଡ଼ିବ । କଳ୍ପନା କରନ୍ତୁ ଯେ ଏସିଆ, ଆଫ୍ରିକା ଓ ଲାଟିନ୍-ଆମେରିକାର ଦେଶମାନେ ଆଉ ପାଶ୍ଚାତ୍ୟ ଦେଶୀୟ କମ୍ପାନୀମାନଙ୍କର ଜିନିଷଗୁଡ଼ିକୁ କିଣିବେ ନାହିଁ, କିମ୍ବା ନିଜର କଞ୍ଚାମାଲ୍ ସେମାନଙ୍କୁ ବିକ୍ରୟ କରିବେ ନାହିଁ । ତାହାହେଲେ ତାଙ୍କର କେଉଁ ବିଜ୍ଞାନ ସେଠିକାର ପ୍ରଚଳିତ ସମୃଦ୍ଧି ଓ ଜୀବନସ୍ତରକୁ ରକ୍ଷା କରିବ ?

ଆମେ ଆଧୁନିକତାବାଦୀମାନେ ଯଦି ଗାନ୍ଧୀଙ୍କର ଉପରୋକ୍ତ ଯୁକ୍ତିର ଖଣ୍ଡନ କରିପାରିବା ନାହିଁ, ତାହାହେଲେ ତର୍କ ଅନୁଯାୟୀ ଆମକୁ କହିବାକୁ ହେବ ଯେ ଆଧୁନିକ ପ୍ରଯୁକ୍ତି ବିଦ୍ୟା ହେଉଛି ଏକ ସାମ୍ରାଜ୍ୟବାଦୀ ବିଜ୍ଞାନର ପରିଣାମ ମାତ୍ର । ଅଣସାମ୍ରାଜ୍ୟବାଦୀମାନେ ଏହାର ସିଧା ଲାଭ ଉଠାଇପାରିବେ ନାହିଁ । ସାମ୍ରାଜ୍ୟବାଦର ଆବଶ୍ୟକତାଗୁଡ଼ିକୁ ପୂରା କରିବା ପାଇଁ ବିଭିନ୍ନ ବୈଜ୍ଞାନିକ କୌଶଳଗୁଡ଼ିକର ଉଦ୍‌ଭାବନ ହେଉଛି, ତେଣୁ ଏକ ସାମ୍ରାଜ୍ୟବାଦୀ ଓ ଉପନିବେଶବାଦୀ ସମ୍ପର୍କର ଢାଞ୍ଚା ଭିତରେ ହିଁ ଏହାକୁ କାର୍ଯ୍ୟକାରୀ କରାଯାଇପାରିବ । ଗୋଟିଏ ନିର୍ଦ୍ଦିଷ୍ଟ ପରିସ୍ଥିତି ବା ଉଦ୍ଦେଶ୍ୟକୁ

ନେଇ ତିଆରି ହୋଇଥିବା ପ୍ରଯୁକ୍ତିବିଦ୍ୟା ଏକ ଭିନ୍ନ ପରିସ୍ଥିତି ବା ଉଦ୍ଦେଶ୍ୟର କାର୍ଯ୍ୟକୁ ସମ୍ପାଦିତ କରିପାରିବ ନାହିଁ ।

ନିମ୍ନଲିଖିତ ଉଦାହରଣଟି ଏହାକୁ ସ୍ପଷ୍ଟ କରିଦେଇପାରିବ । ସାଇକେଲ୍ ଚାଳିତ ରିକ୍ସା ଏକ ନିର୍ଦ୍ଦିଷ୍ଟ ପରିସ୍ଥିତିରୁ ଉପୁଜିଥିବା ପ୍ରଯୁକ୍ତି ବିଦ୍ୟା । ଗରିବ ଦେଶର ଛୋଟ ସହର ମାନଙ୍କରେ ବାସ କରୁଥିବା ମଧ୍ୟବିତ୍ତ ଭଦ୍ରଲୋକଙ୍କ ପାଇଁ ଏହା ଉଦ୍ଦିଷ୍ଟ । ଏହାକୁ ପ୍ରଚଳିତ କରାଇବା ସକାଶେ ଏପରି ଏକ ସମାଜ ଦରକାର ଯେଉଁଠି ମଧ୍ୟବିତ୍ତଙ୍କ ପାଖେ ପାଖେ ଗୋଟିଏ ଅତି ଦରିଦ୍ର ଶ୍ରେଣୀ ରହିଥିବ । ଯଦି କେବେ ଏହି ଭେଦ ସମାପ୍ତ ହୋଇଯିବ ତାହେଲେ ରିକ୍ସାର ପ୍ରଚଳନ ବନ୍ଦ ହୋଇଯିବ । ପ୍ରଯୁକ୍ତିବିଦ୍ୟା ସମସ୍ତଙ୍କୁ ସମାନ ଭାବରେ ଉପକୃତ କରେ ନାହିଁ । ଜଣକୁ ଭଦ୍ରଲୋକ କରାଏ, ଅନ୍ୟ ଜଣକୁ ରିକ୍ସାବାଲା କରାଏ । ଉଭୟଙ୍କର ବୈଷମ୍ୟ ଉପରେ ରିକ୍ସା ତିଷ୍ଠି ରହିଛି । ଆଧୁନିକ ପ୍ରଯୁକ୍ତି ବିଦ୍ୟା ଠିକ୍ ଏହି ରିକ୍ସା ପରି । କେତେକ ଦେଶକୁ ବିକଶିତ ଓ ଶିଳ୍ପୋନ୍ନତ କରିଛି, ଅନ୍ୟସମସ୍ତଙ୍କୁ 'ବିକାଶଶୀଳ' କରି ରଖିଛି ।

ଆମେ ପ୍ରତିଦିନ ଖବରକାଗଜରେ ପଢୁଛୁ ଯେ ଧନୀ ଓ ଶିଳ୍ପୋନନତ ଦେଶମାନେ ଗରିବ ବିକାଶଶୀଳ ଦେଶମାନଙ୍କରେ ବଜାର ଖୋଜୁଛନ୍ତି । ଯେଉଁଠି ପ୍ରଚୁର କଞ୍ଚାମାଲ୍ ଓ ମାନବ ଶ୍ରମ ଶସ୍ତା ଦାମ୍‌ରେ ମିଳିପାରୁଛି, ଯେଉଁମାନେ ନିଜର ବିକାଶ ପାଇଁ ଆଧୁନିକ ଯନ୍ତ୍ରପାତି ଚାହାନ୍ତି, ଯେଉଁଠି ବିଦେଶରୁ ଭୋଗ୍ୟ ବସ୍ତୁମାନ କିଣି ନିଜ ଜୀବନ ସ୍ତରକୁ ବଢ଼ାଇ ଚାଲିଥିବା ଏକ ନବ୍ୟଧନିକ ଶ୍ରେଣୀ ଓ ନବ୍ୟ-ମଧ୍ୟବିତ୍ତ ଶ୍ରେଣୀ ସୃଷ୍ଟି ହେଲେଣି, ଏହିପରି ଦେଶମାନେ ୟୁରୋପ୍-ଆମେରିକାର ଦୃଷ୍ଟିରେ ଉତ୍କୃଷ୍ଟ ବଜାର ବୋଲି ପରିଗଣିତ ହେଉଛନ୍ତି । ୟୁରୋପ୍-ଆମେରିକା ହେଉଛନ୍ତି ଧନର ସମ୍ରାଟ୍ ଓ ସାରା ଦୁନିଆର ବଜାର ଉପରେ ତାଙ୍କର ଆଧିପତ୍ୟ ଅଛି । ସେସବୁର ପରିଚାଳନା ଓ ନିୟନ୍ତ୍ରଣ ପାଇଁ ଯେତେ ନୂଆ ନୂଆ ପ୍ରଯୁକ୍ତି ବିଦ୍ୟାର ଉଦ୍‌ଭାବନ ହେଉଛି, ତାହା ଆମେ କରିପାରିବା ନାହିଁ । କାରଣ ଆମର ଏତେ ବଡ଼ ବଜାର ନାହିଁ କିମ୍ବା ଏତେ ଧନ ନାହିଁ । ତେଣୁ ଆଧୁନିକ ପ୍ରଯୁକ୍ତି ବିଦ୍ୟାର ବ୍ୟବହାର କରିବାକୁ ହେଲେ ଆମକୁ ମୁଖ୍ୟତଃ କିଣିବାକୁ ପଡ଼ିଥାଏ ।

ତେଣୁ ଆମର ମୋଟ୍ ଯନ୍ତ୍ରପାତି ଧନୀ ଦେଶ ତୁଳନାରେ ବହୁତ କମ୍ । ଆମେରିକାରେ ମୁଣ୍ଡପିଛା ଯେତିକି ଯନ୍ତ୍ରପାତି ଆମ ଦେଶରେ ତାହାର ଶହେ ଭାଗରୁ ଗୋଟିଏ ଭାଗ ମଧ୍ୟ ହେବନାହିଁ । ଆଧୁନିକ ଯନ୍ତ୍ରର ବହୁଳତା ଯଦି ଉନ୍ନତିର ଲକ୍ଷଣ ହୁଏ, ତାହାହେଲେ ଆମେ କେବେ ମଧ୍ୟ ୟୁରୋପ୍-ଆମେରିକା ଭଳି 'ଉନ୍ନତ' ହୋଇପାରିବା ନାହିଁ । ଆମେ ସାଇକେଲ୍ ରିକ୍ସାର ଭଦ୍ରଲୋକ ହୋଇପାରିବା ନାହିଁ । କିନ୍ତୁ ୟୁରୋପ୍-ଆମେରିକା ଚାହାନ୍ତି ଯେ ଆମର ଯନ୍ତ୍ରପାତିର ପରିମାଣ ବଢୁ । ତାହାହେଲେ ସେମାନଙ୍କ ଦ୍ୱାରା ତିଆରି ଜିନିଷର ବିକ୍ରି ବଢ଼ିଚାଲିବ ।

ସେମାନେ ଯେତେବେଳେ ଆମ ଦେଶକୁ ଆସିବେ, ସେମାନଙ୍କର ଯାତାୟତର ସୁବିଧା ପାଇଁ, ସେମାନଙ୍କର ରହଣି ଓ ମନୋରଞ୍ଜନ ପାଇଁ, ସେମାନେ ତାଙ୍କ ଦେଶର

କଥା କହିଲେ ଆମେ ତାହାର ଉତ୍ତର ଦେବାପାଇଁ, ସେମାନେ ଡାକରା ଦେଲେ ଆମେ ଶୀଘ୍ର ତାଙ୍କ ପାଖରେ ପହଞ୍ଚି ଯିବା ପାଇଁ, ଆମ ଦେଶରେ ସେମାନଙ୍କର ବ୍ୟାପାରର ପରିଚାଳନା ପାଇଁ – ଏସବୁ ପାଇଁ ଆମ ଦେଶରେ ମଧ୍ୟ ଅତ୍ୟାଧୁନିକ ଯନ୍ତ୍ରପାତିର ପ୍ରଚଳନ ହେବା ଆବଶ୍ୟକ । ଅଳ୍ପ ଲୋକ ତାହାର ସୁବିଧା ପାଇବେ ସତ । ସେଥିରେ କ'ଣ ହୋଇଗଲା ? ଦେଶକୁ ଆଧୁନିକତା ଆସିଯିବ – ଏହା ଆମ ସନ୍ତୋଷର ବିଷୟ ନୁହେଁ କି ? ଏହାକୁ ଅଗ୍ରାଧିକାର ଦେବାକୁ ହେବ । ପଇସା ନିଅଣ୍ଟ ହେଲେ ଆମେ ଆମ କଞ୍ଚାମାଲ ଓ ମାନବ ଶ୍ରମକୁ ଶସ୍ତାରେ ବିକି ଦେବା; ବୀମା, ବନ୍ଦର ଓ ଖଣିମାନଙ୍କର ମାଲିକାନା ବିଦେଶୀଙ୍କ ହାତରେ ସମର୍ପି ଦେବା; ଋଣ ଉପରେ ଋଣ କରିବା; ଅନ୍ୟାନ୍ୟ ସବୁ କାର୍ଯ୍ୟରେ ଖର୍ଚ୍ଚକାଟ କରିବା । 'ଅନ୍ୟାନ୍ୟ ସବୁ ଖର୍ଚ୍ଚ' କହିଲେ ତାହା ଭିତରେ ଶିକ୍ଷା ଅଛି, ସ୍ୱାସ୍ଥ୍ୟ ଅଛି ଓ କର୍ମନିଯୁକ୍ତି ଅଛି । ଆଧୁନିକ ପ୍ରଯୁକ୍ତି ବିଦ୍ୟା ଆଣିବା ଉଦ୍ଦେଶ୍ୟରେ ଆମେ ମାଗଣା ଶିକ୍ଷାଦାନର ବ୍ୟବସ୍ଥାକୁ ବନ୍ଦ କରିଦେବା । କର୍ମନିଯୁକ୍ତି କ୍ଷେତ୍ରରେ ନିର୍ମମ ହୋଇ ଛଟେଇ କରିବା, କାରଣ ଅତ୍ୟାଧୁନିକ ପ୍ରଯୁକ୍ତିବିଦ୍ୟା ଶ୍ରମିକମାନଙ୍କୁ ଦରକାର କରେ ନାହିଁ । ଗରିବ ଦେଶରେ ଆଧୁନିକ ଓ ଅତ୍ୟାଧୁନିକ ପ୍ରଯୁକ୍ତିବିଦ୍ୟାର ପ୍ରଚଳନ ବଢ଼ାଇବାକୁ ହେଲେ ସେଥିପାଇଁ ଉପରୋକ୍ତ ମୂଲ୍ୟ ଦେବାକୁ ପଡ଼ିବ । ଆପଣ ପ୍ରସ୍ତୁତ ତ ?

ଯେଉଁମାନେ ମୂଲ୍ୟ ଦେବାପାଇଁ କୁଣ୍ଠାବୋଧ କରିବେ, ସେମାନେ ସ୍ପଷ୍ଟ ଭାବରେ ଜାଣିଯିବା ଉଚିତ୍ ଯେ ଆମେ ଯାହାକୁ ଆଧୁନିକ ବା ଅତ୍ୟାଧୁନିକ ପ୍ରଯୁକ୍ତି ବିଦ୍ୟା ବୋଲି କହୁଛୁ, ତାହାର ଏକ ସାମ୍ରାଜ୍ୟବାଦୀ ଚରିତ୍ର ରହିଛି । କେଉଁଠାରେ ଓ କେଉଁ ଅବସ୍ଥାରେ ପ୍ରଯୁକ୍ତି ବିଦ୍ୟା ଓ ଶିଳ୍ପକୁ ଆମେ ସାମ୍ରାଜ୍ୟବାଦୀ ବୋଲି କହିବା ? ଏହାର ତିନୋଟି ଲକ୍ଷଣ ଅଛି:

ପ୍ରଥମ, ସାମ୍ରାଜ୍ୟବାଦୀ ପ୍ରଯୁକ୍ତି ବିଦ୍ୟାର କାର୍ଯ୍ୟକ୍ଷେତ୍ର ଅତି ବିଶାଳ । ଗୋଟିଏ ଛୋଟ ସମାଜ, କ୍ଷୁଦ୍ର ଅଞ୍ଚଳ କିମ୍ବା ସୀମିତ ପୁଞ୍ଜି କାରବାରର ପରିଧି ଭିତରେ ଏହାକୁ କାର୍ଯ୍ୟକାରୀ କରାଇଲେ ଲାଭଦାୟକ ହେବନାହିଁ । ଏହାର କାର୍ଯ୍ୟକ୍ଷେତ୍ର ଅନ୍ତଃରାଷ୍ଟ୍ରୀୟ କିମ୍ବା ବିଶ୍ୱବ୍ୟାପୀ ହୋଇଥାଏ । ଆଧୁନିକ ଶିଳ୍ପରୁ ଯେଉଁ ପ୍ରଚଣ୍ଡ ଲାଭ ମିଳୁଥିବାର ସୂଚନା ମିଳେ ଓ ଯେଉଁ ଲାଭକୁ ନେଇ ଶିଳ୍ପୋନ୍ନତ ଦେଶମାନେ ସମୃଦ୍ଧ ହେଉଛନ୍ତି, ତାହା କେବଳ ଏହି ବିଶାଳ କାର୍ଯ୍ୟ ପରିଧି ଯୋଗୁଁ ସମ୍ଭବ ହୁଏ । ଜାପାନ୍‌ର ଇଲେକ୍ଟ୍ରୋନିକ୍ ଯନ୍ତ୍ରଗୁଡ଼ିକର ଉତ୍ପାଦନ, କିମ୍ବା ଆମେରିକାର ଫୋର୍ଡ୍ କମ୍ପାନୀର ମୋଟରଗାଡ଼ି ଉତ୍ପାଦନ ଯଦି କେବଳ ସେହି ଦେଶର ଲୋକଙ୍କ ପାଇଁ ସେହି ଦେଶ ଭିତରେ ହେବ, ତାହାହେଲେ ଜାପାନ୍ କିମ୍ବା ଆମେରିକା ଶିଳ୍ପ ସମୃଦ୍ଧ ହୋଇପାରିବ ନାହିଁ ।

ଦ୍ୱିତୀୟ, ଏହାର ସଞ୍ଚାଳନ କେନ୍ଦ୍ର ବହୁ ସହସ୍ର କିଲୋମିଟର୍ ଦୂରରେ ଥାଇପାରେ । ମୁଖ୍ୟ ସଞ୍ଚାଳକ ଓ ମାଲିକମାନଙ୍କର ଶାରୀରିକ ଉପସ୍ଥିତି ସୁଦୂରବର୍ତ୍ତୀ ଶାଖାମାନଙ୍କରେ ଦରକାର ହୁଏ ନାହିଁ । ଶହେଟି ଶିଳ୍ପ ପ୍ରତିଷ୍ଠାନ ପାଇଁ ଗୋଟିଏ ମାଲିକ ଯଥେଷ୍ଟ । ଯେଉଁ ପ୍ରଯୁକ୍ତି ବିଦ୍ୟା ଦ୍ୱାରା ଏହା ସମ୍ଭବ ହେଉଛି, ତାହା ଶିଳ୍ପରେ ସାମ୍ରାଜ୍ୟବାଦ ସୃଷ୍ଟି କରୁଛି ।

ତୃତୀୟ, ଚିରକାଳ ପାଇଁ ଓ ସାରା ବିଶ୍ୱ ପାଇଁ ଗଚ୍ଛିତ ହୋଇଥିବା ପ୍ରାକୃତିକ ସମ୍ପଦଗୁଡ଼ିକ କୌଣସି ଏକ ସ୍ଥାନ ବା କାଳ ପାଇଁ ଏତେ ବେଶୀ ବ୍ୟବହାର କରାଯିବ ଯେ ଅନ୍ୟାନ୍ୟ ସ୍ଥାନମାନେ ଓ ଭବିଷ୍ୟତ ବଂଶଧରମାନେ ସେଗୁଡ଼ିକର ଉପଯୋଗରୁ ସମ୍ପୂର୍ଣ୍ଣ ବଞ୍ଚିତ ହୋଇଯିବେ । ଗୋଟିଏ କ୍ଷମତା ସମ୍ପନ୍ନ ଦେଶ ନିଜର ପ୍ରାକୃତିକ ସମ୍ପଦକୁ ବ୍ୟବହାର ନକରି ପ୍ରଯୁକ୍ତି ବିଦ୍ୟା ବଳରେ ଦୂରଦୂରାନ୍ତରର ପ୍ରାକୃତିକ ସମ୍ପଦଗୁଡ଼ିକୁ ଟାଣିଆଣି ପାରିବ ଓ ଶେଷୋକ୍ତ ଅଞ୍ଚଳକୁ ରିକ୍ତ କରିଦେଇ ପାରିବ । ଆଧୁନିକ ପ୍ରଯୁକ୍ତି ବିଦ୍ୟାର ଏକ ଅପୂର୍ବ ଶକ୍ତି ହେଉଛି ଜିନିଷଗୁଡ଼ିକୁ ଟାଣିଆଣି ଠୁଳ କରିଦେବା । କିନ୍ତୁ ଏହା କ'ଣ ଏକ ମଙ୍ଗଳକାରୀ ଶକ୍ତି ?

ରାଉରକେଲା ଆଞ୍ଚଳିକ ଇଞ୍ଜିନିୟରିଂ କଲେଜ୍‌ର ପ୍ରଫେସର୍ ଓ ବୈଜ୍ଞାନିକ ରାଜେଶ୍ ସିହ୍ନା କହନ୍ତି ଯେ ପାରମ୍ପରିକ କୃଷି ଛଡ଼ା ଅନ୍ୟ କୌଣସି ପ୍ରଯୁକ୍ତି ବିଦ୍ୟା ନାହିଁ ଯାହା ମୌଳିକ ସମ୍ପଦର ସୃଷ୍ଟି କରିପାରେ ବା ତାହାକୁ ବହୁଗୁଣିତ କରିପାରେ । ମୌଳିକ ପଦାର୍ଥଗୁଡ଼ିକୁ ଏକତ୍ରିତ କରି ତହିଁରୁ ଯାହା ବି ତିଆରି ହୁଏ, ଏହି ନିର୍ମାଣ ପ୍ରକ୍ରିୟାରେ ମୌଳିକ ପଦାର୍ଥଗୁଡ଼ିକର ବହୁତ ଅଂଶ ନଷ୍ଟ ହୋଇଯାଏ । ଏହିପରି ଭାବରେ ଆଧୁନିକ ପ୍ରଯୁକ୍ତି ବିଦ୍ୟା ପୃଥିବୀର ପ୍ରାକୃତିକ ସମ୍ପଦର ଲୋପ ହେବାରେ ସାହାଯ୍ୟ କରେ । ଆଧୁନିକ ପ୍ରଯୁକ୍ତି ବିଦ୍ୟା ଏକତ୍ରୀକରଣର କାର୍ଯ୍ୟରେ ଲାଗିଯାଏ ଓ ତାହାର ଗତି ତୀବ୍ର ହୁଏ । ଯାନ୍ତ୍ରିକ ଗତିର ବେଗ ଯେ ଅତ୍ୟନ୍ତ ଚମତ୍କାର ଏଥିରେ ଦ୍ୱିମତ ହେବାର କିଛି ନାହିଁ । କିନ୍ତୁ ସମୟ ଓ ଦୂରତାକୁ ଆଧୁନିକ ମଣିଷ ଜୟ କରିଛି ବୋଲି କହିବା ଏକ ମିଥ୍ୟା ଆସ୍ଫାଳନ । ଆଧୁନିକ ବୋଲାଉଥିବା ଭଦ୍ରଲୋକମାନେ ତାଙ୍କ ନିଜ ଜୀବନକୁ ଅନୁଧ୍ୟାନ କରି କହନ୍ତୁ ଦେଖି ।

ଯେଉଁ ଦେଶମାନେ ଆଧୁନିକ ପ୍ରଯୁକ୍ତି ବିଦ୍ୟାର ଅଭୂତପୂର୍ବ ଉନ୍ନତି ଘଟାଇଛନ୍ତି, ସେମାନଙ୍କୁ ଏବେ ସାମ୍ରାଜ୍ୟବାଦୀ କହିଲେ ହୁଏତ ସେମାନେ ଆପତ୍ତି କରିବେ । କିନ୍ତୁ ପଚାଶ ବର୍ଷ ବା ଶହେ ଦେଢ଼ଶହ ବର୍ଷ ପୂର୍ବେ ସେମାନେ ନିର୍ବିବାଦୀୟ ଭାବରେ ସାମ୍ରାଜ୍ୟବାଦୀ ଥିଲେ । ଆଧୁନିକ ପ୍ରଯୁକ୍ତି ବିଦ୍ୟାର ପ୍ରଭାବଶାଳୀ ରୂପ ସେଇ ସମୟରେ ବାହାରିଲା । ସେମାନେ ଏପରି ବୈଜ୍ଞାନିକ କୌଶଳର ଅନୁସନ୍ଧାନ କଲେ ଯାହାଦ୍ୱାରା ବଡ଼ ବଡ଼ ସାମ୍ରାଜ୍ୟର ଆର୍ଥିକ ଓ ରାଜନୈତିକ ନିୟନ୍ତ୍ରଣ କରିପାରିବେ, ସାମ୍ରାଜ୍ୟର ସବୁ ବଜାରକୁ ଜିନିଷ ପଠାଇ ପାରିବେ ଓ ସାମ୍ରାଜ୍ୟର ସବୁ କୋଣରୁ ନିଜର ଦରକାରୀ ଜିନିଷ ଆଣି ପାରିବେ, ଇତ୍ୟାଦି ।

ବିଜ୍ଞାନର ତାତ୍ତ୍ୱିକ ଆବିଷ୍କାରଗୁଡ଼ିକ ଏଥିପାଇଁ ସାହାଯ୍ୟକାରୀ ହେଲା । କମ୍ପାନୀମାନେ ଓ ସରକାରମାନେ ଖର୍ବ ଖର୍ବ ପରିମାଣର ଟଙ୍କା ଖର୍ଚ୍ଚ କରି ଶ୍ରେଷ୍ଠ ଓ ବିଚକ୍ଷଣ ବୈଜ୍ଞାନିକମାନଙ୍କୁ ଅର୍ଥଲାଭ ଓ ପ୍ରତିଷ୍ଠାର ଲୋଭ ଦେଖାଇ ଏହି କାର୍ଯ୍ୟରେ ଲଗାଇଲେ । ବୈଜ୍ଞାନିକମାନେ ଗବେଷଣାଦ୍ୱାରା ଶୋଷଣ ଓ ଶାସନର ଯନ୍ତ୍ରଗୁଡ଼ିକୁ ଅଦ୍ଭୁତ ଭାବରେ କ୍ଷମତାଶୀଳ କରିଦେଲେ । କମ୍ପାନୀମାନେ ଓ ଶାସକମାନେ ଏହି ଅତି କ୍ଷମତାସମ୍ପନ୍ନ ଯନ୍ତ୍ରମାନଙ୍କୁ ବ୍ୟବହାର କରି ସାରା ପୃଥିବୀକୁ କିଣିନେଲେ । ବୈଜ୍ଞାନିକମାନେ ଗବେଷଣାର ସୁବିଧା ପାଇଁ ଆନନ୍ଦିତ । ସେମାନେ ଜାଣନ୍ତି ନାହିଁ ଓ

ଜାଣିବାକୁ ଚେଷ୍ଟା କରନ୍ତି ନାହିଁ ଯେ ସେମାନଙ୍କ ଦ୍ୱାରା ଉଦ୍ଭାବିତ ଯନ୍ତ୍ରଗୁଡ଼ିକ କିପରି ଶୋଷଣ ଓ ଧ୍ୱଂସ ଉଦ୍ଦେଶ୍ୟରେ ବ୍ୟବହୃତ ହେଉଛି । ସେମାନଙ୍କ ଭିତରୁ ଅଧିକାଂଶ ସରଳ ଭାବରେ ବିଶ୍ୱାସ କରିନିଅନ୍ତି ଯେ ଏହି ଯନ୍ତ୍ରଗୁଡ଼ିକ ସାହାଯ୍ୟରେ ମନୁଷ୍ୟ ସମାଜ ଅଧିକ ସଭ୍ୟ ଓ ସୁଖୀ ହେଉଛି । ବିଶ୍ୱବିଦ୍ୟାଳୟ ଓ ସଞ୍ଚାର ମାଧ୍ୟମ ଏହି ମିଥ୍ୟା ଧାରଣାକୁ ଅହରହ ପ୍ରଚାରିତ କରୁଛନ୍ତି ।

ଆଧୁନିକ ପ୍ରଯୁକ୍ତି ବିଦ୍ୟାର ନିର୍ମାଣ ଓ ବ୍ୟବହାର ସାଙ୍ଗରେ ସାମାଜିକ ପ୍ରତିଷ୍ଠା ଓ ଧନର ସଞ୍ଜୋଗ ରହିଛି । ଯେମିତି ଆଜିକାଲି କମ୍ପ୍ୟୁଟର ଓ ଇଲେକ୍ଟ୍ରୋନିକ୍-ମନୋରଞ୍ଜନ ସାଙ୍ଗରେ ପଇସା ଓ ପ୍ରତିଷ୍ଠା ଆକାଂକ୍ଷା ମେଧାବୀ ଯୁବକଯୁବତୀମାନଙ୍କର ଥାଏ । ଯେଉଁମାନେ ଆଦର୍ଶବାଦୀ ଓ ସମାଜର କଲ୍ୟାଣ ଚାହାନ୍ତି, ସେମାନେ ମଧ୍ୟ ଏହିସବୁ କ୍ଷେତ୍ରରେ ଜୀବିକା ପାଇଁ ପ୍ରବେଶ କରୁଛନ୍ତି । ଯେଉଁ କାମରୁ ଆମେ ଉପାର୍ଜନ କରୁ ତାହାର ସପକ୍ଷର ଯୁକ୍ତିଗୁଡ଼ିକୁ ଶୀଘ୍ର ଗ୍ରହଣ କରିନେଉ । ତେଣୁ ବିଜ୍ଞାନ କ୍ଷେତ୍ରରେ କାମ କରୁଥିବା ଲୋକେ ଆଧୁନିକ ବିଜ୍ଞାନ ସପକ୍ଷରେ ଥିବା ଭ୍ରାନ୍ତିଗୁଡ଼ିକର ସହଜରେ ଶିକାର ହୁଅନ୍ତି । ସବୁ ଯୁଗରେ କିଛି ଭ୍ରାନ୍ତି ଓ ଅନ୍ଧବିଶ୍ୱାସ ଥାଏ । ଗ୍ରୀକ୍ ଓ ରୋମାନ୍ ସଭ୍ୟତାର ଉତ୍କର୍ଷ ସମୟରେ ସେଇ ସମୟର ମହାପଣ୍ଡିତ ଓ ପ୍ରଗତିଶୀଳ ଲୋକମାନେ ଦାସପ୍ରଥାକୁ ଏକ ସ୍ୱାଭାବିକ ନିୟମ ଭାବରେ ଗ୍ରହଣ କରୁଥିଲେ । ନାରୀକୁ ପୁରୁଷ ତୁଳନାରେ ଅଯୋଗ୍ୟ ବୋଲି ଭାବିବାର ବଦ୍ଧମୂଳ ଧାରଣା ବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ୟୁରୋପୀୟ ଦେଶମାନଙ୍କରେ ଥିଲା । ମଧ୍ୟଯୁଗରେ ବହୁଦେଶର ଜ୍ଞାନୀ ଓ ଦାର୍ଶନିକମାନେ ମଧ୍ୟ ମନୁଷ୍ୟାକୃତିର ଈଶ୍ୱରଟିଏ ଅଛି ବୋଲି ଧରିନେଉଥିଲେ । ଆମେ ମଧ୍ୟ ଅନେକ କଥାକୁ ପ୍ରଶ୍ନ ନକରି ଧରିନେଉ । ପ୍ରତ୍ୟେକ ଯୁଗରେ ଏପରି କିଛି କଥା ଥାଏ । ଆଧୁନିକ ଯୁଗର ମହାନ୍ ଭ୍ରାନ୍ତି ହେଉଛି ପ୍ରଯୁକ୍ତି ବିଦ୍ୟା ବିଷୟରେ ।

ଯୁଗଭ୍ରାନ୍ତି କାରଣରୁ କାର୍ଲ୍ ମାର୍କ୍ସ ସବୁ ମାନବୀୟ ଘଟଣାକୁ ଶ୍ରେଣୀ ସ୍ୱାର୍ଥଦ୍ୱାରା ପ୍ରଭାବିତ ବୋଲି ଶିକ୍ଷା ଦେଲେ, କିନ୍ତୁ ପ୍ରଯୁକ୍ତି ବିଦ୍ୟାକୁ ଶ୍ରେଣୀ ସ୍ୱାର୍ଥର ଊର୍ଦ୍ଧ୍ୱରେ ରଖିଲେ । କମ୍ୟୁନିଷ୍ଟ୍ ଆନ୍ଦୋଳନକୁ ଦୁନିଆରେ ଏତେ ବଡ଼ ସଫଳତା ମିଳିବା ସତ୍ତ୍ୱେ ସୋଭିୟତ୍ ଋଷ୍ ଓ ପୂର୍ବ ୟୁରୋପ୍‌ର କମ୍ୟୁନିଷ୍ଟ୍ ସରକାରଗୁଡ଼ିକ ଯଥେଷ୍ଟ ପୂର୍ବାଭାସ ନଦେଇ ହଠାତ୍ ଭୁଷୁଡ଼ି ପଡ଼ିଲେ ଓ ବଞ୍ଚି ରହିଥିବା କମ୍ୟୁନିଷ୍ଟ୍ ଦଳମାନେ ପୁଞ୍ଜିବାଦର ବିକଳ୍ପ ଖୋଜିବା ଛାଡ଼ିଦେଲେ । ଏହି ଦୁଃଖାନ୍ତକ ମହାନ୍ ଐତିହାସିକ ଘଟଣାର ଏ ପର୍ଯ୍ୟନ୍ତ କୌଣସି ବିଶ୍ୱାସଯୋଗ୍ୟ ବିଶ୍ଳେଷଣ ହୋଇନାହିଁ । ଯଦି ଗୁରୁତର ଭାବରେ କେହି ଏହାର କାରଣଗୁଡ଼ିକୁ ଖୋଜିବେ, ତାହେଲେ ପ୍ରଯୁକ୍ତିବିଦ୍ୟା ଗୋଟିଏ ପ୍ରଧାନ କାରଣ ବୋଲି ଜଣାପଡ଼ିବ ।

ଯେଉଁ ପ୍ରଯୁକ୍ତି ବିଦ୍ୟାକୁ ସାମ୍ରାଜ୍ୟବାଦୀ ଦେଶମାନେ ତାଙ୍କର ପୁଞ୍ଜିବାଦୀ ସମାଜକୁ ଓ ବୁର୍ଜୁଆ ଶ୍ରେଣୀକୁ ଐଶ୍ୱର୍ଯ୍ୟଶାଳୀ କରାଇବା ପାଇଁ ବିକଶିତ କଲେ ଓ ବ୍ୟବହାର କଲେ, ସେହି ପ୍ରଯୁକ୍ତିବିଦ୍ୟାକୁ ଧରି ସୋଭିଏତ୍ ଋଷ୍‌ର କମ୍ୟୁନିଷ୍ଟ୍‌ମାନେ ଏକ ସମୃଦ୍ଧ ସାମ୍ୟବାଦୀ ସମାଜ ଗଠନ କରିବାର ଲକ୍ଷ୍ୟ ଧାର୍ଯ୍ୟ କଲେ । ଏଥିପାଇଁ ପରିସ୍ଥିତି ଅନୁକୂଳ ନଥିଲା । ତେଣୁ ଏକଛତ୍ରବାଦୀ ଶାସନ ଦରକାର ହେଲା । ବିପ୍ଳବରେ ମିଳିଥିବା

ବିଜୟର ଉତ୍ସାହକୁ ଦ୍ୱିଗୁଣିତ କରି ସେମାନେ ସୋଭିଏତ୍ ଋଷ୍‌କୁ ପୃଥିବୀର ସର୍ବାଧିକ ଶିଳ୍ପୋନ୍ନତ ଦେଶ ରୂପେ ଗଢ଼ିବାର ସଙ୍କଳ୍ପ କଲେ ।

ଅଳ୍ପ ସମୟ ଭିତରେ ସେମାନେ ଯୁଦ୍ଧର ପ୍ରଯୁକ୍ତି ବିଦ୍ୟାରେ ଆମେରିକାର ସମକକ୍ଷ ହୋଇଗଲେ । କିନ୍ତୁ ପରେ ପରେ ସେମାନଙ୍କର କାମର ଦୃଢ଼ତା କମି ଆସିଲା । କାରଣ ଆଧୁନିକତମ ପ୍ରଯୁକ୍ତି ବିଦ୍ୟାକୁ ନିରନ୍ତର ଅଧିକ କ୍ଷମତାଶୀଳ କରିବା ନିମନ୍ତେ ତାତ୍ତ୍ୱିକ ଓ ପ୍ରୟୋଗାତ୍ମକ ଅନୁସନ୍ଧାନ କାର୍ଯ୍ୟରେ ଅମାପ ପରିମାଣର ଅର୍ଥ ଆବଶ୍ୟକ । ଏତେ ପୁଞ୍ଜି ସାମ୍ୟବାଦୀ ଦେଶମାନେ ଆଣିବେ କେଉଁଠୁ ? ଯୁଦ୍ଧ ଓ ପ୍ରତିରକ୍ଷାର ଶିଳ୍ପ ଗୁଡ଼ିକରେ ଅତ୍ୟଧିକ ପୁଞ୍ଜି ଲଗାଇଦେବା ପରେ ଜୀବନ ଉପଯୋଗୀ ଶିଳ୍ପମାନଙ୍କରେ ଲଗାଇବା ପାଇଁ ସେମାନଙ୍କର ପୁଞ୍ଜି ନଥିଲା । ଆଧୁନିକ ଶିଳ୍ପର ସର୍ବାଙ୍ଗୀନ ଓ ତୀବ୍ର ବିକାଶ ପାଇଁ ଶସ୍ତା ଶ୍ରମ, କଞ୍ଚାମାଲ୍ ଓ ବଜାର ଯୋଗାଉଥିବା ଏକ ବିଶାଳ ଔପନିବେଶିକ ଭୂଖଣ୍ଡ ଦରକାର । ତାହା ସେମାନଙ୍କର ନଥିଲା । ପୂର୍ବ ୟୁରୋପ୍‌ର କମ୍ୟୁନିଷ୍ଟ୍ ଦେଶମାନଙ୍କୁ ଉପନିବେଶ କରିବାର ଚେଷ୍ଟା ମଧ୍ୟ ବିଫଳ ହେଲା । କାରଣ ସେମାନେ ପ୍ରତିରୋଧ କଲେ ।

ପରିଣାମ ହେଲା ଯେ ଏତେ ବଡ଼ ସୋଭିଏତ୍ ସଙ୍ଘ ଭିତରେ କେବଳ ମସ୍କୋ ଓ ଲେନିନ୍‌ଗ୍ରାଡ୍ ଭଳି ସହରର ଆଖପାଖରେ ଆଧୁନିକ ସମୃଦ୍ଧିର ଦ୍ୱୀପମାନ ତିଆରି ହେଲା । କିନ୍ତୁ ନଗର ଓ ଗ୍ରାମ ମଧ୍ୟରେ ପ୍ରଭେଦ ବଢ଼ିଗଲା । ଗୋରା ଚମଡ଼ାର ୟୁରୋପୀୟ ବଂଶର ଲୋକମାନେ ବାସ କରୁଥିବା ଅଞ୍ଚଳ ତୁଳନାରେ ଏସୀୟ ବଂଶର ଲୋକେ ବାସ କରୁଥିବା ଗଣରାଜ୍ୟମାନଙ୍କରେ ଆଧୁନିକ ଶିଳ୍ପର ପ୍ରଗତି ବହୁତ ନଗଣ୍ୟ ମାତ୍ରାରେ ହେଲା । ପୂର୍ବ ୟୁରୋପ୍‌ର ଦେଶମାନେ ଓ ଏସୀୟ ଗଣରାଜ୍ୟମାନେ ଅନୁଭବ କଲେ ଯେ ସେମାନଙ୍କୁ ଉପନିବେଶ ଭଳି ବ୍ୟବହାର କରାଯାଉଛି । ତେଣୁ ଗୋଟିଏ ପରେ ଗୋଟିଏ ଅଞ୍ଚଳ ବିଦ୍ରୋହ କରି ବିଚ୍ଛିନ୍ନ ହେବାକୁ ଚାହିଁଲା ।

କମ୍ୟୁନିଷ୍ଟ୍ ପାର୍ଟିର ଏକଛତ୍ରବାଦୀ ଶାସନ ତଳେ ଶ୍ରେଣୀଗତ ବୈଷମ୍ୟକୁ ବହୁ ପରିମାଣରେ ନିୟନ୍ତ୍ରିତ କରାଯାଇଥିଲା । କିନ୍ତୁ ଆଞ୍ଚଳିକ ବୈଷମ୍ୟ ଆଧୁନିକ ଶିଳ୍ପ ଓ ପ୍ରଯୁକ୍ତି ବିଦ୍ୟାର ପ୍ରତ୍ୟକ୍ଷ ପରିଣାମ ଥିଲା । ଷ୍ଟାଲିନ୍‌ଙ୍କ ଶାସନ ଆରମ୍ଭରେ ହିଁ କୃଷି କ୍ଷେତ୍ରରେ ଆଧୁନିକ ବୈଜ୍ଞାନିକ କୌଶଳକୁ ପ୍ରବେଶ କରାଇବାର ଯଜ୍ଞରେ ତିରିଶ ଲକ୍ଷ କୃଷକଙ୍କର ଜୀବନର ଆହୁତି ଦିଆଯାଇଥିଲା । ସୋଭିଏତ୍ ଋଷ୍‌ର ସ୍ଥାପନା ସମୟରେ ବହୁ ନିୟୁତ ସଂଖ୍ୟକ ଛୋଟ ଓ ମଧ୍ୟମ ଧରଣର ଚାଷୀ ଥିଲେ । ଜମିଦାର୍‌ମାନଙ୍କର ଆଧିପତ୍ୟରୁ ମୁକ୍ତ ହେବା ଉଦ୍ଦେଶ୍ୟରେ ସେମାନେ କମ୍ୟୁନିଷ୍ଟ୍ ବିପ୍ଳବର ସହଯୋଗୀ ହୋଇଥିଲେ । ସେମାନଙ୍କର ଭାଗୀଦାରୀ ଫଳରେ ହିଁ ଗ୍ରାମାଞ୍ଚଳମାନଙ୍କରେ ବିପ୍ଳବର ବିଜୟ ହୋଇପାରିଥିଲା । କୃଷିରେ ଆଧୁନିକ ପ୍ରଯୁକ୍ତି ବିଦ୍ୟାର ପୂର୍ଣ୍ଣ ପ୍ରୟୋଗ କରିବା ପାଇଁ ଷ୍ଟାଲିନ୍ ଯେତେବେଳେ ଚାଷୀମାନଙ୍କଠାରୁ ଜମି ଛଡ଼ାଇ ସରକାରୀ ଫାର୍ମମାନଙ୍କର ଗଠନ କରିବସିଲେ ସେତେବେଳେ ଉତ୍ତ୍ୟକ୍ତ କୃଷକମାନେ ଏହାର ପ୍ରବଳ ବିରୋଧ କରିଥିଲେ । ତିରିଶି ଲକ୍ଷ କୃଷକଙ୍କର ଏହି ଗଣହତ୍ୟା ଏକ ପ୍ରସିଦ୍ଧ ଐତିହାସିକ ଘଟଣା ।

ମନେ ରଖିବାକୁ ହେବ ଯେ ବିଚାର ଦୃଷ୍ଟିରୁ ଷ୍ଟାଲିନ୍ ମୋଟେ ଜନ-ବିରୋଧୀ ନଥିଲେ । ଲୁଣ୍ଠନକାରୀ ସମ୍ରାଟମାନଙ୍କ ସାଙ୍ଗରେ ତାଙ୍କର ତୁଳନା ହୋଇପାରିବ ନାହିଁ । ସାମ୍ୟବାଦୀ ସ୍ୱପ୍ନ ଦ୍ୱାରା ଅନୁପ୍ରାଣିତ ହୋଇ ସେ ଆଧୁନିକ ବୈଜ୍ଞାନିକ କୌଶଳର ପ୍ରୟୋଗ କରିବା ପାଇଁ ସଙ୍କଳ୍ପବଦ୍ଧ ଥିଲେ । ପ୍ରଯୁକ୍ତି ବିଦ୍ୟା ବିଷୟକ ଭ୍ରାନ୍ତିର ସେ ଶିକାର ହୋଇଥିଲେ । ଯେତେବେଳେ ସୋଭିଏତ୍ ଋଷ୍‌ର ସମୃଦ୍ଧି ବଢ଼ି ଚାଲିଥିଲା, ସେତେବେଳେ ଆଧୁନିକ ବୈଜ୍ଞାନିକ କୌଶଳକୁ ଏହାର ଏକ ମୁଖ୍ୟ କାରଣ ବୋଲି ବିଦ୍ୱାନମାନେ ମତ ଦେଉଥିଲେ । କିନ୍ତୁ ତାସ୍‌ର ଘର ପରି ଏହା ଭୁଷୁଡ଼ି ଯିବା ପରେ ଏହି ବିଫଳତା ପଛରେ ପ୍ରଯୁକ୍ତି ବିଦ୍ୟାର ଭୂମିକା ଥିଲା କି ନାହିଁ, ଏହାର ଚର୍ଚ୍ଚା ହେଉନାହିଁ ।

ତେଣୁ ଏତେ ବଡ଼ ସଙ୍କଟ ଆସିବା ପରେ ମଧ୍ୟ କମ୍ୟୁନିଷ୍ଟ୍‌ମାନେ ତାଙ୍କର ପୂର୍ବ ଧାରଣାଗୁଡ଼ିକୁ ବଦଳାଇ ନାହାନ୍ତି । ବେଳେବେଳେ ମନେହୁଏ ଯେ ସେମାନେ ସାମ୍ୟବାଦକୁ ଛାଡ଼ିବାକୁ ପ୍ରସ୍ତୁତ ହେବେ, କିନ୍ତୁ ଆଧୁନିକ ପ୍ରଯୁକ୍ତି ବିଦ୍ୟାର ମୋହକୁ ଛାଡ଼ିପାରିବେ ନାହିଁ । ଉଦାରୀକରଣ ଓ ଜଗତୀକରଣ ମାଧ୍ୟମରେ ବିଶ୍ୱ ପୁଞ୍ଜିବାଦର ଅବାଧ ଜୟଯାତ୍ରା ଦେଖି କମ୍ୟୁନିଷ୍ଟ୍‌ମାନଙ୍କର ମନ ଛଟପଟ ହେଉଛି ସତ, କିନ୍ତୁ ଉତ୍ସାହ ଉଦ୍ଦୀପନା ସହ ସେମାନେ ତାକୁ ବିରୋଧ କରିପାରୁ ନାହାନ୍ତି । କାରଣ ଉଦାରୀକରଣ ଓ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କର ଅନୁପ୍ରବେଶକୁ ବାଧା ଦେବାର ଅର୍ଥ ହେଉଛି ଅତ୍ୟାଧୁନିକ ପ୍ରଯୁକ୍ତି ବିଦ୍ୟାକୁ ଅଟକାଇଦେବା । ଉଦାରୀକରଣ ଓ ବହୁଦେଶୀୟ କମ୍ପାନୀ ବ୍ୟତୀତ ଏତେ କମ୍ପ୍ୟୁଟର ଓ ମୋବାଇଲ୍ ଫୋନ୍ ଭାରତକୁ କିପରି ଆସିଥାନ୍ତା ? ଏହି ତର୍କ ଆଗରେ କମ୍ୟୁନିଷ୍ଟ୍‌ମାନଙ୍କର ମୁହଁ ବନ୍ଦ ହୋଇଯାଉଛି ।

ଉପରୋକ୍ତ ଦ୍ୱନ୍ଦ୍ୱର ଆଉ ଏକ ଉଦାହରଣ ହେଉଛି ପରିବେଶ ଆନ୍ଦୋଳନ । ଗତ ଦୁଇ ତିନି ଦଶକ ମଧ୍ୟରେ ପରିବେଶ ଆନ୍ଦୋଳନକାରୀମାନେ ପରିବେଶର ଧ୍ୱଂସ ପାଇଁ ଆଧୁନିକ ପ୍ରଯୁକ୍ତି ବିଦ୍ୟାକୁ ଦାୟୀ କରିଛନ୍ତି । ଆଧୁନିକ ଶିଳ୍ପ ବ୍ୟବସ୍ଥାର ସେମାନେ ଅନେକ ସମାଲୋଚନା କରିଛନ୍ତି । କିନ୍ତୁ ଆଶ୍ଚର୍ଯ୍ୟର କଥା ଯେ ସେମାନେ ଏହି ପ୍ରଯୁକ୍ତି ବିଦ୍ୟାର ମୁଖ୍ୟ ଧାରାକୁ ବିରୋଧ କରନ୍ତି ନାହିଁ । ଏହି ପ୍ରଯୁକ୍ତିବିଦ୍ୟା ଉପରେ ଆଧାରିତ ଶିଳ୍ପ - ବ୍ୟବସ୍ଥାର ସେମାନେ ବିରୋଧୀ ନୁହନ୍ତି । ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ କାରଖାନା ବା ଶିଳ୍ପ ଆଖପାଖର ପରିବେଶ ନଷ୍ଟ କରିବ ବୋଲି ସେମାନେ ଘୋର ପ୍ରତିବାଦ କରନ୍ତି । ବିଭିନ୍ନ ପରିବେଶ ଆନ୍ଦୋଳନକାରୀ ସମୂହମାନଙ୍କୁ ଯୋଡ଼ିକରି ଦେଖିଲେ ଜଣାପଡ଼ିବ ଯେ ପ୍ରଚଳିତ ଶିଳ୍ପ ବ୍ୟବସ୍ଥା ଓ ପ୍ରଯୁକ୍ତି ବିଦ୍ୟାର ଧାରାକୁ ବିରୋଧ କରିବା ଦରକାର । କିନ୍ତୁ ସେମାନେ ବିକଳ୍ପର କଥା ଚିନ୍ତା କରିପାରନ୍ତି ନାହିଁ ।

ବିକାଶଶୀଳ ଦେଶମାନଙ୍କର ଅଧିକାଂଶ ପରିବେଶ ଆନ୍ଦୋଳନକାରୀ ସଙ୍ଗଠନ ସରକାରୀ କିମ୍ବା ବିଦେଶୀ ଅନୁଦାନ ବହୁ ପରିମାଣରେ ପାଆନ୍ତି । ସେମାନଙ୍କର ଜୀବନର ସ୍ତର ବହୁତ ଉଚ୍ଚରେ । ତେଣୁ ବୋଧହୁଏ ପ୍ରଚଳିତ ବ୍ୟବସ୍ଥାର ପ୍ରତ୍ୟକ୍ଷ ବିରୋଧ କରିବା ସେମାନଙ୍କ ପାଖରେ ସମ୍ଭବ ନୁହେଁ । ଦିଲ୍ଲୀର ଗୋଟିଏ ପ୍ରସିଦ୍ଧ ପରିବେଶ ଆନ୍ଦୋଳନକାରୀ ସଙ୍ଗଠନ ମୋଟରଗାଡ଼ି ଓ ଦୁଇଚକିଆ ଯାନମାନଙ୍କର ଅଧିକ ସଂଖ୍ୟା

ଓ ତହିଁରୁ ନିର୍ଗତ ଧୂଳିଧୂଆଁ ଯୋଗୁଁ ଦିଲ୍ଲୀ ସମ୍ପୂର୍ଣ୍ଣ ପ୍ରଦୂଷିତ ହେଉଛି ବୋଲି ପ୍ରଚାର ଆରମ୍ଭ କରିଥିଲେ । ଦିଲ୍ଲୀରେ ବେମାରୀ ଓ ମୃତ୍ୟୁର ସଂଖ୍ୟା ଏଥିଯୋଗୁଁ ଉଲ୍ଲେଖନୀୟ ଭାବରେ ବଢ଼ିଥିବାର ତଥ୍ୟଗତ ପ୍ରମାଣ ସେମାନେ ଖବରକାଗଜ ଓ ଟେଲିଭିଜନ୍ ମାଧ୍ୟମରେ ପ୍ରଚାର କଲେ । ଶେଷରେ ଦିଲ୍ଲୀ ସରକାରଙ୍କୁ ବାଧ୍ୟ ହୋଇ ଆଇନ୍ କରିବାକୁ ପଡ଼ିଲା ଯେ ପୁରୁଣା ଗାଡ଼ିମୋଟର, ସ୍କୁଟର୍ ଆଦିକୁ ରାସ୍ତାରେ ଚାଲିବା ପାଇଁ ଅନୁମତି ଦିଆଯିବ ନାହିଁ, କାରଣ ପୁରୁଣାମାନେ ହିଁ ବେଶୀ ପ୍ରଦୂଷଣ କରନ୍ତି ।

କିନ୍ତୁ ପରିବେଶ ଆନ୍ଦୋଳନକାରୀମାନେ କେବେ ମଧ୍ୟ କହିଲେ ନାହିଁ ଯେ, ଦିଲ୍ଲୀରେ ଗାଡ଼ିମୋଟର ସଂଖ୍ୟାକୁ ଅଧା କିମ୍ବା ଏକ ତୃତୀୟାଂଶ ପର୍ଯ୍ୟନ୍ତ କମେଇ ଦିଆଯାଉ । ସବୁ ଗାଡ଼ି ପ୍ରଦୂଷଣ କରନ୍ତି । କଲିକତା, ମାନ୍ଦ୍ରାଜ୍ ଓ ବମ୍ବେଇର ଗାଡ଼ି ସଂଖ୍ୟା ମିଶାଇଲେ ଯାହା, ଏକା ଦିଲ୍ଲୀରେ ତାହାଠାରୁ ବେଶୀ ଗାଡ଼ି ଚାଲିଛି । ରାସ୍ତାଗୁଡ଼ିକରେ ମଣିଷ ଚାଲିବାର ଜାଗା ନଥାଏ । ନିର୍ଦ୍ଦିଷ୍ଟ ସମୟମାନଙ୍କରେ ଏକ ବିଭତ୍ସ ଦୃଶ୍ୟ ରାସ୍ତାମାନଙ୍କରେ ଦେଖାଯାଏ । ପେଁପାଁ ଧଡ଼୍‌ଧାଡ଼୍‌ର କୁତ୍ସିତ ରଡ଼ି ଆକାଶ ଓ ପବନକୁ କମ୍ପାଇ ଦିଏ । ଯାହାପାଖରେ ନିଜର ଶୀତତାପ ନିୟନ୍ତ୍ରିତ ନୂଆ ମୋଟରଗାଡ଼ି ନଥାଏ ସେ ନିଜକୁ ବୋଝେଇ ମାଲର ଗୋଟିଏ ଅଂଶ ବୋଲି ଧାରଣା କରେ । ମୋଟରଗାଡ଼ିମାନଙ୍କର ସଂଖ୍ୟାକୁ କମେଇଦେଲେ ପବନ କେତେ ସ୍ୱଚ୍ଛ, ରାସ୍ତା କେତେ ଖୋଲା ଓ ଆକାଶ କେତେ ସୁନ୍ଦର ଦିଶନ୍ତା । କିନ୍ତୁ ଆମ ବନ୍ଧୁମାନେ କେବଳ ପୁରୁଣା ଗାଡ଼ିମାନଙ୍କୁ ହଟେଇବା ଆନ୍ଦୋଳନ କଲେ । ମାଲିକମାନେ ନୂଆ ମୋଟରଗାଡ଼ି କିଣନ୍ତୁ । ଦେଶବ୍ୟାପୀ ସ୍ତରରେ ଏହା କଦାପି ସମ୍ଭବ ନୁହେଁ । ଦିଲ୍ଲୀରୁ ପୁରୁଣା ଗାଡ଼ି କାନ୍‌ପୁର୍‌କୁ ଯିବ ଓ କାନ୍‌ପୁର୍‌ର ପୁରୁଣାଗାଡ଼ି କଟକକୁ ଆସିବ । ମୋଟରଗାଡ଼ିକୁ ଉତ୍ସାହିତ କରାଯାଉଛି ।

ବିକାଶଶୀଳ ଦେଶମାନଙ୍କରେ ଏତେ କ୍ରୟ ଶକ୍ତି ନାହିଁ ଯେ ସମସ୍ତେ ନୂଆ ଗାଡ଼ି ବ୍ୟବହାର କରିବେ । ନୂଆ ସ୍କୁଟରଟିଏ ମଧ୍ୟ କିଣିହୁଏ ନାହିଁ । ଆଇନ୍ କଲେ ମଧ୍ୟ କାର୍ଯ୍ୟକାରୀ ହେବ ନାହିଁ । ତେବେ ଯେଉଁମାନଙ୍କର ଆର୍ଥିକ ଅବସ୍ଥା ଭଲ ସେମାନେ ଆଇନ୍ ଫଳରେ ପୁରୁଣା ଗାଡ଼ି ବିକ୍ରି କରିଦେବେ । ସଞ୍ଜୋଗର ଗୋଟିଏ ତ୍ରିଭୁଜ ସୃଷ୍ଟି ହେଲା । ପୁରୁଣା ଗାଡ଼ି ବନ୍ଦ କରିବା ପାଇଁ ଆଇନ୍ ହେଲା; ପଞ୍ଚମ ବେତନ ଆୟୋଗର ସୁପାରିଶ ପରେ ଦରମା ହୁ ହୁ ହୋଇ ବଢ଼ିଲା; ବିଦେଶୀ କମ୍ପାନୀମାନେ ଉଦାରୀକରଣ ନୀତିଦ୍ୱାରା ଆକୃଷ୍ଟ ହୋଇ ଭାରତରେ ଗୁଡ଼ିଏ ନୂଆ ବ୍ରାଣ୍ଡ୍ ଓ ମଡ଼େଲ୍‌ର ମୋଟରଗାଡ଼ି ଉତ୍ପାଦନ ଆରମ୍ଭ କରିସାରିଥିଲେ । ପ୍ରଫେସରମାନେ ମାରୁତି କିଣିଲେ, ଅଫିସରମାନେ ଏଷ୍ଟିମ୍ କିଣିଲେ । ଧନୀ ଲୋକମାନଙ୍କୁ ମାରୁତିରେ ଚଢ଼ିବାକୁ ଲାଜ ଲାଗିଲା । ତେଣୁ ସେମାନେ ସବୁଠୁ ଦାମିକା ଗାଡ଼ିର ବରାଦ କଲେ । ବ୍ୟଙ୍ଗାତ୍ମକ ଭାବରେ ଆମେ କହିପାରିବା ଯେ ପରିବେଶ ଆନ୍ଦୋଳନ ମୋଟରଗାଡ଼ି ଓ ସ୍କୁଟର୍ କମ୍ପାନୀମାନଙ୍କର ବିକ୍ରି ବଢ଼ାଇଦେଲା । ସତେ ଯେପରି ଏହା ହେଉଛି ସଂସାରର ଲୀଳା । ଗୋଟିଏ ଭଲ ଉଦ୍ଦେଶ୍ୟ ଏକ ମନ୍ଦ ଉଦ୍ଦେଶ୍ୟ ସାଙ୍ଗରେ ଯୋଡ଼ି ହୋଇଯାଉଛି ।

ଉପରୋକ୍ତ ଉଦାହରଣରୁ ପରିବେଶ ଆନ୍ଦୋଳନକାରୀମାନଙ୍କର ଦୃଷ୍ଟିକୋଣ ସ୍ପଷ୍ଟ ହୋଇଯାଉଛି । ସେମାନେ ପ୍ରଚଳିତ ପ୍ରଯୁକ୍ତି ବିଦ୍ୟା କିମ୍ବା ତାହା ଉପରେ ଆଧାରିତ ବିକାଶ ପ୍ରଣାଳୀକୁ ଅସ୍ୱୀକାର ନକରି ଭାବୁଛନ୍ତି ଯେ ସତର୍କତା ଅବଲମ୍ବନ କଲେ, କିମ୍ବା ଯନ୍ତ୍ରମାନଙ୍କରେ ସାମାନ୍ୟ ସୁଧାର କରିଦେଲେ ପରିବେଶ ସୁରକ୍ଷିତ ହୋଇଯିବ । ଅସଲ କଥା ସେମାନେ ପରିବେଶ ବ୍ୟତୀତ ଅନ୍ୟାନ୍ୟ ଦିଗକୁ ପରୀକ୍ଷା କରୁନାହାନ୍ତି । ଗୋଟିଏ ପଟେ ଯେଉଁ ଯନ୍ତ୍ର ପରିବେଶ ଧ୍ୱଂସ କରୁଛି, ସେହି ଯନ୍ତ୍ର ଗରିବ ଶ୍ରେଣୀର ଆର୍ଥିକ ଶୋଷଣ କରୁଛି ଓ ସେହି ଯନ୍ତ୍ର ସମାଜ ଓ ସଂସ୍କୃତିକୁ ବିଭସ୍ତ କରିପକାଉଛି । ଏହିପରି ଚତୁର୍ଦ୍ଦିଗରୁ ଯଦି ପ୍ରଯୁକ୍ତି ବିଦ୍ୟାର ସମୀକ୍ଷା ନ କରାଯାଏ, ତାହାହେଲେ କେବଳ ପରିବେଶ ବିଷୟରେ ଚିନ୍ତା ବ୍ୟକ୍ତ କରି ପରିବେଶକୁ ମଧ୍ୟ ସୁରକ୍ଷିତ କରାଯାଇପାରିବ ନାହିଁ । ମୋଟରଗାଡ଼ିର ବର୍ତ୍ତମାନ ସଂଖ୍ୟାକୁ କମେଇବାର ବା ଅଧା କରିବାର ସ୍ପଷ୍ଟ ନୀତି ଗ୍ରହଣ ନକଲେ ଦିଲ୍ଲୀର ପ୍ରଦୂଷଣକୁ ରୋକିହେବ ନାହିଁ । କେତେ ପ୍ରକାରର ଯନ୍ତ୍ର ଅଛି ଯାହାର ବହୁଳତା ହେଉଛି ବିନାଶକାରୀ ଓ ସ୍ୱଳ୍ପତା ନିରାପଦ ।

ମୋଟରଗାଡ଼ିକୁ ହିଁ ଧରାଯାଉ । ମନୁଷ୍ୟ ଓ ପ୍ରଯୁକ୍ତି ବିଦ୍ୟାର ଗୋଟିଏ ଅନୁପାତ ରହିବା ଦରକାର । ଦଶହଜାର ଲୋକଙ୍କ ବସତିରେ ଦୁଇ ତିନୋଟି ମୋଟର କାର୍ ଯଥେଷ୍ଟ ହେବା ଉଚିତ୍ । ଏହା ପଞ୍ଚାୟତ ଅଧିନରେ ରହିବ ଓ ବିଶେଷ ପରିସ୍ଥିତିରେ ଲୋକେ ଏହାକୁ ବ୍ୟବହାର କରିବେ । ଲୋକଙ୍କର ସାଧାରଣ ଦୈନନ୍ଦିନ କାର୍ଯ୍ୟ ପାଇଁ ସେମାନେ ବସ୍ ଓ ସାଇକେଲ ବ୍ୟବହାର କରିବେ । ଉଚ୍ଚ ଶ୍ରେଣୀର ଲୋକେ କାହିଁକି ବସ୍‌ରେ ଯାତ୍ରା କରିବେ ନାହିଁ? ସେମାନେ ଯଦି କରିବେ ତାହାହେଲେ ବସ୍‌ର ବ୍ୟବସ୍ଥା ବଢ଼ିଆ ହୋଇଯିବ । ପଚାଶ ବର୍ଷ ଧରି ଚୀନ୍‌ରେ ଏହିପରି ବ୍ୟବସ୍ଥା ଥିଲା ଓ ଏବେ ମଧ୍ୟ ଆଂଶିକ ଭାବରେ ରହିଛି । ଏଥିପାଇଁ ଚୀନ୍ ଭାରତଠାରୁ ବେଶୀ ସମୃଦ୍ଧ ହୋଇଛି ।

ଗତ ପଚାଶ ବର୍ଷ ଭିତରେ ଚୀନ୍‌ର ପ୍ରଯୁକ୍ତି ବିଦ୍ୟା ନୀତି ଭାରତର ପ୍ରଯୁକ୍ତି ବିଦ୍ୟା ନୀତିଠାରୁ ବିଲ୍‌କୁଲ୍ ଭିନ୍ନ ଥିଲା । ପ୍ରଫେସର୍‌ମାନେ ବିଶ୍ୱବିଦ୍ୟାଳୟକୁ ଓ ବଜାରକୁ ବସ୍‌ରେ ଯାଉଥିଲେ । ସେଥିପାଇଁ ଚୀନ୍‌ରେ ଭାରତ ଅପେକ୍ଷା ଶିକ୍ଷାର ପ୍ରସାର ବେଶୀ । ପଞ୍ଚମ ବେତନ କମିଶନ୍ ପରେ ଦିଲ୍ଲୀର ସବୁ ପ୍ରଫେସର୍ ନୂଆ କାର୍ କିଣିଲେଣି । ତେଣୁ ଭାରତରେ ଆଉ ଶିକ୍ଷାର ପ୍ରସାର ଘଟିବ ନାହିଁ । ଯଦି ଅଳ୍ପ କାର୍ ରହିବ ତାହାର ପ୍ରଯୁକ୍ତି ବିଦ୍ୟା ଅଲଗା ହେବ, ସେଥିରେ ଚାରି ଜଣ ଆରାମ୍‌ରେ ବସିପାରିବେ ଓ ଗ୍ରାମ୍ୟ ସଡ଼କରେ ଚାଲିପାରିବ । ଛୋଟ ମାରୁତି ଗାଡ଼ି ହେଲା ଜଣକିଆ ମୋଟରଗାଡ଼ି । ଏହାର ଦର୍ଶନ ହେଉଛି ଜଣଙ୍କ ପାଇଁ ଗୋଟିଏ ଗାଡ଼ି । ୟୁରୋପ୍-ଆମେରିକାରେ ଜଣ ପ୍ରତି ବା ଦୁଇ-ତିନିଜଣରେ ଗୋଟିଏ ଗାଡ଼ି ସମ୍ଭବ ହୋଇପାରୁଛି । କିନ୍ତୁ ବିକାଶଶୀଳ ଦେଶମାନଙ୍କରେ ଏହା ବିଷମତା ସୃଷ୍ଟି କରେ । ଘରୁଆ ଡ୍ରାଇଭର୍ ରଖି ବଡ଼ ଗାଡ଼ିରେ ବସିବା ଧନୀ ଓ ମଧ୍ୟବିତ୍ତ ମଧ୍ୟରେ ବିଷମତା ସୃଷ୍ଟି କରେ । ଜଣକିଆ ଗାଡ଼ି ଉଚ୍ଚ ମଧ୍ୟବିତ୍ତ ଓ ନିମ୍ନ ମଧ୍ୟବିତ୍ତ ମଧ୍ୟରେ ବିଷମତା ସୃଷ୍ଟି କରେ । ଏହା ତୁଳନାରେ ଟାକ୍ସି କମ୍ ବିଷମତା ସୃଷ୍ଟି କରେ । ଏସବୁ ଅଲଗା ଅଲଗା ପ୍ରଯୁକ୍ତିର ଢାଞ୍ଚା ।

ପଣ୍ଡିତ ନେହେରୁଙ୍କ ସମୟରେ ଛୋଟ ମୋଟର ଗାଡ଼ିର କଳ୍ପନା ଥିଲା । ଏହି ଯୋଜନାକୁ ଲୋକପ୍ରିୟ କରିବା ପାଇଁ କୁହାଗଲା ଯେ ପ୍ରଯୁକ୍ତି ବିଦ୍ୟାରେ ସୁଧାର କରି ଛୋଟ ଓ ଶସ୍ତା ଗାଡ଼ି ଭାରତରେ ପ୍ରଚଳନ କରାଯିବ, ଏହା ହେବ ଜନତା ଗାଡ଼ି (ପିପୁଲ୍ସ୍ କାର୍) । ସେହି ଯୋଜନାରୁ ବାହାରିଲା ମାରୁତି କାର୍ । ଏହାକୁ ଜନତା ଗାଡ଼ି କହିବା, କିମ୍ବା ଅଳ୍ପ ଆୟବାଲାଙ୍କ କାର୍ କହିବା ଭାରତର ଜନସାଧାରଣଙ୍କ ପ୍ରତି ଉପହାସ ।

ଇଞ୍ଜିନ୍ ଚାଳିତ ସବୁ ଗାଡ଼ିକୁ ଅଟୋମୋବିଲ୍ କୁହାଯାଏ । କିନ୍ତୁ ଯନ୍ତ୍ରର ଡିଜାଇନ୍‌ଗୁଡ଼ିକ ଅଲଗା ହେଉଥିବାରୁ ସୂକ୍ଷ୍ମ ଅର୍ଥରେ ସେଗୁଡ଼ିକୁ ଅଲଗା ଅଲଗା ପ୍ରଯୁକ୍ତିବିଦ୍ୟା ବୋଲି ମଧ୍ୟ କୁହାଯାଏ । ପ୍ରତ୍ୟେକର ଅଲଗା 'ପେଟେଣ୍ଟ୍' ହୁଏ । ଆମେ ଯେତେ ପ୍ରକାରର ଗାଡ଼ିର ଉଲ୍ଲେଖ କଲୁ, ସେଗୁଡ଼ିକର ଅଲଗା ଅଲଗା ସାମାଜିକ ପ୍ରଭାବ ଅଛି । ବସ୍, ଟାକ୍ସି ଓ ମାରୁତି କାର୍ ସମାଜକୁ ଭିନ୍ନ ଭିନ୍ନ ଭାବରେ ପ୍ରଭାବିତ କରନ୍ତି । ବସ୍ ସର୍ବସାଧାରଣଙ୍କର ବାହନ ହୋଇପାରିବ । ଏହା ବିଷମତା ସୃଷ୍ଟି କରେନାହିଁ । ମାରୁତି କାର୍ ବା ବ୍ୟକ୍ତି କିମ୍ବା ପାରିବାରିକ ମାଲିକାନା ଉଦ୍ଦେଶ୍ୟରେ ତିଆରି ଗାଡ଼ି ବେଶୀ ବିଷମତା ସୃଷ୍ଟି କରେ । ଟାକ୍ସି ଉଦ୍ଦେଶ୍ୟରେ ତିଆରି ମୋଟରଗାଡ଼ି ଅପେକ୍ଷାକୃତ କମ୍ ବିଷମତା ସୃଷ୍ଟି କରିବ । ଉପରୋକ୍ତ ତିନୋଟି ଯାନର ମୂଳ ବୈଜ୍ଞାନିକ ସୂତ୍ର ଏକ ରକମର ହେଲେ ମଧ୍ୟ ସାମାଜିକ ଓ ବ୍ୟାପାରିକ ଉଦ୍ଦେଶ୍ୟ ଅଲଗା ରକମର । ତେଣୁ ପ୍ରଯୁକ୍ତି ବିଦ୍ୟା କହିଲେ କେବଳ ବିଜ୍ଞାନକୁ ବୁଝାଏ ନାହିଁ; ବୈଜ୍ଞାନିକ ନିୟମକୁ କେଉଁ ସାମାଜିକ ବା ବ୍ୟାପାରିକ ଉଦ୍ଦେଶ୍ୟରେ ବ୍ୟବହାର କରାଯିବ ତାକୁ ନେଇ ଏହା ଅଲଗା ଅଲଗା ହୋଇଯାଏ । ଯାତ୍ରୀବାହୀ ବସ୍ ଓ ମାରୁତି କାର୍ ଦୁଇଟି ଭିନ୍ନ ଜିନିଷ । ପରମାଣୁ ବୋମା ଓ ପରମାଣୁ ବିଦ୍ୟୁତ୍‌ର ଉତ୍ପାଦନ ପ୍ରଣାଳୀରେ ବହୁତ ସାମଞ୍ଜସ୍ୟ ଅଛି । ତେଣୁ ଗୋଟିଏ ଦେଶ ଯଦି ପରମାଣୁ ବିଜୁଳି ଉତ୍ପାଦନ କରୁଛି ତାହା ବିଷୟରେ ସନ୍ଦେହ ହୁଏ ଯେ ପରମାଣୁ ବୋମା ତିଆରି ମଧ୍ୟ ଚାଲିଥିବ । ବୋମା ଓ ବିଜୁଳି ଦୁଇଟି ଭିନ୍ନ ପ୍ରଯୁକ୍ତି ବିଦ୍ୟା । ଅବଶ୍ୟ ଏ କ୍ଷେତ୍ରରେ କହିହେବ ନାହିଁ ଯେ ବୋମା ଧ୍ୱଂସକାରୀ ଓ ବିଜୁଳି ନିର୍ଦ୍ଦୋଷ । ପରମାଣୁ ବିଜୁଳି ଗୋଟିଏ ଅସ୍ତ୍ର ନୁହେଁ ହେଲେ ତାହାର ଉତ୍ପାଦନ ପ୍ରଣାଳୀ ଏତେ ବିଷାକ୍ତ ଯେ ଶିଳ୍ପୋନ୍ନତ ଦେଶମାନେ ମଧ୍ୟ ଏହାକୁ ବନ୍ଦ କରିଦେବା ପାଇଁ ଚିନ୍ତା କରୁଛନ୍ତି ।

ରବର୍ଟ୍ ୟୁଙ୍ଗ୍ ନାମକ ବୈଜ୍ଞାନିକ ଲେଖକ 'ସହସ୍ର ସୂର୍ଯ୍ୟଠାରୁ ଅଧିକ ଦୀପ୍ତିମାନ' ନାମକ ଏକ ପ୍ରସିଦ୍ଧ ପୁସ୍ତକ ଲେଖିଛନ୍ତି । ଏହି ପୁସ୍ତକରେ ପରମାଣୁ ବୈଜ୍ଞାନିକମାନଙ୍କର, ବିଶେଷକରି ରବର୍ଟ୍ ଓପେନ୍‌ହିମରଙ୍କ ଦ୍ୱିଧାଗ୍ରସ୍ତ ମାନସର ଏକ ଦୁଃଖାନ୍ତକ ଚିତ୍ରଣ ଅଛି । ଲେଖକଙ୍କ ମତରେ ଶ୍ରେଷ୍ଠ ବୈଜ୍ଞାନିକମାନଙ୍କର ବ୍ୟକ୍ତିତ୍ୱଗୁଡ଼ିକ ଅତ୍ୟନ୍ତ ଦରଦୀ, ମାନବୀୟ ସମ୍ବେଦନାରେ ଭରପୂର । କିନ୍ତୁ ବିଜ୍ଞାନର କାର୍ଯ୍ୟ କରିବା ବେଳେ ବୈଜ୍ଞାନିକର ମସ୍ତିଷ୍କ ଏହି ବ୍ୟକ୍ତିତ୍ୱଠାରୁ ବିଲ୍‌କୁଲ୍ ଅଲଗା ହୋଇ ଆଉ ଏକ ଦୁନିଆକୁ ଚାଲିଯାଏ । ସୃଷ୍ଟିର ରହସ୍ୟ ଭେଦ କରିବାର ନିଶାରେ ସେ ଏତେ ମତ୍ତ ହୋଇଯାଏ ଯେ ସେ ତାହାର କାର୍ଯ୍ୟର ସାମାଜିକ ପରିଣାମଗୁଡ଼ିକୁ ସ୍ମରଣ କରିପାରେ ନାହିଁ ।

ଓପେନ୍‌ହିମ୍ବର୍ ଜଣେ ସାମାଜିକ ବ୍ୟକ୍ତି ଭାବରେ ପରମାଣୁ ବୋମାର ମାନବ ବିରୋଧୀ ତଥା ବିଧ୍ୱଂସକାରୀ ଚରିତ୍ର ବିଷୟରେ ସମ୍ପୂର୍ଣ୍ଣ ସଚେତ ଥିଲେ । ବେଳେବେଳେ ଏ ବିଷୟରେ ମୁଖର ହେଉଥିଲେ । କିନ୍ତୁ ଯେତେବେଳେ ଡାକରା ଆସୁଥିଲା ଯେ ଏହି ବୋମାକୁ ଆହୁରି ବେଶୀ ଶକ୍ତିଶାଳୀ କରିବାକୁ ହେବ, ସେ ନୂଆ ଅନୁସନ୍ଧାନରେ ଲାଗିଯାଉଥିଲେ । ଅଧିକ ଶକ୍ତି ସୃଷ୍ଟି କରିବା ଏକ ପ୍ରକାରର ବୈଜ୍ଞାନିକ ମାନସକୁ ଏତେ ଆନନ୍ଦ ଦିଏ ଯେ ସେମାନଙ୍କ ପକ୍ଷରେ 'ଅନୁସନ୍ଧାନ' କାର୍ଯ୍ୟର ଲୋଭ ସମ୍ବରଣ କରିହୁଏ ନାହିଁ ।

ବିଜ୍ଞାନର ତତ୍ତ୍ୱବିଷୟରେ ଚିନ୍ତା କରୁଥିବା ମନୀଷୀମାନେ କହନ୍ତି ଯେ, ଆଧୁନିକ ବିଜ୍ଞାନ ଯାହା ସବୁ କରୁଛି, ତାହାଠାରୁ ଭିନ୍ନ ବହୁତ ରକମର ବୈଜ୍ଞାନିକ କାର୍ଯ୍ୟର ସମ୍ଭାବନା ରହିଛି । ପ୍ରକୃତି ଓ ମନୁଷ୍ୟର ବହୁ ଦିଗ ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇନାହିଁ । କିମ୍ବା ଯଦି ହୋଇଛି ତାହାର ପୁଙ୍ଖାନୁପୁଙ୍ଖ ଗବେଷଣା ହେଉନାହିଁ । ରାଜକ୍ଷମତା ଓ ଅର୍ଥକ୍ଷମତାର ପୃଷ୍ଠପୋଷକତାର ବାହାରେ ବୈଜ୍ଞାନିକମାନେ ଆଉ ମୌଳିକ ଉଦ୍ଭାବନ କରୁ ନାହାନ୍ତି । ବିଜ୍ଞାନର ଯେଉଁସବୁ ଦିଗ ଅନାବିଷ୍କୃତ ହୋଇ ରହିଛି ସେଗୁଡ଼ିକ ପ୍ରତି କିଏ ଧ୍ୟାନ ଦେବ ?

ବୈଜ୍ଞାନିକମାନଙ୍କର ଏହି ଘଟଣା ଦେଖି ମନରେ ଚିନ୍ତା ଓ କ୍ଷୋଭ ଜାତ ହୁଏ । ଯେଉଁମାନେ ପ୍ରତିଭାଶାଳୀ ବୈଜ୍ଞାନିକ ବୋଲି ଜଣା ପଡ଼ନ୍ତି ସେମାନଙ୍କ ମଧ୍ୟରୁ ଅଧିକାଂଶ କୌଣସି ନା କୌଣସି ସରକାରୀ ପ୍ରୟୋଗଶାଳାରେ କିମ୍ବା ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କର ଅନୁସନ୍ଧାନ ବିଭାଗରେ କାର୍ଯ୍ୟରତ ଥାଇ ସନ୍ତୋଷ ଅନୁଭବ କରୁଛନ୍ତି । ସେମାନେ ଯେଉଁ କାର୍ଯ୍ୟ କରୁଛନ୍ତି ତାହା ଶାସକମାନଙ୍କ ଦ୍ୱାରା ପ୍ରସ୍ତାବିତ କିମ୍ବା ଶିଳ୍ପପତିମାନଙ୍କ ଦ୍ୱାରା ନିର୍ଦ୍ଦେଶିତ । ଏକ ପଟେ ଶାସକ ଶ୍ରେଣୀର ସ୍ୱାର୍ଥ, ଅନ୍ୟ ପଟେ ଶିଳ୍ପପତିମାନଙ୍କର ହିତ । ଏହି ଦୁଇଟି ପାଚେରୀ ଭିତରେ ବୈଜ୍ଞାନିକର ଦୌଡ଼ । କେତେ ବର୍ଷ ପୂର୍ବେ କର୍କଟ ରୋଗର ଉପଚାର ଔଷଧ ବୈଜ୍ଞାନିକମାନଙ୍କର ମୁଖ୍ୟ ଗବେଷଣାର ବିଷୟ ଥିଲା, ଏବେ ଏହା ହେଲା ଏଡ୍‌ସ୍ ରୋଗର । ବୈଜ୍ଞାନିକମାନଙ୍କୁ ଆମେରିକା ସରକାର ଓ ବହୁରାଷ୍ଟ୍ରୀୟ କମ୍ପାନୀମାନେ ସବୁଠୁ ବେଶୀ ପ୍ରତିଷ୍ଠା ଓ ପଇସା ଦେଉଛନ୍ତି । ତାହାହେଲେ କ'ଣ ବୈଜ୍ଞାନିକମାନଙ୍କର ନିଜତ୍ୱ ନାହିଁ? ତାଙ୍କ କାର୍ଯ୍ୟର ସାମାଜିକ ଦିଗକୁ ସେମାନେ ନିଜେ ବାଛିପାରିବେ ନାହିଁ ?

ମୋଗଲ୍ ସାମ୍ରାଜ୍ୟ ଭାରତର ଜନସାଧାରଣଙ୍କୁ କ'ଣ ଦେଇଯାଇଛି ? ଏହାର ଉତ୍ତର 'ତାଜ୍‌ମହଲ୍' ନୁହେଁ । ଉର୍ଦ୍ଦୁ-ହିନ୍ଦୀ ଭାଷା ସେମାନେ ଦେଇ ଯାଇଛନ୍ତି ବୋଲି ଗର୍ବ କରିବା ବେଶୀ ସମୀଚୀନ ହେବ । ଆଜି ଏହି ଦୁଇଟି ଭାଷା କୋଟି କୋଟି ଲୋକଙ୍କର ଅଭିବ୍ୟକ୍ତିର ସାଧନ ହୋଇଛି । ପୃଥିବୀର ଛଅ ଶହ କୋଟି ଲୋକଙ୍କ ପାଇଁ ଆଧୁନିକ ବିଜ୍ଞାନ ଅନେକ 'ତାଜ୍‌ମହଲ୍' ଦେଇଛି, କିନ୍ତୁ ସାଧାରଣ ମଣିଷକୁ ସକ୍ଷମ ଓ ସବଳ କରିବା ଭଳି କିଛି ଦେଇପାରି ନାହିଁ – ଖାଦ୍ୟ, ବସ୍ତ୍ର, ଆବାସ କିମ୍ବା ସୁରକ୍ଷା, କିଛି ନୁହେଁ । ଏପରି କିଛି ଦେଇନାହିଁ ଯାହାକୁ ବ୍ୟବହାର କରି ଏକ ସାମାନ୍ୟତମ ମଣିଷ ସମସ୍ତଙ୍କ ଆଗରେ ଠିଆ ହୋଇ ପାରିବ । କେବଳ ବିଜୁଳି

ବିଷୟରେ କୁହାଯାଇ ପାରେ ଯେ ସମସ୍ତଙ୍କ ପାଖରେ ପହଞ୍ଚି ପାରିବା ଭଳି ଏହା ଏକ ସାଧନ ଓ ଉଦ୍ଭାବନ । ଅଥଚ ବିଜୁଳି ଉପରେ ଆଧାରିତ ଯେଉଁ ନୂଆ ଉଦ୍ଭାବନ ଗୁଡ଼ିକ ହେଉଛି ତାହା ଜନସାଧାରଣଙ୍କର ଶକ୍ତି ସୃଷ୍ଟି କରିବା ପରିବର୍ତ୍ତେ ସେମାନଙ୍କୁ ଅଧିକ ନିର୍ଯାତିତ କରୁଛି ।

ସାଧାରଣ ମଣିଷକୁ ସକ୍ଷମ କରିବା ପାଇଁ ଓ ମାନବ ଜାତି ପାଇଁ ଏକ ମାନବୀୟ ସମାଜର ସୃଷ୍ଟି କରିବା ପାଇଁ ଯେଉଁ ବିଜ୍ଞାନ ସାହାଯ୍ୟକାରୀ ହୋଇପାରିବ, ତାହାର ମାନଦଣ୍ଡ ସ୍ଥିର ହେବା ଦରକାର । ଆମେ ଏହି ନିବନ୍ଧକୁ ଶେଷ କରିବା ପୂର୍ବରୁ ତାହାର ଏକ କାମଚଳା ରୂପରେଖ ଦେଇଯିବାକୁ ଚାହୁଁ । ଯେଉଁ ପ୍ରଯୁକ୍ତି ବିଦ୍ୟାକୁ ଆମେ 'ଅତ୍ୟାଧୁନିକ' ବୋଲି ନାମ ଦେଇଛୁ ସେଗୁଡ଼ିକର ତାତ୍କାଳିକ ଉପଯୋଗୀତା କ'ଣ ? ଆମେ କଳାହାଣ୍ଡି ଅଞ୍ଚଳକୁ ବା କୋରାପୁଟ୍-ଫୁଲବାଣୀର ଜନସାଧାରଣଙ୍କୁ ଆଖି ଆଗରେ ରଖି କଳ୍ପନା କରିବା ଯେ ଅତ୍ୟାଧୁନିକ ଯନ୍ତ୍ରଗୁଡ଼ିକ ସେମାନଙ୍କର କେଉଁ କାମରେ ଆସିବ ? ସେମାନେ ଏହାର ବ୍ୟବହାର କରି ସୁଖୀ ବା ସମୃଦ୍ଧ ହୋଇପାରିବେ କି ? ଯେଉଁମାନେ ବ୍ୟବହାର କରିପାରିବେ ସେମାନେ ଯଦି କୋରାପୁଟ୍‌ରେ ପ୍ରବେଶ କରିବେ, ସର୍ବପ୍ରଥମେ ସେମାନେ ଏହି ଲୋକମାନଙ୍କୁ ତାଙ୍କର ଆଶ୍ରୟସ୍ଥଳୀ, ତାଙ୍କର ଭିଟାମାଟିରୁ ମଧ୍ୟ ବିତାଡ଼ିତ କରିବାର ଯୋଜନା କରିବେ । ତାହାହେଲେ ଆଧୁନିକ ବିଜ୍ଞାନ ଏମାନଙ୍କର ମିତ୍ର ନା ଶତ୍ରୁ ?

ଏକ କଲ୍ୟାଣକାରୀ ପ୍ରଯୁକ୍ତି ବିଦ୍ୟାର ମୁଖ୍ୟ ମାନଦଣ୍ଡ ଏଇୟା ହେବ – ଗୋଟିଏ ଛୋଟ ଅଞ୍ଚଳର ଜନସମୂହ ସେମାନଙ୍କର ନିଜର ବୁଦ୍ଧି ଓ ପ୍ରାକୃତିକ ସମ୍ପଦକୁ ନେଇ ଆର୍ଥିକ ସୁରକ୍ଷା ଓ ସମୃଦ୍ଧିକୁ ତ୍ୱରାନ୍ୱିତ କରିପାରିବେ କି ? ଏହି କାର୍ଯ୍ୟ ପାଇଁ ଆଧୁନିକ ବିଜ୍ଞାନ ଯଦି ଏପର୍ଯ୍ୟନ୍ତ କୌଣସି ଉଲ୍ଲେଖନୀୟ ପ୍ରଯୁକ୍ତି ବିଦ୍ୟାର ଆବିଷ୍କାର କରିନାହିଁ, ଯଦି ପାରମ୍ପରିକ ଦେଶିଆ ବିଜ୍ଞାନ ହିଁ ଏ ଦିଗରେ କିଛି ସାହାଯ୍ୟ କରି ପାରୁଛି, ତାହାହେଲେ ଏହା ହେଉଛି ଆଧୁନିକ ବିଜ୍ଞାନର ଅନାବିଷ୍କୃତ ଅଞ୍ଚଳ । ବିକାଶର ବିଜ୍ଞାନ ଏପର୍ଯ୍ୟନ୍ତ ଆବିଷ୍କୃତ ହୋଇନାହିଁ । ଦରିଦ୍ର ଓ ଅଳ୍ପ ବିକଶିତ ଅଞ୍ଚଳମାନଙ୍କୁ ଆଧୁନିକ ପ୍ରଯୁକ୍ତିବିଦ୍ୟା ସବୁବେଳେ କହୁଛି ତମେ ଶକ୍ତିଶାଳୀମାନଙ୍କର ଉପରେ ନିର୍ଭର କର, ସେମାନଙ୍କ ପାଖରେ ଋଣୀ ହୁଅ, ସେମାନଙ୍କୁ ଡାକି ଆଣ, ତାହାହେଲେ ତୁମର ବିକାଶ ହେବ । ଏହା ତ ପରାଧୀନତାର ବିଜ୍ଞାନ । ବିଜ୍ଞାନ ଆମକୁ ମୁକ୍ତି ଦେଉ ।

ଅଳ୍ପ ସମ୍ପଦଯୁକ୍ତ ଗୋଟିଏ ଅଞ୍ଚଳ ବା ବ୍ୟକ୍ତି ବା ଜଣେ ନାରୀ, ନିଜକୁ କେଉଁ ପଦ୍ଧତିରେ ସୁରକ୍ଷା ଦେବ ? ଆଧୁନିକ ବିଜ୍ଞାନ ଏ କ୍ଷେତ୍ରରେ ଯାହା ବି ସୃଷ୍ଟି କରିଛି ତାହା ଆକ୍ରମଣ ପାଇଁ ଓ ଶକ୍ତିଶାଳୀମାନଙ୍କ ପାଇଁ । କେବଳ ଆକ୍ରମଣ ଦ୍ୱାରା ହିଁ ସୁରକ୍ଷା ସମ୍ଭବ । ତେଣୁ ଶକ୍ତିଶାଳୀମାନେ ନିଜର ସୁରକ୍ଷା କରିପାରିବେ । ଏ ବିଷୟରେ ତର୍କ ଚାଲିଲେ ଆପଣ କହିବେ ଯେ ଏ ସୁରକ୍ଷାର ପ୍ରଶ୍ନ ହେଉଛି ସାମାଜିକ ନ୍ୟାୟ ଓ ଆର୍ଥିକ ସମତାର ପ୍ରଶ୍ନ । ବିଜ୍ଞାନ ଉପରେ ଏଗୁଡ଼ିକ କାହିଁକି ଲେଖୁଛ ? ବିଜ୍ଞାନ ଯଦି ନିରପେକ୍ଷ ହୋଇଥାଆନ୍ତା, ତାହାହେଲେ ଏହି ତର୍କ ଠିକ୍ ହୁଅନ୍ତା । କିନ୍ତୁ ଆଧୁନିକ ବିଜ୍ଞାନ ନିରପେକ୍ଷ ନୁହେଁ । ଆଧୁନିକ ବିଜ୍ଞାନ ଏଭଳି ପ୍ରଯୁକ୍ତି ବିଦ୍ୟାର ପ୍ରଚଳନ

କରାଉଛି ଯାହାଦ୍ୱାରା ସାମାଜିକ ବିଷମତା ସୃଷ୍ଟି ହେଉଛି ଓ ଶକ୍ତିଶାଳୀମାନଙ୍କୁ ଅନ୍ୟାୟ ଓ ଶୋଷଣର ଅସ୍ତ୍ର ପ୍ରଦାନ କରୁଛି । ତେଣୁ ଯେଉଁ ପ୍ରଯୁକ୍ତି ବିଦ୍ୟା ସମାଜରେ ବିଷମତା, ଏକତ୍ରୀକରଣ ଓ ଆକ୍ରମଣର ପ୍ରବୃତ୍ତିକୁ ବଢ଼ାଇବ ନାହିଁ, ତାହାହିଁ ସାଧାରଣ ମଣିଷକୁ ସୁରକ୍ଷା ପ୍ରଦାନ କରିବ । ଗୋଟିଏ ସମୟରେ ଆପଣ କହିବେ ଯେ ଆଧୁନିକ ବିଜ୍ଞାନର ସାମାଜିକ ସମ୍ପର୍କ ଓ ଉପକାରିତା ବିଷୟରେ ଏକ ସ୍ପଷ୍ଟ ବିବୃତି ଦରକାର ହେଉଛି ।

ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ଦୁଇ ଭିନ୍ନ ଅର୍ଥର ଶବ୍ଦ ହେଲେ ମଧ୍ୟ ଏହି ନିବନ୍ଧରେ ବେଳେ ବେଳେ ସମାନ ଅର୍ଥରେ ଉଭୟ ଶବ୍ଦର ବ୍ୟବହାର ହୋଇଛି କାରଣ ପଣ୍ଡିତମାନେ ଓ ନିଜେ ବୈଜ୍ଞାନିକମାନେ ଏପରି କରୁଛନ୍ତି । ଆମେ ବ୍ୟଙ୍ଗାତ୍ମକ ଭାବରେ ସମାନ ଅର୍ଥର ପ୍ରୟୋଗ କରୁଛୁ । ବିଜ୍ଞାନ ଓ ଯନ୍ତ୍ର ବିଦ୍ୟାକୁ ଅଲଗା ଅଲଗା ଅର୍ଥରେ ବ୍ୟବହାର କରିବା ଉଚିତ ହେବ । ଭୋଗ ବିଳାସ ଓ ବ୍ୟବସାୟିକ ଲାଭ ପାଇଁ ଯେତେ ରକମର ନୂଆ ଯନ୍ତ୍ରପାତି ବାହାରୁଛି – ଟେଲିଭିଜନ୍, ମୋବାଇଲ୍ ଫୋନ୍, ନୂଆ ମଡ଼େଲ୍‌ର ମୋଟରଗାଡ଼ି, କମ୍ପ୍ୟୁଟର – ଏସବୁକୁ ବିଜ୍ଞାନ ବୋଲି କହିବା ଫଳରେ ଗରିବ ଦେଶମାନେ ଆବଶ୍ୟକତା ନଥାଇ ମଧ୍ୟ ବେଶୀ ବେଶୀ ସଂଖ୍ୟାରେ ସେସବୁ କିଣୁଛନ୍ତି । ‘ତମେ କମ୍ପ୍ୟୁଟରୀକରଣକୁ ବାଧା ଦେଉଛ ? ତମେ ବିଜ୍ଞାନର ବିରୋଧୀ । ତମେ ଦେଶକୁ ବଳଦଗାଡ଼ି ଯୁଗକୁ ନେଇଯିବାକୁ ଚାହୁଁଛ ।’ ରଙ୍ଗୀନ୍ ଟେଲିଭିଜନ୍ ବା ମୋବାଇଲ୍‌ର ବ୍ୟବସାୟୀକ ବିଜ୍ଞାପନ ହେଉଛି – ‘ଆଧୁନିକ ବିଜ୍ଞାନ ସାଙ୍ଗରେ ତାଳ ଦେଇ ଚାଲନ୍ତୁ ।’ ବୈଜ୍ଞାନିକମାନେ ଏହାର ପ୍ରତିବାଦ କରନ୍ତି ନାହିଁ ।

ଆଧୁନିକ ବିଜ୍ଞାନ ଏକ ଗୋଳମାଳିଆ ସ୍ଥିତିରେ ଅଛି । ତାହାର ଅନୁସନ୍ଧାନର ଦିଗଗୁଡ଼ିକ ସ୍ପଷ୍ଟ ଓ ସ୍ୱଚ୍ଛ ନୁହେଁ । ବୈଜ୍ଞାନିକର ସ୍ୱାୟତ୍ତତା ନାହିଁ । ପ୍ରଯୁକ୍ତି ବିଦ୍ୟା ଆଦିମ ଯୁଗରେ ରହିଛି । ବଳଦ ଗାଡ଼ିର ବିକଳ୍ପ ଏ ପର୍ଯ୍ୟନ୍ତ ବାହାରି ନାହିଁ । ଅଳ୍ପ ସମ୍ପଦଯୁକ୍ତ ଗୋଷ୍ଠୀ ନିଜର ଜିନିଷପତ୍ର ନେଇ ଯାତ୍ରା କରିବ କିପରି ? ପେଟ୍ରୋଲ୍‌ର ଯଦି ନୂଆ ସନ୍ଧାନ ମିଳିବ ନାହିଁ, ଏକବିଂଶ ଶତାବ୍ଦୀର ଶେଷ ବେଳକୁ ବଳଦଗାଡ଼ିର ଆବଶ୍ୟକତା ବଢ଼ିଯାଇ ପାରେ । ବଳଦ ଗାଡ଼ି ଏକ ସୁନ୍ଦର ଓ ପ୍ରିୟ ଜିନିଷ । କିନ୍ତୁ ବଳଦ ଗାଡ଼ି ଯୁଗରେ ଯେତିକି ପ୍ରଯୁକ୍ତି ବିଦ୍ୟା ଆମ ପାଖରେ ଥିଲା, ତାହା ଆମର ନିମ୍ନତମ ମାନବୀୟ ଆବଶ୍ୟକତାଗୁଡ଼ିକ ପୂରଣ କରିପାରିବ ନାହିଁ ।

କେବଳ ଜୀବନ ବଞ୍ଚାଇ ରଖିବା ଆମର ଉଦ୍ଦେଶ୍ୟ ନୁହେଁ । ଜୀବନର ମାନ ଉଚ୍ଚ ହେବା ଦରକାର । ଯେଉଁସବୁ କାର୍ଯ୍ୟ କରିବା ଦ୍ୱାରା ଜୀବନର ସାର୍ଥକତା ବୋଧହୁଏ ସେହିସବୁ କାର୍ଯ୍ୟ ପାଇଁ କ୍ଷମତା ଓ ସୁଯୋଗ ପ୍ରତ୍ୟେକ ମଣିଷ ପାଇଁ ଆବଶ୍ୟକ । ବଳଦ ଗାଡ଼ି ଯୁଗର ପ୍ରଯୁକ୍ତି ବିଦ୍ୟାକୁ ନେଇ ଆମେ ଏପରି ଏକ ଭିନ୍ନ ସମାଜ ଆଡ଼କୁ ଆଗେଇପାରିବା ନାହିଁ । ଚରଖା ବସ୍ତ୍ର ଦେଇପାରିବ, କିନ୍ତୁ ଯଥେଷ୍ଟ ଦେଇପାରିବ ନାହିଁ । ତେଣୁ ଗାନ୍ଧିଜୀ ୧୯୨୪ ମସିହାରେ ଗୋଟିଏ ପୁରସ୍କାର ଘୋଷଣା କରିଥିଲେ । ଗୋଟିଏ ଉନ୍ନତ ଚରଖାର ଆବିଷ୍କର୍ତ୍ତାଙ୍କୁ ସେହି ପୁରସ୍କାର ଦିଆଯିବ । ଚରଖାର ଗ୍ରାମ୍ୟ ଚରିତ୍ର ଅପରିବର୍ତ୍ତିତ ରହିବ । ଏପରି ଏକ ଚରଖା ଯାହା ଏକ ସାଧାରଣ ଗ୍ରାମୀଣ

ପୁରୁଷ ବା ସ୍ତ୍ରୀର ନିୟନ୍ତ୍ରଣରେ ରହିବ, ତାହାର ବୁଦ୍ଧିରେ ପରିଚାଳିତ ହୋଇପାରିବ, କିନ୍ତୁ ଅଧିକ ଉତ୍ପାଦନକ୍ଷମ ହେବ । ବିଜୁଳି ଶକ୍ତିର ସାମାନ୍ୟ ବ୍ୟବହାର ଦରକାର ହେଲେ ମଧ୍ୟ ଆପତ୍ତି ନାହିଁ । ଏହାର ଉତ୍ତର ଆଧୁନିକ ବୈଜ୍ଞାନିକ ଗୋଷ୍ଠୀ ଦେଇନାହାନ୍ତି । ଏହା ହେଉଛି ବିକଳ୍ପ ପ୍ରଯୁକ୍ତି ବିଦ୍ୟାର ଏକ ଉଦାହରଣ ।

ଆଧୁନିକ ପ୍ରଯୁକ୍ତି ବିଦ୍ୟାକୁ ପ୍ରତ୍ୟାଖ୍ୟାନ କରିବାର ଉଦ୍ଦେଶ୍ୟ ନୁହେଁ ଯେ ସବୁ ଆଧୁନିକ ଯନ୍ତ୍ରକୁ ଫିଙ୍ଗିଦେବା ବା ଧ୍ୱଂସ କରିଦେବା । କେହି ଏହା କରି ପାରିବେ ନାହିଁ । ଆଧୁନିକ ପ୍ରଯୁକ୍ତି ବିଦ୍ୟାର ଦର୍ଶନ ଓ ପଦ୍ଧତି ହେଉଛି ଭୁଲ୍ । ସବୁଠାରୁ ମାରାତ୍ମକ ଭୁଲ ହେଉଛି କେନ୍ଦ୍ରୀକରଣ ବା ଏକତ୍ରୀକରଣର ପଦ୍ଧତି । ଯେଉଁ ପ୍ରଯୁକ୍ତି ବିଦ୍ୟାଗୁଡ଼ିକ ଅନିବାର୍ଯ୍ୟ ଭାବରେ କେନ୍ଦ୍ରୀକରଣ ଓ ଧ୍ୱଂସ ଆଡ଼କୁ ଅଭିମୁଖୀ, ସେଗୁଡ଼ିକୁ ସମ୍ପୂର୍ଣ୍ଣ ତ୍ୟାଗ କରିବାକୁ ପଡ଼ିପାରେ । ଭୋଗ ବିଳାସର ପ୍ରଯୁକ୍ତି ବିଦ୍ୟାକୁ ମଧ୍ୟ ସମ୍ପୂର୍ଣ୍ଣଭାବେ ତ୍ୟାଗ କରିବା ଉଚିତ । ଅନ୍ୟାନ୍ୟ ଯନ୍ତ୍ରଗୁଡ଼ିକର କେବଳ ଆଭିମୁଖ୍ୟ ବଦଳାଇବାକୁ ହେବ । ଗୋଟିଏ ଯୁଗର ଜ୍ଞାନ, ବିଜ୍ଞାନ କିମ୍ବା ପ୍ରଯୁକ୍ତି ବିଦ୍ୟା ପୂର୍ବ ଯୁଗର ସବୁ ଜ୍ଞାନ, ସବୁ ବିଜ୍ଞାନ ଓ ସବୁ ପ୍ରଯୁକ୍ତିକୁ ସମାପ୍ତ କରିଦିଏ ନାହିଁ । ଏବେ ମଧ୍ୟ ଆମେ ଅଗ୍ନି, ଚକ୍ର ଓ କୃଷିର ବ୍ୟବହାର କରୁଛୁ । ଏଗୁଡ଼ିକ ହେଉଛି ପ୍ରାଚୀନତମ ପ୍ରଯୁକ୍ତି ବିଦ୍ୟା । ତେଣୁ ଆମେ ଯଦି ଏକ ବିକଳ୍ପ ପ୍ରଯୁକ୍ତି ବିଦ୍ୟାର ଯୁଗ ପ୍ରବର୍ତ୍ତନ କରିବାକୁ ଚାହୁଁଛୁ, ତାହାହେଲେ ପ୍ରଚଳିତ ଯନ୍ତ୍ରଗୁଡ଼ିକରୁ କେତେ ଗୁଡ଼ିଏ ଯନ୍ତ୍ରକୁ ଭବିଷ୍ୟତ ପାଇଁ ବାଛି ନେଇପାରିବା । କେଉଁ ଯନ୍ତ୍ରକୁ ବାଛିବା, କାହାକୁ ଛାଡ଼ିବା, ଏଥିପାଇଁ ଆମେ ଗୋଟିଏ ଆୟୋଗ ଗଠନ କରିବା । ଏହା ହେଉଛି ଏକବିଂଶ ଶତାବ୍ଦୀର ଏଜେଣ୍ଡା-କାର୍ଯ୍ୟସୂଚୀ ଘୋଷଣା ।

'ଇଣ୍ଟରନେଟ୍' ଓ ବୈଶ୍ୱିକ ସହର (ଗ୍ଲୋବାଲ୍ ଭିଲେଜ୍)କୁ କେନ୍ଦ୍ର କରି ଏକବିଂଶ ଶତାବ୍ଦୀର ଯେଉଁ ବୈଜ୍ଞାନିକ ଚିତ୍ର ପ୍ରସ୍ତୁତ କରାଯାଉଛି, ତାହା ଏକ ଭୟାବହ କଳ୍ପନା । ଜ୍ଞାନ ଓ ସୂଚନାର ବିବିଧତା ନଷ୍ଟ କରିବ ଇଣ୍ଟରନେଟ୍ । ଯେପରି ଭାବରେ ସାଧାରଣ ଗାଣିତିକ ବୁଦ୍ଧିକୁ ଚପେଇ ଦେଇ ୨୦୦୦ ମସିହାକୁ ଏକବିଂଶ ଶତାବ୍ଦୀ ବୋଲି ପ୍ରଚାରିତ କରାଯାଉଛି, ସେହିପରି ଭାବରେ ଭାଷା ଉପରେ ଧର୍ଷଣ କରି ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାକୁ ଏକା ଅଙ୍କରେ ବ୍ୟବହାର କରି ମଣିଷ ଉପରେ ଅନାବଶ୍ୟକ ସୂଚନା ବର୍ଷଣ କରିବାର ପ୍ରଯୁକ୍ତି ବିଦ୍ୟା ପ୍ରସ୍ତୁତ ହେଉଛି । ଏହାର ପରିଣତି ଇଣ୍ଟରନେଟ୍ ଓ ବୈଶ୍ୱିକ ସହର ।

ଇଂରାଜୀରେ ଏହାକୁ 'ଗ୍ରାମ' କହିବା ମଧ୍ୟ ଏକ ଧର୍ଷଣ । ସୂଚନା ଓ ପରିବହନର ସଘନ ବ୍ୟବହାର ଏପରି ଭାବରେ ହେବ ଯେ କମ୍ପ୍ୟୁଟରର ଅଧିକତମ ବ୍ୟବହାର କରିପାରୁଥିବା ଲୋକମାନେ ଆଉ ଭୌଗୋଳିକ ପଥଗୁଡ଼ିକର ବ୍ୟବହାର କରିବେ ନାହିଁ । ସେମାନଙ୍କର ଯାତାୟାତ କମିଯିବ, ଯାହା ଯାତ୍ରା ହେବ ତାହା ଅତି ତୀବ୍ର ଗତିର ହେବ । ବିକାକିଣା, ଆଲୋଚନା, ମନୋରଞ୍ଜନ, ସାହିତ୍ୟ, କଳା ସବୁକିଛି କାର୍ଯ୍ୟ ଇଲେକ୍ଟ୍ରୋନିକ୍ ମାର୍ଗରେ କରିହେବ । ଏହି ବିଶେଷ ସୁବିଧାଯୁକ୍ତ ଲୋକଙ୍କର ଏକ ଅଲଗା ସଂସାର ହେବ । ଆଧୁନିକ ପ୍ରଯୁକ୍ତି ବିଦ୍ୟା ଏପରି ଏକ 'ସ୍ୱର୍ଗ' ନିର୍ମାଣ କାର୍ଯ୍ୟରେ ଲାଗିଛି । ଏକପାଖିଆ, ଆଂଶିକ ଓ ବିବିଧତା ବିହୀନ ଗଦା ଗଦା ସୂଚନାକୁ

ଆଧାର କରି ଯେତେବେଳେ ବିଶ୍ୱ-ବ୍ୟବସ୍ଥାକୁ ପରିଚାଳିତ କରାଯିବ, ତାହାର ପରିଣାମ ଭୟାବହ ହୋଇପାରେ ।

ମାନଚିତ୍ରର ଅନ୍ୟପାଖ ହେଉଛି ଯେ ବିଦ୍ରୋହୀ ବୈଜ୍ଞାନିକମାନଙ୍କର ଅନେକ ଗୋଷ୍ଠୀ କାର୍ଯ୍ୟରତ ଅଛନ୍ତି । ସେମାନେ ଆମର ସବୁ ସମାଲୋଚନା ସାଙ୍ଗରେ ସହମତ ହୋଇ ନ ପାରନ୍ତି । କିନ୍ତୁ ରାଜ କ୍ଷମତା ଓ ଅର୍ଥ କ୍ଷମତାର ପରିସର ବାହାରେ ସେମାନେ ବିଜ୍ଞାନକୁ ମାନବତା ସାଙ୍ଗରେ ଅର୍ଥାତ ସାଧାରଣ ମଣିଷ ସାଙ୍ଗରେ ଯୋଡ଼ିବା ପାଇଁ ନାନାବିଧ କଳ୍ପନା, ପ୍ରୟୋଗ ଓ ଅଧ୍ୟୟନ କରୁଛନ୍ତି । କ୍ଷୀଣ ହେଲେ ମଧ୍ୟ ଏହା ଏକ ସମାନ୍ତରାଳ ଧାରା ।

ଆଗାମୀ ଶତାବ୍ଦୀ ନିର୍ଣ୍ଣାୟକ ହୋଇପାରେ । ଖଣିଜ ପଦାର୍ଥ ଭଳି ଅନେକ ରକମର ପ୍ରାକୃତିକ ସମ୍ପଦକୁ ନିଃଶେଷ କରିଦେବା ପରେ ନୂଆ ନୂଆ ଚରାଭୂଇଁ ଯଦି ହସ୍ତଗତ ନହେଲା, ତାହାହେଲେ ପ୍ରଯୁକ୍ତି ବିଦ୍ୟା ପାଇଁ ଏକ ସଙ୍କଟର ସମୟ ଆସିବ । କିମ୍ବା ପୃଥିବୀର ଜନବହୁଳ ଦେଶମାନେ ପ୍ରଚଳିତ ପ୍ରଯୁକ୍ତି ବିଦ୍ୟାର ବ୍ୟର୍ଥତାକୁ ଅନୁଭବ କରି ଏକ ସମାନ୍ତରାଳ ବିଜ୍ଞାନର ଧାରା ବିକଶିତ କରିବା ପାଇଁ ଏକାଠି ହୋଇ ଅଣ୍ଟାଭିଡ଼ି ବାହାରିବେ, ଏହା ହିଁ ବିଶ୍ୱାସ ।

# ଆଧୁନିକ ବିଶ୍ୱରେ ସମାଜବାଦର ନୂତନ ରୂପରେଖ

ଶ୍ରଦ୍ଧେୟ ସଭାପତି ମହୋଦୟ ଓ ବନ୍ଧୁଗଣ ।

ମୁଁ ମାଳତୀ ଦେବୀ-ନବକୃଷ୍ଣ ଚୌଧୁରୀ ଟ୍ରଷ୍ଟ୍‌ର କାର୍ଯ୍ୟକର୍ତ୍ତା ଓ ପଦାଧିକାରୀମାନଙ୍କୁ କୃତଜ୍ଞତା ଜଣାଇବା ପାଇଁ ଚାହେଁ ଯେ, ନବକୃଷ୍ଣ ଚୌଧୁରୀ ବକ୍ତୃତାମାଳାର ପ୍ରଥମ ବକ୍ତୃତା ଦେବାର ଦାୟିତ୍ୱ ମୋତେ ଦେଇଛନ୍ତି । ମୋତେ କାହିଁକି ଏ ଦାୟିତ୍ୱ ଦେଇଛନ୍ତି ମୁଁ ଜାଣେନା । ସାଧାରଣତଃ ଯେଉଁମାନେ ସାମାଜିକ ଭାବରେ କିମ୍ବା ବିଦ୍ୱାନ ମଣ୍ଡଳୀରେ ପ୍ରତିଷ୍ଠିତ, ସେମାନଙ୍କୁ ସ୍ମାରକୀ ବକ୍ତୃତା ଦେବାର ସୁଯୋଗ ଦିଆଯାଇଥାଏ । ମୁଁ ସେପରି ଏକ ପ୍ରତିଷ୍ଠାସମ୍ପନ୍ନ ବ୍ୟକ୍ତି ନୁହେଁ । ଆଉ ଦୁର୍ଯୋଗକୁ ଏପରି ହେଲା ଯେ, ଯେଉଁ ସୁଯୋଗ ମୋତେ ମିଳିଲା ତାହାକୁ ମଧ୍ୟ ଠିକ୍ ଭାବରେ ନିର୍ବାହ କରିପାରିଲି ନାହିଁ । ସ୍ମାରକୀ ବକ୍ତୃତାମାଳାର ଗୋଟିଏ ପରିପାଟୀ ରହିଛି । ଅଧିକାଂଶ ସ୍ଥାନରେ ତାହା ପାଳିତ ହୁଏ । ତାହା ହେଲା, ସ୍ମାରକୀ ବକ୍ତୃତାଟି ଆଗରୁ ଲେଖାଯାଇ ଥାଏ ଓ ଛପାଯାଇ ବିତରିତ କରାଯାଏ । ତାହାଦ୍ୱାରା ବକ୍ତାର ପ୍ରତିଷ୍ଠା ବଢ଼େ । କିନ୍ତୁ ଏକ ବ୍ୟକ୍ତିଗତ, ପାରିବାରିକ କାରଣରୁ ମୁଁ ତାହା ମଧ୍ୟ ତୁଲାଇପାରିଲି ନାହିଁ । ତେବେ ମୁଁ ଅଯୋଗ୍ୟ ହେଲେ ବି ଦାୟିତ୍ୱ ପ୍ରତି ସଚେତନ ଓ ସେ ବିଷୟରେ ଯେତିକି ଚିନ୍ତା କରିବା କଥା କରିଛି ଓ ଆପଣମାନଙ୍କ ଆଗରେ ନିଜର ବକ୍ତବ୍ୟ ରଖୁଛି ।

ନବକୃଷ୍ଣ ଚୌଧୁରୀ ମୋ ପାଇଁ ଏକ ପ୍ରିୟ ନାମ । ତେବେ ସେଥିରେ ଗୋଟିଏ ବୈଚିତ୍ର୍ୟ ବି ରହିଛି । ନବକୃଷ୍ଣ ଚୌଧୁରୀ ଓ ଜୟପ୍ରକାଶ୍ ନାରାୟଣ୍‌ଙ୍କର ନାମ ବେଳେବେଳେ ମୋ ମନରେ ଏକା ସାଙ୍ଗରେ ଆସେ । କାହିଁକି ନା, ମୁଁ ଯେତେବେଳେ ୧୯୫୨ ମସିହାରେ ଓଡ଼ିଶା ସୋସାଲିଷ୍ଟ୍ ପାର୍ଟିର ଜଣେ ସକ୍ରିୟ କାର୍ଯ୍ୟକର୍ତ୍ତା ଭାବରେ ଯୋଗଦିଏ, ସେତେବେଳେ ସେ ଦୁଇ ତିନିବର୍ଷ ଭିତରେ ଭିନ୍ନ ଭିନ୍ନ ସମୟରେ ଭିନ୍ନ ଭିନ୍ନ କାରଣରୁ ଉଭୟ ନବକୃଷ୍ଣ ଚୌଧୁରୀ ଓ ଜୟପ୍ରକାଶ୍ ନାରାୟଣ୍‌ଙ୍କୁ କଟୁ ଭାଷାରେ ସମାଲୋଚନା କରିଥିଲି । ସେ କଥା ମନେ ପଡ଼ିଲେ ମୋତେ ହସ ଲାଗେ । ମୁଁ ନୂଆ କରି ପତ୍ରିକା ଚଳାଇବା ଓ ଲେଖାଲେଖି କରିବା ଆରମ୍ଭ କରିଥାଏ । 'କୃଷକ'ର ସହ-ସମ୍ପାଦନାର ଦାୟିତ୍ୱରେ ଥିଲି । ସେତେବେଳେ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଥିଲେ ଓ ଭୂଦାନ ଆନ୍ଦୋଳନରେ ଆଗୁଆ ମଧ୍ୟ ଥିଲେ । ତାଙ୍କର ଏକ ଭାଷଣର ପ୍ରତିକ୍ରିୟା ପ୍ରକାଶ କରି ମୁଁ ଆମ ପତ୍ରିକାରେ ଲେଖିଲି, 'ଓଡ଼ିଶାର

ମୁଖ୍ୟମନ୍ତ୍ରୀ ଧନୀ ଲୋକଙ୍କର କୁତ୍ତା’ । ଶିରୋନାମା ଭାବରେ ଏହା ଏକ ଅସଙ୍ଗତ ବାକ୍ୟ ଥିଲା, ମାତ୍ର ମୁଁ ଲେଖିଥିଲି । ତାହାପରେ ମନମୋହନ ଚୌଧୁରୀଙ୍କର ଏକ ପ୍ରତିବାଦ ଆସିଲା ଓ ଆମେ ତାକୁ ମଧ୍ୟ ଛାପିଥିଲୁ ।

ପ୍ରାୟ ସେହି ସମୟରେ ଜୟପ୍ରକାଶ୍ ନାରାୟଣ୍ ସୋସାଲିଷ୍ଟ୍ ପାର୍ଟିରୁ ଓହରି ଯାଇ ଭୂଦାନ ଆନ୍ଦୋଳନରେ ଯୋଗ ଦେଇଥିଲେ । ସେ ପ୍ରଧାନମନ୍ତ୍ରୀ ନେହେରୁଙ୍କ ସହ ବୁଝାମଣା କରିବା ପାଇଁ କଥାବାର୍ତ୍ତା ଆରମ୍ଭ କରିଦେଇଥିଲେ । ତାଙ୍କୁ ମଧ୍ୟ ମୁଁ କଟୁ ସମାଲୋଚନା କରି କେତେକ ଜାଗାରେ ଲେଖିଥିଲି । ଅସଲ କଥା ହେଲା ଯେ, ମୁଁ ଭୂଦାନ ଆନ୍ଦୋଳନର କଟୁ ସମାଲୋଚକ ଥିଲି । ନବବାବୁ ଓ ଜୟପ୍ରକାଶ୍ ଉଭୟେ ବାଟବଣା ହୋଇଛନ୍ତି ବୋଲି ମୋତେ ଜଣାପଡ଼ିଥିଲା । ଏହି ପ୍ରାରମ୍ଭିକ କଟୁ ସମାଲୋଚନା ପରବର୍ତ୍ତୀ କାଳରେ ମଧୁର ସମ୍ପର୍କରେ ପରିଣତ ହେଲା । ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀତ୍ୱ ଛାଡ଼ିବା ପରେ ସାମାଜିକ-ବୈପ୍ଳବିକ କାର୍ଯ୍ୟରେ ଏଭଳି ତନ୍ମୟତାର ସହ ଯୋଗଦେଲେ ଯେ, ସେଥିରୁ ଏକ ନୂଆ ରକମର ସମ୍ପର୍କ ତାଙ୍କ ସହ ସ୍ଥାପିତ ହେଲା । ପରବର୍ତ୍ତୀ କାଳରେ ୧୯୭୪ ମସିହାରେ ବିହାରର ପାଟଣାଠାରେ ରହି ଜୟପ୍ରକାଶ୍ ନାରାୟଣ୍ ସମ୍ପୂର୍ଣ୍ଣ କ୍ରାନ୍ତି ଆନ୍ଦୋଳନ ଆରମ୍ଭ କଲେ । ତାଙ୍କ ସହ ମଧ୍ୟ ଦେଖାହେଲା । ତାଙ୍କର ନିକଟତର ହେବା ସଙ୍ଗେ ସଙ୍ଗେ ତାଙ୍କ ବିଷୟରେ ଥିବା ପୁରୁଣା ଧାରଣାଗୁଡ଼ିକ ଦୂରେଇ ଗଲା । ସେହି ସମ୍ପୂର୍ଣ୍ଣ କ୍ରାନ୍ତି ଆନ୍ଦୋଳନରେ ଓଡ଼ିଶାରେ ନବକୃଷ୍ଣ ଚୌଧୁରୀଙ୍କର ନେତୃତ୍ୱରେ କାମ କରିବାର ସୁଯୋଗ ମୋତେ ମିଳିଥିଲା । ଏସବୁ ହେଉଛି କେତେକ ସ୍ମୃତି ।

ମୋଟ ଉପରେ ନବକୃଷ୍ଣ ଚୌଧୁରୀଙ୍କ ବିଷୟରେ ମୋର ଯେଉଁ ଆକଳନ ରହିଛି, ଜୟପ୍ରକାଶ୍ ନାରାୟଣଙ୍କ ବିଷୟରେ ମଧ୍ୟ ଏକ ସମତୁଲ୍ୟ ଆକଳନ ରହିଛି । ଉଭୟେ ବିପ୍ଳବକୁ ବା ବୈପ୍ଳବିକ ଆନ୍ଦୋଳନକୁ ଖୋଜି ବୁଲୁଥିଲେ । ଜୀବନସାରା ଖୋଜି ବୁଲୁଥିଲେ । ସେଥିପାଇଁ ସେମାନେ ଜୀବନସାରା କେଉଁଠି ସ୍ଥିର ହୋଇ ରହି ପାରି ନାହାନ୍ତି । ଏହି ସ୍ଥିର ହୋଇ ରହି ପାରି ନ ଥିବା ବ୍ୟକ୍ତିଙ୍କୁ ଯିଏ ପାଖରେ ଦେଖିନାହିଁ କିମ୍ବା ତାଙ୍କର ବିଚାରଧାରାର ପ୍ରକ୍ରିୟା ସହ ଯାହାର ଘନିଷ୍ଠ ସମ୍ପର୍କ ନାହିଁ ସେ ତାଙ୍କୁ ଭୁଲ ବୁଝିପାରେ । ନବକୃଷ୍ଣ ଚୌଧୁରୀ ଓ ଜୟପ୍ରକାଶ୍ ନାରାୟଣ୍ - ଉଭୟଙ୍କୁ ଅନେକ ସମୟରେ ଭୁଲ୍ ବୁଝିବା ସହଜ ହୋଇଥାଏ; କାରଣ ସେମାନେ ଅସ୍ଥିର ଥିଲେ । କିନ୍ତୁ ସେମାନଙ୍କର ଅସ୍ଥିରତାର ଏକ ନିଜସ୍ୱ ଚରିତ୍ର ଥିଲା । ଯେଉଁମାନେ ରାଜନୀତିରେ ଦଳ ବା ଆଦର୍ଶର ପରିବର୍ତ୍ତନ କରିଥାଆନ୍ତି ତାଙ୍କର ଦୁଇଟି ରକମର ଗତି ଥାଏ । ଗୋଟିଏ ରକମର ପରିବର୍ତ୍ତନରେ ଭୌତିକ ସୁଖ, ଧନ ସମ୍ପତ୍ତି ଓ ସାମାଜିକ ପ୍ରତିଷ୍ଠା ବଢ଼େ । ଆଉ ଗୋଟିଏ ରକମର ପରିବର୍ତ୍ତନରେ ଏଗୁଡ଼ିକ ବଢ଼େ ନାହିଁ ବରଂ କମିଯାଏ ।

ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଗାଦିରେ ବସି ସାରିଥିଲେ । କିନ୍ତୁ ପରବର୍ତ୍ତୀ କାଳରେ ମୁଁ ଯେବେ ବି ତାଙ୍କୁ ଦେଖିଛି ମୋର ମନେ ହେଉନଥିଲା ଯେ ନବବାବୁ କେବେ ବି ସେ ପୁରୁଣା କଥା, ମୁଖ୍ୟମନ୍ତ୍ରୀ ପଦ କଥା ଭାବୁଥିବେ । କଟକରୁ ସମ୍ବଲପୁର୍ ଗଲାବେଳେ ସେ କାଖରେ ଏକ ମସିଣା ଯାକି ବସରୁ ଓହ୍ଲାଉଥିଲେ । ତାଙ୍କ ପାଖରେ

ଥିବା ବୁଜୁଳାଟିକୁ ଆମର ସାଥିମାନେ ଯିଏ ବା ଧରିବାକୁ ଚେଷ୍ଟା କରିଛନ୍ତି ତାଙ୍କ ପାଖରୁ ଗାଳି ଖାଇଛନ୍ତି । ଏ ଥିଲେ ନବକୃଷ୍ଣ ଚୌଧୁରୀ । ଗୋପବନ୍ଧୁ ଦାସଙ୍କ ପରେ ଓଡ଼ିଶାର ରାଜନୀତିରେ ସେ କାଟର, ସେହି ଯୋଗ୍ୟତାର ନେତା ଥିଲେ ନବକୃଷ୍ଣ ଚୌଧୁରୀ । କିନ୍ତୁ ବୋଧହୁଏ ସେ ଇତିହାସରେ ସେତେ ପ୍ରତିଷ୍ଠିତ ହୋଇ ପାରିବେ ନାହିଁ । ତାହାର କାରଣ କିଛିଟା ପରିସ୍ଥିତିଗତ, କିଛିଟା ଯୁଗଗତ ଓ କିଛିଟା ତାଙ୍କ ସ୍ୱଭାବଗତ । ଯେଉଁ ଯୁଗରେ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ପଦ ଛାଡ଼ି ନିଜ ଗୋଡ଼ରେ ଠିଆ ହୋଇ ବୈପ୍ଳବିକ ରାଜନୀତି ଗଢ଼ିବା ପାଇଁ ଚେଷ୍ଟା କଲେ ସେ ଯୁଗ ଏ ପର୍ଯ୍ୟନ୍ତ ଚାଲିଛି ।

ଏ ଯୁଗରେ ପ୍ରକୃତ ବୈପ୍ଳବିକ ଧାରା (ତାହାର ଦିଗ୍‌ଦର୍ଶନ ଓ ସୂତ୍ର) କ'ଣ, ତାହା ଏ ପର୍ଯ୍ୟନ୍ତ ସ୍ପଷ୍ଟ ହୋଇପାରିନାହିଁ । ଏଭଳି ଯୁଗରେ ଯେ ପ୍ରକୃତରେ ବିପ୍ଳବକୁ ଖୋଜୁଛି ସେପରି ନେତା କେହି ପ୍ରତିଷ୍ଠିତ ହୋଇପାରିବେ ନାହିଁ । ନବକୃଷ୍ଣ ଚୌଧୁରୀ ବିପ୍ଳବର ଧାରାରେ ଚାଲୁଥିଲେ, ଅଣ୍ଡାଳି ହେଉଥିଲେ । ତାଙ୍କ ସାଙ୍ଗରେ ଆମେ ବି ଅଣ୍ଡାଳି ହେଉଥିଲୁ ଓ ଆଜି ବି ହେଉଛୁ । ତାଙ୍କର ଶେଷ ଦିନଗୁଡ଼ିକର କଥା ମନେ ପଡ଼ିଲେ ଅସନ୍ତୋଷର ମୁଦ୍ରାଟି ବେଶ୍ ମନେପଡ଼େ । ସେ ଅସନ୍ତୋଷ ବ୍ୟକ୍ତିଗତ କାରଣରୁ ନଥିଲା । ଦେଶ ଦୁନିଆଁ ଓ ଲୋକଙ୍କ ଭିତରେ ଯାହା ହେବା କଥା ତାହା ହୋଇପାରୁ ନଥିବା କାରଣରୁ ଅସନ୍ତୋଷ । ତାଙ୍କର ସେ ଗଭୀର ଅସନ୍ତୋଷ ନିଜ ପ୍ରତି ଧିକ୍କାର ଓ କ୍ରୋଧ ରୂପରେ ପରିସ୍ଫୁଟ ହେଉଥିଲା । ତାଙ୍କ ବିଷୟରେ ମୁଁ ଆଉ ବିଶେଷ କହିବି ନାହିଁ । ଅଳ୍ପ ଦିନ ତଳେ ତାଙ୍କର ଜୀବନ ଉପରେ ଶ୍ରୀ ଚିତ୍ତରଞ୍ଜନ ଦାସଙ୍କ ଦ୍ୱାରା ରଚିତ ବହିଟିଏ ପଢ଼ିଲି । ତାହାର ଶେଷ ପୃଷ୍ଠାର ଏକ ଅଂଶ ପଢ଼ି ମୋର ମନେହେଲା ମୁଁ ନବବାବୁଙ୍କୁ ଯେଭଳି ଭାବେ ଚିତ୍ରଣ କରିବାକୁ ଚାହୁଁଥିଲି ଠିକ୍ ସେହି କଥାକୁ ସେ ଭାଷା ଦେଇଛନ୍ତି ।

ସେ ଲେଖିଛନ୍ତି – 'ଶ୍ରୀଯୁକ୍ତ ଚୌଧୁରୀ ତାଙ୍କର ଜୀବନକାଳ ମଧ୍ୟରେ ଯେତେବେଳେ ଯେଉଁ ପଲ୍ଲୀରେ ଥିଲେ ସବୁଠାରେ ସେ ଏକ ସମୁଜ୍ଜଳ ବ୍ୟତିକ୍ରମ ନ ହୋଇ ରହିପାରୁ ନଥିଲେ । ରାଜନୀତି ଭିତରେ ସେ କୌଣସି ବ୍ୟକ୍ତିଗତ କାମନା ନେଇ ପ୍ରବେଶ କରି ନ ଥିଲେ । ଅନ୍ୟମାନଙ୍କ କାନ୍ଧ ଉପରେ ଗୋଡ଼ ଦେଇ ଆଗକୁ, ସବା ଆଗକୁ ଚାଲିଯିବେ ବୋଲି କୌଣସି ଦୁର୍ବାସନା ତାଙ୍କର ନଥିଲା । ସ୍ୱାଧୀନ ଭାରତର ଦୁଷ୍ଟ ଓ ପଥଚ୍ୟୁତ ରାଜନୀତି ତାଙ୍କୁ କୌଣସି ପ୍ରକାରେ ପଥଚ୍ୟୁତ କରିପାରି ନଥିଲା । ବାଟଟିଏ ଖୋଜି ସେ ଯେତେବେଳେ ଯେଉଁଠି ପହଞ୍ଚୁଥିଲେ ସେଠାରେ ଭିଡ଼ କରିଥିବା ଲୋକମାନେ ଯେ ଆଦୌ କୌଣସି ବାଟ ଖୋଜି ସେଠାକୁ ଆସି ନାହାନ୍ତି ଏହା ଭାବି ଅଚିରେ ସେ ବିଷୟରେ ତାଙ୍କର ମୋହଭଙ୍ଗ ହେଉଥିଲା ଓ ସେ ସେଠାରୁ ଯଥାଶୀଘ୍ର ଚାଲିଯିବେ ବୋଲି ଛଟପଟ ହେବାକୁ ଲାଗୁଥିଲେ । ଜୀବନରେ ଏପରି କେତେ ଗୋଠ, କେତେ ତୁଠ ହେଲେ । ଅସନ୍ତୋଷ – ଯାହା ହେଉ ବୋଲି ଚାହୁଁଛନ୍ତି ତାହା କିଛି କରି ନ ପାରିବାର ଅସନ୍ତୋଷ – ଏହି ଅସନ୍ତୋଷ ତାଙ୍କୁ କୃଦ୍ଧ କରୁ ।'

ଆଜିର ବକ୍ତୃତାରେ ମୋତେ ଯେଉଁ ବିଷୟ କହିବାକୁ ଦିଆଯାଇଛି ତାହାର ସୂଚନା ବୈଦ୍ୟନାଥବାବୁ ଆପଣମାନଙ୍କୁ ଦେଇଛନ୍ତି । 'ଆଧୁନିକ ବିଶ୍ୱରେ ସମାଜବାଦର

ପରିବର୍ତ୍ତିତ ରୂପରେଖ', ଏ ବିଷୟରେ କହିବାକୁ ଗଲାବେଳେ ମୋତେ ଗୋଟିଏ ଜଙ୍ଗଲ ଭିତରେ ଚାଲିବା ଭଳି ଲାଗୁଛି । ଲଙ୍କାରେ ହରି ଶବ୍ଦ ଯାହା, ଉଦାରୀକରଣର ଏ ଯୁଗରେ ସମାଜବାଦର ଚର୍ଚ୍ଚା ତାହା । ଏହା ନିଶ୍ଚିତ ଯେ ସମାଜବାଦର ଯେତେ ପୁରୁଣା କାଳିଆ ପରିଭାଷା ଥିଲା ସେସବୁ ଅଡୁଆରେ ପଡ଼ିଯାଇଛି । ତାକୁ ନିଖାରିବାକୁ ପଡ଼ିବ । ତାହାର ସ୍ଥାନ ପୁଣି ଥରେ ନିରୂପଣ କରିବାକୁ ହେବ । ଏହି କାର୍ଯ୍ୟ ଯେତେ ହେବା କଥା ପୃଥିବୀର କୌଣସି ଠାରେ ହେଉନାହିଁ ।

ଅତି ସଂକ୍ଷେପରେ କହିବାକୁ ଗଲେ ସମାଜବାଦ ଏକ ଅର୍ଥନୈତିକ ଅବଧାରଣା । ଯେତେଦିନ ପର୍ଯ୍ୟନ୍ତ ମଣିଷ ନିଜର ବୁଦ୍ଧି ବିବେକ ବିଷୟରେ ସଚେତ ରହିବ, ସେତେଦିନ ପର୍ଯ୍ୟନ୍ତ ସେ ନିଜର ସମାଜକୁ ନ୍ୟାୟମୂଳକ ଭାବରେ ଗଢ଼ିବାକୁ ନିଶ୍ଚୟ ଚେଷ୍ଟା କରିବ । ସେଇ ଚେଷ୍ଟା ଭିତରେ ସେ ସମାଜର ପୁନର୍ଗଠନ ଚାହେଁ । ଅର୍ଥ ବ୍ୟବସ୍ଥାର ପୁନର୍ନିର୍ମାଣ ଚାହେଁ । ବୈପ୍ଳବିକ ପରିବର୍ତ୍ତନ ଚାହେଁ । ନୂତନ ସମାଜ ନିର୍ମାଣର ଯେତେ ଯେତେ ଧାରା ଆଜିପର୍ଯ୍ୟନ୍ତ ମାନବ ସଭ୍ୟତାରେ ରହିଥିଲା ତାହା ଭିତରେ ଗତ ଏକ ଶତାବ୍ଦୀ ଧରି (ଉନବିଂଶ ଶତାବ୍ଦୀର ଶେଷାର୍ଦ୍ଧ ଓ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ) ଚାଲିଥିବା ସମାଜବାଦ ସବୁଠାରୁ ଶ୍ରେଷ୍ଠ ଓ ପ୍ରଭାବଶାଳୀ ଧାରା ଥିଲା ।

ସମାଜବାଦୀ ଆର୍ଥିକ ବ୍ୟବସ୍ଥାରେ ସମ୍ପତ୍ତି କାହାରି ବ୍ୟକ୍ତିଗତ ବୋଲି ବିବେଚିତ ହେବ ନାହିଁ, ସାମାଜିକ ବୋଲି ବିବେଚିତ ହେବ । ସମ୍ପତ୍ତିର ଉପଭୋଗରେ ବିଷମତା ରହିବ ନାହିଁ । ରହିଲେ ଅତି ନଗଣ୍ୟ ଭାବରେ ରହିବ । ଏ ହେଉଛି ସମାଜବାଦର କେନ୍ଦ୍ରୀୟ ତତ୍ତ୍ୱ । ଏପରି ଏକ ଅର୍ଥ ବ୍ୟବସ୍ଥା ପାଇଁ ଏକ ବିଶେଷ ପ୍ରକାରର ସାମାଜିକ ଦର୍ଶନ ବା ସଂସ୍କୃତି ନିଶ୍ଚୟ ଦରକାର ହେବ । ଏହି ସାଂସ୍କୃତିକ ଓ ଆର୍ଥିକ ପରିବର୍ତ୍ତନ ଆଣିବା ପାଇଁ ଏକ ରାଜନୈତିକ ପ୍ରକ୍ରିୟା ମଧ୍ୟ ରହିବ । ତେଣୁ ସମାଜବାଦର ଅର୍ଥନୀତି, ସମାଜବାଦର ରାଜନୀତି ଓ ସମାଜବାଦର ସଂସ୍କୃତି, ଏଭଳି ଏହାର ତିନୋଟି ଦିଗ ରହିଛି ।

ଆଧୁନିକ ସମାଜବାଦର ବିକାଶ ଉନବିଂଶ ଶତାବ୍ଦୀରେ ଘଟିଲା । ତାହାର ଏକ ବିଶେଷ ଐତିହାସିକ ପୃଷ୍ଠଭୂମି ରହିଛି । ଉନବିଂଶ ଶତାବ୍ଦୀରେ ୟୁରୋପୀୟ ଦେଶମାନଙ୍କରେ ଅଭୂତପୂର୍ବ ସମୃଦ୍ଧି ଦେଖାଦେଲା । ତାହା ଏକ ପ୍ରକାରର ଅର୍ଥନୈତିକ ପ୍ରତିପାଦନକୁ ଜନ୍ମ ଦେଲା । ପ୍ରତିପାଦନଟି ହେଉଛି ଏହିପରି - ୟୁରୋପୀୟ ସମୃଦ୍ଧିର ମୁଖ୍ୟ କାରଣ ହେଉଛି ଆଧୁନିକ ଶିଳ୍ପ ବିପ୍ଳବ । ବିଜ୍ଞାନ ଓ ବୈଷୟିକ ବିଦ୍ୟା ଏହି ବିପ୍ଳବ ଘଟାଇଛି । ବୈଷୟିକ ବିଦ୍ୟାର ଉପଯୋଗ ଦ୍ୱାରା ସମସ୍ତେ ନିଜ ନିଜ ଦେଶରେ ଶିଳ୍ପ ବିପ୍ଳବ ଆଣିପାରିବେ । ପ୍ରତ୍ୟେକ ଦେଶ ସମୃଦ୍ଧ ହୋଇପାରିବ, ପ୍ରତ୍ୟେକ ଦେଶ ବି ସମୃଦ୍ଧ ହେବ, ପ୍ରତ୍ୟେକ ନାଗରିକକୁ ମଧ୍ୟ ସମ୍ପନ୍ନ କରାଯାଇ ପାରିବ । କିନ୍ତୁ ବାସ୍ତବରେ ସେତେବେଳେ ପୁଞ୍ଜିବାଦର ଶୋଷଣ ଅତି ତୀବ୍ର ଥିଲା । ତେଣୁ ବିବେକଶୀଳ ଲୋକଙ୍କ ମନରେ ପ୍ରଶ୍ନ ହେଲା, ସମୃଦ୍ଧି ସାଙ୍ଗରେ ଏହି ଶୋଷଣର ମେଳ ନାହିଁ । ଏଇଟା ଅସ୍ୱାଭାବିକ । ଏହାକୁ ବଦଳାଇବାକୁ ପଡ଼ିବ । ବଦଳାଇ ହେବ କି ନାହିଁ ? କିପରି ବଦଳାଇବାକୁ ହେବ ?

ବୈଭବ ଓ ଶୋଷଣ ଉଭୟ ପ୍ରତି ଯେଉଁ ପ୍ରତିକ୍ରିୟା ହେଲା ଓ ବିଭିନ୍ନ ମନୀଷୀ ଓ ସାମାଜିକ କାର୍ଯ୍ୟକର୍ତ୍ତାମାନେ ଯେଉଁସବୁ ଚିନ୍ତା କଲେ ତାହା ଭିତରୁ ସମାଜବାଦର ବିକାଶ ହେଲା । ଏଥିପାଇଁ ଭିନ୍ନ ଭିନ୍ନ ଉଦ୍ୟମ ହୋଇଥିଲା ଓ ଶେଷରେ କାର୍ଲ ମାର୍କ୍ସ ଓ ଏନ୍‌ଜେଲସ୍ ଦୁହେଁ ମିଶି ଯେଉଁ ପ୍ରତିପାଦନ କଲେ ଓ ସିଦ୍ଧାନ୍ତ ବଖାଣିଲେ ତାହାରି ଭିତରୁ ସମାଜବାଦ ଏକ ସ୍ପଷ୍ଟ ରୂପ ନେଲା । ଊନବିଂଶ ଶତାବ୍ଦୀର ସମୃଦ୍ଧି ଏହାର ମୂଳ ଉଦ୍‌ଗମ ସ୍ଥଳ । କାର୍ଲ୍ ମାର୍କ୍ସ ତାହାକୁ ଏକ ତାତ୍ତ୍ୱିକ ପଦ୍ଧତିରେ ବୁଝାଇବାକୁ ଚେଷ୍ଟା କଲେ ଯେ, ଆଧୁନିକ ବୈଷୟିକ ଜ୍ଞାନ ଫଳରେ ଏହି ସମୃଦ୍ଧି ସମ୍ଭବ ହୋଇଛି ଓ ତାହା ପୁଞ୍ଜିବାଦର ରୂପ ନେଇଛି । ଏ ପୁଞ୍ଜିବାଦ ସମୃଦ୍ଧିକୁ କିଛିଦିନ ପାଇଁ ବଢ଼ାଇବ, କିନ୍ତୁ ଗୋଟିଏ ସୀମା ପରେ ପୁଞ୍ଜିବାଦର ପ୍ରଗତିରେ ଅବରୋଧ ଆସିବ । ସେହି ଅବରୋଧକୁ ଛିନ୍ନ କରିବ ସମାଜବାଦ । ସେହି ଅବରୋଧ ଛିନ୍ନ ହେବା ପରେ ସମୃଦ୍ଧି ଏତେ ବେଶୀ ହେବ ଯେ, ଆର୍ଥିକ ବିଷମତା ଦରକାର ହେବନାହିଁ । 'ଯାହାର ଯେତେ ଦରକାର ସେତକ ସେ ପାଇପାରିବ' ।

ମଧ୍ୟବର୍ତ୍ତୀ କାଳରେ ରାଷ୍ଟ୍ରର ଶକ୍ତି ପ୍ରୟୋଗ ଦ୍ୱାରା ସମାଜବାଦ ସ୍ଥାପିତ ହେବ । ପରେ ପରେ ଅତ୍ୟଧିକ ପ୍ରାଚୁର୍ଯ୍ୟ ହେବା ଫଳରେ ରାଷ୍ଟ୍ର ଶକ୍ତିର ଦରକାର ମଧ୍ୟ ହେବନାହିଁ, ରାଜ୍ୟ ମଧ୍ୟ ଉଭେଇଯିବ । ମାର୍କ୍ସ ଓ ଏନ୍‌ଜେଲସ୍ ତାଙ୍କର 'କମ୍ୟୁନିଷ୍ଟ ମାନିଫେଷ୍ଟୋ'ରେ ଏହି ସ୍ୱପ୍ନ ଦେଖିଥିଲେ । ତାଙ୍କର ଅତୁଳନୀୟ ଶୈଳୀରେ ମାର୍କ୍ସ ଏ ସବୁର ତାତ୍ତ୍ୱିକତା ପ୍ରତିପାଦିତ କରିଛନ୍ତି । ତାଙ୍କର ମତରେ ଇତିହାସର ଦ୍ୱନ୍ଦାତ୍ମକ ଗତି ଏପରି ଯେ ଶିଳ୍ପ ସଭ୍ୟତାର ହିଁ ଏକ ପରିଣତି ହିସାବରେ ପୁଞ୍ଜିବାଦକୁ ସମାଜବାଦରେ ପହଞ୍ଚାଇବ । ଏହା ହେଉଛି ଇତିହାସର ଗତି ଓ ଆମକୁ ନିମିତ୍ତ ମାତ୍ର ହେବାକୁ ପଡ଼ିବ । ଯେଉଁମାନେ ବୈପ୍ଳବିକ ଭାବରେ ନିମିତ୍ତ ହେବେ ସେମାନଙ୍କୁ ଏକ ବୈପ୍ଳବିକ ଆନ୍ଦୋଳନ ଆରମ୍ଭ କରିବାକୁ ପଡ଼ିବ ।

ଶିଳ୍ପ ସଭ୍ୟତା ଓ ଆଧୁନିକ ପ୍ରଗତିର ତାତ୍ତ୍ୱିକ ପରିଣତି ହେଉଛି ସମାଜବାଦ । ତେଣୁ ଆଧୁନିକ ସମାଜବାଦ ବା ସାମ୍ୟବାଦକୁ ଶିଳ୍ପ ସଭ୍ୟତାର ଏକ ଉପସିଦ୍ଧାନ୍ତ ବୋଲି ମଧ୍ୟ କୁହାଯାଇପାରେ । ସମାଜବାଦର ବୌଦ୍ଧିକ ଦିଗଟି ହେଉଛି ଏଇଆ । ୟୁରୋପ୍‌ର ବାହାରେ ଏସିଆ, ଆଫ୍ରିକା ତଥା ଲାଟିନ୍ ଆମେରିକାର ବିଭିନ୍ନ ଦେଶ – ଯେଉଁମାନେ ସମାଜବାଦୀ ବା ସାମ୍ୟବାଦୀ ହେଲେ, ସେମାନଙ୍କ ଆଗରେ ଦୁଇଟି ମଡ଼େଲ୍ ଥିଲା । ଗୋଟିଏ ପଶ୍ଚିମ ୟୁରୋପର ଜନମଙ୍ଗଳ ରାଷ୍ଟ୍ର ଓ ଅନ୍ୟଟି ସୋଭିଏତ୍ ରୁଷ୍‌ର ସାମ୍ୟବାଦୀ ଅର୍ଥ ବ୍ୟବସ୍ଥା । ଏ ଦୁଇଟି ମଡ଼େଲ୍‌କୁ ଆଖି ଆଗରେ ରଖି ସମାଜବାଦୀ ଆନ୍ଦୋଳନକୁ ଦୁଇଟି ଭାଗରେ ବିଭକ୍ତ କରାଯାଇ ପାରେ – ଗଣତାନ୍ତ୍ରିକ ସମାଜବାଦୀ ଓ ସାମ୍ୟବାଦୀ । ଭାରତରେ ପ୍ରଥମଟି ସମାଜବାଦୀ ଓ ଦ୍ୱିତୀୟଟି ସାମ୍ୟବାଦୀ ନାମରେ ପ୍ରଚଳିତ । କିନ୍ତୁ ଦୁଇଟି ଯାକ ଧାରାର ବୌଦ୍ଧିକ ଉଦ୍‌ଗମସ୍ଥଳ ହେଉଛି ମାର୍କ୍ସବାଦ ।

ମାର୍କ୍ସଙ୍କର ସିଦ୍ଧାନ୍ତର ଏକ ମୂଳ ଅବଧାରଣା ହେଲା ଯେ ପୁଞ୍ଜିବାଦର ସମୃଦ୍ଧି ଦିନେ ସମାଜବାଦରେ ପରିଣତ ହେବ । ଗତ ଚାଳିଶି-ପଚାଶ ବର୍ଷ ମଧ୍ୟରେ ବିଶ୍ୱ ସ୍ତରରେ ଯେଉଁସବୁ ପରିବର୍ତ୍ତନମାନ ଘଟିଯାଇଛି ତାହା ଫଳରେ ଏହି ଧାରଣା ସମ୍ମୁଖରେ

ଏକ ପ୍ରଶ୍ନବାଚୀ ଆସିଯାଇଛି । ୧୯୫୦ ମସିହାର ପାଖାପାଖି ବା ବିଂଶ ଶତାବ୍ଦୀର ମଧ୍ୟ ଭାଗରେ ଗଣତାନ୍ତ୍ରିକ ସମାଜବାଦୀ ଧାରାର ହ୍ରାସ ହେବାକୁ ଲାଗିଲା । ସେମାନେ ଖଣ୍ଡ ଖଣ୍ଡ ହେଲେ, ପ୍ରଭାବହୀନ ହେଲେ ଓ ଶେଷରେ ଲୁପ୍ତ ହୋଇଗଲେ । ବିଂଶ ଶତାବ୍ଦୀର ଶେଷ ଦଶନ୍ଧି ବେଳକୁ ସାମ୍ୟବାଦର ମୁଖ୍ୟ ଦୁର୍ଗ ସୋଭିଏତ୍ ରୁଷ୍ ଭୁଷୁଡ଼ି ପଡ଼ିଲା ଓ ଦେଖୁ ଦେଖୁ ସାରା ଦୁନିଆରେ ସାମ୍ୟବାଦୀ ଆନ୍ଦୋଳନ ପ୍ରଭାବହୀନ ଅବସ୍ଥାକୁ ଆସିଗଲା । ବର୍ତ୍ତମାନ ପୃଥିବୀରେ ସାମ୍ୟବାଦୀ ବା ସମାଜବାଦୀ ବୋଲି କୌଣସି ସକାରାତ୍ମକ ଧାରା ନାହିଁ । ଏଣୁ ସମାଜବାଦର ଭବିଷ୍ୟତ ବିଷୟରେ ଏକ ସନ୍ଦେହ ବା ଅବିଶ୍ୱାସ ସୃଷ୍ଟି ହୋଇଛି । କଥା ପଡ଼ିଛି ସମାଜବାଦର ଭବିଷ୍ୟତ ଅଛି କି ନାହିଁ ? ଏହାର ଉତ୍ତର ମୁଁ ନିମ୍ନଲିଖିତ ଭାବରେ ରଖିବାକୁ ଚାହେଁ ।

ସମାଜବାଦକୁ ଦୁଇଟି ଅର୍ଥରେ ପ୍ରକାଶ କରାଯାଇଥାଏ । ଗୋଟିଏ ଅର୍ଥ ହେଉଛି ଯେଉଁଟା ମୁଁ ପ୍ରଥମେ କହିଲି । ଅନ୍ୟ ପରିଭାଷାଟି ହେଲା ଏକ ନ୍ୟାୟମୂଳକ ସମାଜର ପ୍ରତିଷ୍ଠା ବା ଏକ ସମତାମୂଳକ ଅର୍ଥ ବ୍ୟବସ୍ଥାର ସ୍ଥାପନା । ଏ ହେଉଛି ଏକ ଆଦର୍ଶ ଓ ଏହା ଚିରଦିନ ରହିବ । ତାହାକୁ ସାର୍ଥକ କରିବାକୁ ମାନବ ସମାଜରେ ନୂଆ ନୂଆ ଆନ୍ଦୋଳନ ହୋଇ ଚାଲିବ । ସେହି ଦୃଷ୍ଟିରୁ ସମାଜବାଦର ଭବିଷ୍ୟତ ଅଛି ଓ ଏକ ତାତ୍କାଳୀନ ଆବଶ୍ୟକତା ମଧ୍ୟ ରହିଛି । କିନ୍ତୁ ୟୁରୋପ୍‌ର ପୁଞ୍ଜିବାଦ ଓ ଶିଳ୍ପ ସଭ୍ୟତାକୁ ଦେଖି ଯେଉଁ ସମାଜବାଦର ପରିକଳ୍ପନା କରାଯାଇଥିଲା, ତାହାର ଭବିଷ୍ୟତ ମୁଁ ଦେଖିପାରୁନାହିଁ । ତାହାର କେତେକ କାରଣ ମୁଁ ଚିନ୍ତା କରୁଛି ।

ଊନବିଂଶ ଶତାବ୍ଦୀରେ ୟୁରୋପ୍‌ର ଯେଉଁ ସମୃଦ୍ଧି ସଙ୍ଗଠିତ ହେଲା, ତାହାର କାରଣ ବିଷୟରେ ଶିକ୍ଷିତ ଲୋକମାନଙ୍କ ମନରେ ଅନେକ ଭୁଲ୍ ଧାରଣା ରହିଛି । ମୋଟ ଉପରେ ଆଧୁନିକ ଶିଳ୍ପ ସଭ୍ୟତା ବିଷୟରେ ଦୁଇଟି ଭୁଲ୍ ଧାରଣା ମୁଁ ଉଲ୍ଲେଖ କରିବି । ପ୍ରଥମ ଧାରଣା ହେଲା - ଏହି ସମୃଦ୍ଧିର କାରଣ ହେଉଛି ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ପ୍ରୟୋଗ । ମୋ ବିଚାରରେ ଏହା ଏକ ସମ୍ପୂର୍ଣ୍ଣ ଭୁଲ୍ ଧାରଣା । ଦ୍ୱିତୀୟଟି ହେଉଛି, ପୃଥିବୀର ପ୍ରାକୃତିକ ସଂସାଧନଗୁଡ଼ିକ ଅସୀମ । ଏ ସଙ୍କ୍ରାନ୍ତରେ ମୁଁ ଏତିକି ନିଶ୍ଚିତ ଭାବେ କହିପାରେ ଯେ, ବିଦ୍ୟାଳୟମାନଙ୍କରେ ଯେତିକି ରକମର ଜ୍ଞାନ ରହିଛି ସେଥିରୁ ସାଧାରଣ ଶିକ୍ଷିତ ଲୋକମାନଙ୍କର ଏ ଯାଏ ଜ୍ଞାନ ହୋଇ ପାରି ନାହିଁ ଯେ ମଣିଷ ପାଇଁ ଉପଯୋଗୀ ପ୍ରାକୃତିକ ସଂସାଧନଗୁଡ଼ିକ ସୀମିତ, ଅସୀମ ନୁହେଁ । ଏହି ଭୁଲ୍ ଧାରଣା ଯୋଗୁଁ ଆମର କେତେ ଯେ ସମ୍ପଦ ନଷ୍ଟ ହେଉଛି ଓ ଆହୁରି କେତେ ଯେ ବିପର୍ଯ୍ୟୟ ହେବାର ଅଛି, ସେ ବିଷୟରେ ଆଲୋଚନା ହେବା ଆବଶ୍ୟକ ।

ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ସତରେ କ'ଣ ଏତେ ସମୃଦ୍ଧି ଆଣିଦେଲା । ଯେଉଁ ସମୟରେ ଷ୍ଟିମ୍ ଇଞ୍ଜିନ୍ ଓ ପରେ ୟୁରୋପ୍‌ରେ ନାନା ରକମର ଆଧୁନିକ ଯନ୍ତ୍ରପାତିର ଆବିଷ୍କାର ହେଲା, ସେତେବେଳେ ପୃଥିବୀରେ ଆଉ କ'ଣ ଘଟୁଥିଲା ? ଊନବିଂଶ ଶତାବ୍ଦୀ ବେଳକୁ ୟୁରୋପ୍ ସମଗ୍ର ପୃଥିବୀର ମାଲିକ ଥିଲା ଓ ସାମ୍ରାଜ୍ୟବାଦ ବିଶ୍ୱବ୍ୟାପୀ ହୋଇସାରିଥିଲା । ଏ ସାମ୍ରାଜ୍ୟବାଦ ବିନା କ'ଣ ସମୃଦ୍ଧି ସମ୍ଭବ ହୋଇପାରି ଥାଅନ୍ତା ? ଏ ପ୍ରଶ୍ନ ଉପରେ ବେଳେବେଳେ ଚର୍ଚ୍ଚା ତ ହେଉଛି, ହେଲେ ତାହା ଉପରେ

ବିଧିବଦ୍ଧ ଅଧ୍ୟୟନ କରି ବିଶେଷଜ୍ଞମାନେ ଏବେ ସୁଦ୍ଧା ଏକ ସିଦ୍ଧାନ୍ତ ଦେଇପାରି ନାହାନ୍ତି । ସାମ୍ରାଜ୍ୟବାଦ ଯଦି ନଥାନ୍ତା ଓ ଆଧୁନିକ ବିଜ୍ଞାନର ସୂତ୍ରଗୁଡ଼ିକ ବାହାରି ଯାଇଥାଆନ୍ତା, ତାହାହେଲେ ବି କ'ଣ ଆଧୁନିକ ପ୍ରଯୁକ୍ତି ବିଦ୍ୟାର ଉଦ୍ଭାବନ ସମ୍ଭବ ହୋଇଥାନ୍ତା ?

ମୋ ମତରେ 'ନୁହେଁ' । କାରଣ ଊନବିଂଶ ଶତାବ୍ଦୀର ୟୁରୋପ୍‌ରେ ଯେଉଁ ସବୁ ଉଦ୍‌ଭାବନମାନ ହେଲା ତାହାର ସମକକ୍ଷ ଉଦ୍‌ଭାବନମାନ ଚୀନ୍ ଦେଶରେ ମଧ୍ୟ ଆଗରୁ ହୋଇସାରିଥିଲା । ଚୀନ୍‌ରେ ବୈଜ୍ଞାନିକ ଉଦ୍ଭାବନର ପରିଣାମ ସ୍ୱରୂପ ଅଭୂତପୂର୍ବ ସମୃଦ୍ଧି ହେଲାନାହିଁ, ମାତ୍ର ୟୁରୋପ୍‌ରେ କାହିଁକି ହେଲା ? ଏହା ସହ ସାମ୍ରାଜ୍ୟବାଦ ଯଦି ଯୋଡ଼ି ହୋଇ ନ ଥାଆନ୍ତା ୟୁରୋପ୍‌ରେ ସମୃଦ୍ଧି କଦାପି ଆସିପାରି ନ ଥାଆନ୍ତା । ୟୁରୋପ୍ ପୃଥିବୀର ଏକ ଛୋଟ ଅଂଶ । ସାରା ପୃଥିବୀ ସେମାନଙ୍କ ହାତରେ । ପୃଥିବୀର ସବୁଠାରୁ କଞ୍ଚାମାଲ୍, ଶସ୍ତା ଶ୍ରମ ଓ ବିଶ୍ୱବ୍ୟାପୀ ବଜାର – ଏ ତିନୋଟି ଯାକ ସେମାନଙ୍କୁ ମିଳିଲା । ସାମ୍ରାଜ୍ୟବାଦର ସୁଯୋଗକୁ କାର୍ଯ୍ୟରେ ଲଗାଇବା ପାଇଁ ସେମାନେ ଆଧୁନିକ ବିଜ୍ଞାନ ବଳରେ ଆଧୁନିକ ଯନ୍ତ୍ରପାତି ତିଆରି କରି ତାହାର ଉପଯୋଗ କରିବାକୁ ଲାଗିଲେ । ତେଣୁ ସେମାନେ ଯେଉଁ ପ୍ରଯୁକ୍ତି ବିଦ୍ୟା ଉଦ୍ଭାବନ କରିଛନ୍ତି ତାହା ସମୃଦ୍ଧି ତ ନିଶ୍ଚୟ ଦେବ, ମାତ୍ର ଯେତେ ସମୃଦ୍ଧି ଦେବ ତାହା ଅପେକ୍ଷା ଅଧିକ ଦାରିଦ୍ର୍ୟ ସୃଷ୍ଟି କରିବ । ଆଧୁନିକ ପ୍ରଯୁକ୍ତିବିଦ୍ୟା ବିଷୟରେ ମୁଁ ଯାହା କହିବାକୁ ସାହସ କରୁଛି, ସେପରି ହୁଏତ କେହି କରୁ ନ ଥିବେ । ଆଧୁନିକ ବିଦ୍ୟାର ଏ ଯେଉଁ ନିୟମ ଏ ପର୍ଯ୍ୟନ୍ତ ଚାଲି ଆସିଛି ଆଉ ଭବିଷ୍ୟତରେ ମଧ୍ୟ ଚାଲିବ, ତାହାର ଅନ୍ତ କ'ଣ ହେବ ବୋଲି ଭାବିଲେ ଏକ ଭୟାନକ ସ୍ୱପ୍ନ ଭଳି ଲାଗୁଛି ।

ଆଧୁନିକ ପ୍ରଯୁକ୍ତି ବିଦ୍ୟାର ଅସଲ ଚରିତ୍ର କ'ଣ ? ଏହାର କେତୋଟି ସ୍ଥାନଜୟୀ ଓ କାଳଜୟୀ ଗୁଣ ରହିଛି । ସ୍ଥାନଜୟୀ, ଅର୍ଥାତ୍ ଯେତେ ଦୂରରେ ଗୋଟିଏ ଜିନିଷ ଥାଉ ନା କାହିଁକି ଏହା ସଙ୍ଗେ ସଙ୍ଗେ ଆଣି ପାରିବ । ଉତ୍ତର ମେରୁ ଅବା ଦକ୍ଷିଣ ମେରୁ ଅବା ସାହାରା ମରୁଭୂମି ହେଉ, ସେହି ସ୍ଥାନରୁ ଜିନିଷ ନେଇ ଆସିବା ପାଇଁ ଯନ୍ତ୍ର ତିଆରି ହୋଇଛି । କାଳଜୟୀ ଅର୍ଥ ଠିକ୍ ସେହିପରି । ଯେଉଁ ଜିନିଷଟା ଭବିଷ୍ୟତ ବଂଶଧରଙ୍କ ପାଇଁ ଛଡ଼ାଯାଇ ଥାଆନ୍ତା ତାକୁ ମଧ୍ୟ ବ୍ୟବହାର କରିଦେବା । ପାଣି, ପବନ ଆଦି ପ୍ରକୃତିର ସମସ୍ତ ସମ୍ପଦ ଆମେ ଚାହିଁଲେ ଆଧୁନିକ ପ୍ରଯୁକ୍ତିବିଦ୍ୟା ବଳରେ ଆଜି ବ୍ୟବହାର କରି ସାରିଦେଇ ପାରିବା । ଆଫ୍ରିକା ବା ଏସିଆ, ୟୁରୋପ୍ ପାଇଁ ଦୂର ଜାଗା ନୁହେଁ । ଉରୁଗୁଏ ଆମେରିକା ପାଇଁ ଦୂର ନୁହେଁ । ସେମାନେ ଯଦି ଚାହିଁବେ ଆଣ୍ଟାର୍କଟିକାରୁ ପେଟ୍ରୋଲ୍ ବାହାର କରି ପାରିବେ । ଭାରତର ଖଣି ମାନଙ୍କରୁ ମଧ୍ୟ ପଦାର୍ଥ କାଢ଼ି ନେଇ ପାରିବେ । ସେମାନେ ଯାହା ଜିନିଷ ତିଆରି କରିବେ ସେଗୁଡ଼ିକ ଏସବୁ ଜାଗାରେ ବିକ୍ରି କରି ପାରିବେ ।

ଏହି ବିଦ୍ୟାଟି ଯେଉଁଠି ଆସ୍ଥାନ ଜମାଇବ, ସେଠି ଗୋଟିଏ ସମୃଦ୍ଧ ଅଞ୍ଚଳ ସୃଷ୍ଟି ହେବ । ସେହି ଅଞ୍ଚଳକୁ ବଞ୍ଚାଇ ରଖିବା ପାଇଁ ଗୋଟିଏ ବାହ୍ୟ ଅଞ୍ଚଳ ଦରକାର । ସମୃଦ୍ଧ ଅଞ୍ଚଳଟି ଯେତିକି ବଡ଼, ବାହ୍ୟ ଅଞ୍ଚଳଟି ତାହାଠାରୁ ଆହୁରି ବଡ଼ ହେବା

ଦରକାର । ସେହି ଅଞ୍ଚଳଟି ପ୍ରଯୁକ୍ତି ବିଦ୍ୟାରେ ଦୁର୍ବଳ ଓ ପଛୁଆ ଥିବ ଓ ସେଠିକାର ରାଜନୀତି ମଧ୍ୟ ଦୁର୍ବଳ ଥିବ । ଏପରି ଏକ ବାହ୍ୟ ଅଞ୍ଚଳ ଯଦି ଆମର ଅଛି ଆମେ ନିଜକୁ ସମୃଦ୍ଧ କରିପାରିବା । ମୁଁ ଯେଉଁ ବାହ୍ୟ ଅଞ୍ଚଳ ବୋଲି କହୁଛି, ତାହାକୁ ଉପନିବେଶ ବୋଲି ମଧ୍ୟ କୁହାଯାଏ । ଉପନିବେଶ କହିଲେ ଅନ୍ୟ ଦେଶ ବୋଲି ସାଧାରଣତଃ ବୁଝାଯାଏ । ଭାରତ ଇଂଲଣ୍ଡ୍‌ର ଉପନିବେଶ ଥିଲା, ଜର୍ମାନୀର ଉପନିବେଶ ଥିଲେ ଆଫ୍ରିକାର ଦେଶମାନେ ।

କିନ୍ତୁ ଉପନିବେଶ ନିଜ ଦେଶରେ ମଧ୍ୟ ହୋଇପାରେ । ଗୋଟିଏ କଲିକତା ବା କଲିକତା ଭଳି ଅଞ୍ଚଳ ତିଆରି କରିବା ପାଇଁ ଗୋଟିଏ ଓଡ଼ିଶା ବା ଆସାମ୍ ଭଳି ଅଞ୍ଚଳ ଦରକାର । ଆମେ ଯେତେବେଳେ ପଢୁଥିଲୁ ଏହାକୁ ହିଣ୍ଟରଲ୍ୟାଣ୍ଡ୍ କୁହାଯାଉଥିଲା । ଆଜିକାଲି ସେ ଶବ୍ଦର ବେଶୀ ପ୍ରଚଳନ ନାହିଁ । କାରଣ ବହି ଲେଖିବା ଲେଖକେ ବୁଝିଗଲେ ଯେ ଏହା ଏକ ଠିକ୍ ଶବ୍ଦ ନୁହେଁ । ଗୋଟିଏ ମହାନଗରୀ ହେବ ତ ତା ଚାରିପାଖରେ ଏକ ହିଣ୍ଟରଲ୍ୟାଣ୍ଡ୍ ରହିବ; ତାହାର ଗୋଟିଏ ଉପନିବେଶ ରହିବ । ପୃଥିବୀର ଯେଉଁଠି ବି ଆଧୁନିକ ସମୃଦ୍ଧି ହେଉଛି - ଇଂଲଣ୍ଡ୍, ଫ୍ରାନ୍ସ, ଜର୍ମାନୀ, ଆମେରିକା ବା ଜାପାନ୍ - ସବୁଠି ଏହି ନିୟମରେ ହିଁ ହୋଇଛି । ସେମାନେ ନିଜକୁ ସମୃଦ୍ଧ କରିବା ପାଇଁ ପୃଥିବୀର ବହୁ ଦେଶକୁ ବିପନ୍ନ ଓ ବଞ୍ଚିତ କରିଛନ୍ତି । ଯଦି ଭାରତ ନଥାନ୍ତା, ଇଂଲଣ୍ଡ୍ ସମୃଦ୍ଧ ହୋଇପାରି ନଥାନ୍ତା ।

ଏ ବିଷୟରେ ବୌଦ୍ଧିକ ଓ ବୈଷୟିକ କାର୍ଯ୍ୟ ଆରମ୍ଭ ହୋଇଥିଲା ରାଷ୍ଟ୍ରୀୟ ଆନ୍ଦୋଳନ କାଳରେ । ସେତେବେଳକାର ଦୁଇଟି ଉଲ୍ଲେଖଯୋଗ୍ୟ ନାମ ଦାଦାଭାଇ ନାରୋଜୀ ଓ ରମେଶଚନ୍ଦ୍ର ଦତ୍ତ । ସେମାନେ ଯେଉଁ ବୌଦ୍ଧିକ ପ୍ରତିପାଦନ କରିବାକୁ ଯାଉଥିଲେ ସେ ଧାରା ଆଉ ରହିଲା ନାହିଁ । କାରଣ ମ୍ୟାକଲେ ଭାରତରେ ଯେଉଁ ଶିକ୍ଷା ପଦ୍ଧତିର ପ୍ରବର୍ତ୍ତନ କରିଥିଲେ ତାହାର ସୁଫଳ ବାହାରି ସାରିଥିଲା । ଯେଉଁ ବିଚାରଟି ୟୁରୋପରୁ ଆସିଲା ସେହି ବିଚାରଟି ହିଁ ଭଲ ଓ ଭାରତ, ଆଫ୍ରିକା ବା ଏସିଆର ଅନ୍ୟାନ୍ୟ ଦେଶରୁ ଆସିଥିବା ବିଚାର ଭଲ ନୁହେଁ - ଏ ଧାରଣା ସାଧାରଣ ଶିକ୍ଷିତ ଲୋକଙ୍କ ମନରେ ବଳବତୀ ହେବାକୁ ଲାଗିଲା । ତେଣୁ ଦାଦାଭାଇ ନାରୋଜୀ ଯେଉଁ ବୈଚାରିକ ସୂତ୍ର ବାନ୍ଧିଥିଲେ ତାହା ବିସ୍ମୃତ ହୋଇଗଲା । ରମେଶ୍‌ଚନ୍ଦ୍ର ଦତ୍ତ ଐତିହାସିକ ଭାବରେ ଯେଉଁସବୁ ତଥ୍ୟ ଦେଇଥିଲେ ସେଥିରୁ କିଛି ଗ୍ରହଣ କରାଗଲା ନାହିଁ । ଏହି ଜ୍ଞାନ କେବଳ ଗାନ୍ଧିଜୀଙ୍କ ଭିତରେ ସୀମିତ ହୋଇ ରହିଲା । କଲେଜ୍ ଶିକ୍ଷାଦ୍ୱାରା ଆମକୁ ଭ୍ରାନ୍ତ କରାଗଲା ଯେ ସମୃଦ୍ଧିର ଏକମାତ୍ର କାରଣ ହେଉଛି ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା । ଏହାକୁ ପ୍ରୟୋଗ କର, ତୁମେ ମଧ୍ୟ ସମୃଦ୍ଧ ହୋଇଯିବ । ଏହା ଯେ କଦାପି ସମ୍ଭବ ନୁହେଁ; ଏକଥା ତଥ୍ୟ ଦ୍ୱାରା ପ୍ରମାଣିତ ହୋଇ ସାରିଛି; ଶାସ୍ତ୍ର ଏହାକୁ ଗ୍ରହଣ କରି ନାହିଁ ।

ଦେଖିବାକୁ ଗଲେ ସାମନ୍ତବାଦ ଓ ପୁଞ୍ଜିବାଦ ଭିତରେ କୌଣସି ଫରକ ନାହିଁ । ପୁରୁଣା ସମାଜବାଦୀ ଓ ସାମ୍ୟବାଦୀମାନଙ୍କୁ ଏକଥା ଶୁଣିଲେ ଆଶ୍ଚର୍ଯ୍ୟ ଲାଗିପାରେ । ସେମାନଙ୍କ ବିଚାରରେ ସାମନ୍ତବାଦୀ ସବୁଠାରୁ ବଡ଼ ଗଛ, ପୁଞ୍ଜିବାଦୀ ତା ଅପେକ୍ଷା

ଛୋଟ ଗଛ । ଏହାର କାରଣ ମୁଁ ବୁଝିପାରେ ନାହିଁ । ବାମପନ୍ଥୀମାନେ ପୁଞ୍ଜିବାଦକୁ ସାମନ୍ତବାଦ ଅପେକ୍ଷା ବେଶୀ ପ୍ରଗତିଶୀଳ ବୋଲି କାହିଁକି ଭାବନ୍ତି ? ପୁଞ୍ଜିବାଦୀମାନେ ସାମନ୍ତବାଦୀମାନଙ୍କ ଅପେକ୍ଷା କ'ଣ କମ୍ ଧନ ଲୁଟ୍ କରୁଛନ୍ତି ? ସେମାନେ କ'ଣ କମ୍ ଆଡ଼ମ୍ବରରେ ରହୁଛନ୍ତି ? ସେମାନେ କ'ଣ କମ୍ ବୌଦ୍ଧିକ ଲୋକଙ୍କୁ ଦାସ କରି ରଖିଛନ୍ତି ? ସାମନ୍ତବାଦୀ ରାଜା, ମହାରାଜା ଓ ଜମିଦାରମାନଙ୍କ ଭିତରେ, ବ୍ୟତିକ୍ରମ ହିସାବରେ ହେଉ ପଛେ, ଭଲ ମଣିଷର ଦୃଷ୍ଟାନ୍ତ ମିଳିଯାଏ । ସମ୍ରାଟ ଅଶୋକଙ୍କର ଉଦାହରଣ ନିଆଯାଇପାରେ । ମାତ୍ର ବିଶ୍ୱର ମଙ୍ଗଳ ପାଇଁ ଜୀବନକୁ ଦାନ କରିଥିବାର ଜଣେ ପୁଞ୍ଜିପତିର ଦୃଷ୍ଟାନ୍ତ ମିଳେ ନାହିଁ । ହାଇଦ୍ରାବାଦ୍‌ର ନିଜାମ୍‌ଙ୍କ ପାଖରେ ଠୁଳ ହୋଇଥିବା ଅମାପ ମଣି, ମୁକ୍ତା ଓ ହୀରା କେଉଁଠୁ ଆସିଥିଲା ? ପ୍ରଜାଙ୍କର ଧନସମ୍ପତ୍ତି ଲୁଟ୍ ହୋଇ ସେସବୁ ରାଜାଙ୍କର ଉଆସରେ ଠୁଳ ହେଉଥିଲା । ଆଜିର ପୁଞ୍ଜିପତିମାନେ କେଉଁ ଉପାୟରେ ଅମାପ ଧନସମ୍ପତ୍ତିର ମାଲିକ ହେଉଛନ୍ତି ? ସେମାନେ ମଧ୍ୟ ଅନ୍ୟମାନଙ୍କର ଭାଗ ଲୁଣ୍ଠନ କରି ନିଜର ଧନ ବଢ଼ାଉଛନ୍ତି । ଅତୀତରେ ମୁଁ ମଧ୍ୟ ଜଣେ ସମାଜବାଦୀ ହିସାବରେ ପୁଞ୍ଜିବାଦକୁ ସାମନ୍ତବାଦ ଅପେକ୍ଷା ବେଶୀ ପ୍ରଗତିଶୀଳ ବୋଲି କହିଛି । ବର୍ତ୍ତମାନ ମୁଁ ଆଉ ତାହାର କୌଣସି କାରଣ ଦେଖୁନାହିଁ । ଅନ୍ୟ ଅଞ୍ଚଳରୁ ଓ ଭବିଷ୍ୟତ ବଂଶଧରଙ୍କ ଭାଗରୁ ସମ୍ପତ୍ତି ଲୁଣ୍ଠନ କରି ଗୋଟିଏ ଜାଗାରେ ଠୁଳ କରିବା ବିଜ୍ଞାନର ଚମତ୍କାରିତା ନୁହେଁ, ତାହା ଶୋଷଣ ଓ ଲୁଣ୍ଠନର ଚମତ୍କାରିତା ।

ଏହି ସମ୍ପର୍କରେ ରାସାୟନିକ ସାର ପ୍ରୟୋଗର ଦୃଷ୍ଟାନ୍ତ ନିଆଯାଇପାରେ । ଏହାଦ୍ୱାରା ଶସ୍ୟର ଉତ୍ପାଦନ ବହୁମାତ୍ରାରେ ବଢ଼ିଛି ସତ, ମାତ୍ର ତଦ୍ୱାରା ମାଟିର ଉର୍ବରା ଶକ୍ତି ବହୁମାତ୍ରାରେ ହ୍ରାସ ପାଉଛି । ଏହାକୁ କ'ଣ ବିଜ୍ଞାନର ଚମତ୍କାରିତା ବୋଲି କହିବା ? ମୁଁ ସେହି ଉତ୍ପାଦନ ପ୍ରଣାଳୀକୁ ବୈଜ୍ଞାନିକ କହିବି, ଯଦ୍ୱାରା ଅଧିକ ଶସ୍ୟ ଉତ୍ପାଦନ ସାଙ୍ଗକୁ ମାଟିର ଉର୍ବରା ଶକ୍ତି ମଧ୍ୟ ଅକ୍ଷୁର୍ଣ୍ଣ ରହିବ । ଆଧୁନିକ ପ୍ରଯୁକ୍ତିବିଦ୍ୟା ଶହେ ବର୍ଷର ଉର୍ବରା ଶକ୍ତିକୁ ନଷ୍ଟ କରି ମାଟିରେ ପାଞ୍ଚ କି ଦଶଗୁଣ ଅଧିକ ଫସଲ ଉତ୍ପାଦନ କରାଉଛି । କିନ୍ତୁ ମାଟିର ଉର୍ବରା ଶକ୍ତି ଉପରେ ତ' ଭବିଷ୍ୟତ ବଂଶଧରମାନଙ୍କର ମଧ୍ୟ ଭାଗ ରହିଛି । ସେମାନଙ୍କର ଦଶା କ'ଣ ହେବ ? ଏ ବିଷୟରେ ବୈଜ୍ଞାନିକମାନେ ଭାବୁ ନାହାନ୍ତି । ସମ୍ପ୍ରତି ଯାହାକୁ ପରିବେଶ ସଙ୍କଟ ବୋଲି କୁହାଯାଉଛି ତାହାର ସମାଧାନର ଉପାୟ ସେମାନେ ବାହାର କରିପାରୁ ନାହାନ୍ତି । ଆଧୁନିକ ପ୍ରଯୁକ୍ତି ବିଦ୍ୟା ସଙ୍କ୍ରାନ୍ତରେ ମୋର ସ୍ପଷ୍ଟ ଓ ଦୃଢ଼ ମତ ଯେ ଏଥିରେ ଉତ୍ପାଦନ ବଢ଼ାଇବାର ବିଶେଷ କ୍ଷମତା ନାହିଁ । ଏଥିରେ କେବଳ ଲୁଣ୍ଠନର କ୍ଷମତା ରହିଛି । ଦ୍ୱିତୀୟ କଥା ହେଲା, ଏ ପ୍ରଯୁକ୍ତି ବିଦ୍ୟା ଜନିତ ସମୃଦ୍ଧିର ଭିତ୍ତି ହେଉଛି ବିଷମତା । ଗୋଟିଏ ଅଞ୍ଚଳରେ ବିଷମତା ସୃଷ୍ଟି କଲେ ଯାଇ ଅନ୍ୟ ଅଞ୍ଚଳକୁ ଏହା ସମୃଦ୍ଧ କରିପାରିବ ।

ତେଣୁ ଆଧୁନିକ ପ୍ରଯୁକ୍ତି ବିଦ୍ୟାକୁ ଭିତ୍ତି କରି ଗଢ଼ି ଉଠିଥିବା ପୁଞ୍ଜିବାଦୀ ସମୃଦ୍ଧିକୁ କେନ୍ଦ୍ରକରି ଯେଉଁ ସମାଜବାଦର ପରିକଳ୍ପନା ହୋଇଥିଲା ତାହା ଆଉ ପ୍ରାସଙ୍ଗିକ ନୁହେଁ । ସମାଜବାଦର ମନିଷୀମାନେ ଲେଖିଯାଇଥିଲେ ଯେ ୟୁରୋପ୍‌ର ଧନୀ ପୁଞ୍ଜିବାଦୀ ଦେଶମାନଙ୍କରେ ସର୍ବ ପ୍ରଥମେ ସମାଜବାଦ ଆସିବ । ମାତ୍ର ସେହିପରି ଘଟିଲା ନାହିଁ ।

ୟୁରୋପ୍‌ର ଏକ ଦୁର୍ବଳ ଦେଶ ରୁଷ୍‌ରେ କମ୍ୟୁନିଷ୍ଟ୍ ଆନ୍ଦୋଳନର ପ୍ରଥମ ବିଜୟ ଘଟିଥିଲା । ତାହାପରେ ଯାହା ବି ହେଲା ୟୁରୋପ୍ ବାହାରେ । ଏସିଆର ଚୀନ୍ ଓ ଭିଏତନାମ୍ ତଥା ଲାଟିନ୍ ଆମେରିକାର କ୍ୟୁବା ଭଳି ପଛୁଆ ଦେଶମାନଙ୍କରେ ସାମ୍ୟବାଦୀ ବିପ୍ଳବ ଘଟିଲା । ସମୃଦ୍ଧି ସାଙ୍ଗରେ ସାମ୍ୟବାଦର କୌଣସି ସମ୍ପର୍କ ଦେଖାଗଲା ନାହିଁ । ସୋଭିଏତ୍ କ୍ରାନ୍ତିର ନେତା ଲେନିନ୍ ଅନେକ ଦିନ ଯାଏ କ'ଣ କରିବେ ଭାବି ପାରି ନ ଥିଲେ । ଶେଷରେ ସେ ଏକ ସୂତ୍ର ବାନ୍ଧିଲେ । 'ରାଷ୍ଟ୍ର ପୁଞ୍ଜିବାଦ'ର ଏକ ଅବଧାରଣା ସେ ଦେଲେ । ସେ ଅନୁସାରେ ସାମ୍ୟବାଦୀ ବିପ୍ଳବର ବିଜୟ ଘଟି ସରିଲା ପରେ ରୁଷିଆର ଯେଉଁ ବ୍ୟବସ୍ଥା ସ୍ଥାପିତ କରାଗଲା ତାହା ସମାଜବାଦୀ ବା ସାମ୍ୟବାଦୀ ନ ଥିଲା, ଥିଲା 'ରାଷ୍ଟ୍ର ପୁଞ୍ଜିବାଦ' । ଏହାକୁ ସାମ୍ୟବାଦ ବୋଲି ପ୍ରଚାର କରାଗଲା । ପରିକଳ୍ପନା ଥିଲା ଯେ ପ୍ରଥମେ ପୁଞ୍ଜିବାଦ ଆସିବ ଓ ସମୃଦ୍ଧି ବଢ଼ାଇବ ଓ ତାହାପରେ ସମାଜବାଦ ଆସି ସେହି ସମୃଦ୍ଧିର ବଣ୍ଟନ କରିବ ।

ଏହି ପରିକଳ୍ପନାଟି ବିଗିଡ଼ି ଯାଇଛି । ରୁଷୀୟ ବିପ୍ଳବ ସମୟରୁ ହିଁ ବିଗିଡ଼ି ଯାଇଛି । ସୋଭିଏତ୍ ରୁଷ୍‌ରେ ସାମ୍ୟବାଦର ଦୁର୍ଗ ଭୁଷୁଡ଼ି ପଡ଼ିବାପରେ ସେ କଥା ଧରା ପଡୁଛି । ସୋଭିଏତ୍ ଅର୍ଥ ବ୍ୟବସ୍ଥା ଭୁଷୁଡ଼ି ପଡ଼ିବାର କାରଣ ସମାଜବାଦୀ ଓ ସାମ୍ୟବାଦୀମାନେ ଏ ପର୍ଯ୍ୟନ୍ତ ଗମ୍ଭୀରତା ସହକାରେ ବିଶ୍ଳେଷଣ କରିପାରିନାହାନ୍ତି । ଜ୍ଞାନ କ୍ଷେତ୍ରରେ ଏହା ଏକ ବଡ଼ ବିଡ଼ମ୍ବନା । ଏଥିପାଇଁ ରାଜନେତା ମାନଙ୍କ ଅପେକ୍ଷା ବୁଦ୍ଧିଜୀବୀମାନଙ୍କୁ ମୁଁ ବେଶୀ ଦୋଷୀ ବୋଲି ମନେକରେ । ମୁଁ ନିଜେ ଜଣେ ରାଜନେତା ବୋଲି ସେପରି କହୁଛି, ତାହା ନୁହେଁ । ସୋଭିଏତ୍ ଅର୍ଥ ବ୍ୟବସ୍ଥାର ପତନର କାରଣ ସଙ୍କ୍ରାନ୍ତରେ ଜଣେ ସାଧାରଣ ରାଜନୈତିକ କର୍ମୀ ହିସାବରେ ମୋର ମନ୍ତବ୍ୟକୁ ମୁଁ ଉପସ୍ଥାପନା କରିବି । ଏ ବିଷୟରେ ସି.ପି.ଆଇ. ବା ସି.ପି.ଏମ୍.ର ନେତାମାନଙ୍କୁ ପ୍ରଶ୍ନ ପଚାରିଲେ ସେମାନେ ସମସ୍ତେ ଏକ ସ୍ୱରରେ ଉତ୍ତର ଦେଇଥାଆନ୍ତି ଯେ ଏଥିପାଇଁ ପୁଞ୍ଜିବାଦୀ ଦେଶମାନଙ୍କର ଷଡ଼ଯନ୍ତ୍ର ଦାୟୀ । ଏକଥା କାହାକୁ ବିଶ୍ୱାସଯୋଗ୍ୟ ହୁଏ ନାହିଁ ।

ମୋ ମତରେ, ସୋଭିଏତ୍ ୟୁନିୟନ୍‌ରେ ଯେଉଁ 'ରାଷ୍ଟ୍ର ପୁଞ୍ଜିବାଦ' ଆରମ୍ଭ କରାଯାଇଥିଲା, ତାହା ସୁରୁଖୁରୁରେ ଚାଲି ପାରିଲା ନାହିଁ । ସେଠିକାର ଅର୍ଥ ବ୍ୟବସ୍ଥା ଭୁଷୁଡ଼ି ଯିବାର ଏହା ମୁଖ୍ୟ କାରଣ । ଷ୍ଟାଲିନ୍ ଯୁଗରେ ଯେଉଁ ସମୃଦ୍ଧି ହାସଲ ପାଇଁ ଏକ 'ବାହ୍ୟ ଅଞ୍ଚଳ' ବା ଉପନିବେଶ ବ୍ୟବହାର କରାଗଲା, କଞ୍ଚାମାଲ୍, ଶସ୍ତା ଶ୍ରମ ଓ ବଜାର ଉଦ୍ଦେଶ୍ୟରେ ଏସବୁ ଅଞ୍ଚଳକୁ ବ୍ୟବହାର କରାଗଲା । ସୋଭିଏତ୍ ସଂଘର ଚାରିଆଡ଼େ ସମୃଦ୍ଧି ସୃଷ୍ଟି ହେଲା କହିବା ଭୁଲ୍ ହେବ । ଅଳ୍ପ କେତେକ ସ୍ଥାନରେ, ବିଶେଷକରି ମସ୍କୋ ଓ ଲେନିନ୍‌ଗ୍ରାଡ୍ ଅଞ୍ଚଳର ଗୋଟିଏ ପରିଧି ଭିତରେ ଆଧୁନିକ ସମୃଦ୍ଧି ଦେଖାଦେଲା । ୧୯୫୬ ମସିହାରେ ଏହି ସମୃଦ୍ଧି ଚରମ ଉତ୍କର୍ଷରେ ପହଞ୍ଚିଲା । ବିଶ୍ୱର ପ୍ରଥମ ଦେଶ ହିସାବରେ ସୋଭିଏତ୍ ସଙ୍ଘ ମହାକାଶକୁ ଯାନ ଛାଡ଼ିଲା । ସେଠିକାର ସାମ୍ୟବାଦୀ ଅର୍ଥ ବ୍ୟବସ୍ଥା କାରଣରୁ ଏହା ସମ୍ଭବପର ହେଲା ବୋଲି ଦାବୀ ହେଲା । ସେ ଯାହାହେଉ, ତାହା ମଧ୍ୟ ଗୋଟିଏ ସମୃଦ୍ଧି ଥିଲା । ମାତ୍ର ସେହି ସମୃଦ୍ଧି ମଧ୍ୟ ପୁଞ୍ଜିବାଦ-ଭିତ୍ତିକ ଥିଲା ।

୧୯୫୦ ମସିହା ପରେ ପୂର୍ବ ୟୁରୋପ୍‌ର ସାମ୍ୟବାଦୀ ଦେଶମାନଙ୍କରେ ଗୋଟିଏ ପରେ ଗୋଟିଏ ବିଦ୍ରୋହ ସଙ୍ଗଠିତ ହେବାକୁ ଲାଗିଲା । ପ୍ରଥମେ ୟୁଗୋସ୍ଲାଭିଆ, ତାପରେ ହଙ୍ଗେରୀ, ଚେକୋସ୍ଲୋଭାକିଆ ଆଦି ଭିନ୍ନ ଭିନ୍ନ ଦେଶମାନଙ୍କରେ ସୋଭିଏତ୍ ରୁଷ୍‌ର ଆଧିପତ୍ୟ ବିରୁଦ୍ଧରେ ବିଦ୍ରୋହ ହେଲା । ତାହାରି ଫଳରେ ପୂର୍ବ ୟୁରୋପ୍‌ର ଦେଶମାନଙ୍କର ଯେତିକି ଅବାଧରେ ଶୋଷଣ ଚାଲିଥିଲା, ତାହା ଆଉ ସମ୍ଭବ ହେଲାନାହିଁ । ଏସବୁ ବିଦ୍ରୋହର ପ୍ରଭାବ କାଳକ୍ରମେ ସୋଭିଏତ୍ ସଙ୍ଘ ଭିତରେ ଥିବା ଏସୀୟ ଗଣରାଜ୍ୟଗୁଡ଼ିକ ଉପରେ ପଡ଼ିଲା । ସୋଭିଏତ୍‌ରେ ମଧ୍ୟ ବିଦ୍ରୋହର ସ୍ୱର ଉତ୍ତୋଳନ ହେଲା । ଅର୍ଥାତ ସୋଭିଏତ୍ ସମୃଦ୍ଧି ପାଇଁ ଯେଉଁ ଅଞ୍ଚଳମାନଙ୍କର ଆର୍ଥିକ ଶୋଷଣ ହେଉଥିଲା ସେମାନେ ବିଦ୍ରୋହ କରିବାରୁ ସମୃଦ୍ଧିର ସଙ୍କଟ ଘଟିଲା ।

ସୋଭିଏତ ସଙ୍ଘର ଏହି ବିପର୍ଯ୍ୟୟ ପଛରେ କ'ଣ ଏକ ଷଡ଼ଯନ୍ତ୍ର ଥିଲା ? ନିଶ୍ଚୟ ଥିବ । ଏଥିରେ ସନ୍ଦେହ କରିବାର କିଛି କାରଣ ନାହିଁ । ମାତ୍ର ବିପର୍ଯ୍ୟୟର ମୁଖ୍ୟ କାରଣ ଷଡ଼ଯନ୍ତ୍ର ନୁହେଁ । ଏ ବିଷୟରେ ମୋର ସିଦ୍ଧାନ୍ତ ହେଲା ଯେ, ବୈଭବ କେବେ ମଧ୍ୟ ବିଷମତା ଓ ଶୋଷଣ ବିନା ସମ୍ଭବ ନୁହେଁ । ତାହା ରାଜା ମହାରାଜାମାନଙ୍କର ସମୃଦ୍ଧି ହେଉ, ପୁଞ୍ଜିବାଦୀମାନଙ୍କର ହେଉ ଅବା ସୋଭିଏତ୍ ସଙ୍ଘର ସମୃଦ୍ଧି ହେଉ । ପ୍ରକୃତି ଏପରି ଭାବରେ ନିର୍ମିତ ଯେ ବୈଭବ ସେଇଠି ସୃଷ୍ଟି ହେବ ଯେଉଁଠି ଅନ୍ୟ ଅଞ୍ଚଳର ସମ୍ପତ୍ତି ଠୁଳ କରିହେବ । ଗୋଟିଏ ଅଞ୍ଚଳକୁ ପଛୁଆ ଓ ଦରିଦ୍ର କରି ନ ରଖିଲେ ଆଉ ଗୋଟିଏ ଅଞ୍ଚଳକୁ ବୈଭବମୟ କରିହେବ ନାହିଁ । ପ୍ରତ୍ୟେକ ସମାଜବାଦୀ ଆଶା କରିବା ଉଚିତ୍ ଯେ, ଜନସାଧାରଣଙ୍କର ପ୍ରାଥମିକ ଆବଶ୍ୟକତା, ଯଥା, ଖାଦ୍ୟ, ବସ୍ତ୍ର, ବାସଗୃହ, ଶିକ୍ଷା ଓ ସ୍ୱାସ୍ଥ୍ୟ ପୂରଣ ପାଇଁ ମଣିଷ ସମାଜ ନିଜର ବୁଦ୍ଧି ବିବେକ ବଳରେ ପ୍ରକୃତିଠାରୁ ବାହାର କରିପାରିବ । କିନ୍ତୁ ବିଳାସବ୍ୟସନ ଓ ବୈଭବ ପାଇବାକୁ ହେଲେ ଅନ୍ୟମାନଙ୍କୁ ବଞ୍ଚିତ କରିବାକୁ ହେବ । ବିଳାସ ଯେଉଁଠି ରହିବ, ଶୋଷଣ ଓ ବିଷମତା ଅବଶ୍ୟ ରହିବ । ସମସ୍ତଙ୍କ ପାଇଁ ଏକ ସୁସ୍ଥ ଓ ସକ୍ରିୟ ଜୀବନ ପାଇଁ ଯାହା ଦରକାର ସେତିକି ଯେଉଁଠି ଥିବ, ତାହାକୁ ମୁଁ କହିବି ସମ୍ପନ୍ନତା । ତାହା ଠାରୁ ବେଶୀ ନେବାକୁ ଚେଷ୍ଟା କରିବା – ବିଳାସ ଓ ଆଡ଼ମ୍ବର ପାଇଁ – ହେଉଛି ସମୃଦ୍ଧି । ସମ୍ପନ୍ନତା ଆଉ ସମୃଦ୍ଧି କିମ୍ବା ସମ୍ପନ୍ନତା ଓ ବୈଭବ ଭିତରେ ମୁଁ ଏକ ମୌଳିକ ଫରକ୍ ଦେଖୁଛି ।

ଆଧୁନିକ ସଭ୍ୟତା ଆମକୁ ସମୃଦ୍ଧି ବିଷୟରେ ଯେଉଁ ଶିକ୍ଷା ଦେଇଛି, ସମାଜବାଦ ପ୍ରତିଷ୍ଠା ଦିଗରେ ତାହା ସବୁଠାରୁ ବଡ଼ ବାଧା । ଶିଳ୍ପ ସଭ୍ୟତା ବିଷୟରେ ଥିବା ଆମର ମତକୁ ପରିବର୍ତ୍ତନ କରିବାକୁ ହେବ । ପୁରୁଣା ସମାଜବାଦୀ ଦୃଷ୍ଟିକୋଣ ଅନୁସାରେ ଶିଳ୍ପ ସଭ୍ୟତାର ପରିଣତି ହେଉଛି ସମାଜବାଦ । କିନ୍ତୁ ଭବିଷ୍ୟତର ସମାଜବାଦର ସିଦ୍ଧାନ୍ତ ସେଇଆ ହୋଇ ନ ପାରେ । ପୁଞ୍ଜିବାଦୀ ସଭ୍ୟତା, ଯାହାକୁ ଆଧୁନିକ ତଥା ପଶ୍ଚିମା ସଭ୍ୟତା ମଧ୍ୟ କୁହାଯାଇଥାଏ, ତାହାର ମୂଳ ଉତ୍ସ ହେଉଛି ବିଷମତା । ଆଧୁନିକ ସଭ୍ୟତାକୁ ମୁଁ ନୈତିକ ବା ଆଧ୍ୟାତ୍ମିକ ଦୃଷ୍ଟିରୁ ସମାଲୋଚନା କରୁନାହିଁ, ବିଶୁଦ୍ଧ ଭୌତିକ ଦୃଷ୍ଟିରୁ ମୁଁ ଏହାର ସମାଲୋଚନା କରିବାକୁ ଚାହେଁ । ଆଧୁନିକ ସଭ୍ୟତାରେ ଯେତେ

ଲୋକ ଭୋକ ଉପାସରେ ରହୁଛନ୍ତି, କୌଣସି ପ୍ରାଚୀନ ସଭ୍ୟତାରେ ସେତେ ଲୋକ ରହୁ ନ ଥିଲେ । ଥରେ କେବେ ମହାମାରୀ ହେଲା, ଦୁର୍ଭିକ୍ଷ ହେଲା ବା ବାଘ ଆସି ଅନେକ ଲୋକଙ୍କୁ ଖାଇଗଲା । ଏପରି ଭାବରେ ହୁଏତ ବହୁ ଲୋକ ମରୁଥିଲେ । ମାତ୍ର ପ୍ରତିଦିନ ଏତେ ଲୋକ କୌଣସି ସଭ୍ୟତାରେ ଭୋକିଲା ରହୁ ନ ଥିଲେ । ଚିକିତ୍ସା ଅବିକଶିତ ଅବସ୍ଥାରେ ଥିଲା । ଏଲୋପ୍ୟାଥି ତୁଳନାରେ ଆୟୁର୍ବେଦ ଏକ ନଗଣ୍ୟ ଶାସ୍ତ୍ର, ମାତ୍ର ଏତେ ରୋଗବ୍ୟାଧି ନଥିଲା । ଏତେ ସଂଖ୍ୟାରେ ବାସଶୂନ୍ୟ ଓ କାମଧନ୍ଦା ବିହୀନ ଲୋକ କୌଣସି ସଭ୍ୟତାରେ ନଥିଲେ । ବିଶେଷଜ୍ଞମାନେ ଏହାର ଖଣ୍ଡନ କରିପାରିବେ ବୋଲି ଭାବୁନାହିଁ ।

ଆଧୁନିକ ସଭ୍ୟତାରେ ଯେତେ ସଂଖ୍ୟକ ଲୋକ ପ୍ରତିଦିନ ଅକାଳ ମୃତ୍ୟୁର ଶିକାର ହେଉଛନ୍ତି, ଅତୀତରେ କୌଣସି ସଭ୍ୟତାରେ ହେଉ ନଥିଲେ । ଆମେ ଯେତେବେଳେ କଲେଜ୍‌ରେ ପାଠ ପଢ଼ିବା ଆରମ୍ଭ କଲୁ ଆଧୁନିକ ସଭ୍ୟତାର ପ୍ରଶଂସା କରିବାକୁ ଯାଇ କହୁଥିଲୁ ଯେ ଆଗେ ବହୁ ଲୋକ ବଣ ଜଙ୍ଗଲରେ ସାପ କାମୁଡ଼ାରେ ମରୁଥିଲେ, ଆଜିକାଲି ତାହା ଘଟୁ ନାହିଁ । କିନ୍ତୁ, ଦୁର୍ଘଟଣା ଜନିତ ଅକାଳ ମୃତ୍ୟୁର ଶିକାର ତା ଠାରୁ ବହୁ ଗୁଣ ଲୋକ ହେଉଛନ୍ତି । ଅକାଳ ମୃତ୍ୟୁର ରୂପ ବଦଳିଛି, ମାତ୍ର ମୃତ୍ୟୁ ସଂଖ୍ୟା ବଢ଼ିଛି ।

ଏହି ସ୍ଥିତି ଯେ ଭୟାବହ - ଏକଥା ମୁଁ କିମ୍ବା କେବଳ ପରିବେଶ ଆନ୍ଦୋଳନକାରୀମାନେ କହୁନାହାନ୍ତି, ଆମେରିକାର ଉପରାଷ୍ଟ୍ରପତି ମଧ୍ୟ ଏହି ମର୍ମରେ କଥା କହୁଛନ୍ତି । ଆମେରିକାର ବର୍ତ୍ତମାନର ଉପରାଷ୍ଟ୍ରପତି ଆଲ୍ ଗୋର୍ 'ଅର୍ଥ୍ ଇନ୍ ଦ ବାଲାନ୍ସ' ନାମକ ଏକ ପୁସ୍ତକ ରଚନା କରିଛନ୍ତି । ଅଳ୍ପ ଦିନ ତଳେ ଉକ୍ତ ପୁସ୍ତକଟିକୁ ମୁଁ ଦେଖିବାର ସୁଯୋଗ ପାଇଲି । ଏହାକୁ ପଢ଼ିବା ପରେ ମୁଁ ଅନୁଭବ କଲି ଯେ ଏହା ଏକ ଗୁରୁତ୍ୱପୂର୍ଣ୍ଣ ବହି । ଏଥିରେ ନୂଆ କଥା କିଛି ନାହିଁ । ହେଲେ, ଏ ବହିର ବିଶେଷତ୍ୱ ହେଲା ଯେ ପୃଥିବୀର ଭବିଷ୍ୟତ ସଙ୍କ୍ରାନ୍ତୀୟ ଯେଉଁସବୁ କଟୁ ସତ୍ୟକୁ ଆମେ ଦେଶର ସାଧାରଣ ଶିକ୍ଷିତ ଲୋକେ, ଗାନ୍ଧିବାଦୀ, ଆଦର୍ଶବାଦୀ ବା ପରିବେଶ ଆନ୍ଦୋଳନକାରୀମାନଙ୍କ ଡରାଇବା କଥା ବୋଲି ଉଡ଼ାଇ ଦେଉଥିଲେ, ସେ ସବୁ କଥାକୁ ସେ ସତ୍ୟ ବୋଲି ଉକ୍ତ ବହିରେ ଲେଖିଛନ୍ତି । ଉପ-ରାଷ୍ଟ୍ରପତି ନିର୍ବାଚନରେ ଅବତୀର୍ଣ୍ଣ ହେବାର କିଛି ଦିନ ପୂର୍ବରୁ ସେ ବହିଟିକୁ ଲେଖିଥିଲେ । ଉକ୍ତ ବହିରେ ସେ ସ୍ୱୀକାର କରିଛନ୍ତି ଯେ ପୃଥିବୀର ଧ୍ୱଂସ ଆସନ୍ନ ବୋଲି ଧରି ନିଆ ଯାଇ ପାରେ । ପ୍ରତିଦିନ ୨୬୦ ଟନ୍ ଭୂପୃଷ୍ଠ ମାଟି ବୋହିଯାଇ ମିସିସିପି ନଦୀରେ ମିଶିଯାଉଛି; ଅର୍ଥାତ ମାଟିର ଉର୍ବରା ଶକ୍ତି ନଷ୍ଟ ହୋଇଯାଉଛି । ପୃଥିବୀର ୧୮% ସ୍ଥଳଭୂମି ଓ ଆଫ୍ରିକାର ୨୫% ସ୍ଥଳଭୂମି ମରୁଭୂମି ହେବାକୁ ଯାଉଛି । ଏସବୁ ତଥ୍ୟ ଆଲ୍ ଗୋର୍ ବହୁ ବୈଜ୍ଞାନିକ ତଥା ବିଶେଷଜ୍ଞମାନଙ୍କ ସହ ବିସ୍ତୃତ ଆଲୋଚନା କରି ଲିପିବଦ୍ଧ କରିଛନ୍ତି ।

ଏକବିଂଶ ଶତାବ୍ଦୀରେ ମାନବ ସଭ୍ୟତାର ଭବିଷ୍ୟତ ସଙ୍କ୍ରାନ୍ତରେ ମୁଁ ଆଗରୁ ଯେଉଁସବୁ କଥା କହୁଥିଲି ଏ ବହି ପଢ଼ିବାପରେ ଆହୁରି ସାହସ ସହିତ ସେ ସବୁ

କଥା କହୁଛି । ଏକବିଂଶ ଶତାବ୍ଦୀ ମଣିଷ ସମାଜ ପାଇଁ ଏକ ଭୟଙ୍କର ଶତାବ୍ଦୀ ବୋଲି ପ୍ରମାଣିତ ହେବ । ଆଲ୍ ଗୋର୍‌ଙ୍କ ପୁସ୍ତକରୁ ଦୁଇଟି ପାରାଗ୍ରାଫ୍ ଉଦ୍ଧାର କରି ମୁଁ ଶୁଣାଇବାକୁ ଚାହେଁ:

'ଅନ୍‌ଲେସ୍ ଉଇ କମ୍ ଟୁ ଏ ବେଟର୍ ଅଣ୍ଡରଷ୍ଟାଣ୍ଡି ଅଫ୍ ବୋଥ୍ ଦି ପୋଟେନ୍‌ସିଆଲ୍ ଆଣ୍ଡ୍ ଦି ଡେଞ୍ଜର୍ ଅଫ୍ ଟେକ୍ନୋଲୋଜି, ଦି ଆଡ଼ିସନ୍ ଅଫ୍ ମୋର୍ ଟେକ୍ନୋଲୋଜିକାଲ୍ ପାଓ୍ୱାର୍ ସିମ୍ପଲି ଏନ୍‌ସିଓରିଂ ଫର୍‌ଦର୍ ଡିଗ୍ରେଡେସନ୍ ଅଫ୍ ଦି ଏନ୍‌ଭାର୍ଣ୍ଣମେଣ୍ଟ୍ ଆଣ୍ଡ୍ ନୋ ମ୍ୟାଟର୍ ହ୍ୱାଟ୍ ନିୟୁ ଟେକ୍ନୋଲୋଜି ଉଇ ଡିସ୍‌କଭର୍, ନୋ ମ୍ୟାଟର୍ ହାଓ କ୍ଲେଭର୍‌ଲି ଆଣ୍ଡ୍ ଏଫିସିଏଣ୍ଟ୍‌ଲି ଉଇ ମ୍ୟାନେଜ୍ ଟୁ ଗେଟ୍ ଦେମ୍ ଇନ୍‌ଟୁ ଦି ହ୍ୟାଣ୍ଡ୍‌ସ୍ ଅଫ୍ ଦି ପିପୁଲ୍ ଥ୍ରୁଆଉଟ୍ ଦି ଓ୍ୱାର୍ଲଡ୍, ଦି ଅଣ୍ଡର୍‌ଲାଇଙ୍ଗ୍ କ୍ରାଇସେସ୍ ଉଇଲ୍ ଓ୍ୱର୍‌ସନ୍ ଅନ୍‌ଲେସ୍ ଆଟ୍ ଦି ସେମ୍ ଟାଇମ୍ ଉଇ ରିଡ଼ିଫାଇନ୍ ଆଓ୍ୱାର୍ ରିଲେସନ୍‌ସିପ୍ ଉଇଥ୍ ଦି ଏନ୍‌ଭାରମେଣ୍ଟ୍' (ପୃଷ୍ଠା-୩୧୮) ।

ଅବସ୍ଥା ଆହୁରି ଖରାପ ହେବ । ଏହାର ଯଥେଷ୍ଟ ସମ୍ଭାବନା ରହିଛି । ପୃଥିବୀର ଜନସଂଖ୍ୟାରେ ପ୍ରତି ଦଶବର୍ଷରେ ଶହେ କୋଟି ଲୋକ ଯୋଡ଼ି ହେଉଛନ୍ତି । ଏହା ଯଦି ଚାଲୁ ରହେ, ଆଲ୍ ଗୋର୍‌ଙ୍କର ଭାଷାରେ:

'ଇଟ୍ ଇଜ୍ କ୍ରିଏଟିଙ୍ଗ୍ ଏ ବୋଲ୍ଡ ରେଞ୍ଜ୍ ଅଫ୍ ପ୍ରବ୍‌ଲେମ୍‌ସ୍ ଆଣ୍ଡ୍ ଅଲ୍ ବାଏ ଇଟ୍‌ସେଲ୍‌ଫ୍ । ଦି ଏକ୍ସ୍‌ପ୍ଲୋଡିଙ୍ଗ୍ ପପୁଲେସନ୍ ଇଜ୍ ଲାଇବ୍ଲ୍ ଟୁ ପୁଶ୍ ଦ ସିଭିଲାଇଜେସନ୍ ଇନ୍‌ଟୁ ଏ ସୁପର୍ କ୍ରିଟିକାଲ୍ ଷ୍ଟେଟ୍ ଲିଭିଙ୍ଗ୍ ଇଟ୍ ଭଲ୍‌ନରେବ୍ଲ୍ ଟୁ ଭେରି ଲାଆଜ୍ ଆଭାଲାଞ୍ଚେସ୍ ଅଫ୍ ଅନ୍‌ପ୍ରେଡିକ୍ଟ୍‌ବ୍ଲ୍ ଚେଞ୍ଜ୍ । ଟୁ କୋପ୍ ଉଇଥ୍ ଦିସ୍ ଡେଞ୍ଜରସ୍ ଟର୍ଣ୍ଣ ଅଫ୍ ଇଭେଣ୍ଟ୍‌ସ୍ ଉଇ ମଷ୍ଟ୍ ସମ୍‌ହାଓ ଫାଇଣ୍ଡ୍ ଏ ଓ୍ୱେ ଟୁ ଆକ୍ସିଲେରେଟ୍ ଆଓ୍ୱାର୍ ମୁଭ୍‌ମେଣ୍ଟ୍ ଟୁ ଏ ନିୟୁ ଷ୍ଟେଟ୍ ଅଫ୍ ଡେଭଲପ୍‌ମେଣ୍ଟ୍' (ପୃଷ୍ଠା-୩୬୬) ।

ଆଲ୍ ଗୋର୍‌ଙ୍କ ମନ୍ତବ୍ୟରୁ ଆମେ ସ୍ଥୁଳ ଭାବରେ ଏହି ଉପସଂହାରରେ ଉପନୀତ ହୋଇପାରିବା ଯେ ଏକବିଂଶ ଶତାବ୍ଦୀରେ ଭାରତ ଭଳିଆ ଅନେକ ଦେଶରେ କୋଟି କୋଟି ଲୋକ ଭୋକ ଉପାସରେ ମରିଯିବେ । ୨୦୩୦ ମସିହା ସୁଦ୍ଧା ଏହି ଅବସ୍ଥା ଆସି ସାରିଥିବ । ଖାଦ୍ୟଶସ୍ୟ ଉତ୍ପାଦନ ବୃଦ୍ଧି ହୋଇପାରିବ – ଏକଥା ଆମେରିକା ଓ ୟୁରୋପ୍‌ର ବୈଜ୍ଞାନିକମାନେ ଦୃଢ଼ତାର ସହ କହିପାରୁ ନାହାନ୍ତି । ଆଧୁନିକ ପ୍ରଯୁକ୍ତି ବିଦ୍ୟା ବିଷୟରେ ଯେଉଁ ସବୁ ବାହାସ୍ଫୋଟ ହେଉଥିଲା, ସେସବୁ ଆଉ ନାହିଁ । ଆଲ୍ ଗୋର୍ ପୁସ୍ତକର ଅନ୍ୟ ଏକ ସ୍ଥାନରେ ଲେଖିଛନ୍ତି ଯେ – 'ବଟ୍ ଦି ସିଙ୍ଗିଲ୍‌ମୋଷ୍ଟ ସିରିଅସ୍ ଷ୍ଟ୍ରାଟେଜିକ୍ କ୍ରିଏସନ୍ ଟୁ ଦି ଗ୍ଲୋବାଲ୍ ଫୁଡ୍ ସିଷ୍ଟମ୍ ଇଜ୍ ଦି ଫେଟ୍ ଅଫ୍ ଦି ଜେନେଟିକ୍ ଇରୋଜନ୍ । ଦି ଲସ୍ ଅଫ୍ ଜର୍ମ୍ ପ୍ଲାଣ୍ଟେସନ୍ ଏଣ୍ଡ ଦି ଇନ୍‌କ୍ରିଜିଂ ଭଲ୍‌ନରେବିଲିଟି ଅଫ୍ ଦି ଫୁଡ୍ କ୍ରପ୍‌ସ୍ ଟୁ ଦେୟାର୍ ନାଚୁରାଲ୍ ଏନିମିଜ୍ ।' 'ଖାଦ୍ୟ ଭିତରେ ଯେଉଁ ଜୀବକୋଷ ରହେ, ତାହା ସଂକ୍ରମିତ ଓ ପ୍ରଦୂଷିତ ହୋଇ ଦୁର୍ବଳ ହୋଇଯାଉଛି ।' ବିଜ୍ଞାନକୁ ନେଇ ଯେଉଁ ବୈଜ୍ଞାନିକମାନେ ବହୁତ ଗର୍ବ ଅନୁଭବ କରନ୍ତି ସେମାନେ ଏକଥାକୁ ବୁଝିବା ଦରକାର – 'ସାଇଣ୍ଟିଷ୍ଟ୍‌ସ୍ ହାବ୍ ନେଭର୍ କ୍ରିଏଟେଡ୍ ଏ ନିଉ ଜିନ୍ । ଦେ ସିମ୍ପ୍ଲି କମ୍ବାଇନ୍ ଦି ଜିନ୍‌ସ୍ ଦେ ଫାଇଣ୍ଡ୍ ଇନ୍ ନେଚର୍ ଏଣ୍ଡ୍ ଇଟ୍

ଇଜ୍ ଦି ସପ୍ଲାଇ ଅଫ୍ ଜିନ୍ସ୍ ଦାଟ୍ ଇଜ୍ ନାଓ ଏଣ୍ଡେଜର୍ଡ୍ ।' 'ବୈଜ୍ଞାନିକ କୌଣସି ନୂତନ ଜୀବକୋଷ ସୃଷ୍ଟି କରିପାରିବ ନାହିଁ । ଯେଉଁ ଜୀବକୋଷ ଗୁଡ଼ିକ ଅଛି ତାକୁ ହିଁ ଯୋଡ଼ା ଯୋଡ଼ି କରି ଓ ବିଭିନ୍ନ ଭାବରେ ସଞ୍ଚାଳିତ କରିବା କାମ ସେ କରିପାରୁଛି । ତେଣୁ ଯେଉଁ ଜୀବକୋଷଗୁଡ଼ିକ ରହିଛି ସେଗୁଡ଼ିକ ଧ୍ୱଂସ ପାଇଗଲେ ବୈଜ୍ଞାନିକମାନେ ଆଉ କ'ଣ କରିପାରିବେ ?'

ତେଣୁ ଆଲ୍ ଗୋର୍‌ଙ୍କର ମନ୍ତବ୍ୟର ସାରାଂଶ ହେଉଛି ଯେ ବର୍ଦ୍ଧିତ ଜନସଂଖ୍ୟା ସକାଶେ ଖାଦ୍ୟଶସ୍ୟ ବୃଦ୍ଧିର ଉପାୟ ଆଧୁନିକ ପ୍ରଯୁକ୍ତି ବିଦ୍ୟା ପାଖରେ ନାହିଁ । ଏ ପ୍ରଯୁକ୍ତି ବିଦ୍ୟା ସାହାଯ୍ୟରେ ଆମେ ଆଉ ପୃଥିବୀକୁ ସୁରକ୍ଷିତ ରଖିପାରିବା ନାହିଁ । ଏଭଳି ଅବସ୍ଥାରେ ସମାଜବାଦକୁ ସମତାର ପରିକଳ୍ପନା କରିବା ସଙ୍ଗେ ସଙ୍ଗେ ମଣିଷ ସମାଜ କିପରି ବଞ୍ଚିପାରିବ, ସେ କଥା ମଧ୍ୟ ଚିନ୍ତା କରିବାକୁ ହେବ । ଭବିଷ୍ୟତର ସମାଜବାଦର ଏହା ପ୍ରଥମ ଦାୟିତ୍ୱ ।

ମଣିଷ ସମାଜକୁ କିପରି ବଞ୍ଚାଯାଇ ପାରିବ ? ଆଲ୍ ଗୋର୍‌ଙ୍କ ପୁସ୍ତକରେ ମଧ୍ୟ କେତେକ ପ୍ରସ୍ତାବ ରହିଛି । ଉକ୍ତ ଅଂଶକୁ ପଢ଼ି ମୋର ମନ୍ତବ୍ୟ ଏହି ଯେ, ଉକ୍ତ ପୁସ୍ତକର ପ୍ରଥମ ଭାଗ ଗୁରୁତ୍ୱପୂର୍ଣ୍ଣ ହେଲେ ବି ଦ୍ୱିତୀୟ ଭାଗ (ପ୍ରସ୍ତାବ ଅଂଶ) ଅଭିସନ୍ଧିମୂଳକ । ତାକୁ ପଢ଼ିଲାବେଳେ ମୋର ରାଜୀବ ଗାନ୍ଧୀ ପ୍ରଧାନମନ୍ତ୍ରୀ ଥିବା ସମୟର ଏକ ପ୍ରସଙ୍ଗ ମନେପଡ଼ିଲା । ସେ ଶିକ୍ଷା ନୀତିର ପରିବର୍ତ୍ତନ କରିବାକୁ ଚାହିଁଲେ । ପ୍ରଥମେ ସରକାରଙ୍କ ତରଫରୁ ଏକ ପୁସ୍ତକ ଛପାଯାଇ ବଣ୍ଟାଗଲା । ତାହା ଉପରେ ବହୁତ ଚର୍ଚ୍ଚା ହେଲା । ଉକ୍ତ ପୁସ୍ତକରେ ଭାରତର ଶିକ୍ଷା ବ୍ୟବସ୍ଥାର ଦୂରବସ୍ଥା ଉପରେ ଟିକିନିଖି ବିବରଣୀ ରହିଥିଲା । ପରିସଂଖ୍ୟାନ ସହ ଶିକ୍ଷକର ଅଭାବ, କଳାପଟାର ଅଭାବ, ସ୍କୁଲ୍ ଘର ଛାତ ନ ଥିବା ଆଦି କଥା ସେଥିରେ ଲିପିବଦ୍ଧ ଥିଲା । କିନ୍ତୁ ସେସବୁ ବର୍ଣ୍ଣନା ପରେ ଯେଉଁ ଶିକ୍ଷାନୀତି ବାହାରିଲା ସେଥିରେ ଶିକ୍ଷକ ବା କଳାପଟାର ଅଭାବ କିମ୍ବା ସ୍କୁଲ୍ ଘର ଛାତର ଦୂରବସ୍ଥା ସୁଧାରିବା କଥା ନ ଥିଲା । 'ନବୋଦୟ ବିଦ୍ୟାଳୟ' ନାମରେ ଗ୍ରାମାଞ୍ଚଳର ପିଲାମାନଙ୍କ ପାଇଁ ଗୋଟିଏ ନୂଆ ରକମର ସ୍କୁଲ ପ୍ରତିଷ୍ଠାର ପ୍ରସ୍ତାବ ଆସିଲା ।

ଆଲ୍ ଗୋର୍ ମଧ୍ୟ ପୃଥିବୀ କିଭଳି ଭାବେ ଧ୍ୱଂସ ହେବାକୁ ଯାଉଛି ଓ ମାନବ ସମାଜର ଅର୍ଦ୍ଧେକ ଅଞ୍ଚଳ ଲୋପ ପାଇବାକୁ ଯାଉଛି ଏସବୁ କଥା କହିସାରିଲା ପରେ ଯେଉଁସବୁ ପରାମର୍ଶ ଦେଇଛନ୍ତି ବା ନୀତି ଘୋଷଣା କରିଛନ୍ତି, ଠିକ୍ ସେହି ରକମର । ସେ କହିଛନ୍ତି ଯେ ପରିବେଶର କ୍ଷତି ନ କଲା ଭଳି ପ୍ରଯୁକ୍ତି ବିଦ୍ୟାର ଉଦ୍ଭାବନ ତୀବ୍ରତର ହେବା ଦରକାର । ତାଙ୍କ କହିବା ଅନୁସାରେ ସେ ରକମର ପ୍ରଯୁକ୍ତି ବିଦ୍ୟାର ଉଦ୍ଭାବନ କ୍ଷେତ୍ରରେ ଜାପାନ୍ କିଛିଟା ଅଗ୍ରଗତି କରିଛି ।

ଆମେରିକାର ବୈଜ୍ଞାନିକମାନେ ଯଦିଓ ସେ ସଙ୍କ୍ରାନ୍ତୀୟ ନିୟମଗୁଡ଼ିକ ଉପରେ ଆଗରୁ ଚିନ୍ତା କରିଥିଲେ, ଆମେରିକାର କମ୍ପାନୀମାନେ ସେସବୁ ତିଆରି କରିନାହାନ୍ତି । ପୃଥିବୀର ପ୍ରାକୃତିକ ସଂସାଧନଗୁଡ଼ିକ ଦ୍ରୁତଗତିରେ ସମାପ୍ତ ହୋଇଚାଲିଛି । ତାହାର ସବୁଠାରୁ ବଡ଼ ଉଦାହରଣ ହେଲା ପେଟ୍ରୋଲିୟମ୍ । ଏ ସଂକ୍ରାନ୍ତରେ ଆଉ କାହାର

ସନ୍ଦେହ ନାହିଁ ପେଟ୍ରୋଲ୍ ସରିଗଲା ପରେ ମଟର ଗାଡି ଚାଲିବ କେମିତି ? ଆମେରିକା ଓ ଜାପାନ୍‌ର ବୈଜ୍ଞାନିକମାନେ ବିଶେଷ ଭାବରେ ଚିନ୍ତିତ ହେବା ସ୍ୱାଭାବିକ । ଜାପାନ୍ ମଟରଗାଡ଼ି ବ୍ୟବସାୟରୁ ବେଶ୍ ଲାଭ କରେ । ସେମାନେ ନୂଆ ରକମର ବ୍ୟାଟେରି ଉଦ୍ଭାବନ କଲେଣି । ସୌରଶକ୍ତି ତଥା ଅନ୍ୟାନ୍ୟ ସ୍ରୋତରୁ । ସେ ବ୍ୟାଟେରୀରେ ମଟରଗାଡ଼ି ଚାଲିବ । ପେଟ୍ରୋଲ ସରିଗଲା ପରେ ବି ମଟରଗାଡ଼ି ଚାଲିବ । ଏ ରକମର ଯନ୍ତ୍ରପାତି ଦ୍ୱାରା ପ୍ରଦୂଷଣ ବି କମ୍ ହେବ ।

ଆଲ୍ ଗୋର୍‌ଙ୍କ ପ୍ରସ୍ତାବ ଅନୁସାରେ ନୂଆ ନୂଆ ଯନ୍ତ୍ରପାତି, ଯଦ୍ୱାରା ପ୍ରଦୂଷଣ କମ୍ ହେବ ଓ ଶିଳ୍ପ ବ୍ୟବସ୍ଥା ଯଥାବିଧି ରହିବ, ସେପରି ଉଦ୍ଭାବନ ଉପରେ ଜୋର୍ ଦେବାକୁ ପଡ଼ିବ । ଏହି ରକମର ନୂତନ ପ୍ରଯୁକ୍ତି ବିଦ୍ୟା ସଙ୍କ୍ରାନ୍ତରେ ସେ ପୁସ୍ତକଟିରେ ଚାଳିଶି/ପଚାଶପୃଷ୍ଠା ଲେଖିଛନ୍ତି । ତୃତୀୟ ବିଶ୍ୱର ଦେଶମାନେ ମଧ୍ୟ ସେସବୁକୁ ଯେମିତି ଗ୍ରହଣ କରିବେ ସେ ଦିଗରେ ବୁଝାଇବାକୁ ହେବ ବୋଲି ସେ ଲେଖିଛନ୍ତି । ଏହି କଥାରୁ ତାଙ୍କର ଅସଲ ଅଭିସନ୍ଧି ସ୍ପଷ୍ଟ ହୋଇପଡ଼ିଛି । ସେ ଧରି ନେଇଛନ୍ତି ଯେ, ଯେଉଁ ସବୁ ଧ୍ୱଂସର ପ୍ରକ୍ରିୟା ଚାଲିଛି, ତାହା ଚାଲିବ ଓ ପୃଥିବୀର ଅନ୍ତତଃ ଦୁଇ-ତୃତୀୟାଂଶ ଦେଶର କୋଟି କୋଟି ଲୋକେ ମରିବେ । ଧନୀ ଦେଶମାନେ ଯେଉଁସବୁ ପ୍ରଦୂଷଣ-ବିରୋଧୀ ଯନ୍ତ୍ରପାତି ନିର୍ମାଣ କରିବେ ସେସବୁକୁ କିଣିବା ପାଇଁ ତୃତୀୟ ବିଶ୍ୱର ଗରିବ ଦେଶମାନଙ୍କୁ ପ୍ରବର୍ତ୍ତା ଯିବ । ଯେ କେହି ଚିନ୍ତାଶୀଳ ବ୍ୟକ୍ତି ଜାଣିପାରିବେ ଯେ ସେସବୁକୁ ଦରିଦ୍ର ଦେଶର ଲୋକମାନେ ବ୍ୟବହାର କରିପାରିବେ ନାହିଁ । ନୂଆ ପ୍ରଯୁକ୍ତି ବିଦ୍ୟା ବହୁତ ବ୍ୟୟସାପେକ୍ଷ । ତେଣୁ ସେସବୁକୁ ଆମେରିକା ଓ ୟୁରୋପ୍ ଆଦିର ଧନୀ ଲୋକମାନେ ଉପଭୋଗ କରିପାରିବେ । ବିଧ୍ୱସ୍ତ ହୋଇସାରିଥିବା ବସୁନ୍ଧରା ଉପରେ ସେମାନଙ୍କର ରାଜତ୍ୱ ରହିଥିବ ।

ଏହି ପରିପ୍ରେକ୍ଷୀରେ ସମାଜବାଦର ଭୂମିକା କ'ଣ ହେବା ଉଚିତ ? ମଣିଷ ସଭ୍ୟତା ଯେଉଁ ଅବଶ୍ୟମ୍ଭାବୀ ଧ୍ୱଂସ ଆଡ଼କୁ ଗତି କରୁଛି ସେଥିପାଇଁ ଦାୟୀ ହେଉଛି ଆଧୁନିକ ଶିଳ୍ପ ସଭ୍ୟତା । ପୃଥିବୀକୁ ଏ ଧ୍ୱଂସ ମୁଖରୁ ରକ୍ଷା କରିବା ପାଇଁ ଆଧୁନିକ ପ୍ରଯୁକ୍ତିବିଦ୍ୟା ପାଖରେ କୌଣସି ଉପାୟ ନାହିଁ । ସମାଜବାଦକୁ ଏହାର ଚିନ୍ତା କରିବାକୁ ହେବ ।

ଧନୀ ଦେଶମାନଙ୍କର ରାଜନେତା ଓ ନୀତିପ୍ରଣେତା ମାନେ ଜନସଂଖ୍ୟା ବୃଦ୍ଧି କଥାଟାକୁ ଉଠାଇ ସବୁ ସଙ୍କଟ ପାଇଁ ତୃତୀୟ ବିଶ୍ୱର ଲୋକମାନଙ୍କୁ ଦାୟୀ କରିଥାନ୍ତି । ଏ ଦୋଷଟାକୁ ସମ୍ପୂର୍ଣ୍ଣ ଏଡ଼ାଇ ଦିଆଯାଇ ନ ପାରେ । ବାସ୍ତବରେ ଏହା ଏକ ଅର୍ଦ୍ଧ ସତ୍ୟ । ଏହାକୁ ଯେତିକି ପ୍ରାଥମିକତା ଦିଆଯାଉଛି ତାହା ଠିକ୍ ନୁହେଁ । ଏ ବିଷୟରେ ଜୁଲିୟସ୍ ନେୟେରେ ଯେଉଁ କଥା କହିଛନ୍ତି ତାହା ସ୍ମରଣଯୋଗ୍ୟ । ସେ କହିଛନ୍ତି, 'ସବୁଠାରୁ ବଡ଼ ଗର୍ଭ ନିରୋଧକ ହେଉଛି ସାମାଜିକ ସୁରକ୍ଷା ।' ସାମାଜିକ ସୁରକ୍ଷା ପ୍ରଦାନ ଦ୍ୱାରା ହିଁ ଜନ୍ମ ନିୟନ୍ତ୍ରଣ ସଫଳ ହୋଇପାରିବ । ଦାରିଦ୍ର୍ୟ ହେଉଛି ଏ ଦିଗରେ ସବୁଠାରୁ ବଡ଼ ଅନ୍ତରାୟ ।

ପୃଥିବୀରେ ପରିବେଶ ସଙ୍କଟର ସମାଧାନର ପନ୍ଥା ଚିନ୍ତା କଲାବେଳେ ବି ଆମେରିକା ତଥା ଅନ୍ୟାନ୍ୟ ଦେଶମାନେ ତୃତୀୟ ବିଶ୍ୱର ଦରିଦ୍ର ଦେଶମାନଙ୍କୁ ଗୋଟିଏ

ବଡ଼ ବଜାର ହିସାବରେ ଦେଖୁଛନ୍ତି । ଆମେରିକୀୟ ସାମ୍ରାଜ୍ୟବାଦ ନୂଆ ନୂଆ ରୂପରେ ଭାରତ ତଥା ଅନ୍ୟାନ୍ୟ ଗରିବ ଦେଶମାନଙ୍କ ଉପରେ ଆକ୍ରମଣ ଚଳାଇଛି । ଏହି ନୂତନ ପରିସ୍ଥିତିକୁ ଆଖି ଆଗରେ ରଖି ସାମ୍ରାଜ୍ୟବାଦ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ସମାଜବାଦକୁ ପୁନଃଜୀବନ୍ତ କରିବାର ପ୍ରଥମ ପଦକ୍ଷେପ ହେବ । ତଦ୍ୱାରା ଉଭୟ ପୁଞ୍ଜିବାଦ ଓ ସାମ୍ରାଜ୍ୟବାଦର ବିରୋଧ ହେବ । ଲେନିନ୍ ସମ୍ରାଜ୍ୟବାଦକୁ ପୁଞ୍ଜିବାଦର ଚରମ ପରିଣତି ବୋଲି କହିଥିଲେ । ମୋ ମତରେ ଏହା ଏକ ଭୁଲ୍ ପ୍ରତିପାଦନ ।

ସାମ୍ରାଜ୍ୟବାଦ ହେଉଛି ପୁଞ୍ଜିବାଦର ଆଜନ୍ମ ସଖା । ସାମ୍ରାଜ୍ୟବାଦର ବାହୁବଳରେ ହିଁ ପୁଞ୍ଜିବାଦର ସମୃଦ୍ଧି ସମ୍ଭବ ହୋଇପାରିଛି । ସାମ୍ରାଜ୍ୟବାଦ ବିନା ପୁଞ୍ଜିବାଦ ଚାଲିପାରିବ ନାହିଁ । ଯେଉଁଦିନ ଏସିଆ, ଆଫ୍ରିକା ଓ ଲାଟିନ୍ ଆମେରିକାର ଗରିବ ଦେଶମାନେ, ସମଗ୍ର ଭାବରେ ହେଉ ବା ଆଂଶିକ ଭାବରେ ହେଉ, ସାମ୍ରାଜ୍ୟବାଦୀ ବଜାର ସାଙ୍ଗରେ ସମ୍ପର୍କ ଛିନ୍ନ କରିବାର ନିଷ୍ପତ୍ତି ନେଇଯିବେ, ସେହିଦିନ ଆମେରିକା ଓ ୟୁରୋପ୍‌ର ପୁଞ୍ଜିବାଦ ଭୁଷୁଡ଼ି ପଡ଼ିବ । ଭାରତ, ଚୀନ୍ ଓ ବ୍ରାଜିଲ୍ – ଏହି ତିନୋଟି ଦେଶ ଯଦି ଆମେରିକା, ୟୁରୋପ୍ ଓ ଜାପାନ୍ ସାଙ୍ଗରେ ବାଣିଜ୍ୟ ସମ୍ପର୍କ ଛିନ୍ନ କରିବାର ସଙ୍କଳ୍ପ ନିଅନ୍ତି, ଏହି ଧନୀ ଦେଶଗୁଡ଼ିକର ପୁଞ୍ଜିବାଦ ଟଳମଳ ହେବ । ଏହାର ମୁକାବିଲା କରିବା ପାଇଁ ଆମେରିକା ସଙ୍ଗେ ସଙ୍ଗେ ଯୁଦ୍ଧ ଘୋଷଣା କରିପାରେ । ମଧ୍ୟ ଏସିଆରୁ ପେଟ୍ରୋଲ୍ ଯୋଗାଣ କମ୍ ହେବାର ଆଶଙ୍କା ଦେଖି ଆମେରିକା ଥରେ ଯୁଦ୍ଧ କରିସାରିଛି ।

୨୦୧୦ ମସିହା ବେଳକୁ ବିଶ୍ୱର ଜନସଂଖ୍ୟା ଯେତିକି ହୋଇଥିବ ସେହି ପରିମାଣରେ ଖାଦ୍ୟଶସ୍ୟ ଉତ୍ପାଦନର ବୃଦ୍ଧି ଘଟିବ କି ନାହିଁ? ଏହାର ଉତ୍ତର କେହି ଦେଇପାରୁ ନାହାନ୍ତି । ଏ ସଙ୍କ୍ରାନ୍ତରେ ମୋର ଦୃଢ଼ ମତ ହେଲା ଯେ ବିଶ୍ୱ ମାନବ ସମାଜକୁ ଖାଦ୍ୟ ଯୋଗାଇବାର ଦାୟିତ୍ୱ ରାଷ୍ଟ୍ରର ମୁଖ୍ୟମାନେ ନିଅନ୍ତୁ ନାହିଁ । ଏହି ଦାୟିତ୍ୱର ଯୋଜନା ଓ୍ୱାଶିଂଟନ୍, ଦିଲ୍ଲୀ ଅବା ଭୁବନେଶ୍ୱରରେ ନକରି ଗ୍ରାମ ପଞ୍ଚାୟତମାନଙ୍କୁ ଦେଇଦିଅନ୍ତୁ । ଏହି କାମ ବିଶ୍ୱ ବାଣିଜ୍ୟ ସଙ୍ଗଠନ, ଆମେରିକାର ସରକାର କିମ୍ବା ଦିଲ୍ଲୀର ସରକାର ଦ୍ୱାରା କେନ୍ଦ୍ରୀୟ ସ୍ତରରେ ହୋଇପାରିବ ନାହିଁ । ଗ୍ରାମ କିମ୍ବା ପଞ୍ଚାୟତ ସ୍ତରରେ ଏକ ବିକେନ୍ଦ୍ରିତ ସ୍ୱାବଲମ୍ବୀ ଅର୍ଥ ବ୍ୟବସ୍ଥାର ଜରିଆରେ ହିଁ ଏହା ସମ୍ଭବପର ହେବ । ସେ ସ୍ତରରେ ସଚେତନ ଲୋକମାନେ ସେମାନଙ୍କର ଜନସଂଖ୍ୟାକୁ ଆଖି ଆଗରେ ରଖି ସେମାନଙ୍କର ଉତ୍ପାଦନର ଯୋଜନା କରିବେ । ସେହି ଅନୁସାରେ ସେମାନେ ନିଜର ଜନସଂଖ୍ୟାକୁ ସୀମିତ ରଖିବାର ଦାୟିତ୍ୱ ନେବେ । କେବଳ ଆକସ୍ମିକ ଆବଶ୍ୟକତା ପାଇଁ ସେମାନଙ୍କୁ ବାହାରୁ ସାହାଯ୍ୟ ମିଳିବାର ବ୍ୟବସ୍ଥା ରହିବ ।

ଏକ ବିକେନ୍ଦ୍ରିତ ସ୍ୱାବଲମ୍ବୀ ଅର୍ଥ ବ୍ୟବସ୍ଥାର ପ୍ରବର୍ତ୍ତନ ପାଇଁ ଏକ ନୂତନ ପ୍ରଯୁକ୍ତି ବିଦ୍ୟାର ଆବଶ୍ୟକତା ହେବ । ଆମେରିକାର ଉପରାଷ୍ଟ୍ରପତି ଯେଉଁ ନୂଆ ପ୍ରଯୁକ୍ତି ବିଦ୍ୟାର ଉଲ୍ଲେଖ କରିଛନ୍ତି ତାହା ଆମ ପାଇଁ ପ୍ରାସଙ୍ଗିକ ନୁହେଁ । ଆମ ପାଇଁ ନୂତନ ପ୍ରଯୁକ୍ତି

ବିଦ୍ୟାର ଅର୍ଥ ଭିନ୍ନ ହେବ । ଆଧୁନିକ ବିଜ୍ଞାନକୁ ଆମେ ଏଭଳି କାର୍ଯ୍ୟରେ ଲଗାଇବା ଯେ, ଜିଲ୍ଲା, ପ୍ରଖଣ୍ଡ ଓ ଗ୍ରାମ ସ୍ତରରେ ଲୁଗା, ଖାଇବା ତେଲ, ଯୋତା, ସାବୁନ୍, ଔଷଧ ଭଳି ନିତ୍ୟ ବ୍ୟବହାର୍ଯ୍ୟ ଜିନିଷର ଉତ୍ପାଦନ ହୋଇ ପାରିବ । ସମାଜବାଦୀ ଦୃଷ୍ଟିରେ ନୂତନ ପ୍ରଯୁକ୍ତି ବିଦ୍ୟାର ପରିଭାଷା ହେଉଛି ଏଇଆ ।

ପୁଞ୍ଜିବାଦୀ ଅର୍ଥ ବ୍ୟବସ୍ଥାର ଏକ ସହାୟକ ତତ୍ତ୍ୱ ହେଉଛି ଉପଭୋକ୍ତାବାଦ ବା ଭୋଗବାଦ । ଏହା ବିଳାସର ଏକ ସଂସ୍କରଣ । କିନ୍ତୁ ଯେଉଁ ଲୋକମାନେ ଉପଭୋକ୍ତାବାଦୀ ଜିନିଷ କିଣୁଛନ୍ତି ସେମାନଙ୍କୁ ବିଳାସୀ କୁହାଯାଇ ପାରିବ ନାହିଁ । ସେମାନେ ଅଧିକାଂଶ ମଧ୍ୟବିତ୍ତ ଶ୍ରେଣୀର ଲୋକ । ବଜାରକୁ ଏପରି କରିଦିଆ ଯାଉଅଛି ଯେ, ଏହିସବୁ ବସ୍ତୁକୁ କିଣିବା ପାଇଁ ଏହି ଶ୍ରେଣୀର ଲୋକେ ବାଧ୍ୟ ହେଉଛନ୍ତି । ଏକ ସମତାମୂଳକ ସମାଜ ପ୍ରତିଷ୍ଠା କରିବାକୁ ହେଲେ ଏହି ଉପଭୋକ୍ତାବାଦ ବିରୁଦ୍ଧରେ ଏକ ସାଂସ୍କୃତିକ ଆନ୍ଦୋଳନ ଗଢ଼ି ତୋଳିବାକୁ ହେବ । ଉପରୋକ୍ତ ତତ୍ତ୍ୱଗୁଡ଼ିକୁ ସୂତ୍ରବଦ୍ଧ କଲେ ସମାଜବାଦୀ ଆନ୍ଦୋଳନର କାର୍ଯ୍ୟକ୍ରମ ସଙ୍କ୍ରାନ୍ତୀୟ ଏକ ରୂପରେଖ ପ୍ରସ୍ତୁତ ହେବ । ପ୍ରଥମ, ସାମ୍ରାଜ୍ୟବାଦ ବିରୁଦ୍ଧରେ ଆନ୍ଦୋଳନ, ସାମ୍ରାଜ୍ୟବାଦୀ ବଜାର ସହ ସମ୍ପର୍କ ସମ୍ପୂର୍ଣ୍ଣ ଭାବେ ଛିନ୍ନ କରାଯିବ । ଦ୍ୱିତୀୟ, ତୃତୀୟ ବିଶ୍ୱର ଦେଶମାନଙ୍କରେ ଏକ ସ୍ୱାବଲମ୍ବୀ ବିକେନ୍ଦ୍ରିତ ଅର୍ଥ ବ୍ୟବସ୍ଥାର ଆୟୋଜନ ଓ ଏଥି ସକାଶେ ଏକ ବିକଳ୍ପ ନୂତନ ପ୍ରଯୁକ୍ତି ବିଦ୍ୟାର ପ୍ରଚଳନ । ତୃତୀୟ, ଉପଭୋକ୍ତାବାଦ ବିରୁଦ୍ଧରେ ସାଂସ୍କୃତିକ ଆନ୍ଦୋଳନ । ବର୍ତ୍ତମାନ ପରିପ୍ରେକ୍ଷୀରେ ଆମେ ଯେତେବେଳେ ସମାଜବାଦକୁ ଆଉ ଥରେ ପରିଭାଷିତ କରିବାକୁ ଯାଉଛୁ ଏହି ତିନୋଟି କାର୍ଯ୍ୟକ୍ରମ ପ୍ରାରମ୍ଭିକ ହେବ । ଆଜିର ଏ ସଙ୍କଟ କାଳରେ ସମାଜବାଦର ଲକ୍ଷ୍ୟ କେବଳ ଏକ ସମତାମୂଳକ ବା ନ୍ୟାୟମୂଳକ ସମାଜ ସ୍ଥାପନାରେ ସୀମାବଦ୍ଧ ନୁହେଁ, ମାନବ ସମାଜକୁ ବଞ୍ଚାଇବା ପାଇଁ ସମାଜବାଦକୁ ଦାୟିତ୍ୱ ନେବାକୁ ହେବ । ଆଜିର ଏହି ଚର୍ଚ୍ଚାରେ ମୁଁ ଯେଉଁ ପ୍ରତିପାଦନ ଗୁଡ଼ିକୁ ଉପସ୍ଥାପିତ କରିଛି ତାହା ଶେଷ ବାକ୍ୟ ନୁହେଁ, ଶେଷ ନିଷ୍ପତ୍ତି ନୁହେଁ, ନୂଆ ବାଟ ଖୋଜିବାର ଏକ ପ୍ରୟାସ ଭିତରେ ମୁଁ ସେଗୁଡ଼ିକୁ ସୂତ୍ରବଦ୍ଧ କରିଛି । ମୋର ଏତିକି ବିଶ୍ୱାସ ଯେ ସେଗୁଡ଼ିକ ପ୍ରଣିଧାନଯୋଗ୍ୟ ।

(୧୯୯୩, ନଭେମ୍ବର ୨୩ତାରିଖରେ ଭୁବନେଶ୍ୱର ସୂଚନା ଭବନଠାରେ ପ୍ରଦତ୍ତ ସ୍ମାରକୀ ବକ୍ତୃତା)

# ନାରୀ ଆନ୍ଦୋଳନର ନବଦିଗନ୍ତ

'ନାରୀ ପ୍ରଗତି' ଓ 'ନାରୀ ମୁକ୍ତି' ଦୁଇଟି ଅଲଗା ଜିନିଷ ବୋଲି ଜାଣିବାକୁ ହେବ । ନାରୀ ପ୍ରଗତି ବା ଉନ୍ନତି କହିଲେ ବିଶେଷକରି ନାରୀ ଶିକ୍ଷା ଓ ନାରୀମାନଙ୍କର ଆପେକ୍ଷିକ ସ୍ୱଚ୍ଛନ୍ଦତାକୁ ବୁଝାଏ । ସ୍ତ୍ରୀମାନଙ୍କ ପାଇଁ ଶିକ୍ଷାର ସୁଯୋଗ ବଢ଼ାଇବା, ଓଢ଼ଣା ନ ଢାଙ୍କି ବୁଲାଚଲା କରିବା, ସାମାଜିକ କାର୍ଯ୍ୟମାନଙ୍କରେ ଭାଗ ନେବା, ଏପରିକି ଚାକିରି କରିବା – ଏ ସବୁକୁ ନାରୀ ଅବସ୍ଥାର ଉନ୍ନତି ବୋଲି ଧରାଯାଏ ।

ଭାରତୀୟ ପରମ୍ପରାର ଉଲ୍ଲେଖ କରି ଓ ଗାର୍ଗୀ ଓ ମୈତ୍ରେୟୀ ଆଦିଙ୍କର ଉଦାହରଣ ଦେଇ ଆମେ କହୁ ଯେ ଆମର ଧର୍ମ ଓ ପ୍ରାଚୀନ ସଂସ୍କୃତିରେ ନାରୀର ବିଦ୍ୟା ଅର୍ଜନ କରିବାର ଅଧିକାର ଥିଲା ଓ ନାରୀର ସ୍ଥାନ ଅତି ଉଚ୍ଚରେ ଥିଲା । ଏପରି କହିବା ଦ୍ୱାରା ଆମେ ଜଣାଇ ଦେବାକୁ ଚାହୁଁ ଯେ ଏହିସବୁ ଅଧିକାର ଆମର ଧର୍ମସମ୍ମତ ଓ ନାରୀକୁ ସମ୍ମାନିତ କରିବାର ଏକ ଐତିହ୍ୟ ଆମ ସମାଜରେ ରହିଛି ।

କିନ୍ତୁ ମଧ୍ୟଯୁଗୀୟ ଭାରତବର୍ଷରେ ହିନ୍ଦୁ ଓ ମୁସଲ୍‌ମାନ୍ ଉଭୟ ସମାଜରେ ରକ୍ଷଣଶୀଳତା ଅତି ବେଶୀ ବଢ଼ିଯାଇଥିଲା । ତେଣୁ ଇଂରେଜ୍ ରାଜତ୍ୱକାଳରେ ଯେତେବେଳେ ସ୍ତ୍ରୀ-ଶିକ୍ଷାର ପୁନଃପ୍ରଚଳନ ପାଇଁ ଭାରତୀୟ ସମାଜ ସଂସ୍କାରକମାନେ ଚେଷ୍ଟା କଲେ, ସେମାନଙ୍କୁ କଠିନ ବାଧାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ସମାଜର କର୍ତ୍ତାମାନେ, ଧର୍ମ-ପୁରୋହିତମାନେ ଓ ପରିବାରର ଅଭିଭାବକମାନେ ନାରୀର ଶିକ୍ଷା ଓ ସ୍ୱଚ୍ଛନ୍ଦ ବିଚରଣକୁ ଭାରତୀୟ ଧର୍ମ ସଂସ୍କୃତିର ପରିପନ୍ଥୀ କହି ପ୍ରତିରୋଧ କଲାବେଳେ, ଏହାର ଖଣ୍ଡନ ନିମନ୍ତେ ଉପନିଷଦ୍ ଯୁଗର ଉଦାହରଣମାନଙ୍କୁ ଉପସ୍ଥାପିତ କରିବା ଦରକାର ପଡୁଥିଲା । ପାଶ୍ଚାତ୍ୟ ସମାଜର ଶତ ଶତ ଜ୍ୱଳନ୍ତ ଉଦାହରଣଗୁଡ଼ିକୁ ଶୁଣିବା ପରେ ଯେଉଁ ହୃଦ୍‌ବୋଧ ହେଉ ନଥିଲା, ନିଜର ଇତିହାସ ଓ ପୁରାଣର ନାରୀ ବ୍ୟକ୍ତିତ୍ୱମାନଙ୍କ କିମ୍ବଦନ୍ତୀ ତାହା ଅପେକ୍ଷା ବେଶୀ ପ୍ରଭାବ ସୃଷ୍ଟି କରିପାରୁଥିଲା । ତେଣୁ ଗାର୍ଗୀ, ମୈତ୍ରେୟୀ, ଜାବାଳୀ ଇତ୍ୟାଦି ପ୍ରସଙ୍ଗ ଚର୍ଚ୍ଚା ଓ ଆଲୋଚନାରେ ସ୍ଥାନ ପାଇଛି । ଏବେ ମଧ୍ୟ ଏହି ପ୍ରସଙ୍ଗଗୁଡ଼ିକ ପତ୍ରପତ୍ରିକାରେ ଆଲୋଚିତ ହେଉଛି, କାରଣ ଏବେ ମଧ୍ୟ ସେମାନଙ୍କ ବିଷୟରେ ଆମ ସମାଜର ମଧ୍ୟଯୁଗୀୟ ରକ୍ଷଣଶୀଳତା ପୂରାପୂରି ତୁଟିନାହିଁ ।

ଏହା ମଧ୍ୟ ସତ ଯେ ହିନ୍ଦୁ ଧର୍ମରେ ଓ ଶାସ୍ତ୍ରରେ ନାରୀମାନଙ୍କୁ ଅର୍ଦ୍ଧାଙ୍ଗିନୀ ବୋଲି ଯେଉଁ ପ୍ରତିଷ୍ଠା ଦିଆଯାଇଛି ଓ ଜାୟା-ଜନନୀ-ଭଗିନୀର ସମ୍ପର୍କ ଏକ ପବିତ୍ର ସମ୍ପର୍କ ବୋଲି ସାଧାରଣ ନାଗରିକଙ୍କ ମନ ଭିତରେ ଯେଉଁ ସଂସ୍କାର ସୃଷ୍ଟି କରାଯାଇଛି, ତାହା ଅନ୍ୟ ସଂସ୍କୃତିମାନଙ୍କରେ ବିରଳ । ଏଥିରେ ଗର୍ବ କରିବାରେ କ୍ଷତି ନାହିଁ, ବରଂ ଉଚିତ । କାରଣ ବିଦେଶୀ ସଭ୍ୟତାର ଅନୁଗାମୀ ହୋଇ ସମାଜ ସଂସ୍କାର କରିବା ଅପେକ୍ଷା ନିଜର ସଂସ୍କୃତି ଓ ଐତିହ୍ୟର ପ୍ରେରଣାରେ ନାରୀ ଅଧିକାରଗୁଡ଼ିକୁ ସାବ୍ୟସ୍ତ କରିବା ନିଶ୍ଚୟ ଶ୍ରେୟସ୍କର ।

ତେବେ ନମ୍ରତା ସହକାରେ ସ୍ୱୀକାର କରିବାକୁ ହେବ ଯେ ଉପନିଷଦ୍ ଯୁଗ ଭଳି ଅତି ପ୍ରାଚୀନ ଯୁଗରେ ନାରୀ ଉତ୍କର୍ଷର ଯେଉଁ ପ୍ରତିମାନ ମିଳେ, ତାହା ହିନ୍ଦୁ ସମାଜର ସବୁ ଯୁଗର ସତ୍ୟ ନୁହେଁ । ସମଗ୍ର ମଧ୍ୟଯୁଗୀୟ ଭାରତରେ, ବିଶେଷକରି ନବମ ଶତାବ୍ଦୀରୁ ଉନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରାୟ ଏକ ହଜାର ବର୍ଷ ଧରି ଭାରତୀୟ ସମାଜର କର୍ତ୍ତାମାନେ ନାରୀ ଓ ଶୁଦ୍ରମାନଙ୍କ ପାଇଁ ଯେଉଁ ଅମାନବୀୟ ବନ୍ଧନର ବିଧାନଗୁଡ଼ିକ ପ୍ରଚଳିତ କରାଇଲେ, ତାହାଠାରୁ ବେଶୀ କଳଙ୍କିତ ବ୍ୟବସ୍ଥା ଦୁନିଆରେ କେଉଁଠି ଦେଖାଯାଏ ନାହିଁ ।

ସାନ୍ତ୍ୱନାର ବିଷୟ ଏହି ଯେ ଭାରତର ସମସ୍ତ ଅଞ୍ଚଳରେ ଏହି ବନ୍ଧନଗୁଡ଼ିକ ଏକା ଭଳି ନ ଥିଲା । ଏ ବିଷୟରେ ଦୁଇଟି ତଥ୍ୟ ପ୍ରଣିଧାନଯୋଗ୍ୟ । ଯେଉଁ ସମୟରେ ପଶ୍ଚିମ ଏସିଆର ଆକ୍ରମଣକାରୀମାନେ ଭାରତରେ ପ୍ରବେଶ କଲେ, ସେତେବେଳେ ଭାରତର ଶାସକ ଶ୍ରେଣୀମାନେ ରକ୍ଷଣଶୀଳ, ପତନଶୀଳ ଓ ଭୀରୁ ଅବସ୍ଥାରେ ଥିଲେ । ଆକ୍ରମଣର ସମ୍ମୁଖୀନ ହୋଇ ନପାରି ସେମାନେ ନିଜର ସମାଜକୁ ଆହୁରି ବେଶୀ ସଙ୍କୀର୍ଣ୍ଣ ଓ ରଢ଼ିବାଦୀ କରି ପକାଇଲେ । ଭାରତର ତଥାକଥିତ 'ଆର୍ଯ୍ୟଭୂମି'ରେ, ଅର୍ଥାତ୍ ପଶ୍ଚିମ ଓ ଉତ୍ତର ଭାରତର ସମାଜରେ, ନାରୀ ଓ ଶୁଦ୍ରର ସ୍ଥାନ ଅତି ନିମ୍ନକୁ ଚାଲିଗଲା । ହିନ୍ଦୁଧର୍ମର ଏହା ହେଉଛି ଉଗ୍ର ବ୍ରାହ୍ମଣବାଦୀ ରୂପ । ବ୍ରାହ୍ମଣ ଓ କ୍ଷତ୍ରୀୟମାନେ ଦେଶର ବିଭିନ୍ନ ଅଞ୍ଚଳକୁ ଯାଇ ବ୍ରାହ୍ମଣବାଦୀ ସଂକୀର୍ଣ୍ଣତାର ପ୍ରସାର କରାଇଲେ । କିନ୍ତୁ ଭାରତର ପୂର୍ବ ଓ ଦକ୍ଷିଣ ଅଞ୍ଚଳମାନଙ୍କରେ ଏହାର କୁପ୍ରଭାବ ଅପେକ୍ଷାକୃତ କମ୍ ଥିଲା । ପରଦା ପ୍ରଥାର ଯେଉଁ କଠୋରତା ଉତ୍ତରପ୍ରଦେଶ୍, ବିହାର ବା ପୂର୍ବ ଓଡ଼ିଶାରେ ଦେଖାଯାଏ, ତାହା କେରଳ, ତାମିଲ୍‌ନାଡୁ, ମହାରାଷ୍ଟ୍ର ବା ପଶ୍ଚିମ ଓଡ଼ିଶାରେ କେବେହେଲେ ନଥିଲା । ଦକ୍ଷିଣର ବହୁ ଅଞ୍ଚଳରେ ସଧବା ନାରୀ ପାଇଁ ଚୂଡ଼ି ପିନ୍ଧିବା ଅପରିହାର୍ଯ୍ୟ ନୁହେଁ ।

ଶୁଦ୍ର ସମାଜ ଏସବୁ ରକ୍ଷଣଶୀଳତା ଦ୍ୱାରା କମ୍ ପ୍ରଭାବିତ ଥିଲା । ଶୁଦ୍ର ରମଣୀମାନଙ୍କର ବିଚରଣର ସ୍ୱଚ୍ଛନ୍ଦତା ଯୁଗେ ଯୁଗେ ଅକ୍ଷୁର୍ଣ୍ଣ ରହିଛି । ବିଧବା ବିବାହ, ଆର୍ଥିକ ସ୍ୱାବଲମ୍ବନ ଓ ଯୌତୁକ ବିହୀନତା ଏବେ ମଧ୍ୟ ଶୁଦ୍ର ସମାଜରେ ବ୍ୟାପକ ଭାବରେ ପ୍ରଚଳିତ । କିନ୍ତୁ ସେମାନେ ତଳ ଶ୍ରେଣୀର ହୋଇଥିବାରୁ ଶୁଦ୍ରର ସାମାଜିକ ଚଳଣୀକୁ ହିନ୍ଦୁମାନେ ଆଦର୍ଶ ବୋଲି ଗ୍ରହଣ କରି ପାରିଲେ ନାହିଁ । ଓଲଟା, ଶୁଦ୍ର ବ୍ୟକ୍ତିମାନେ ଶିକ୍ଷିତ ଓ ଉଚ୍ଚପଦସ୍ଥ ହେବା ପରେ ଉଚ୍ଚ ଜାତିର କଳଙ୍କିତ ପ୍ରଥାଗୁଡ଼ିକର

ଅନୁକରଣ କରି ନିଜର ସ୍ତ୍ରୀମାନଙ୍କୁ ଅବରୁଦ୍ଧ ଓ ଅବଗୁଣ୍ଠିତା କରି ପକାଉଛନ୍ତି । ଏହା ଏକ ପ୍ରକାରର ନବବ୍ରାହ୍ମଣବାଦ । ଅର୍ଥାତ ଶୁଦ୍ର ଦ୍ୱାରା ବ୍ରାହ୍ମଣ୍ୟ ଧର୍ମର ଦୃଢ଼ୀକରଣ ।

ବ୍ରାହ୍ମଣବାଦ ବିରୁଦ୍ଧରେ ଦକ୍ଷିଣର ବିଦ୍ରୋହ ପେରିୟାର୍ କିମ୍ବା ଆଧୁନିକ କାଳରୁ ଆରମ୍ଭ ହୋଇନାହିଁ । ଉତ୍ତରଭାରତର ପୁରୁଷମାନେ ଏହା ବିଶ୍ୱାସ କରିପାରିବେ ନାହିଁ ଯେ କର୍ଣ୍ଣାଟକର ମଧ୍ୟଯୁଗୀୟ ମହାନ ସଂସ୍କାରକ ବାସବାନ୍ନାଙ୍କର ଅନୁଗାମିନୀ ହୋଇ ଅକ୍‌କା ମହାଦେବୀ କେବଳ ଯେ ପାଣ୍ଡିତ୍ୟର ଅଧିକାରିଣୀ ହେଲେ ତା ନୁହେଁ, ଏକ ଉଲଗ୍ନ ସନ୍ୟାସିନୀ ଭାବରେ ସେ ତାଙ୍କର ବିଚାର ଓ ଭକ୍ତିର ପ୍ରଚାର କଲେ । ପୁରୁଷ ସାଙ୍ଗରେ ଆଧାତ୍ମିକ ଓ ଲିଙ୍ଗୀୟ ସମାନତାର ଏହି ଉଦ୍‌ଘୋଷଣା ଗାର୍ଗୀ ଓ ମୈତ୍ରେୟୀଙ୍କ ଠାରୁ ମଧ ଅଧିକ ପ୍ରେରଣାଦାୟକ । ଭାରତର ଦୁର୍ଭାଗ୍ୟ ଯେ ଏହି ସବୁ ଉଦାହରଣ ଯେତେ ମର୍ମସ୍ପର୍ଶୀ ହେଲେ ମଧ ବ୍ରାହ୍ମଣବାଦୀ ରକ୍ଷଣଶୀଳତା ହିଁ ଆମର ମନ ଉପରେ ଶାସନ ଚଳାଇଛି ।

ନାରୀ ପ୍ରତି ପୁରୁଷର ଦୃଷ୍ଟିରେ ସବୁଠାରୁ ଦୁର୍ବଳ ବିନ୍ଦୁ ହେଉଛି ସତୀତ୍ୱର ମାପକାଠି । ଆଧୁନିକ ଭାରତୀୟ ପୁରୁଷ ଚାହେଁ ଯେ ତା ସ୍ତ୍ରୀ ରୂପବତୀ ହେଉ, ଶିକ୍ଷିତା ହେଉ, ସୁଗାୟିକା ହେଉ, ଚାକିରି କରୁ ଓ ଜୀବନରେ ଏକପୁରୁଷ ବ୍ରତ ପାଳନ କରୁ । ଏହା ଏକ କଠିନ ଆଦର୍ଶ ଯାହା କେବଳ ବିରଳ ସଂଖ୍ୟାରେ ସ୍ତ୍ରୀମାନେ ପାଳନ କରି ପାରିବେ । ଏହି ମାପକାଠିକୁ ଲାଗୁ କରିବା ପାଇଁ ପୁରୁଷ ତାହାର ସମସ୍ତ ହିଂସାଶକ୍ତିର ପ୍ରୟୋଗ କରେ ଓ ଅନ୍ୟ ଦିଗରେ ପୁରୁଷର ମାପକାଠିକୁ ଭୟ କରି ନାରୀ ନିଜର ବ୍ୟକ୍ତିତ୍ୱକୁ ଖଣ୍ଡିତ କରେ କିମ୍ବା ମିଥ୍ୟାବାଦିନୀ ହୁଏ । ଧର୍ଷଣ ଓ ଅତ୍ୟାଚାର ହେଲେ ମଧ ସେ କହେ କେହି ତାକୁ ଛୁଇଁ ନାହାନ୍ତି । ଯେଉଁଠି ସତୀତ୍ୱର ମାପକାଠି ଏତେ କଡ଼ା, ସେଇଠି ସତ୍ୟପରାୟଣତା ରହିବ କିପରି ? ଗୋଟିଏ ପୁରୁଷର ଚରିତ୍ରକୁ ତଉଲିବା ପାଇଁ ଆମେ ଯେଉଁସବୁ ଗୁଣକୁ ଅଗ୍ରାଧିକାର ଦେଉ ଓ ଏକ-ପତ୍ନୀବ୍ରତକୁ ଯେତିକି ଅନୁପାତରେ ଗୁରୁତ୍ୱ ଦେଉ, ସ୍ତ୍ରୀ ପ୍ରତି ମଧ ଠିକ୍ ଅନୁରୂପ ମାପକାଠି ପ୍ରୟୋଗ କଲେ ନାରୀ ପୁରୁଷ ସମ୍ପର୍କ ବହୁତ ସୁସ୍ଥ ଓ ସ୍ୱାଭାବିକ ହୋଇଯିବ । ନାରୀ ସାହସୀ ହେଉ, ଦୃଢ଼ମନା ହେଉ ଓ ସତ୍ୟପରାୟଣ ହେଉ । ସତୀତ୍ୱ ଅପେକ୍ଷା ସତ୍ୟ ପରାୟଣତା ଅଧିକ ପବିତ୍ର ବୋଲି ଗୋଟିଏ ମୂଲ୍ୟବୋଧ ସୃଷ୍ଟି ହେଉ, ଯାହା ଉଭୟଙ୍କ ପାଇଁ ସମାନ ଭାବରେ ପ୍ରଯୁଜ୍ୟ ହେବ ।

ଇଦାନୀଂ ନାରୀ ଜାଗରଣ ବା ନାରୀ ଆନ୍ଦୋଳନର ଯେଉଁ ସବୁ ଚର୍ଚ୍ଚା ହେଉଛି, ତାହା ନାରୀ ଶିକ୍ଷା କିମ୍ବା ସ୍ୱଚ୍ଛନ୍ଦ ବିଚରଣର ଦାବି ଭିତରେ ସୀମିତ ନୁହେଁ । ଏହାର ଦୁଇଟି ନୂଆ ଦିଗ ଦେଖା ଦେଇଛି । ଏକ ରୁଗ୍‌ଣ ଆଧୁନିକ ସମାଜରେ ନାରୀ କେବଳ ପାରମ୍ପରିକ ପ୍ରଥା ଦ୍ୱାରା ନିର୍ଯାତିତା ନୁହେଁ । ଆର୍ଥିକ ଅସୁରକ୍ଷା, ଯୌତୁକ ତାଡ଼ନା, ଯୌନ ଶୋଷଣ ଓ ଧର୍ଷଣ ଇତ୍ୟାଦି ବହୁ ଆଧୁନିକ ନିର୍ଯାତନାର ଘଟଣା ଦିନକୁ ଦିନ ବଢ଼ିଚାଲିଛି । ନାରୀ ଆନ୍ଦୋଳନମାନେ ଏହିସବୁ ଅସୁରକ୍ଷା ଓ ଶୋଷଣ ବିରୁଦ୍ଧରେ ପ୍ରତିବାଦର ସ୍ୱର ଉଠାଉଛନ୍ତି, କିନ୍ତୁ ସମାଧାନର ପନ୍ଥା ନିରୂପଣ କରିପାରୁ ନାହାନ୍ତି । ସେମାନେ ଆଧୁନିକୀକରଣର ବିରୋଧ କରିବାକୁ ଚାହାନ୍ତି ନାହିଁ, କିନ୍ତୁ ଭାରତ ଭଳି

ଦେଶମାନଙ୍କରେ ଯେଉଁ ଢଙ୍ଗର ଆଧୁନିକତା ବଢ଼ିଚାଲିଛି ସେଥିରେ ନାରୀର ସ୍ଥାନ ଅତ୍ୟନ୍ତ ଅସୁରକ୍ଷିତ ହୋଇପଡୁଛି । ଗରିବ ଶ୍ରେଣୀର ସ୍ତ୍ରୀମାନଙ୍କୁ ସବୁବେଳେ କିଛି ନା କିଛି ରୋଜଗାର କରିବାକୁ ପଡୁଥିଲା । ଆଧୁନିକ ଯୁଗରେ ମଧ୍ୟବିତ୍ତ ଓ ନିମ୍ନମଧ୍ୟବିତ୍ତ ଶ୍ରେଣୀର ନାରୀମାନଙ୍କ ପାଇଁ ମଧ୍ୟ ରୋଜଗାର ବା କର୍ମନିଯୁକ୍ତିର ଆବଶ୍ୟକତା ଅପରିହାର୍ଯ୍ୟ ହୋଇପଡ଼ିଛି । କାରଣ ଆଧୁନିକ ଯୁଗର ସବୁ ଚାହିଦା ମେଣ୍ଟାଇବା ପାଇଁ କେବଳ ସ୍ୱାମୀର ଉପାର୍ଜନ ଯଥେଷ୍ଟ ହେଉନାହିଁ । ଦ୍ୱିତୀୟତଃ, ସ୍ୱାମୀ ବା ତାହାର ପରିବାର ଯେକୌଣସି ସମୟରେ ସ୍ତ୍ରୀକୁ ପରିତ୍ୟାଗ କରିଦେଇପାରେ । ତେଣୁ ସ୍ତ୍ରୀର ଏକ ନିଜସ୍ୱ ଅବଲମ୍ବନ ଦରକାର । ଅଥଚ ଆଧୁନିକ ଅର୍ଥ ବ୍ୟବସ୍ଥାରେ ରୋଜଗାର କ୍ରମଶଃ ଦୁର୍ଲଭ ହୋଇଯାଉଛି । ଗୋଟିଏ ପଟେ ରୋଜଗାରର ସଙ୍କୋଚନ ଘଟୁଛି ତ ଅନ୍ୟପଟେ ଭୋଗବାଦ, ପ୍ରତିଯୋଗିତା ଓ ଅନୈତିକତାବାଦର ପ୍ରସାର ଫଳରେ ସମାଜ ଉଶୃଙ୍ଖଳ ହେଉଥିବାରୁ ନାରୀର ସ୍ଥିତି ଜଟିଳ ହୋଇପଡୁଛି । ଆଧୁନିକ ନାରୀ ଶିକ୍ଷା ଓ ବିଚରଣର ସ୍ୱାଧୀନତା ପାଇଛି, କିନ୍ତୁ ଲକ୍ଷ ଲକ୍ଷ ନାରୀଙ୍କ ପାଇଁ ଏହା ଏକ ଅସୁରକ୍ଷା ଓ ଆଶ୍ରୟହୀନତାର ସ୍ୱାଧୀନତା ବୋଲି ପ୍ରମାଣିତ ହେଉଛି ।

ଏହାର ସମ୍ମୁଖୀନ ହେବାପାଇଁ ନାରୀ ଆନ୍ଦୋଳନଗୁଡ଼ିକ ନାରୀର ଆର୍ଥିକ ସୁରକ୍ଷା ବଢ଼ାଇବା ଦିଗରେ ମୁଖର ହେଉଛନ୍ତି । ପରିବାରର ସମ୍ପତ୍ତି ଉପରେ ନାରୀର ଭାଗ ଉପରେ ବିଶେଷ ଜୋର ଦିଆଯାଉଛି । ପରିତ୍ୟକ୍ତାମାନଙ୍କର ଦୁହାଇ ଦେଇ ଦାବି କରାଯାଉଛି ଯେ ସ୍ୱାମୀର ଅର୍ଦ୍ଧେକ ସମ୍ପତ୍ତି ଉପରେ ସ୍ତ୍ରୀର ଅଧିକାର ପାଇଁ ଆଇନ୍ ପ୍ରଣୟନ କରାଯାଉ । ଯୌତୁକ ନିର୍ଯାତନାକୁ ସବୁ ଆନ୍ଦୋଳନ ନିନ୍ଦା କରୁଥିଲେ ସୁଦ୍ଧା କେତେକ ନାରୀ ଆନ୍ଦୋଳନ ଯୌତୁକ ପ୍ରଥାର ଆଉ ବିରୋଧ କରୁନାହାନ୍ତି । ସେମାନେ ଭାବୁଛନ୍ତି ଯେ ସମ୍ପତ୍ତିରେ ନାରୀକୁ ଭାଗ ନ ଦେଉ ଥିବାର ଏହା ଏକ ପରିଣାମ । ଏପରି ଯୁକ୍ତି ଦେବା ଏକ ବିଡ଼ମ୍ବନା । ସମ୍ପତ୍ତି ଉପରେ ନାରୀର ଅଧିକାର ଯେତେ ଯୁକ୍ତିଯୁକ୍ତ ହେଲେ ମଧ୍ୟ ଯୌତୁକ ଦାବୀ ଯେ ନାରୀ ଓ ବିବାହ ଅନୁଷ୍ଠାନ ପ୍ରତି ଏକ ଅପମାନ ଏହା କହିବା ଅନାବଶ୍ୟକ । ନାରୀର ସମ୍ପତ୍ତି ଅଧିକାର ସାଙ୍ଗରେ ଯୌତୁକ ପ୍ରଥାକୁ ଯୋଡ଼ିଦେଲେ ଯୌତୁକ ନିର୍ଯାତନା ବଢ଼ିବ ।

ପତି ଓ ପିତାର ସମ୍ପତ୍ତି ଉପରେ ନାରୀର ଅଧିକାର ବିଷୟକୁ ଏଡ଼ାଇ ଦେଇ ହେବ ନାହିଁ । କିନ୍ତୁ ଏହି ଅଧିକାର କେବଳ ମଧ୍ୟବିତ୍ତ ଶ୍ରେଣୀର ନାରୀମାନଙ୍କୁ କିଛି ସାମର୍ଥ୍ୟ ପ୍ରଦାନ କରିବ । ଯେଉଁ ପୁରୁଷମାନେ ଦୈନିକ ମଜୁରୀ, ସାପ୍ତାହିକ ମଜୁରୀ ବା ଅତି କମ୍ ପରିମାଣର ମାସିକ ଦରମା ପାଆନ୍ତି ସେମାନଙ୍କର ସ୍ଥାବର ସମ୍ପତ୍ତି ବୋଲି ବିଶେଷ କିଛି ନଥାଏ । ସେମାନଙ୍କ ଆୟରୁ ଭାଗ ନେଇ ସ୍ତ୍ରୀମାନଙ୍କୁ ଆର୍ଥିକ ସୁରକ୍ଷା ମିଳିବ ବୋଲି ଆଶା କରାଯାଇ ନପାରେ । ଏହି ଶ୍ରେଣୀର ପୁରୁଷଟିଏ ପାଇଁ ମଧ୍ୟ ବାପର ସମ୍ପତ୍ତିରୁ କିଛି ମିଳେନାହିଁ, କାରଣ ମୋଟ ଉପରେ ସମ୍ପତ୍ତି ହିଁ ନାହିଁ । ଏହି ଅବସ୍ଥାର ପ୍ରତିକାର କେବଳ ସମାଜବାଦୀ ବା ଜନମଙ୍ଗଳ ରାଷ୍ଟ୍ରରେ ହୋଇଥାଏ, ଯେଉଁଠି ପ୍ରତ୍ୟେକ ବ୍ୟକ୍ତିକୁ ରୋଜଗାର ଯୋଗାଇବା ସମାଜର ଦାୟିତ୍ୱ ବୋଲି ଧରାଯାଏ । ଦୁଃଖର ବିଷୟ ଯେ ସମାଜବାଦ ଓ ଜନମଙ୍ଗଳ ରାଷ୍ଟ୍ର ଗଠନ ଆଧୁନିକ ଅର୍ଥନୀତିର

ଲକ୍ଷ୍ୟ ନୁହେଁ । ନାରୀ ଆନ୍ଦୋଳନଗୁଡ଼ିକ ଏହାର ପରିବର୍ତ୍ତନ ଦାବି କରିବା ଉଚିତ୍ । ବେକାରୀ ଅବସ୍ଥା ପୁରୁଷକୁ ମଧ୍ୟ ଅସହାୟ କରିଦିଏ, କିନ୍ତୁ ନାରୀକୁ ଏତେ ଦୁର୍ବଳ କରିଦିଏ ଯେ ସେ ନାନା ପ୍ରକାରର ଶୋଷଣର ଶିକାର ହୁଏ । ତେଣୁ କର୍ମନିଯୁକ୍ତିର ଅଧିକାର ସର୍ବପ୍ରଥମେ ନାରୀମାନଙ୍କ ପାଇଁ ପ୍ରଯୁଜ୍ୟ ହେବା ଦରକାର । ଅର୍ଥାତ୍ ଯଦି କୌଣସି ସ୍ତ୍ରୀ ନିଜକୁ ନିରାଶ୍ରିତ ଘୋଷଣା କରି କର୍ମନିଯୁକ୍ତି ଦାବିକରେ, ରାଜ୍ୟ ତାହା ଯୋଗାଇ ଦେବାକୁ ବାଧ୍ୟ ବୋଲି ଆଇନ୍ ହେବା ଦରକାର ।

ଉପରୋକ୍ତ ଅବତାରଣାର ତାତ୍ପର୍ଯ୍ୟ ଏହିକି ଯେ ଆଧୁନିକତା ନାରୀର ସ୍ୱର୍ଗ ନୁହେଁ । ତାହା ହୋଇଥିଲେ ୟୁରୋପ୍-ଆମେରିକାରେ ନାରୀ ଆନ୍ଦୋଳନ ଏତେ ପ୍ରବଳ ହୁଅନ୍ତା ନାହିଁ । ବରଂ ଏକଥା ସତ୍ୟ ଯେ ଭାରତରେ ଚାଲୁଥିବା ଅଧିକାଂଶ ନାରୀ ଆନ୍ଦୋଳନ ପଶ୍ଚିମ ନାରୀ ମୁକ୍ତି ଆନ୍ଦୋଳନ (ୱିମେନ୍ସ ଲିବ୍)ର ପ୍ରେରଣାରୁ ଉଦ୍ଭୁତ । ନାରୀର ଉନ୍ନତି ଠାରୁ ନାରୀ-ମୁକ୍ତି ଅଲଗା ଜିନିଷ । ଆଧୁନିକତାର ପରିଧି ଭିତରେ ନାରୀର ଅବସ୍ଥାରେ ଯେତେ ଉନ୍ନତି ଘଟିଲେ ମଧ୍ୟ ନାରୀ ପୁରୁଷର ସମକକ୍ଷ ହୋଇପାରୁ ନାହିଁ ଓ ଯୌନ ଶୋଷଣ ବଢ଼ି ଚାଲିଛି ।

ନାରୀର ସ୍ଥାନ ସମାଜରେ ପ୍ରଥମ ନୁହେଁ କିମ୍ବା ସମାନ ନୁହେଁ । ଫ୍ରାନ୍ସର ବିଚକ୍ଷଣ ଲେଖିକା ସୀମୋଁ ଦ୍ୟୋଭୋ ଆଧୁନିକ ନାରୀର ପରିସ୍ଥିତିଗୁଡ଼ିକୁ ଅଧ୍ୟୟନ କରି ଯେଉଁ ଗ୍ରନ୍ଥ ରଚନା କରିଛନ୍ତି ତାହାର ଶିରୋନାମା ହେଉଛି 'ସେକେଣ୍ଡ୍ ସେକ୍ସ' ବା 'ଦ୍ୱିତୀୟ ଲିଙ୍ଗ'; ସମାଜରେ ପୁରୁଷର ସ୍ଥାନ ହିଁ ପ୍ରଥମ ଓ ପ୍ରଧାନ । ସମାଜର ସବୁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ପୁରୁଷ ଦ୍ୱାରା ପରିଚାଳିତ । ନାରୀ ତାହାର 'ଅର୍ଦ୍ଧାଙ୍ଗିନୀ' ବା ସହଯୋଗୀ ହୋଇପାରେ, କିନ୍ତୁ ସମକକ୍ଷ ନୁହେଁ । ପୁରୁଷ ତାକୁ କେତେବେଳେ 'ଦେବୀ' ଓ କେତେବେଳେ 'ଦାସୀ' କରିଦିଏ । ପୁରୁଷ ନାରୀକୁ ବେଳେବେଳେ କାନ୍ଧ ଉପରେ ବା ମୁଣ୍ଡ ଉପରେ ମଧ୍ୟ ବସେଇ ଦିଏ, କିନ୍ତୁ ସମକକ୍ଷ ହେବାର ସମ୍ମାନ ଦିଏ ନାହିଁ । ସମାଜଶାସ୍ତ୍ରୀ ଓ ନୃତତ୍ତ୍ୱବିତ୍‌ମାନେ ଏହାକୁ ପୁରୁଷପ୍ରଧାନ ବା ପିତୃସତ୍ତାତ୍ମକ ସମାଜ ବୋଲି ଅଭିହିତ କରନ୍ତି । ମନୁଷ୍ୟର ପ୍ରାରମ୍ଭିକ ବିକାଶ ସମୟରେ କେତେକ ଗୋଷ୍ଠୀ ମାତୃସତ୍ତାତ୍ମକ ଓ ଆଉ କେତେକ ଗୋଷ୍ଠୀ ପିତୃସତ୍ତାତ୍ମକ ଥିଲେ । ପ୍ରଥମ ପ୍ରକାରର ଗୋଷ୍ଠୀଗୁଡ଼ିକର ପରିଚାଳନା ସ୍ତ୍ରୀମାନେ କରୁଥିଲେ । କିନ୍ତୁ ସଭ୍ୟତାର ବିକାଶ ଯେଉଁ ଢଙ୍ଗରେ ହେଲା, କାଳକ୍ରମେ ମାତୃସତ୍ତାତ୍ମକ ଗୋଷ୍ଠୀମାନେ ନିଶ୍ଚିହ୍ନ ହୋଇଗଲେ । ଏବେ ସେମାନଙ୍କର ଅସ୍ତିତ୍ୱର ଧ୍ୱଂସାବଶେଷ କେଉଁଠି କେଉଁଠି ଦେଖିବାକୁ ମିଳେ । ଭାରତବର୍ଷର ମେଘାଳୟରେ ଏପରି ଗୋଟିଏ ଦୁଇଟି ଗୋଷ୍ଠୀ ଅଛି । ଶହେ ବର୍ଷ ପୂର୍ବେ କେରଳର ନାୟର୍ ଜାତି ଏକ ମାତୃସତ୍ତାତ୍ମକ ଗୋଷ୍ଠୀ ଥିଲା । ଭାରତର ଯେଉଁ ଯେଉଁ ଅଞ୍ଚଳରେ ଶକ୍ତିପୂଜା ବା ଯୋନି ପୂଜାର ପ୍ରଥା ଅଛି, ହୁଏତ ସେହିସବୁ ଅଞ୍ଚଳରେ ବହୁ ଆଗରୁ ମାତୃସତ୍ତାତ୍ମକ ରାଜ୍ୟମାନ ଥିଲା ।

ଏଗୁଡ଼ିକ ଲୋପ ପାଇଲା କାହିଁକି ? ଏ ବିଷୟରେ ବିଭିନ୍ନ ମତ ରହିଛି । କିନ୍ତୁ ଏତିକି ସ୍ପଷ୍ଟ ଯେ ଯେଉଁ ସମୟରୁ ବ୍ୟକ୍ତିଗତ ସମ୍ପତ୍ତି ଓ ଯୁଦ୍ଧ ବିଦ୍ୟା ଉପରେ ଆଧାରିତ ରାଷ୍ଟ୍ର ବ୍ୟବସ୍ଥାର ଉଦୟ ହେଲା, ସେହି ସମୟରୁ ମାତୃସତ୍ତାତ୍ମକ ଗୋଷ୍ଠୀଗୁଡ଼ିକର ଗୁରୁତ୍ୱ

କମିବାକୁ ଲାଗିଲା । ଏଥିରୁ ନାରୀ ପୁରୁଷ ମଧ୍ୟରେ ଥିବା ଏକ ମୌଳିକ ଭେଦ ପ୍ରକଟ ହୁଏ । ପୁରୁଷ ଓ ନାରୀ ଭିତରେ ଥିବା ପ୍ରଭେଦଗୁଡ଼ିକୁ ବିଶ୍ଳେଷଣ କଲେ ଜଣାପଡ଼େ ଯେ ଅଧିକାଂଶ ପ୍ରଭେଦ ହଜାର ହଜାର ବର୍ଷର ସଂସ୍କାର ଓ ସଂସ୍କୃତିରୁ ଉଦ୍ଭୁତ ହୋଇଛି । ନାରୀର ପ୍ରସାଧନପ୍ରିୟତା, ଲଜ୍ଜାଶୀଳତା, ଭୀରୁତା – ଏଗୁଡ଼ିକ ବହୁଯୁଗର ଏକ ଅଭ୍ୟାସ । କେବଳ ଗୋଟିଏ ପ୍ରଭେଦ ମୌଳିକ ବୋଲି ଜଣାଯାଏ – ପୁରୁଷ ଶରୀରର ଆକ୍ରମଣ ଶକ୍ତି ନାରୀ ଅପେକ୍ଷା ବହୁତ ବେଶୀ । ତେଣୁ ହିଂସା ବା ବଳ କଷାକଷିରେ ନାରୀ ଅପେକ୍ଷାକୃତ ଦୁର୍ବଳ । ଯେଉଁ ସମାଜ ବା ସଭ୍ୟତାରେ ହିଂସା ଏକ ନିର୍ଣ୍ଣାୟକ ମୂଲ୍ୟ ଓ ଗୁରୁତ୍ୱପୂର୍ଣ୍ଣ ବିଷୟଗୁଡ଼ିକର ଶେଷ ନିଷ୍ପତ୍ତି ହିଂସା ବା ଯୁଦ୍ଧ ଦ୍ୱାରା ହୋଇଥାଏ, ସେଇ ସଭ୍ୟତାରେ ନିଶ୍ଚୟ ପୁରୁଷର ପ୍ରାଧାନ୍ୟ ରହିବ । ବିଶାଳ ସମ୍ପତ୍ତିର ମାଲିକାନା ଓ ସଞ୍ଚାଳନ, ବିଶାଳ ରାଜ୍ୟ ସାମ୍ରାଜ୍ୟର ଶାସନ ଓ ପ୍ରତିରକ୍ଷା ଏସବୁ ପାଇଁ ସଙ୍ଗଠିତ ହିଂସାର ଦରକାର ପଡ଼େ । ଏଗୁଡ଼ିକ ଆମ ସଭ୍ୟତାର ମାନଦଣ୍ଡ ହୋଇଥିବାରୁ ଏହି ସଭ୍ୟତାରେ ପୁରୁଷର ପ୍ରାଧାନ୍ୟ ମଧ୍ୟ ସ୍ୱାଭାବିକ । ଗାନ୍ଧୀ ଓ ଟାଗୋର୍‌ଙ୍କ ଭଳି ଯେଉଁ ମନିଷୀମାନେ ଏହି ସଭ୍ୟତାର ପରିବର୍ତ୍ତନ ଚାହାନ୍ତି, ଯେଉଁମାନେ ଏକ ହିଂସାମୁକ୍ତ ସମାଜର କଳ୍ପନା କରନ୍ତି, ବ୍ୟକ୍ତିଗତ ସମ୍ପତ୍ତିର ଗୁରୁତ୍ୱକୁ ଲୋପ କରିବାକୁ ଚାହାନ୍ତି, ସେମାନଙ୍କର କଳ୍ପିତ ସମାଜରେ ନାରୀ ପୁରୁଷର ସମକକ୍ଷ ହୋଇପାରିବ ବୋଲି ସେମାନେ ଦାବି କରନ୍ତି । ଏହା ଏକ ବିଚାରଣୀୟ ବିଷୟ ଯେ ଏକ ଭିନ୍ନ ଢଙ୍ଗରେ ସଂରଚିତ ସମାଜରେ ନାରୀର ପ୍ରାଧାନ୍ୟ ପୁରୁଷଠାରୁ ମଧ୍ୟ ବେଶୀ ହୋଇପାରେ ।

ନାରୀ ଆନ୍ଦୋଳନଗୁଡ଼ିକ ସଭ୍ୟତାର ପରିବର୍ତ୍ତନ କିମ୍ବା ହିଂସାର ଉଚ୍ଛେଦ ଓ ବ୍ୟକ୍ତିଗତ ସମ୍ପତ୍ତିର ଲୋପ ବିଷୟରେ ଆଗ୍ରହ ପ୍ରକାଶ କରିନାହାନ୍ତି । ସେମାନେ ଚାହାନ୍ତି ଯେ ସବୁ କ୍ଷେତ୍ରରେ ନାରୀକୁ ଗୋଟିଏ ଭାଗ ମିଳୁ । ଟ୍ରକ୍ ଚାଳକ ଭାବରେ, ସୈନ୍ୟବାହିନୀରେ, ବ୍ୟବସାୟରେ, ସବୁଥିରେ ନାରୀର ଏକ ଭାଗ ରହୁ । ଗୋଟିଏ ପୁରୁଷ-ପ୍ରଧାନ ସମାଜରେ ନାରୀକୁ ଯେତିକି ଭାଗ ମିଳିବ, ତାହାକୁ ନେଇ ନାରୀ ପୁରୁଷର ସମକକ୍ଷ ହୋଇଯିବ ବୋଲି ବିଶ୍ୱାସ ହୁଏନାହିଁ । ଆଧୁନିକତା କିପରି ପୁରୁଷର ପ୍ରାଧାନ୍ୟକୁ ବଢ଼ାଉଛି, ତାହା ଭୋଗବାଦୀ ସଂସ୍କୃତିରୁ ସ୍ପଷ୍ଟ ହୋଇଯାଏ । ଭୋଗବାଦରେ ନାରୀର ଉପଭୋଗ ପାଇଁ ବହୁ ପ୍ରକାରର ବସ୍ତୁ, ବିଶେଷକରି ପ୍ରସାଧନ ଓ ବେଶଭୂଷାର ଜିନିଷ, ବଜାରକୁ ଆସୁଛି । କିନ୍ତୁ ସେଗୁଡ଼ିକୁ ଗ୍ରହଣ କରିବା ପରେ ନାରୀ ନିଜେ ପୁରୁଷର ଉପଭୋଗ ପାଇଁ ଏକ ବସ୍ତୁ ହୋଇଯାଉଛି । ଏହି ଭୋଗବାଦୀ ସଂସ୍କୃତି ଯୋଗୁଁ ଧନୀ ବିକଶିତ ଦେଶମାନଙ୍କରେ ମଧ୍ୟ ବେଶ୍ୟାବୃତ୍ତି କମୁନାହିଁ, ବରଂ ବଢୁଛି ।

ଏସିଆର ଯେଉଁ ଦେଶମାନଙ୍କୁ ବିକାଶର ନମୂନା ଭାବରେ ଉପସ୍ଥାପିତ କରାଯାଉଛି, ତନ୍ମଧ୍ୟରୁ ଥାଇଲାଣ୍ଡ୍ ଗୋଟିଏ । ଏହାର ରାଜଧାନୀ ବେଙ୍କକ୍ ଏକ ପ୍ରସିଦ୍ଧ ପର୍ଯ୍ୟଟନ ସ୍ଥଳୀ । ଏଠାରେ ପର୍ଯ୍ୟଟନର ଏକ ମୁଖ୍ୟ ଆକର୍ଷଣ ହେଉଛି ବେଶ୍ୟାବୃତ୍ତି । ବେଙ୍କକ୍ ସହର ସନ୍ଧ୍ୟାପରେ ଏକ ରାତ୍ରି ବଜାରରେ ପରିଣତ ହୁଏ । ଏହି ବଜାର ପାଇଁ ବହୁ ବିଦେଶୀ ପର୍ଯ୍ୟଟକ ଆସନ୍ତି ଓ ତାଙ୍କଠାରୁ ବହୁ ବିଦେଶୀ ମୁଦ୍ରା ସେ ଦେଶକୁ ମିଳିଥାଏ । ଏହି ପ୍ରକାରର ଆଧୁନିକତାରେ ନାରୀର ଦାସତ୍ୱ ଲୋପ ହେବ କିପରି ?

ନାରୀ ଆନ୍ଦୋଳନ ନାରୀ ଓ ପୁରୁଷର ସମାନତା ଦାବୀ କରିବା ଫଳରେ ପୁରୁଷ-ପ୍ରଧାନ ସମାଜ ବିଷୟରେ ସଚେତନତା ବୃଦ୍ଧି ପାଇଛି ନିଶ୍ଚୟ । କିନ୍ତୁ ଏହି ପୁରୁଷ-ପ୍ରଧାନ ସମାଜକୁ ବଦଳାଇବା ପାଇଁ ଯେ ସଭ୍ୟତା ଓ ସଂସ୍କୃତିର ମୌଳିକ ପରିବର୍ତ୍ତନ ଦରକାର ତାହା ଏପର୍ଯ୍ୟନ୍ତ ସମସ୍ତଙ୍କ ଦୃଷ୍ଟିକୁ ଆସିପାରି ନାହିଁ । ଏକ ଲେଖାରେ ଶ୍ରୀମା (ମଦର୍) ନାରୀମାନଙ୍କୁ ଯେଉଁ ପରାମର୍ଶ ଦେଇଛନ୍ତି, ତାହା ହେଉଛି ଏକ ପୁରୁଷ-ପ୍ରଧାନ ସମାଜରେ ନାରୀର ଚରମ ବିଦ୍ରୋହ, ଅର୍ଥାତ ପୁରୁଷ ସହିତ ସାମ୍ୟ ଅର୍ଜନ କରିବା ହିଁ ଏକମାତ୍ର ପନ୍ଥା । ଶ୍ରୀମା କହନ୍ତି ଯେ ନାରୀର ଦାସତ୍ୱ ତିନୋଟି ଇଚ୍ଛାକୁ ନେଇ - ପୁରୁଷର ବାହୁବଳ ପ୍ରତି ଆକୃଷ୍ଟ ହେବା ଓ ତାହା ଉପରେ ନିର୍ଭର ରହିବାର ଇଚ୍ଛା; ପରିବାରର ଘେରରେ ରହି ସୁରକ୍ଷିତ ଅନୁଭବ କରିବାର ଇଚ୍ଛା; ଯୌନ ଆସକ୍ତି ବା ସନ୍ତାନ ଲାଭର ଆସକ୍ତି । ଏହି ତିନୋଟି ଆସକ୍ତିକୁ ତ୍ୟାଗ କରିବା ପାଇଁ ଯେଉଁ ନାରୀ ଦୃଢ଼ମନା ହେବ, ସେ ପୁରୁଷର ନିଶ୍ଚୟ ସମକକ୍ଷ ହେବ । ଉପରୋକ୍ତ ତିନୋଟି ସୂତ୍ରକୁ ନେଇ ଆମେ ଏକ ଭବିଷ୍ୟତ ସମାଜର କଳ୍ପନା କରିପାରିବା, ଯେଉଁଠି, ବାହୁବଳ ଦ୍ୱାରା କୌଣସି ନିଷ୍ପତ୍ତି ହେବନାହିଁ, ପରିବାରର ସ୍ୱରୂପ ବଦଳିଯିବ ଓ ପୁତ୍ରଲାଭ ବା ପ୍ରଜନନ ନାରୀ ପାଇଁ ଏକ ଐଚ୍ଛିକ ବିଷୟ ହୋଇ ରହିବ ।

# ଧନୀ ଦେଶମାନଙ୍କ ବିକଳ୍ପ ବନାମ ଗରିବ ଦେଶର ବିକଳ୍ପ

ଆଧୁନିକ ଶିଳ୍ପ ସଭ୍ୟତା ମରଣାସନ୍ନ ବୋଲି କହିହେବ ନାହିଁ, କିନ୍ତୁ ଏହା ନିଃସନ୍ଦେହ ଯେ ପୃଥିବୀ ଓ ମାନବ ସମାଜକୁ ଏହା ମରଣାସନ୍ନ ଅବସ୍ଥାକୁ ଆଣିଦେଇଛି । ଏଭଳି କୌଣସି ବୈଜ୍ଞାନିକ ଆଉ ନାହାନ୍ତି ଯେ ଏଥିରେ ଦ୍ୱିମତ ହେବେ । ସମସ୍ତେ କହୁଛନ୍ତି ପୃଥିବୀର କ୍ଷୟ ତୀବ୍ର ଗତିରେ ହୋଇ ଚାଲିଛି । ଏହାର କାରଣ ପଚାରିଲେ ସେମାନେ ଦୁଇଟି କଥା ଉପରେ ଜୋର୍ ଦେଉଛନ୍ତି । ପ୍ରଥମ, ବିଭିନ୍ନ ରକମର କଳକାରଖାନା ପୃଥିବୀକୁ ପ୍ରଦୂଷିତ କରିଦେଉ ଅଛନ୍ତି ଓ ଆକାଶର ସବା ଉପରେ ଥିବା ଓଜୋନ୍ ଛତାକୁ ମଧ୍ୟ କଣା କରିଦେଉ ଅଛନ୍ତି । ଦ୍ୱିତୀୟ, ଅଧିକ ସମ୍ପତ୍ତି ଓ ଅଧିକ ବିଳାସ ସାମଗ୍ରୀ ହାସଲ୍ କରିବା ଉଦ୍ଦେଶ୍ୟରେ ପ୍ରାକୃତିକ ସଂଶାଧନ ସବୁକୁ ଆଖିବୁଜି ଧ୍ୱଂସ କରି ଦିଆ ଯାଉଅଛି । ମଣିଷ ଦେହରୁ ଚମ ଓଟାରି ଆଣିଲେ ଯେଉଁ ଅବସ୍ଥା ହେବ, ପୃଥିବୀକୁ ସେମିତି କରି ଦିଆ ଯାଉଅଛି ।

କେବଳ ବୈଜ୍ଞାନିକମାନେ ନୁହନ୍ତି, ଦୁନିଆର ଅଧିକାଂଶ ରାଜନେତା ତାଙ୍କ ଭାଷଣମାନଙ୍କରେ ଏହାର ଦୁଷ୍ପରିଣାମ ବିଷୟରେ ଉଦ୍‌ବେଗ ପ୍ରକାଶ କରୁଛନ୍ତି । ରାଜନୈତିକ ଦଳ ଓ ମତ ଭିନ୍ନ ଭିନ୍ନ ହେଲେ ମଧ୍ୟ ସେମାନେ ଏ ବିଷୟରେ ଏକମତ । ତେଣୁ ଅସଲ ଚିନ୍ତାର ବିଷୟ ଏହି ଯେ ଯେଉଁ ଘୋର ବିପଦ ମାଡ଼ିଆସୁଛି, ଯାହା ସମସ୍ତେ ବୁଝିଲେଣି, ତାହାକୁ ଏଡ଼ାଇବା ନିମନ୍ତେ ସମସ୍ତେ ମିଶି ଦୃଢ଼ ଓ ଜରୁରୀକାଳିନ ଭିତ୍ତିରେ ଯେଉଁ କାର୍ଯ୍ୟାନୁଷ୍ଠାନ କରିବା କଥା, ତାହା କେହି କରୁନାହାନ୍ତି । ଏହା ଦେଖିଲେ ଭାଗ୍ୟବାଦୀମାନଙ୍କୁ ମନେହେବ ସତେ ଯେପରି ମଣିଷ ଜାତିର ମୃତ୍ୟୁ ନିର୍ଦ୍ଧାରିତ ହୋଇ ସାରିଛି । ଏହାକୁ କେହି ଏଡ଼ାଇପାରିବେ ନାହିଁ । ତେଣୁ ସ୍ୱର୍ଗ-ନର୍କରେ ବିଶ୍ୱାସ କରୁଥିବା ଲୋକ ଭଜନ କୀର୍ତ୍ତନ କରି ଅଖଣ୍ଡ -ହରିନାମ ଜପନ୍ତୁ ଓ ବସ୍ତୁବାଦୀ ଲୋକେ ଆହୁରି ଅଧିକ ବିଳାସବ୍ୟସନ ବଢ଼ାଇ ତାହା ଭିତରେ ନିମଜ୍ଜିତ ରହନ୍ତୁ ।

ଅକ୍ଷରେ ଅକ୍ଷରେ ଏହାହିଁ ହେଉଛି । ପୃଥିବୀର ଧନୀ ଦେଶମାନେ ତାଙ୍କ ଦେଶ ଭିତରେ ଥିବା ସଂଶାଧନକୁ ଯେତିକି ଅଳ୍ପ ନଷ୍ଟ କରାଯାଇପାରେ ତାହାର ପଦକ୍ଷେପମାନ ଗ୍ରହଣ କରୁଛନ୍ତି ଓ ଗରିବ, ଦୁର୍ବଳ ଦେଶମାନଙ୍କରେ ତାଙ୍କର ପରିବେଶକୁ ଆଖିବୁଜି ନଷ୍ଟ କରିଚାଲିଛନ୍ତି । ନିଜ ଦେଶର ବାୟୁମଣ୍ଡଳକୁ ଯେତିକି ହୋଇପାରେ ପ୍ରଦୂଷଣ

ମୁକ୍ତ କରୁଛନ୍ତି ଓ ନିଜ ଦେଶର ସବୁ ଅଳିଆ, ଏପରିକି ଆଣବିକ ଅଳିଆଗୁଡ଼ିକୁ ଗରିବ ଦେଶମାନଙ୍କରେ ନେଇ ଗଦା କରୁଛନ୍ତି ।

ତଥାକଥିତ ବିକାଶଶୀଳ ଦେଶର ଧନୀ ବର୍ଗ ଏଥିରେ ବହୁତ ଖୁସି ହେଉଛନ୍ତି । କାରଣ ପଶ୍ଚିମର ବିଳାସବ୍ୟସନ ଚାଖିବା ପାଇଁ ଏମାନେ ଏତେ ଲାଳାୟିତ ଯେ ସେମାନଙ୍କ ଠାରୁ ଋଣ ସୂତ୍ରରେ ପଇସା ଓ ଆଧୁନିକ ଯନ୍ତ୍ରପାତି ପାଇବା ବଦଳରେ ନିଜର ସବୁ ପ୍ରାକୃତିକ ସଂଶାଧନ ବିଦେଶୀ ହାତକୁ ସମର୍ପଣ କରିବା ପାଇଁ କୁଣ୍ଠାବୋଧ କରୁନାହାନ୍ତି । ଅର୍ଥାତ୍ ଦେଶ ଭିତରେ ଧନୀ ବର୍ଗ ତଥା ପୃଥିବୀର ଧନୀ ଦେଶ ଉଭୟେ ମିଶି ଗରିବ ମହାଦେଶମାନଙ୍କର ପ୍ରକୃତିକୁ ସମ୍ପୂର୍ଣ୍ଣ ଭାବରେ ଧ୍ୱଂସ କରି ଚାଲି ଅଛନ୍ତି ।

ଏହି ଗତିରେ ସଂଶାଧନଗୁଡ଼ିକର ଅପବ୍ୟବହାର ଚାଲିଲେ ୨୦୩୦ ମସିହା ବେଳକୁ ଦୁନିଆଁରୁ ପେଟ୍ରୋଲ୍ ଓ କୋଇଲା ଭଳି ଖଣିଜ ଦ୍ରବ୍ୟମାନ ନିଃଶେଷ ହୋଇଯିବ । ଶକ୍ତି ଉତ୍ପାଦନର ଏହା ହେଉଛି ମୂଳ ଉତ୍ପାଦନ ଓ ଏହା ଉପରେ ସମଗ୍ର ଆଧୁନିକ ସଭ୍ୟତା ତିଷ୍ଠି ରହିଛି । ଧନୀ ଦେଶମାନେ ଭାବୁଛନ୍ତି ଯେ ପ୍ରଥମେ ଆମେ ଏସିଆ, ଆଫ୍ରିକା ଓ ଲାଟିନ୍ ଆମେରିକାର ସଂଶାଧନ ସବୁକୁ ନିଜ କାମରେ ଲଗାଇ ନେବା । ଆମ ନିଜର ସଂଶାଧନଗୁଡ଼ିକୁ ବଞ୍ଚାଇ ରଖିବା । ତାହାହେଲେ ପ୍ରଥମେ ଏସିଆ, ଆଫ୍ରିକା, ଲାଟିନ୍ ଆମେରିକାର ଲୋକ ଧ୍ୱଂସ ପାଇବେ । କେବଳ ଗୋରା ଲୋକମାନେ ବଞ୍ଚିଯିବେ ଓ ସାରା ପୃଥିବୀକୁ ଯେତିକି ଦିନ ସମ୍ଭବ ହେବ ଭୋଗ କରିବେ । ଏହି ଷଡ଼ଯନ୍ତ୍ର ଜଳ ଜଳ କରି ଦେଖାଯାଉଛି । ଭାରତର ନୂଆ ଅର୍ଥନୀତି ବୋଲି ଆମେ ଯାହାକୁ କହୁଛୁ, ତାହା ହେଉଛି ଏହାର ପରିଣାମ । ଡଙ୍କେଲ୍ ପ୍ରସ୍ତାବ ହେଉଛି ଏହାର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଚିଠା । ଏହି ଚିଠା କାର୍ଯ୍ୟକାରୀ ହେଲେ ଧନୀ ଦେଶମାନେ ପୃଥିବୀର ଗରିବ ଦେଶମାନଙ୍କରେ ଅବାଧରେ ପ୍ରବେଶ କରି ସେମାନଙ୍କର ସବୁ ସଂଶାଧନର ବ୍ୟବହାର ନିଜେ କରିବେ ଓ ଗରିବ ଦେଶର ଅଧାରୁ ବେଶୀ ଲୋକ କାଙ୍ଗାଳ ଅବସ୍ଥାକୁ ଆସି ଅନାହାର ଓ ମହାମାରୀରେ କୋଟି କୋଟି ସଂଖ୍ୟାରେ ମରିବେ ।

ଏହିପରି ଦୃଶ୍ୟକୁ କଳ୍ପନା ଚକ୍ଷୁରେ ଦେଖିବାକୁ ହେବ । କେବଳ ପରିବେଶକୁ ବିପଦ ମାଡ଼ି ଆସୁଛି କହିଲେ ଲୋକଙ୍କର ମସ୍ତିଷ୍କକୁ ତାହା ଭେଦ କରୁନାହିଁ । ଧ୍ୱଂସ କିପରି ଭାବରେ ଆସିବ ଓ କିପରି ଭାବରେ ମନୁଷ୍ୟ ସମାଜକୁ ପ୍ରଭାବିତ କରିବ, ତାହା ଜାଣିବା ଦରକାର ହେଉଛି । କୌଣସି ଏକ ନିର୍ଦ୍ଦିଷ୍ଟ ଦିନର ସକାଳେ ବା ଦ୍ୱିପ୍ରହରରେ ବା ମଧ୍ୟରାତ୍ରିରେ ପ୍ରଳୟ ଆସିଯିବ ନାହିଁ । କୁଷ୍ଠରୋଗୀ ପରି ଏହି ପୃଥିବୀ ଖଣ୍ଡିଏ ଖଣ୍ଡିଏ ଛିଣ୍ଡିବା ଆରମ୍ଭ କରିବ । ଆଜିଠାରୁ ପୃଥିବୀର ଅନ୍ତିମ ଧ୍ୱଂସ ପର୍ଯ୍ୟନ୍ତ ନାନା ରକମର ବିପର୍ଯ୍ୟୟ ଓ ବିଭୀଷିକା ଦେଖାଦେବ । ମାନବ ସମାଜର ସମସ୍ତେ ଏକା ସାଙ୍ଗରେ ମରିବେ ନାହିଁ, ଦଳ ଦଳ ହୋଇ ମରିବେ; ଗୋଟିଏ ସମୂହ ପରେ ଆଉ ଏକ ସମୂହ । ତାହେଲେ ପ୍ରଥମ କିଏ ହେବ ଓ ଶେଷ ସମୂହ କିଏ ହେବ ? ଏହା କଳ୍ପନା କରିହେବ ନାହିଁ ଯେ ଶିଳ୍ପ ସଭ୍ୟତାକୁ ଆରମ୍ଭ କରିଥିବା ଗୋରାଲୋକଙ୍କର ଦେଶମାନେ ସର୍ବପ୍ରଥମେ ଏହାର ଶିକାର ହେବେ । ଏହା ସମ୍ଭବ ନୁହେଁ । ତାଙ୍କ

ପାଖରେ ବୈଭବ ଅଛି । ଅସ୍ତ୍ର ଅଛି । ତେଣୁ ଯମରାଜକୁ ସେମାନେ ଅନ୍ୟତ୍ର ପଠାଇ ଦେବେ । ଆଗ ଅନ୍ୟମାନଙ୍କୁ ଖାଅ, ଶେଷରେ ଆମ ପାଖକୁ ଆସିବ । ହଇଜା ଭଳି ମହାମାରୀରେ ପ୍ରଥମେ ଦୁର୍ବଳ ଶ୍ରେଣୀ ଲୋକ ଶିକାର ହୁଅନ୍ତି । ଧନୀ ବର୍ଗ ବଞ୍ଚିଯାଏ । ଏହି ସୂତ୍ରରେ ବିଶ୍ୱର ଧନୀ ଦେଶମାନେ ଭାବୁଛନ୍ତି ଯେ ସେମାନେ ବଞ୍ଚିଯିବେ ।

ଅନେକ ଲୋକ ଉପହାସ କରି ଭାବିବେ ଯେ ଏପରି ଭାବରେ ବିଶ୍ୱସ୍ତରୀୟ ଷଡ଼ଯନ୍ତ୍ର ହେବା ସମ୍ଭବ ନୁହେଁ । ଏପରି ଭାବିବା ଆମର ନିରୀହତା । ଜାଣିରଖିବା ଉଚିତ୍ ଯେ ସୋଭିଏତ୍ ସାମ୍ରାଜ୍ୟର ପତନ ପରେ ମଧ୍ୟ ଆମେରିକାର ଗୁପ୍ତଚର ବିଭାଗରେ କୌଣସି ଛଟେଇ ହୋଇ ନାହିଁ । ସେମାନେ ତାଙ୍କ କାମକୁ ଆହୁରି ବଢ଼େଇବା ପାଇଁ ଏକ ନୂଆ ପ୍ରକାରର ଗୋଇନ୍ଦାଗିରି ଚଳାଇଛନ୍ତି । ତାହା ହେଉଛି ଆର୍ଥିକ ଗୋଇନ୍ଦାଗିରି । ଏହି ଆର୍ଥିକ ଗୋଇନ୍ଦାଗିରିର ଉଦ୍ଦେଶ୍ୟ ହେଉଅଛି – ଦୁନିଆଁର ବିଭିନ୍ନ ଅଞ୍ଚଳରେ ଥିବା ସଂଶାଧନଗୁଡ଼ିକର ସନ୍ଧାନ ନେବା ଓ କେଉଁ କେଉଁ ପଦକ୍ଷେପ ଗ୍ରହଣ କଲେ ଅନ୍ୟ ଦେଶର ଆର୍ଥିକ ଢାଞ୍ଚାକୁ ଦୁର୍ବଳ କରିହେବ ଓ ନିଜ ଦେଶର ଆର୍ଥିକ ଫାଇଦା ବଢ଼ିବ – ଏସବୁର ଟିକିନିଖି ବିବରଣୀ ପ୍ରସ୍ତୁତ କରିବା । ଦୁନିଆ ଏପର୍ଯ୍ୟନ୍ତ ଆସିଗଲାଣି । ହେଲେ ବିକାଶଶୀଳ ଦେଶମାନଙ୍କର ନିଦ ଭାଙ୍ଗୁନାହିଁ ।

ପରିବେଶ ବୋଲି କହିଲେ ବାହାରର ଗୋଟିଏ ଜିନିଷ ପରି ଲାଗୁଛି । ପରିବେଶ ନୁହେଁ, ପ୍ରକୃତିକୁ ନେଇ ପୃଥିବୀ ମୃତ୍ୟୁ ମୁଖରେ ପଡ଼ିଛି ଓ ସର୍ବପ୍ରଥମେ ଭାରତ ପରି ଗରିବ ଦେଶ ଧ୍ୱଂସ ଆଡ଼କୁ ଗତି କରୁଛି । ଆମେରିକା ଓ ୟୁରୋପ୍ ଆସନ୍ନ ସ୍ଥିତି ବିଷୟରେ ଯଥେଷ୍ଟ ଭାବରେ ସଚେତ ହୋଇଛନ୍ତି ଓ ଅତି ସ୍ୱାର୍ଥପର ଭାବରେ ନିଜକୁ ବଞ୍ଚାଇବାର ଉପାୟମାନ କରୁଛନ୍ତି । ଏହା କହିବା ଠିକ୍ ନୁହେଁ ଯେ ପରିବେଶ ଧ୍ୱଂସ ହେଲେ ଧନୀ ଗରିବ ସବୁ ଦେଶ ଏକା ଭଳି ଏହାର ଶିକାର ହେବେ । ଧନୀ ଦେଶମାନେ ନିଜ ପାଇଁ ଅଲଗା ଉପାୟ କରିସାରିଛନ୍ତି । ସେମାନେ ଏକ ନୂଆ ବିଶ୍ୱବ୍ୟବସ୍ଥାର ଗଠନ ନିମନ୍ତେ ଚିଠା ପ୍ରସ୍ତୁତ କରୁଛନ୍ତି ।

ଧନୀ ଦେଶମାନେ ନିମ୍ନଲିଖିତ ସୂତ୍ର ସାହାଯ୍ୟରେ ତାଙ୍କର ବିକଳ୍ପ ପ୍ରସ୍ତୁତ କରୁ ଅଛନ୍ତି : ନିଜ ଦେଶର ସଂଶାଧନକୁ ଯଥାସାଧ୍ୟ ସାଇତି ରଖିବା; ପରିବେଶକୁ ପ୍ରଦୂଷିତ ନ କରିବା ପାଇଁ ନୂଆ ଟେକ୍ନୋଲୋଜିର ଉଦ୍ଭାବନ କରିବା ଓ ପ୍ରଦୂଷଣକାରୀ ଯନ୍ତ୍ରପାତିଗୁଡ଼ିକୁ ଗରିବ ଦେଶମାନଙ୍କୁ ପଠାଇଦେବା; ଅନ୍ୟ ଦେଶର ସଂଶାଧନଗୁଡ଼ିକ ଉପରେ ନିୟନ୍ତ୍ରଣ ରଖିବା, ଯାହା ଫଳରେ ଏହି ସଂଶାଧନର ବଡ଼ଭାଗ ସ୍ଥାନୀୟ ଲୋକଙ୍କ ଲାଗି ବ୍ୟବହୃତ ନହୋଇ ସେମାନଙ୍କ (ଧନୀଦେଶ)ର କାମରେ ଲାଗିବ; ଅନାହାର, ଅଖାଦ୍ୟ ଓ ମହାମାରୀ ଯୋଗୁଁ ଅର୍ଦ୍ଧେକ ଭୂପୃଷ୍ଠରୁ ସ୍ଥାନୀୟ ଲୋକମାନେ ଲୋପ ପାଇବେ ଓ ପୃଥିବୀର ଅଳ୍ପ କେତେ ଦେଶ ବଞ୍ଚି ରହି ସମଗ୍ର ପୃଥିବୀର ସଂଶାଧନକୁ ବ୍ୟବହାର କରିବେ । ଏହା ଦ୍ୱାରା ସଂଶାଧନ ଲୁପ୍ତ ହେବାର ପ୍ରକ୍ରିୟା ଧିରେ ଧିରେ ଚାଲିବ; ଇତି ମଧ୍ୟରେ ବୈଜ୍ଞାନିକ ଅନୁସନ୍ଧାନ ଦ୍ୱାରା ନୂଆଁ ରକମର ବୈଜ୍ଞାନିକ କୌଶଳ ହାସଲ ହୋଇପାରିବ । ହୁଏତ ଧ୍ୱଂସ ପରବର୍ତ୍ତୀ ବିଶ୍ୱରେ ଏକ ନୂଆ ସଭ୍ୟତାର ଢାଞ୍ଚା ଗଢ଼ିବାକୁ ସେମାନେ ସମର୍ଥ ହୋଇଯିବେ ।

ପ୍ରଥମ ଚାରୋଟିଯାକ ଲକ୍ଷ୍ୟ ହାସଲ କରିବାର ଯୋଗ୍ୟତା ସେମାନଙ୍କ ପାଖରେ ରହିଛି । ସାରା ପୃଥିବୀ ବିଷାକ୍ତ ଓ ଜର୍ଜର ହେବା ପରେ ମଧ୍ୟ ଗୋରାଦେଶମାନେ ତିଷ୍ଠି ରହିବେ – ଏହା ଅନ୍ୟମାନଙ୍କୁ ବିଶ୍ୱାସଯୋଗ୍ୟ ମନେ ହେବନାହିଁ । କିନ୍ତୁ ନିଜେ ଏହି ବିଷୟରେ ଅତ୍ୟଧିକ ଆଶା କରିବା ମଣିଷର ସ୍ୱଭାବ ହୋଇଥିବାରୁ ସେମାନେ ଏହି ଭ୍ରାନ୍ତ ଆଶା ପୋଷଣ କରି ଭାବୁଛନ୍ତି ଯେ ଧରିତ୍ରୀର ଧ୍ୱଂସଲୀଳା ଭିତରେ ସେମାନେ ସୁରକ୍ଷିତ ରହିବେ ଓ ଏକ ନୂଆ ଯୁଗର ବାହକ ହେବେ ।

ଏହା ସେମାନେ କେଉଁଠି ଲେଖି ନାହାନ୍ତି କିମ୍ବା ଭାଷଣରେ କହି ନାହାନ୍ତି । ପୃଥିବୀର ତୈଳଭଣ୍ଡାର ପଶ୍ଚିମ ଏସିଆ ଉପରେ ସେମାନେ ଆଧିପତ୍ୟ ଚାହାନ୍ତି । ଏହା ମଧ୍ୟ ସେମାନେ କେବେ ଲେଖି ନାହାନ୍ତି କିମ୍ବା ଭାଷଣରେ କହି ନାହାନ୍ତି । ବାରମ୍ବାର ଘଟୁଥିବା କାର୍ଯ୍ୟକଳାପରୁ କର୍ତ୍ତାର ଉଦ୍ଦେଶ୍ୟ ସ୍ପଷ୍ଟ ଭାବରେ ଜଣା ପଡ଼ିଥାଏ । ତେଣୁ ବୁଝିବାକୁ ହେବ ଯେ ୟୁରୋପ୍ ଓ ଆମେରିକାର ଧନୀ ଦେଶମାନେ ନିଜ ପାଇଁ ଏକ ବିକଳ୍ପ ପ୍ରସ୍ତୁତ କରିସାରି ଅଛନ୍ତି । ସେମାନଙ୍କର ଶିଳ୍ପପତି ଓ ସରକାରୀ ବୁଦ୍ଧିଜୀବୀମାନେ ଏହି ବିକଳ୍ପର ପ୍ରଣେତା । ଏଥିରେ ସହମତ ହେଉ ନ ଥିବା ବେସରକାରୀ ବୁଦ୍ଧିଜୀବୀ କେତେ ଅଛନ୍ତି, ଏହାର ସୂଚନା ଆମ ପାଖରେ ନାହିଁ । କିଛି ଲୋକ ଅବଶ୍ୟ ଅଛନ୍ତି ଯେଉଁମାନେ ଗରିବ ଦେଶ ବିରୁଦ୍ଧରେ ହେଉଥିବା ଆକ୍ରମଣ ଓ ଶୋଷଣ ନୀତିର ସମାଲୋଚନା କରୁଛନ୍ତି । ଉପରୋକ୍ତ ବିକଳ୍ପରେ ସେମାନେ ସନ୍ତୁଷ୍ଟ ନୁହନ୍ତି । ସେମାନଙ୍କର ସଂଖ୍ୟା ଏତେ ଅଳ୍ପ ଯେ ସେମାନେ ନିଜର ଏକ ରାଜନୈତିକ କେନ୍ଦ୍ର ସୃଷ୍ଟି କରିପାରୁ ନାହାନ୍ତି । ତାଙ୍କ ନିଜ ଦେଶର ସରକାର ଦ୍ୱାରା ତୃତୀୟ ବିଶ୍ୱର ଦେଶମାନଙ୍କ ବିରୁଦ୍ଧରେ ଯେଉଁ ଷଡ଼ଯନ୍ତ୍ରମୂଳକ ନୀତିମାନ ଚଳା ହେଉଛି, ତାହାର ତଥ୍ୟମାନଙ୍କର ଉଦ୍‌ଘାଟନ କରୁଛନ୍ତି ଓ ଦୁନିଆବାସୀଙ୍କୁ ଏସବୁ ବିଷୟରେ ଅବଗତ କରାଉଛନ୍ତି । ଏମାନଙ୍କ ଭିତରୁ ଅଧିକାଂଶ ହେଉଛନ୍ତି ପରିବେଶବାଦୀ । ପୃଥିବୀର ପରିବେଶକୁ ରକ୍ଷା କରିବା ଉଦ୍ଦେଶ୍ୟରେ ଏମାନେ ସଂସ୍ଥା ଓ ମଞ୍ଚ ଗଠନ କରି ଏକ ଅଭିଯାନ ଚଳାଇଛନ୍ତି । ପରୋକ୍ଷ ଭାବରେ ଏମାନେ ଗରିବ ଦେଶମାନଙ୍କର ହିତାକାଂକ୍ଷୀ ମଧ୍ୟ ।

ହେଲେ ମଧ୍ୟ ସେମାନେ ସାମ୍ପ୍ରତିକ ଶିଳ୍ପ ସଭ୍ୟତାର ଅନ୍ୟ ଏକ ବିକଳ୍ପ ଚିନ୍ତା କରିପାରୁନାହାନ୍ତି । କାରଣ ଧନୀ ଦେଶର ପ୍ରବଳ ଜନମତ ଭୌତିକ ସୁଖ ବା ଉପଭୋକ୍ତାବାଦକୁ ଆହୁରି ବଢ଼େଇବା ପାଇଁ ଏତେ ବ୍ୟଗ୍ର ଯେ, ସେହି ସାମାଜିକ-ସାଂସ୍କୃତିକ ବାୟୁମଣ୍ଡଳ ଭିତରେ ଏକ ନୂତନ ବିକଳ୍ପ ବିଚାରର ଉନ୍ମେଷ ହୋଇପାରୁ ନାହିଁ । ଧନୀ ଦେଶର ନାଗରିକମାନଙ୍କ ମନୋଭାବ ହେଉଛି – ଏସିଆ ଓ ଆଫ୍ରିକା ଉପରେ ଯେତେ ଅନ୍ୟାୟ ଓ ଅତ୍ୟାଚାର କରିବାକୁ ପଡ଼ିବ କରାଯାଉ, କିନ୍ତୁ ଆମର ଉପଭୋଗର ସ୍ତର ବଢ଼ିଚାଲୁ । ଗତ ଜୁନ୍ ୨୭ ତାରିଖରେ ଇରାକ୍ ଉପରେ ଯେଉଁ ଅକାରଣ ଆକ୍ରମଣ ଆମେରିକା ଦ୍ୱାରା କରାଗଲା, ସେଥିରେ ଆମେରିକାର ନୂଆ ଯୁବ-ରାଷ୍ଟ୍ରପତିଙ୍କର ଲୋକପ୍ରିୟତା ବଢ଼ିଗଲା । ଗୋଟିଏ ସର୍ବେକ୍ଷଣରୁ ଜଣାଗଲା ଯେ ଶତକଡ଼ା ୭୭ ଭାଗ ଆମେରିକାର ନାଗରିକ ଏହି ଅହେତୁକ ଓ ବର୍ବର ଆକ୍ରମଣର ସମର୍ଥନ କଲେ । ଏଥିରୁ ଜଣାପଡ଼େ ଯେ ଧନୀ ଦେଶର ଲୋକମାନଙ୍କର ବିଚାର ଓ

ମନୋଭାବ କେତେ ବିକୃତ ହୋଇଯାଇଛି । ଅଢ଼େଇ ଶହ ବର୍ଷର ଦୀର୍ଘ ଅନୁଭୂତିରୁ ସମୃଦ୍ଧ ଗୋରା ଦେଶର ନାଗରିକମାନେ ମସ୍ତିଷ୍କରେ ନହେଲେ ମଧ୍ୟ ମନ ଭିତରେ ବୁଝିପାରିଛନ୍ତି ଯେ ଏସିଆ, ଆଫ୍ରିକା ଓ ଲାଟିନ୍ ଆମେରିକାର ସଂଶାଧନର ଅପହରଣ ଫଳରେ ହିଁ ସେମାନଙ୍କର ଅଭୂତପୂର୍ବ ସମୃଦ୍ଧି ତିଷ୍ଠି ରହିଛି । ତେଲ ଭଣ୍ଡାରରେ ପରିପୂର୍ଣ୍ଣ ପଶ୍ଚିମ ଏସିଆ ଉପରେ ଯଦି ଧନୀ ଦେଶମାନଙ୍କର ଆଧିପତ୍ୟ ନ ରହେ ତାହାହେଲେ ସେ ଦେଶର ନାଗରିକମାନଙ୍କର ଭୋଗବିଳାସ ବାଧାପ୍ରାପ୍ତ ହେବ । ଇରାକ୍ ଏହି ଆଧିପତ୍ୟକୁ ମାନୁନାହିଁ । ତେଣୁ ଇରାକ୍‌କୁ ଶାସ୍ତି ମିଳିବା ଏକ ଆନନ୍ଦର ବିଷୟ ।

ଏହି ବିକୃତି ଯଦି ଧନୀ ଦେଶମାନଙ୍କ ଭିତରେ ସୀମାବଦ୍ଧ ହୋଇ ରହନ୍ତା ତାହାହେଲେ ଗରିବ ଦେଶମାନଙ୍କରେ ଆଶର କିରଣ ଦେଖାଦିଅନ୍ତା । ପାଶ୍ଚାତ୍ୟ ସଭ୍ୟତାର ଏକ ବିକଳ୍ପ ଶୀଘ୍ର ଏସବୁ ଦେଶରେ ମୁଣ୍ଡ ଟେକି ଉଠନ୍ତା । କିନ୍ତୁ ବିଡ଼ମ୍ବନାର ବିଷୟ ଏହି ଯେ ଧନୀ ଦେଶର ଲୋକମାନେ ଗରିବ ଦେଶର ଧ୍ୱଂସ କରି ନିଜେ ଆଗକୁ ବଢ଼ିବା ଚାହାନ୍ତି । ଗରିବ ଦେଶର ଧନୀ ବର୍ଗମାନେ ମଧ୍ୟ ଠିକ୍ ସେହି ମନୋଭାବ ନିଜ ଦେଶର ଗରିବମାନଙ୍କ ପ୍ରତି ପୋଷଣ କରନ୍ତି । ଗରିବ ସମୁଦାୟମାନେ ଯେତେ ଦୁର୍ଦ୍ଦଶାଗ୍ରସ୍ତ ହୁଅନ୍ତୁ ନା କାହିଁକି, ଜଙ୍ଗଲ ଓ ପ୍ରକୃତିର ଯେତିକି ବିନାଶ ହେଉ ନା କାହିଁକି, ଯମୁନାନଦୀ ଶୁଖିଯାଉ ଓ ଗଙ୍ଗା ନଦୀ ନର୍ଦ୍ଦମା ନାଳୀରେ ପରିଣତ ହେଉ - ଏସବୁର ବିନିମୟରେ ଯଦି ୟୁରୋପୀୟ ଢାଞ୍ଚାର ବିଳାସ ଓ ଉପଭୋଗ ସେକେଣ୍ଡ୍ ହେଣ୍ଡ୍ ସୂତ୍ରରେ ବି ମିଳି ପାରୁଛି, ତାହାହେଲେ ଏହାହିଁ ସମୃଦ୍ଧିର ବାଟ ବୋଲି ସେମାନେ ଧରି ନେଇଛନ୍ତି ।

ଏହା ଫଳରେ ଏକ ଦେଶଦ୍ରୋହୀ ପ୍ରବୃତ୍ତି ଅଜାଣତରେ ସେମାନଙ୍କର ସ୍ୱଭାବରେ ଆସିଯାଉଛି । ନିଜ ପରିବାର ଓ ଶ୍ରେଣୀ ପାଇଁ ଭୋଗବିଳାସର ସାମଗ୍ରୀ ହାସଲ୍ କରିବା ନିମନ୍ତେ ସେମାନେ ରାଷ୍ଟ୍ରର ସ୍ୱାର୍ଥ ଓ ସ୍ୱାଭିମାନକୁ ବଳିଦେବା ପାଇଁ କିମ୍ବା ରାଷ୍ଟ୍ରର ସମସ୍ତ ପ୍ରାକୃତିକ ସମ୍ପଦ ବିଦେଶୀ ହାତରେ ଟେକିଦେବା ପାଇଁ ପଶ୍ଚାତ୍‌ପଦ ହେଉ ନାହାନ୍ତି । ଅର୍ଥାତ୍ ଗୋଟିଏ ଦିଗରେ ଧନୀ ଦେଶର ଲୋକେ ଅତି ସଙ୍କୀର୍ଣ୍ଣ ଭାବରେ ରାଷ୍ଟ୍ରବାଦୀ ହେଉଛନ୍ତି ଓ ଅନ୍ୟ ଦିଗରେ ବିକାଶଶୀଳ ଦେଶର ଧନୀ ବର୍ଗ ରାଷ୍ଟ୍ରବାଦୀ ମନୋଭାବ ତ୍ୟାଗ କରି ଦେଶର ସର୍ବସ୍ୱ ଅନ୍ୟ ହାତରେ ସମର୍ପଣ କରୁଛନ୍ତି । ବିକଳ୍ପର କଥା ଶୁଣିଲେ ସେମାନଙ୍କୁ ଡର ମାଡୁଛି । ସେମାନେ କହି ଚାଲିଛନ୍ତି ଯେ ବିକଳ୍ପ ନାହିଁ । ପାଶ୍ଚାତ୍ୟ ସଭ୍ୟତାର ବିକଳ୍ପ ନାହିଁ । 'ବିକଳ୍ପ ନାହିଁ' ବୋଲି ବାରମ୍ବାର କହିବାର ପଛରେ ଗୋଟିଏ କଠୋର ସତ୍ୟ ଲୁଚି ରହିଛି: ବିକଳ୍ପ ଦରକାର । କର୍କଟ ରୋଗକୁ ଦେଖି ଆମେ କହୁ, ଏହାର ଔଷଧ ନାହିଁ । ତାତ୍ପର୍ଯ୍ୟ ହେଉଛି ଯେ ଏହାର ଔଷଧ ବାହାରିବା ଦରକାର ।

ତିରିଶି ବର୍ଷ ପୂର୍ବେ ଯେଉଁମାନେ ବିକଳ୍ପ ଖୋଜୁଥିଲେ, ସେମାନଙ୍କର ଅନୁସନ୍ଧାନରେ ତୀବ୍ରତା ନଥିଲା । ସେମାନେ ମଣିଷର କଷ୍ଟ ନିବାରଣ ପାଇଁ ବିକଳ୍ପ ଚାହୁଁଥିଲେ । ଏବେ ଜଣାପଡୁଛି ଯେ ଏହି ଅନିୟନ୍ତ୍ରିତ ଶିଳ୍ପ ସଭ୍ୟତାର ପରିଣାମ ସ୍ୱରୂପ ପୃଥିବୀ ନଷ୍ଟ ହୋଇଯିବ । ମାନବ ସମାଜ ହିଁ ଭୂପୃଷ୍ଠରୁ ଲୁପ୍ତ ହୋଇଯିବ । ଗୋରା ଦେଶର ଶାସକବର୍ଗ

ଭାବୁଛନ୍ତି ସମାଜର ତିନି ଚତୁର୍ଥାଂଶ ଧ୍ୱଂସ ପାଇଯିବ । ଅନ୍ୟମାନେ କହୁଛନ୍ତି ସମଗ୍ର ପୃଥିବୀ ନଷ୍ଟ ହୋଇଯିବ ।

ତେଣୁ ବିକଳ୍ପ ଅନୁସନ୍ଧାନର ଦାୟିତ୍ୱ ତୃତୀୟ ବିଶ୍ୱର ଦେଶମାନଙ୍କ ଉପରେ ବେଶୀ । ଶିଳ୍ପ ସଭ୍ୟତାରେ ସାମିଲ୍ ହେବାପାଇଁ ଯେତେ ଲାଳାୟିତ ହେଲେ ମଧ୍ୟ ସେମାନେ ଆଂଶିକ ଭାବରେ ଏହାର ବାହାରେ ରହିଛନ୍ତି – ତେଣୁ ସେମାନେ ଅଧିକ ବସ୍ତୁନିଷ୍ଠ ଭାବରେ ବିକଳ୍ପର କଳ୍ପନା ଓ ବିଚାର କରିପାରିବେ । ସେମାନଙ୍କ ପାଖରେ ଶିଳ୍ପ ସଭ୍ୟତାର ପ୍ରତିଦ୍ୱନ୍ଦ୍ୱୀ ଆଉ ଏକ ସଭ୍ୟତାର ଅବଶେଷ ଏବେ ମଧ୍ୟ ରହିଛି । ତେଣୁ ଗୋଟିଏ ମୂଳଦୁଆ ଅଛି ବୋଲି ଧରି ନେବାକୁ ହେବ । ଏହା କେବଳ ଆମ ପାଇଁ ନୁହେଁ, ସମଗ୍ର ବିଶ୍ୱ ପାଇଁ । ଏହି ଅବଶେଷ ବା ମୂଳଦୁଆ ହେଉଛି ଭାରତର ଗ୍ରାମ୍ୟ ବ୍ୟବସ୍ଥା । ତୃତୀୟ ବିଶ୍ୱର ଅଧିକାଂଶ ଦେଶରେ ଏଥି ସଙ୍ଗେ ସାମଞ୍ଜସ୍ୟ ଥିବା ବ୍ୟବସ୍ଥାମାନ ରହିଛି । ଗାନ୍ଧିଜୀ ୧୯୦୯ ମସିହାରେ ଯେତେବେଳେ ବିକଳ୍ପର ଚିନ୍ତାଧାରା ଆରମ୍ଭ କଲେ ସେତେବେଳେ ଏହି ଗ୍ରାମ ବ୍ୟବସ୍ଥା ହିଁ ତାଙ୍କ ପାଇଁ ଏକ ସମ୍ପତ୍ତି ଥିଲା ।

ସମସ୍ତେ ଉପହାସ କଲେ । ଆମେ ଆଉ ପଛକୁ ଫେରିବା ପାଇଁ ପ୍ରସ୍ତୁତ ନୋହୁଁ । ଆଧୁନିକ ଯନ୍ତ୍ର ସଭ୍ୟତା ଆମ ପାଇଁ ଟେବୁଲ ଉପରେ ଛପନ ଭୋଗ ପରସି ଦେଇଛି, ନ ଖାଇ ଫେରିଯିବା ମୂର୍ଖତା ହେବ । ଆମେ ସେ ଟେବୁଲ୍ ପାଖରେ ପହଞ୍ଚି ନାହୁଁ, କିନ୍ତୁ ଜଣାପଡ଼ିଲାଣି ଯେ ସେ ସବୁ ଖାଦ୍ୟ ବାସି ହୋଇଗଲାଣି ଓ ତାକୁ ଖାଇଲେ ମୃତ୍ୟୁ ଅବଶ୍ୟମ୍ଭାବୀ । ଏପରି ଅବସ୍ଥାରେ ଆଗେଇ ଯାଇ ଝାଡ଼ାବାନ୍ତିର ଶିକାର ହେବା ଅପେକ୍ଷା ଦୂରେଇ ଯିବା ଶ୍ରେୟସ୍କର । ତେଣୁ 'ବିକଳ୍ପ ନାହିଁ' 'ବିକଳ୍ପ ନାହିଁ' ବୋଲି ଚିତ୍କାର କରୁଥିବା ବୁଦ୍ଧିଜୀବୀମାନଙ୍କୁ ଗୋଟିଏ ପ୍ରଶ୍ନର ସମ୍ମୁଖୀନ ହେବାକୁ ପଡ଼ିବ:–

'ସମସ୍ତେ ଚର୍ଚ୍ଚା କରୁଛନ୍ତି ଓ ବୈଜ୍ଞାନିକମାନେ ମାନିଲେଣି ଯେ ଶିଳ୍ପ ସଭ୍ୟତାକୁ ଅନିୟନ୍ତ୍ରିତ ଭାବରେ ବଢ଼େଇ ଚାଲିଲେ ପୃଥିବୀ ନଷ୍ଟ ହୋଇଯିବ – ଏହା ତମେ ମଧ୍ୟ ମାନୁଛ କି ନାହିଁ ?' ସବୁ ବୈଜ୍ଞାନିକ ଯେଉଁ ବିଷୟରେ ଏକମତ ହେଉଛନ୍ତି ତାହା ନ ମାନିବା ତମର ଧୃଷ୍ଟତା । ମାନବ ସମାଜକୁ ନଷ୍ଟ କରିଦେବା, ନିଜ ଦେଶକୁ ବିଦେଶୀଙ୍କ ହାତରେ ସମର୍ପଣ କରିଦେବା, ଏହା ତୁଳନାରେ କିଛି ବାଟ ପଛକୁ ଫେରିଯିବା ବୁଦ୍ଧିମାନର କାର୍ଯ୍ୟ ନୁହେଁ କି ?

'ଦେଶକୁ ତୁମେ ପଛକୁ ନେଇଯିବାକୁ ଚାହୁଁଛ' କହିଦେଲେ ଆମର ବିକଳ୍ପବାଦୀମାନେ ଦବି ଯାଉଥିଲେ । ଏହି ସଙ୍କୋଚ ତ୍ୟାଗ କରି କହିବାକୁ ହେବ, 'ହଁ, ଆମେ ପଛକୁ ଫେରିଯିବାକୁ ଚାହୁଁ ।' ଏକବିଂଶ ଶତାବ୍ଦୀର ଘୋର ଦାରିଦ୍ର୍ୟ ଓ ଦୁର୍ଭିକ୍ଷ ଠାରୁ ଅଷ୍ଟାଦଶ ଶତାବ୍ଦୀର ଗ୍ରାମ୍ୟ ସଭ୍ୟତା ଆମ ପାଇଁ ସ୍ୱର୍ଗ ସମ ଆଶ୍ରୟ ହେବ ।' ଦୁନିଆ ପାଇଁ ଏହା ଏକ ଶୁଭ ସୂଚନା ଯେ ଭାରତ ପରି ଅନେକ ବିକାଶଶୀଳ ଦେଶରେ ଏହି ଗ୍ରାମ୍ୟ ସଭ୍ୟତାର ଅବଶେଷ ରହିଛି – ଚାଲ ଆମେ ସେଠାକୁ ଫେରିଯାଇ ଏକ ନୂଆ ସଭ୍ୟତାର ଶୁଭାରମ୍ଭ କରିବା । ଏହି ଦୃପ୍ତ ଆହ୍ୱାନର ସମୟ ଆସିଯାଇଛି ।

ଅଷ୍ଟାଦଶ ଶତାବ୍ଦୀର ଭାରତୀୟ ସମାଜ ବିଷୟରେ ଟିକିନିଖି ଅନୁସନ୍ଧାନ କରି ବିଶିଷ୍ଟ ଗାନ୍ଧିବାଦୀ ଐତିହାସିକ ଧର୍ମପାଳ ପ୍ରଭୃତି ଗବେଷକମାନେ ପ୍ରମାଣିତ କରିଛନ୍ତି ଯେ ସେତେବେଳର ହାରାହାରି ନାଗରିକ, ବିଶେଷକରି ଗ୍ରାମର ଚାଷୀ ଆଜିର ସାଧାରଣ ଚାଷୀଠାରୁ ଦଶ ଗୁଣ ଭଲ ଅବସ୍ଥାରେ ଥିଲା । ଏକଥା କେବଳ ଧର୍ମପାଳ, ରମେଶଚନ୍ଦ୍ର ଦତ୍ତ ବା ଦାଦାଭାଇ ନାରୋଜୀ ଲେଖି ନାହାନ୍ତି, ଖୋଦ ବ୍ରିଟିଶ୍ ସରକାରର ଅଫିସରମାନେ ଲେଖିଛନ୍ତି ଯେ 'ଭାରତର ଚାଷୀ ଏକ ସମୃଦ୍ଧ ଭାରତୀୟ ସମାଜର ମେରୁଦଣ୍ଡ ଥିଲା, ଆମେ ତାକୁ ଏକ ଦୟନୀୟ ଅବସ୍ଥାକୁ ଆଣିଦେଇଛୁ ।' ଅଷ୍ଟାଦଶ ଶତାବ୍ଦୀରେ ଚୀନ୍ ବାରୁଦ, କାଗଜ ଓ ଛାପାଖାନା ଆବିଷ୍କାର କରିସାରିଥିଲା । ଭାରତ ଗଣିତ ଆବିଷ୍କାର କରିସାରିଥିଲା । ତେଣୁ ଅଷ୍ଟାଦଶ ଶତାବ୍ଦୀକୁ ଫେରିଗଲେ ମଧ୍ୟ ଏଗୁଡ଼ିକର ଅଭାବ ରହିବ ନାହିଁ । ଯେଉଁ ଗଣିତ ଓ ଜ୍ୟୋତିର୍ବିଦ୍ୟା ଆଧୁନିକ ଯୁଗରେ ମିଳିଛି – ତାହା ମଧ୍ୟ ଆମ ହାତରେ ରହିବ । କମ୍ପ୍ୟୁଟର ଓ ଆଣବିକ ଅସ୍ତ୍ରକୁ ଫୋପାଡ଼ି ଦେଲେ ଏସବୁ ଜ୍ଞାନ ଉଭେଇ ଯିବ ନାହିଁ । ଅଷ୍ଟାଦଶ ଶତାବ୍ଦୀର ସମାଜର ଗୋଟିଏ ସ୍ଥିତିକୁ ବଦଳାଇବା ଦରକାର ହେବ । ତାହା ହେଉଛି ସାମାଜିକ ବିଷମତା । ଅର୍ଥାତ୍ ଶୁଦ୍ର ଓ ନାରୀ ପ୍ରତି ଅବହେଳା । ଯନ୍ତ୍ରପାତି କିମ୍ବା କମ୍ପ୍ୟୁଟର ସାଙ୍ଗରେ ଏହାର କୌଣସି ସମ୍ପନ୍ଧ ନାହିଁ, କାରଣ ଶିଳ୍ପ ସଭ୍ୟତା ଆସିବା ପରେ ମଧ୍ୟ ଏହା ରହିଛି । ଦଳିତର କ୍ଷୁଧା ବୃଦ୍ଧି ପାଇଛି । ନାରୀ ନିର୍ଯ୍ୟାତନାର ନୂଆ ନୂଆ ରୂପ ବାହାରିଛି । ବଳାତ୍କାର ସଂଖ୍ୟା ବଢ଼ି ଚାଲିଛି ।

ଆମେ ଯେତେ ଚାହିଁଲେ ବି ପୂରା ଭାବରେ ପଛକୁ ଫେରିଯାଇ ପାରିବା ନାହିଁ । ଆଧୁନିକ ଯୁଗର କିଛି ଭଲ କଥା ଓ କିଛି ଖରାପ କଥା ଆମ ପାଖରେ ରହିଯିବ । ଆମେ ଯେତେବେଳେ ନୂଆ ନିର୍ମାଣ କରିବା ସେତେବେଳେ ଆଧୁନିକ ଯୁଗର ଏହି ଉପାଦାନଗୁଡ଼ିକୁ ଏପରି ନୂଆ କାମରେ ଲଗାଇବା ଯାହା ଶିଳ୍ପ ସଭ୍ୟତା ଭିତରେ ରହି କରାଯାଇ ପାରୁ ନାହିଁ; ଉଦାହରଣ ସ୍ୱରୂପ, ଛୋଟ ଯନ୍ତ୍ର ଦ୍ୱାରା ଗ୍ରାମସ୍ତରୀୟ ଉତ୍ପାଦନ । ଆଧୁନିକ ବିଜ୍ଞାନ କ୍ଷୁଦ୍ରଶିଳ୍ପର ଦକ୍ଷତାକୁ ବଢ଼େଇବାରେ ସାହାଯ୍ୟ କରିବ । ଶିଳ୍ପ ସଭ୍ୟତାର ସ୍ୱଭାବ ହେଉଛି କେନ୍ଦ୍ରିତ ପୁଞ୍ଜି ଓ ବିଶାଳକାୟ ଉତ୍ପାଦନ । ଏହା ସାଙ୍ଗରେ ଛୋଟ ଯନ୍ତ୍ରର ମେଳ ହୋଇ ପାରୁ ନାହିଁ । ଗ୍ରାମ ବା ଜିଲ୍ଲାସ୍ତରୀୟ ଉତ୍ପାଦନ ଅପ୍ରାସଙ୍ଗିକ ହୋଇଯାଉଛି । କିନ୍ତୁ ଏକବିଂଶ ଶତାବ୍ଦୀରେ ଆମେ ଯେଉଁ ଗ୍ରାମ୍ୟ ସଭ୍ୟତାର ପ୍ରଚଳନ କରାଇବା ତାହା ଗୁଣାତ୍ମକ ଭାବରେ ଅଷ୍ଟାଦଶ ଶତାବ୍ଦୀ ଅପେକ୍ଷା ଉଚ୍ଚତର ହେବ । କାରଣ, ଆଧୁନିକ ବିଜ୍ଞାନର ପ୍ରୟୋଗ ମଧ୍ୟ ସେଥିରେ ହୋଇପାରିବ ।

ଗାନ୍ଧିଜୀ 'ହିନ୍ଦ୍ ସ୍ୱରାଜ' ସମ୍ପର୍କରେ ନିଜେ ଯେଉଁ ଟିପ୍ପଣୀମାନ କରିଛନ୍ତି, ତାହାର ପରିଣାମ ଏହା ହିଁ ହେବ । 'ହିନ୍ଦ୍ ସ୍ୱରାଜ' ପୁସ୍ତକରେ ସେ ବେଶୀ ପରିବର୍ତ୍ତନ କରିବାକୁ ଚାହିଁଲେ ନାହିଁ, କାରଣ ଆଧୁନିକ ସଭ୍ୟତାରେ ଯାହା ଅପରିହାର୍ଯ୍ୟ କେବଳ ସେତିକି ହିଁ ନେବାକୁ ସେ ପ୍ରସ୍ତୁତ ଥିଲେ । ବେଶୀ ଦୟନୀୟ ହେଲେ କୌଣସି ଜିନିଷ ନ ଛାଡ଼ିବା ପାଇଁ ଲୋଭ ହେବ । ତେଣୁ 'ହିନ୍ଦ୍ ସ୍ୱରାଜ'କୁ ଏକ ଶୁଦ୍ଧ ଚିତ୍ର ରୂପେ ସେ ଅପରିବର୍ତ୍ତିତ ରଖିବାକୁ ଚାହିଁଲେ ।

ଆମେ ଯେତେ ଚାହିଁଲେ ବି ସେଇ ଶୁଦ୍ଧ ଚିତ୍ରକୁ କାର୍ଯ୍ୟରେ ପରିଣତ କରିପାରିବା ନାହିଁ । ଜ୍ୟାମିତିର ତ୍ରିଭୁଜ ପରି ଏହା ଏକ ଆଦର୍ଶ ମାତ୍ର । କୂଳହରା ସମୁଦ୍ରର ନାବିକ ପାଇଁ ଆକାଶର ଏହା ଏକ ସ୍ଥିର ଉଜ୍ଜ୍ୱଳ ନକ୍ଷତ୍ର । ବିକଳ୍ପର ବ୍ୟାବହାରିକ ରୂପ ପାଇବା ପାଇଁ ଆମକୁ କେତୋଟି ପ୍ରାରମ୍ଭିକ ସୂତ୍ର ଉପରେ ଦୃଷ୍ଟି ନିବଦ୍ଧ କରିବାକୁ ହେବ ।

ଅଷ୍ଟାଦଶ ଶତାବ୍ଦୀରେ ରହି ଶିଳ୍ପ ସଭ୍ୟତାର ବିଂଶ ଶତାବ୍ଦୀୟ ରୂପ ବିଷୟରେ କେହି କଳ୍ପନା କରିନଥିଲେ । ବିଂଶ ଶତାବ୍ଦୀରେ ଏହି ସଭ୍ୟତାର ଏକବିଂଶ ଶତାବ୍ଦୀୟ ରୂପ କଳ୍ପନା କରିବା ପାଇଁ ଯେଉଁମାନେ ଚେଷ୍ଟା କରିଥିଲେ, ସେମାନେ ଭୁଲ ପ୍ରମାଣିତ ହେଉଛନ୍ତି । ତେଣୁ କୌଣସି ସଭ୍ୟତାର ପୂର୍ଣ୍ଣାଙ୍ଗ ରୂପ ଆଗରୁ କେହି ଆଙ୍କିପାରିବେ ନାହିଁ । ଶିଳ୍ପ ସଭ୍ୟତା ଆରମ୍ଭ ହୋଇଥିଲା କେତେକ ସୂତ୍ରକୁ ନେଇ, ଯଥା – ବାଷ୍ପଶକ୍ତି, ମାଧ୍ୟାକର୍ଷଣର ସିଦ୍ଧାନ୍ତ ଓ ସାମ୍ରାଜ୍ୟବାଦ । ଏସବୁର ଆପେ ଆପେ ଅଭିବୃଦ୍ଧି ହୋଇଚାଲିଲା । ଠିକ୍ ସେହିପରି ପାଶ୍ଚାତ୍ୟ ସଭ୍ୟତାର ବିକଳ୍ପ ନିର୍ମାଣ କାର୍ଯ୍ୟ ମଧ୍ୟ କେତେ ଗୋଟି ସୂତ୍ରକୁ ନେଇ ହେବ । ୧୯୯୩ ମସିହାରେ ବିକଳ୍ପର ବିଚାର କଲା ବେଳେ ଆମର ଅଧ୍ୟୟନକୁ ଦୁଇ ଭାଗରେ ବିଭକ୍ତ କରିବାକୁ ହେବ: କେତେକ ନିର୍ଦ୍ଦିଷ୍ଟ କ୍ଷେତ୍ରରେ ବା ଲଘୁସ୍ତରରେ ବିକଳ୍ପର ବିକାଶ ; ଓ ବ୍ୟାପକ ସ୍ତରରେ ପରିବର୍ତ୍ତନର ସୂତ୍ରଗୁଡ଼ିକର ସ୍ପଷ୍ଟ ନିର୍ଦ୍ଧାରଣ ।

ଅଧ୍ୟୟନର ପ୍ରଥମ ଭାଗରେ କେତେକ କାମ ହୋଇଚାଲିଛି । ଆଧୁନିକ ଯୁଗରେ ବିକାଶର ଏକ ପ୍ରାଣନାଡ଼ି ହେଉଛି ଶକ୍ତି । ବର୍ତ୍ତମାନ ବିଜୁଳିଶକ୍ତି, ପେଟ୍ରୋଲ୍ ଓ କୋଇଲା ହେଉଛି ଶକ୍ତିର ମୁଖ୍ୟ ସ୍ରୋତ । ଏଗୁଡ଼ିକ ଖର୍ଚ୍ଚବହୁଳ ଓ ସୀମିତ ପରିମାଣରେ ଉପଲବ୍ଧ ହେଉଥିବାରୁ ଶକ୍ତିର ନୂଆ ନୂଆ ସ୍ରୋତ ଖୋଜା ଯାଉଛି । ଆଣବିକ ଶକ୍ତି ଅତ୍ୟଧିକ ଖର୍ଚ୍ଚ ବହୁଳ ଓ ମନୁଷ୍ୟ ଓ ପ୍ରକୃତି ପାଇଁ ମାରାତ୍ମକ ହୋଇଥିବାରୁ ଏହାକୁ ତ୍ୟାଗ କରିବାକୁ ହେବ । ପାଣି, ପବନ, ଗୋବର, ଅଳିଆଗଦା ଆଦିରୁ ଶସ୍ତା ଶକ୍ତି ବିକଶିତ କରିବାର ବହୁ ପ୍ରୟୋଗ ହୋଇସାରିଛି । ଏଗୁଡ଼ିକ ସର୍ବତ୍ର ଉପଲବ୍ଧ । କିନ୍ତୁ ଏକା ସାଙ୍ଗରେ ବହୁ ପରିମାଣର ଶକ୍ତି ଏଥିରୁ ବାହାରିବ ନାହିଁ । ତେଣୁ ଛୋଟ ଛୋଟ କାର୍ଯ୍ୟ ତୁଲାଇବା ପାଇଁ ଏଗୁଡ଼ିକର ବହୁଳ ପ୍ରସାର ହେଲେ ଖର୍ଚ୍ଚବହୁଳ ଶକ୍ତିକୁ ଅନେକ ପରିମାଣରେ ବଞ୍ଚେଇ ହେବ । ସର୍ବାପେକ୍ଷା ବେଶୀ ସମ୍ଭାବନା ଅଛି ସୌର ଶକ୍ତିରେ । ୟୁରୋପ୍‌ରେ ସୂର୍ଯ୍ୟାଲୋକର ପରିମାଣ ଅତି କମ୍ ହୋଇଥିବାରୁ, ସେମାନେ ଏଥିରେ ବେଶୀ ଉତ୍ସାହ ଦେଖାଉ ନାହାନ୍ତି ଓ ଏହାର ପ୍ରଯୁକ୍ତି ବିଦ୍ୟାରେ ଉନ୍ନତି କରିବା ପାଇଁ ପଇସା ଖର୍ଚ୍ଚ  କରୁନାହାନ୍ତି । ପଶ୍ଚିମ ଲୋକେ ଏହାକୁ କମ୍ ଗୁରୁତ୍ୱ ଦେଉଥିବାରୁ ଏସିଆ ଓ ଆଫ୍ରିକାର ସରକାରମାନେ ମଧ୍ୟ ଏହାକୁ କମ୍ ଗୁରୁତ୍ୱ ଦେଉଛନ୍ତି । ସେମାନେ ବୈଜ୍ଞାନିକମାନଙ୍କୁ ଯେ ଏହି କାମରେ ଲଗାଉ ନାହାନ୍ତି,  ଏହା ତାଙ୍କର ମୂର୍ଖତା । ଏହି ଶକ୍ତିର ପର୍ଯ୍ୟାପ୍ତ ବିକାଶ ହେଲେ ସୂର୍ଯ୍ୟାଲୋକର ଦେଶମାନେ ସୂର୍ଯ୍ୟବିହୀନ (ଥଣ୍ଡା) ଦେଶମାନଙ୍କ ଠାରୁ ଶକ୍ତି କ୍ଷେତ୍ରରେ ଆଗକୁ ବଢ଼ିଯିବେ । ଏବେ ସୁଦ୍ଧା ସୂର୍ଯ୍ୟଶକ୍ତିର ଯେତିକି ବିକାଶ ହୋଇଛି ସେଥିରେ ଉଠା ଜଳସେଚନ ଇତ୍ୟାଦି କାମ ହୋଇ ପାରୁଛି ।

ଜଳସେଚନ ମଧ୍ୟ ଏକ ନିର୍ଦ୍ଦିଷ୍ଟ କ୍ଷେତ୍ର ଯେଉଁଥିପାଇଁ ବିକଳ୍ପର ଆବଶ୍ୟକତା ତୀବ୍ରଭାବରେ ଅନୁଭୂତ ହେଉଛି । ନର୍ମଦା ଆନ୍ଦୋଳନର ବିବାଦରେ ଏହି ବିଷୟ ସମସ୍ତଙ୍କର ଧ୍ୟାନକୁ ଆସିଛି । ବୃଦ୍ଧି ପାଉଥିବା ଜନସଂଖ୍ୟାର ବୃଦ୍ଧି ପାଉଥିବା ଖାଦ୍ୟ ଆବଶ୍ୟକତାର ପୂରଣ ପାଇଁ ଜଳସେଚନ ଅବଶ୍ୟ ଦରକାର । କିନ୍ତୁ ବଡ଼ ବଡ଼ ନଦୀବନ୍ଧ ଦ୍ୱାରା ଏହା ଆଉ ସମ୍ଭବ ନୁହେଁ । କାରଣ ଲକ୍ଷ ଲକ୍ଷ ସଂଖ୍ୟାରେ ଲୋକମାନେ ବିସ୍ଥାପିତ ହୋଇ ଅସହାୟ ଅବସ୍ଥାରେ ପଡ଼ିବାକୁ ଚାହାନ୍ତି ନାହିଁ । ନ୍ୟାୟପୂର୍ଣ୍ଣ କ୍ଷତି ପୂରଣ ଦେବାପାଇଁ ଏତେ ବେଶୀ ଖର୍ଚ୍ଚ ହେବ ଯେ ବନ୍ଧର ଲାଭ ମଧ୍ୟ ସେତିକି ହେବ ନାହିଁ । ଭାରତର କୌଣସି ସରକାର ଏହା ବହନ କରିପାରିବେ ନାହିଁ । ତା ଛଡ଼ା ଜଙ୍ଗଲ ଓ ପରିବେଶର ବିନାଶ ଏହା ଦ୍ୱାରା ହେଉଛି । ପ୍ରଭୂତ ପରିମାଣର କୃଷିଜମି ନଷ୍ଟ ହେଉଛି । ନଦୀବନ୍ଧ ପାଇଁ ବାରମ୍ବାର ବିଦେଶୀ ଋଣ ମାଗିବା ଏକ ଲଜ୍ଜାର ବିଷୟ । ଏହି ଋଣ ମାଧ୍ୟମରେ ବିଦେଶୀ ଶକ୍ତିମାନେ ଆମ କୃଷିକୁ ନିୟନ୍ତ୍ରିତ କରୁଛନ୍ତି । ତେଣୁ ଜଳସେଚନର ବିକଳ୍ପଗୁଡ଼ିକୁ କାର୍ଯ୍ୟକାରୀ କରିବାରେ ଆଉ ବିଳମ୍ବ କରିହେବ ନାହିଁ ।

ବିକଳ୍ପ ଖୋଜିବା କଠିନ କାର୍ଯ୍ୟ ନୁହେଁ । ବିକଳ୍ପ ଅଛି । ତାହାର ପ୍ରୟୋଗ କରି ଉପାୟଗୁଡ଼ିକୁ ଉନ୍ନତ ଧରଣର କରିବାକୁ ହେବ । ବଡ଼ ବଡ଼ ନଦୀବନ୍ଧ ଦ୍ୱାରା ଜଳସେଚନର ଅର୍ଥ ବିଦେଶୀ ଋଣରେ ବୃଦ୍ଧି ଓ ତାହା ସତ୍ତ୍ୱେ ଏହି ପ୍ରଣାଳୀରେ ଦେଶର ଷାଠିଏ ଭାଗରୁ ବେଶୀ ଜମିର ସେଚନ ହୋଇପାରିବ ନାହିଁ ବୋଲି ବିଶେଷଜ୍ଞମାନେ କହୁଛନ୍ତି । ତେଣୁ ଛୋଟ ଛୋଟ ଧରଣର ଜଳସେଚନ ଉପରେ ହିଁ ନିର୍ଭର କରିବାକୁ ପଡ଼ିବ । ଭାରତର ଯେତିକି କ୍ଷୁଦ୍ର ଜଳସେଚନର ଯୋଜନା ହୋଇଛି, ସେଗୁଡ଼ିକ ଭଲଭାବରେ କାର୍ଯ୍ୟକାରୀ ହୋଇନାହିଁ । ଅତ୍ୟଧିକ ଦୁର୍ନୀତି ଫଳରେ ତନ୍ମଧ୍ୟରୁ ଅଧିକାଂଶ ତ୍ରୁଟିପୂର୍ଣ୍ଣ ଓ ଦୁର୍ବଳ ଭାବରେ ତିଆରି ହୋଇଛି । ଏହା ଯୋଗୁଁ କ୍ଷୁଦ୍ର ଜଳସେଚନର ଆକର୍ଷଣ କମ୍ ହୋଇ ଯାଇଛି । କ୍ଷୁଦ୍ର ଜଳସେଚନକୁ ଦୁର୍ନୀତିମୁକ୍ତ କରି କେଉଁ ଅଞ୍ଚଳରେ କେଉଁ ପ୍ରଣାଳୀ ଉପଯୋଗୀ ହେବ ତାହାର ଜ୍ଞାନକୁ ପୂର୍ଣ୍ଣାଙ୍ଗ କରିବାକୁ ହେବ ଓ ନିର୍ମାଣ ବିଧିକୁ ବିଜ୍ଞାନସମ୍ମତ କରିବାକୁ ହେବ ।

ଏ ସଙ୍କ୍ରାନ୍ତରେ ଜଗଦୀଶ ପ୍ରଧାନଙ୍କର 'କଳାହାଣ୍ଡିର ବିକଳ୍ପ' ନିବନ୍ଧ ଏକ ମହତ୍ୱପୂର୍ଣ୍ଣ ଅବଦାନ । ଏହା ଉପରେ ଓଡ଼ିଶାର ସର୍ବତ୍ର ଆଲୋଚନା ଆବଶ୍ୟକ । କଳାହାଣ୍ଡି ଓ ତା'ର ଲୋକମାନେ ଯେଉଁ ଅବସ୍ଥାରେ ପହଞ୍ଚିଲେଣି, କୌଣସି ଅତ୍ୟାଧୁନିକ କଳକାରଖାନା ଦ୍ୱାରା ସେମାନଙ୍କର ଦୁଃଖ ଦୂର ହେବାର ନାହିଁ । କ୍ଷୁଦ୍ର ଜଳସେଚନର ଯେଉଁ ପ୍ରଣାଳୀ ସ୍ୱାଧୀନତା ପୂର୍ବରୁ (ଯଥେଷ୍ଟ ପୂର୍ବରୁ) କାର୍ଯ୍ୟକାରୀ ହେଉଥିଲା, ବର୍ତ୍ତମାନ ତାହାର ପ୍ରାସଙ୍ଗିକତା ତୀବ୍ର ଭାବରେ ଅନୁଭୂତ ହେଉଛି । ଏହା ଦ୍ୱାରା କଳାହାଣ୍ଡିରେ ସବୁଆଡ଼େ ଏକା ସାଙ୍ଗରେ କୃଷିର ସମ୍ୟକ ଉନ୍ନତି ହେବ । କୃଷିର ଉନ୍ନତି ପରେ ଚାରିଆଡ଼େ କ୍ଷୁଦ୍ରଶିଳ୍ପ ପ୍ରତିଷ୍ଠାର ସମ୍ଭାବନା ବଢ଼ିଯିବ । କଳାହାଣ୍ଡି ପାଇଁ ଯଦି ଏହି 'ମଡ଼େଲ୍' ବିକଶିତ ହେବ, ତାହା ହିଁ ଓଡ଼ିଶା ପାଇଁ ବିକାଶର ମଡ଼େଲ୍ ହେବ, କାରଣ ଅଧିକାଂଶ ଓଡ଼ିଶା ମାଳଭୂମି ବୋଲି ସମସ୍ତେ ଜାଣନ୍ତି । ଓଡ଼ିଶାରେ 'ବିଜୁ ପଟ୍ଟନାୟକ ମଡ଼େଲ୍' ଅଳ୍ପ କେତେକ ସ୍ଥାନରେ ମୁଷ୍ଟିମେୟ ଜନସଂଖ୍ୟା ପାଇଁ ସମ୍ପନ୍ନତା ସୃଷ୍ଟି

କରିପାରେ, କିନ୍ତୁ ସମଗ୍ର ଓଡ଼ିଶାକୁ ତାହା ଅବହେଳିତ ଓ ଶୋଷିତ କରି ରଖିବ । ଆଧୁନିକ ଶିଳ୍ପର କେତୋଟି ଦ୍ୱୀପ ଗଢ଼ିବା ପାଇଁ ସମଗ୍ର ଓଡ଼ିଶାବାସୀଙ୍କୁ ଏହା ପୃଥିବୀର ଏକ ଦରିଦ୍ରତମ ଅଞ୍ଚଳରେ ପରିଣତ କରିବ । ଜଗଦୀଶ ପ୍ରଧାନଙ୍କ ଲେଖାରେ ସମଗ୍ର କଳାହାଣ୍ଡିର ଜଳସେଚନ ପାଇଁ ଏକ ଦିଗ୍‌ଦର୍ଶନ ରହିଛି । କ୍ଷୁଦ୍ର ଜଳସେଚନ ପ୍ରଣାଳୀ ସାଙ୍ଗରେ ବିକେନ୍ଦ୍ରିତ ଶକ୍ତି ଉତ୍ପାଦନ ପ୍ରଣାଳୀକୁ କାର୍ଯ୍ୟକାରୀ କରାଯାଇ କ୍ଷୁଦ୍ରଶିଳ୍ପର ବିକାଶ କରାଯାଇ ପାରିବ । ବୈକଳ୍ପିକ ଜଳସେଚନ, ବୈକଳ୍ପିକ ଶକ୍ତି ଓ କ୍ଷୁଦ୍ରଶିଳ୍ପର ସମନ୍ୱୟରେ ଏହି 'କଳାହାଣ୍ଡି ମଡ଼େଲ୍' ପ୍ରସ୍ତୁତ କରାଯାଇ ପାରିବ । ପ୍ରଥମ ପର୍ଯ୍ୟାୟରେ କଳାହାଣ୍ଡିର ପ୍ରତ୍ୟେକ ପଞ୍ଚାୟତରେ କୃଷିର ଉନ୍ନତି ଓ ଦ୍ୱିତୀୟ ପର୍ଯ୍ୟାୟରେ ପ୍ରତ୍ୟେକ ପ୍ରଖଣ୍ଡ ତଥା ଗ୍ରାମରେ କ୍ଷୁଦ୍ର ତଥା କୁଟୀର ଶିଳ୍ପର - ଏପରି ଭାବରେ କଳାହାଣ୍ଡି ଉଦ୍ଦେଶ୍ୟରେ ଏକ ଯୋଜନା ପ୍ରସ୍ତୁତ କରିବା ଓଡ଼ିଶାର ସମାଜଶାସ୍ତ୍ରୀ, ସ୍ୱେଚ୍ଛାସେବୀ ସଂସ୍ଥା, ଇଞ୍ଜିନିୟର ଓ ବୈଜ୍ଞାନିକମାନଙ୍କୁ ସମନ୍ୱିତ ଭାବରେ କାମ କରିବାକୁ ହେବ । ଜଳସେଚନ ଓ କ୍ଷୁଦ୍ର ଶିଳ୍ପର ସଂଯୋଗରେ ଗୋଟିଏ ଇଲାକା କିପରି ସମ୍ପନ୍ନ ହୋଇପାରେ ତାହା ଜାଣିବା ପାଇଁ ତାମିଲନାଡୁର 'ଇରୋଡ୍' ଜିଲ୍ଲାର ଅଧ୍ୟୟନ କରିବା ଦରକାର ।

ବଡ଼ ବଡ଼ କାରଖାନା ଓ ବିଶାଳକାୟ ଯୋଜନାର କଳ୍ପନାରେ ଅଭ୍ୟସ୍ତ ଶିକ୍ଷିତ ଶ୍ରେଣୀ କ୍ଷୁଦ୍ର ଜଳସେଚନ, କ୍ଷୁଦ୍ର ଶିଳ୍ପ ବା ବିକେନ୍ଦ୍ରିତ ବିଦ୍ୟୁତ୍ ଯୋଜନାକୁ ହାଲୁକା ଓ ନିକୃଷ୍ଟ ବୋଲି ମନେ କରନ୍ତି - ଏହି ଶିକ୍ଷାରୁ ତାଙ୍କୁ ମୁକ୍ତ କରିବାକୁ ପଡ଼ିବ । 'କ୍ଷୁଦ୍ର' କହିଲେ ହାଲୁକା ନୁହେଁ, ଏହାର ଅର୍ଥ ସ୍ଥାନୀୟ । ସାରା ଦେଶପାଇଁ ଗୋଟିଏ ଲୁଗା ଉତ୍ପାଦନ କାରଖାନା, ସାରା ଦେଶପାଇଁ ଗୋଟିଏ କୁକୁଡ଼ା ଫାର୍ମ, ସାରା ଦେଶପାଇଁ ଗୋଟିଏ ରନ୍ଧାଶାଳର କଳ୍ପନା କରାଯାଉ । ତାହା ଅତ୍ୟନ୍ତ, ଅତ୍ୟନ୍ତ ଅତ୍ୟନ୍ତ ବିଶାଳ ହେବ । ବିଶାଳତା ଯଦି ଉତ୍ପାଦନ ଯୋଗାଣର ଦକ୍ଷତାକୁ ବୁଝାଏ, ତାହାହେଲେ କ'ଣ ଆମ ଶିକ୍ଷିତ ଶ୍ରେଣୀ ଏହି ରନ୍ଧନଶାଳା ଉପରେ ନିର୍ଭର କରିପାରିବେ ? ଯଦି ଗୋଟିଏ ସହରରେ କେବଳ ଗୋଟିଏ ବଡ଼ ଧରଣର ରନ୍ଧାଶାଳ ରହେ, ତାହାହେଲେ କ'ଣ ସେମାନେ ଆନନ୍ଦିତ ହେବେ ? ରନ୍ଧନଶାଳା ଗୋଟିଏ ହେଲେ ଏହି ବୁଦ୍ଧିଜୀବୀ ଶ୍ରେଣୀକୁ ମଧ୍ୟ ଭୋଜନ ମିଳିପାରିବ କି ନାହିଁ ସନ୍ଦେହ ? ତେଣୁ ସେମାନେ ଚାହାନ୍ତି କ୍ଷୁଦ୍ର ରନ୍ଧନଶାଳା । ପ୍ରତି ପରିବାରରେ ଗୋଟିଏ ରନ୍ଧନଶାଳା । ଠିକ୍ ସେହି ନ୍ୟାୟରେ ବିରାଟ ଓ କେନ୍ଦ୍ରିତ କାରଖାନାମାନଙ୍କରେ ଯେଉଁ ଜିନିଷ ଉତ୍ପାଦନ ହୁଏ କିମ୍ବା କର୍ମନିଯୁକ୍ତି ସୃଷ୍ଟି ହୁଏ, ତାହା ହୁଏତ ବୁଦ୍ଧିଜୀବୀ ଶ୍ରେଣୀ ପର୍ଯ୍ୟନ୍ତ ପହଞ୍ଚିଯିବ, କିନ୍ତୁ ସାଧାରଣ ଜନଗଣଙ୍କର ପାଖରେ ପହଞ୍ଚି ପାରିବ ନାହିଁ । ବୁଦ୍ଧିଜୀବୀ ଶ୍ରେଣୀର ଭୋଜନ ବିଷୟକ ସ୍ୱାର୍ଥ ପାଇଁ ଯଦି ରନ୍ଧାଶାଳର ବିକେନ୍ଦ୍ରିକରଣ ଦରକାର, ତାହାହେଲେ ଗରିବ ଜନସାଧାରଣଙ୍କ ପର୍ଯ୍ୟନ୍ତ ଭୋଗବସ୍ତୁ, ଜଳସେଚନ ବା କର୍ମନିଯୁକ୍ତି ପହଞ୍ଚାଇବା ପାଇଁ ଜଳ ଓ ବିଦ୍ୟୁତ୍‌ର ବିକେନ୍ଦ୍ରିକରଣ ସଙ୍ଗେ ସଙ୍ଗେ କ୍ଷୁଦ୍ରଶିଳ୍ପର ପ୍ରସାର ଆବଶ୍ୟକ । ଅର୍ଥାତ୍ କ୍ଷୁଦ୍ର ହିଁ ବ୍ୟାପକ ଓ ବିଶାଳର ଅର୍ଥ ହେଉଛି ସଙ୍କୁଚିତ ।

ରୋଜଗାର ବା କର୍ମନିଯୁକ୍ତି ଦ୍ୱାରା ହିଁ ଲୋକଙ୍କର କ୍ରୟଶକ୍ତି ସୃଷ୍ଟି ହୁଏ । ବିଶାଳ ଆକାରର ଅତ୍ୟାଧୁନିକ ଉତ୍ପାଦନରେ କର୍ମନିଯୁକ୍ତି ସଙ୍କୁଚିତ ହେବାରୁ ଲୋକଙ୍କର

କ୍ରୟଶକ୍ତି ସଙ୍କୁଚିତ ହୁଏ । ଯେଉଁ ଦେଶର କ୍ରୟଶକ୍ତି ସଙ୍କୁଚିତ ହେବ, ସେ ଦେଶର ଉତ୍ପାଦନ ମଧ୍ୟ ଆପେ ଆପେ ସଙ୍କୁଚିତ ହେବ । ତେଣୁ ବଡ଼ କାରଖାନା, ବିଶାଳ ଉତ୍ପାଦନ ଏସବୁ ହେଉଛି ଏକ ଭ୍ରାନ୍ତିମୂଳକ ଧାରଣା । ଭାରତର ଜନସଂଖ୍ୟା ଅନୁପାତରେ ଦେଶର ଖାଦ୍ୟ, ବସ୍ତ୍ର, ବାସଗୃହ ଆଦିର ସାମଗ୍ରୀ ପାଇଁ ଚାହିଦା ଅତି ଅଳ୍ପ ଓ ଉତ୍ପାଦନ ମଧ୍ୟ ତଦନୁରୂପ । କେଉଁ କେଉଁ ବର୍ଷ ଲୁଗାକଳମାନଙ୍କର ଉତ୍ପାଦନ ବଢ଼ିଯାଏ, କିନ୍ତୁ ଚାହିଦା ଅଭାବରୁ ଗୋଦାମରେ ରହିଯାଏ । ପର ବର୍ଷ ଉତ୍ପାଦନ କମାଇବାକୁ ହୁଏ ।

ଏହି ଦୃଷ୍ଟିରୁ ବିଚାର କଲେ ସ୍ପଷ୍ଟ ଜାଣିହେବ ଯେ ଜନସାଧାରଣଙ୍କର ପ୍ରାଥମିକ ଆବଶ୍ୟକତାଗୁଡ଼ିକର ପୂରଣ ପାଇଁ ଦରକାରୀ ଜିନିଷ ଗୁଡ଼ିକର ଉତ୍ପାଦନ ଚାହିଦା ଅଭାବରୁ ସୀମିତ ହୋଇ ଯାଇଛି । ରୋଜଗାର ନାହିଁ, ପେଟରେ ଭୋକ, ଦୋକାନରେ ଚାଉଳ ଅଛି, କିନ୍ତୁ ଚାହିଦା ନାହିଁ । ଉତ୍ପାଦନ ବଢ଼ିବ କିପରି ? ଅତଏବ୍, କର୍ମନିଯୁକ୍ତିକୁ ସଙ୍କୁଚିତ କରୁଥିବା ଅତ୍ୟାଧୁନିକ ପ୍ରଯୁକ୍ତି ବିଦ୍ୟା ଭାରତ ଭଳି ଦେଶର ଉତ୍ପାଦନକୁ ବଢ଼ାଇ ପାରିବ ନାହିଁ । ଉତ୍ପାଦନର ବିକେନ୍ଦ୍ରିତ ପ୍ରଣାଳୀ ହିଁ ସମସ୍ତଙ୍କ ହାତରେ କ୍ରୟଶକ୍ତି ଦେବ ଓ ଚାହିଦା ବଢ଼ାଇ ଉତ୍ପାଦନକୁ ମଧ୍ୟ ବଢ଼ାଇବ । ବିକଳ୍ପ ଅଧ୍ୟୟନର ଦ୍ୱିତୀୟ ଭାଗରେ ଯେଉଁ କେତେକ ବ୍ୟାପକ ସିଦ୍ଧାନ୍ତର ଅବତାରଣା ଆମେ କରିବାକୁ ଚାହୁଁ, ତନ୍ମଧ୍ୟରେ ଏହି ବିକେନ୍ଦ୍ରୀକରଣର ସିଦ୍ଧାନ୍ତ ଅନ୍ୟତମ ।

ଉତ୍ପାଦନର ବିକେନ୍ଦ୍ରୀକରଣ ଓ କ୍ଷୁଦ୍ରଶିଳ୍ପ ନୀତିକୁ ଆମେ ରକ୍ଷଣଶୀଳ ଗାନ୍ଧୀବାଦର ସୀମା ଭିତରେ ବନ୍ଦୀ କରିବାକୁ ଚାହୁଁନା । ଏ ସମ୍ପର୍କରେ ଦୁଇଟି ସର୍ତ୍ତକୁ ନିର୍ଣ୍ଣାୟକ ମାପକାଠି ରୂପେ ଧରାଯିବ: ଏପରି କୌଣସି ପ୍ରଯୁକ୍ତି ବିଦ୍ୟା ଆମେ ଗ୍ରହଣ କରିବାକୁ ପ୍ରସ୍ତୁତ ନୋହୁଁ, ଯାହା ପାଇବା ପାଇଁ ଆନ୍ତର୍ଜାତିକ ମୁଦ୍ରାକୋଷ (ଆଇ.ଏମ୍.ଏଫ୍.) କିମ୍ବା ଗେଟ୍ (ଜି.ଏ.ଟି.ଟି)ର ସର୍ତ୍ତାବଳୀ ମାନବାକୁ ପଡ଼ିବ; ଓ ଯେଉଁସବୁ ପ୍ରଯୁକ୍ତି ବିଦ୍ୟାର ପ୍ରୟୋଗ ଦ୍ୱାରା କର୍ମନିଯୁକ୍ତିର ପରିସର ସଙ୍କୁଚିତ ହେଉଛି, ତାହା ମଧ୍ୟ ଆମ ପାଇଁ ପ୍ରାସଙ୍ଗିକ ନୁହେଁ ।

ଏ ଦୁଇଟି ସର୍ତ୍ତକୁ ମାନିବା ପରେ ଆମେ ସବୁ ରକମର ପ୍ରୟୋଗ କରିବାକୁ ପ୍ରସ୍ତୁତ ହେବୁ । ହସ୍ତତନ୍ତରେ ଖଦୀ ସୂତା ବଦଳରେ ମିଲ୍ ସୂତା ବ୍ୟବହାର କରିବାକୁ ଆମେ ଆପତ୍ତି କରିବୁ ନାହିଁ । ଭାରତୀୟ ବୈଜ୍ଞାନିକମାନେ ଯଦି ନିଜ ବୁଦ୍ଧିରେ ବସ୍, ଟ୍ରକ୍, ବନ୍ଧୁକ ଓ ଟେଲିଫୋନ୍ ନିର୍ମାଣ କରୁଛନ୍ତି, ତାହାହେଲେ ଏଗୁଡ଼ିକର ବ୍ୟବହାର ଯଥା ସ୍ଥାନରେ ରହିବ ।

ବହୁ ବର୍ଷ ଧରି କେନ୍ଦ୍ରିତ ଉତ୍ପାଦନ ପ୍ରଣାଳୀ ଉପରେ ଜୋର୍ ଦେବା ଫଳରେ ଗୋଟିଏ ଆଡ଼େ ଖାଦ୍ୟ, ବସ୍ତ୍ର, ଗୃହ ଇତ୍ୟାଦିର ଉତ୍ପାଦନ ସଙ୍କୁଚିତ ହୋଇଛି ଓ ଅନ୍ୟ ଆଡ଼େ ବିଳାସବ୍ୟସନର ବସ୍ତୁ ବା ଉପଭୋକ୍ତାବାଦୀ ଜିନିଷଗୁଡ଼ିକର ଉତ୍ପାଦନ ବଢ଼ିଛି । କାରଣ କେନ୍ଦ୍ରିତ ଉତ୍ପାଦନ ପ୍ରଣାଳୀରେ କ୍ରୟଶକ୍ତି ମଧ୍ୟ କେନ୍ଦ୍ରିତ ହୋଇଛି । ଧନୀ ତଥା ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀ ପାଖରେ ଥିବା ଅଧିକ ଶକ୍ତିର ଫାଇଦା ଉଠାଇବା ପାଇଁ ବ୍ୟବସାୟୀ ଓ

ପୁଞ୍ଜିପତିମାନେ ମୋଟରଗାଡ଼ି, ଶୀତତାପ ଯନ୍ତ୍ର, ପଞ୍ଚତାରକା ହୋଟେଲ୍ ଓ ବିଭିନ୍ନ ଇଲେକ୍ଟ୍ରୋନିକ୍ କଳକବ୍ଜାର ବଜାର ଖୋଲି ଦେଇଛନ୍ତି । ଅନେକ ଜିନିଷ ବିଦେଶରୁ ମଗା ଯାଉଛି ବା ସେଗୁଡ଼ିକର ଉତ୍ପାଦନ ପାଇଁ ଯନ୍ତ୍ରପାତି ଓ କମ୍ପାନୀ ମଧ୍ୟ ବାହାରୁ ଆସୁଛି । ଏହା ଫଳରେ ବିଦେଶୀ ଋଣଭାର ବଢ଼ିଛି ଓ ଋଣ ଦେଉଥିବା ଦେଶମାନେ ଆମର ଅର୍ଥ ବ୍ୟବସ୍ଥାକୁ ସଞ୍ଚାଳିତ କରୁଛନ୍ତି ।

ଏହି ଅବସ୍ଥାରୁ ମୁକ୍ତି ପାଇବାର ଯେଉଁ ବାଟ ଅଛି, ତାହାକୁ କେତେ ଲୋକ 'ଗାନ୍ଧୀବାଦୀ' ଆଖ୍ୟା ଦେଇପାରନ୍ତି, କେତେ ଲୋକ ଏହାକୁ 'ମାଓବାଦୀ' ମଧ୍ୟ କହି ପାରନ୍ତି । କମ୍ୟୁନିଷ୍ଟ୍ ଚୀନ୍ ପ୍ରାୟ ୪୦ ବର୍ଷ ଧରି ବ୍ୟକ୍ତିଗତ ମୋଟରଗାଡ଼ି, ପଞ୍ଚତାରକା ଜୀବନସ୍ତର, ରଙ୍ଗବେରଙ୍ଗ ସଉକିନିଆ କପଡ଼ା – ଏସବୁକୁ ପୁରାପୁରି ନିଷିଦ୍ଧ କରିଦେଇଥିଲା । ଫଳରେ ବିଳାସବ୍ୟସନର ବସ୍ତୁ କିଣିବା ପାଇଁ କିମ୍ବା ବିକିବା ପାଇଁ ଚୀନ୍‌ର ପଇସାଟିଏ ଖର୍ଚ୍ଚ ହେଲାନାହିଁ । ମନ୍ତ୍ରୀ, ଅଫିସର, ଲେଖକ, କଳାକାର କେହି ମଧ୍ୟ ବିଳାସୀ ଜୀବନ ବିତାଇପାରିଲେ ନାହିଁ । ସବୁ ପଇସା ଚୀନ୍‌ର ମୌଳିକ ଆବଶ୍ୟକତା ଗୁଡ଼ିକର ପୂରଣ ପାଇଁ ଓ ଲୋକଙ୍କର ହାତରେ କ୍ରୟଶକ୍ତି ସୃଷ୍ଟି କରିବା ପାଇଁ ନିୟୋଜିତ ହେଲା । ଏହି ସାହସିକ କାର୍ଯ୍ୟର ସୁଫଳ ଏହା ହେଲା ଯେ ଚୀନ୍‌ର ପିଠି ଉପରେ ପର୍ବତ ପ୍ରମାଣର ବିଦେଶୀ ଋଣର ବୋଝ ନାହିଁ । ଅନେକ ବୁଦ୍ଧିଜୀବୀ କହୁଛନ୍ତି ବା ଲେଖୁଛନ୍ତି ଯେ ଚୀନ୍ ତୀବ୍ର ଗତିରେ ସମୃଦ୍ଧି ଲାଭ କରୁଛି । ସେମାନେ ଯୁକ୍ତି ମଧ୍ୟ କରୁଛନ୍ତି ଯେ ଚୀନ୍ ବିଦେଶୀ ପୁଞ୍ଜି ପାଇଁ ଦ୍ୱାର ଖୋଲି ଦେଇଛି, ତେଣୁ ଆମେ କାହିଁକି ସେପରି କରିବା ନାହିଁ? ଏପରି ଯୁକ୍ତି କରୁଥିବା ବୁଦ୍ଧିଜୀବୀମାନଙ୍କୁ ମହା ମୂର୍ଖ ଶ୍ରେଣୀରେ ପରିଗଣିତ କରିବାକୁ ହେବ । କାରଣ ସେମାନେ ଚୀନ୍‌ର ବିକାଶ ପଦ୍ଧତିର ଅସଲ କଥାଟି ଛାଡ଼ି ଦେଉଛନ୍ତି ଓ ଏକ ଭ୍ରାନ୍ତ ଧାରଣା ସୃଷ୍ଟି କରୁଛନ୍ତି ।

ବିଦେଶୀ ଋଣଭାରର ବିକଳ୍ପ, ଅର୍ଥାତ୍ ଋଣଭାର ବଢ଼ି ଚାଲିଥିବାର ସଙ୍କଟରୁ ରକ୍ଷା ପାଇବାର ଉପାୟ ହେଉଛି ଉପଭୋକ୍ତାବାଦକୁ ଭାରତର ଅର୍ଥ ବ୍ୟବସ୍ଥାରୁ ସମ୍ପୂର୍ଣ୍ଣ ବହିଷ୍କୃତ କରିବା । କେବଳ ପେଟ୍ରୋଲ୍ ଆମଦାନୀ ପାଇଁ ୧୬ ହଜାର କୋଟି ଟଙ୍କାରୁ ଅଧିକ ବିଦେଶୀ ମୁଦ୍ରା ଦରକାର ହେଉଛି । ଏହାକୁ ପୁରାପୁରି ବନ୍ଦ କରିଦେବା ବିକଳ୍ପ ଗଢ଼ିବାର ପ୍ରଥମ ସୂତ୍ର ହେବା ଉଚିତ । ଦେଶ ଭିତରେ ଯେତିକି ପେଟ୍ରୋଲ୍ ଉତ୍ପାଦନ ହେଉଛି ସେତିକିରେ ଆମକୁ ସନ୍ତୁଷ୍ଟ ରହିବାକୁ ପଡ଼ିବ । ମନ୍‌ମୋହନ୍ ସିଂହଙ୍କର ଅର୍ଥନୀତି ଆମର ଆର୍ଥିକ ସଙ୍କଟକୁ କମେଇବା ପରିବର୍ତ୍ତେ ଅଧିକ ଶୋଚନୀୟ କରିଦେଇଛି । ଏହାର ତଥ୍ୟ ଦୂରଦର୍ଶନରୁ ଜାଣିହୁଏ ନାହିଁ । ଖବରକାଗଜର ଆର୍ଥିକ-ସମୀକ୍ଷା ପୃଷ୍ଠାରେ ପ୍ରକାଶିତ ହେଉଥିବାରୁ ସାଧାରଣ ପାଠକ ଏଥିପ୍ରତି ଦୃଷ୍ଟି ଦିଅନ୍ତି ନାହିଁ ।

ଗତ ଜୁନ୍ ମାସର ବିଭିନ୍ନ ଇଂରାଜୀ ଦୈନିକ ଖବରକାଗଜମାନଙ୍କରେ କେନ୍ଦ୍ର ସରକାରଙ୍କର ଅର୍ଥ ମନ୍ତ୍ରଣାଳୟର ତଥ୍ୟ ସମ୍ବଳିତ ଏକ ଗୁରୁତ୍ୱପୂର୍ଣ୍ଣ ସମ୍ବାଦ ପ୍ରକାଶ ପାଇଥିଲା । ୨୬ ଜୁନ୍ ୧୯୯୩ ର 'ଟେଲିଗ୍ରାଫ୍' ଖବରକାଗଜରୁ ଆମେ ଏହି

ହିସାବକୁ ଉଦ୍ଧୃତ କରୁଛୁ । ଅର୍ଥ ମନ୍ତ୍ରଣାଳୟର ସଦ୍ୟ ସର୍ବେକ୍ଷଣରୁ ଜଣାପଡ଼ିଛି ଯେ ତାତ୍କାଳିକ ଭାବରେ ବିଦେଶୀ ମୁଦ୍ରାର ସଙ୍କଟ ନାହିଁ, କାରଣ ପ୍ରାୟ ୧୬୦୦ କୋଟି ଡଲାର ଆମ ପାଖରେ ଗଚ୍ଛିତ ଅଛି । କିନ୍ତୁ ଏହା ଶୀଘ୍ର ସରିଯିବ, କାରଣ ଋଣ ପରିଶୋଧର ବାର୍ଷିକ ଦେୟର ପରିମାଣ ବଢ଼ି ଚାଲିଛି । ବିଦେଶୀ ଋଣସୂତ୍ରରେ ଆମକୁ ୧୯୯୨-୯୩ ରେ ୧୧,୧୩୦ କୋଟି ଟଙ୍କା ମିଳିଛି, କିନ୍ତୁ ଆମ ହାତକୁ କେବଳ ୨,୩୩୯ କୋଟି ଟଙ୍କା ଆସିଛି । ବାକି ସବୁ ଟଙ୍କା ଋଣ ପରିଶୋଧର କିସ୍ତି ବାବଦରେ କଟିଗଲା । ଅର୍ଥାତ ଆମ ନାଁରେ ୧୧ ହଜାର କୋଟି ଟଙ୍କାର ଲେଖା ହେଲା, କିନ୍ତୁ କେବଳ ୨୩ ଶହ କୋଟି ଟଙ୍କା ଆମକୁ ମିଳିଲା । ୮୮ ପ୍ରତିଶତ ଋଣ କେବଳ ପରିଶୋଧ କିସ୍ତି ଶୁଝାଇବାରେ ଚାଲିଯାଉଛି । ୧୯୮୮-୮୯ ରେ ଆମର ବିଦେଶୀ ଋଣ ପରିମାଣ ସମଗ୍ର ରାଷ୍ଟ୍ରୀୟ ଉତ୍ପାଦନର ୧୯.୭ ପ୍ରତିଶତ ଥିଲା । ୧୯୯୧-୯୨ ରେ ତାହା ୨୭.୩ ପ୍ରତିଶତକୁ ବଢ଼ିଯାଇଛି ।

ଏହି ଅବସ୍ଥା ପାଇଁ ଦାୟୀ ହେଉଛନ୍ତି ଭାରତର ଧନୀ ତଥା ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀର ୧୦-୧୨ କୋଟି ଲୋକ ଓ ତାଙ୍କର ଉପଭୋକ୍ତାବାଦ । ତାଙ୍କର ଉପଭୋକ୍ତାବାଦୀ ସଉକ ମେଣ୍ଟାଇବା ପାଇଁ ଦେଶ ଦେବାଳିଆ ହୋଇସାରିଛି ଓ ଏକ ନୂତନ ପରାଧୀନତାର ଫାଶରେ ପଡ଼ିଛି । ତେଣୁ ଉପଭୋକ୍ତାବାଦକୁ ମୂଳପୋଛ କରିବା ପାଇଁ ଆପତ୍ତି କାହିଁକି ହେବ ? ବରଂ ବିକଳ୍ପ ଗଢ଼ିବା ପାଇଁ ଏହାହିଁ ପ୍ରଥମ ମନ୍ତ୍ର ହେବ ।

ପେଟ୍ରୋଲ୍ ଓ ବିଳାସ ସାମଗ୍ରୀର ଆମଦାନୀ ଉପରେ କଟକଣା ଲଗାଇବା ଫଳରେ ବିଦେଶୀ ଋଣର ଭାର ଗୁଣାତ୍ମକ ଭାବରେ ହ୍ରାସ ପାଇବ । କିନ୍ତୁ ସାଙ୍ଗେ ସାଙ୍ଗେ ଦୂର ହୋଇଯିବ ନାହିଁ । ଏହାଦ୍ୱାରା ରାଷ୍ଟ୍ରୀୟ ସଙ୍କଳ୍ପର ଯେଉଁ ଦୃଢ଼ତା ଆସିବ ତାହା ବଳରେ ପୁଞ୍ଜି ନିର୍ମାଣ ଓ ବିଦେଶୀ ମୁଦ୍ରା ସଂଗ୍ରହର ବହୁତ ବାଟ ଫିଟିଯିବ । ବୋଫର୍ସ୍ ମାମଲାରୁ ଏହା ଅନୁମେୟ ଯେ ଭାରତର ଅସାଧୁ ରାଜନେତା ଓ ବ୍ୟବସାୟୀମାନେ ବହୁଦିନରୁ ବିଦେଶୀ ବ୍ୟାଙ୍କ୍‌ଗୁଡ଼ିକରେ ଧନ ସାଇତି ରଖୁଛନ୍ତି । ଏଗୁଡ଼ିକର ମୋଟ ପରିମାଣ ହିସାବ କଲେ ପରାର୍ଦ୍ଧ ଅର୍ବୁଦରେ ଗଣିତ ହେବ । ଗୋଟିଏ ଲୋକପ୍ରିୟ ସଂକଳ୍ପବଦ୍ଧ ସରକାର ଚାହିଁଲେ ଏହାର ଏକ ବଡ଼ ଅଂଶ ଦେଶକୁ ଫେରାଇ ଆଣିପାରିବ । ଅନ୍ତତଃ ସେଇ ବାଟରେ ଚାଲି ଯାଉଥିବା ଭାରତର ବିଦେଶୀ ମୁଦ୍ରା ଭାରତରେ ହିଁ ରହିବ ।

ବିକଳ୍ପର ଏକ ପୂର୍ଣ୍ଣାଙ୍ଗ ବା ଟିକିନିଖି ଚିତ୍ର ଦେବାକୁ ଚେଷ୍ଟା ହୋଇପାରେ । ତାହାର ଅଧ୍ୟୟନ ହେବା ଦରକାର ମଧ୍ୟ । କିନ୍ତୁ କାର୍ଯ୍ୟକାରୀ ହେବାବେଳେ ସେଗୁଡ଼ିକ ନିଶ୍ଚୟ ବଦଳିଯିବ; କେବଳ ମୋଟା ବା ମୌଳିକ ସୂତ୍ରଗୁଡ଼ିକ ରହିବ । କାର୍ଲ୍ ମାର୍କ୍ସ ମଧ୍ୟ ସାମ୍ୟବାଦୀ ବିକଳ୍ପର ଟିକିନିଖି ବିବରଣୀ ଦେଇ ନଥିଲେ । ଦୁଇ ତିନିଟା ସୂତ୍ରକୁ ମୂଳଦୁଆ କରି ସାମ୍ୟବାଦୀ ସରକାରମାନେ ତାଙ୍କର ବିକଳ୍ପ ଗଢ଼ିଲେ । ବ୍ୟକ୍ତିଗତ ସମ୍ପତ୍ତିର ଉଚ୍ଛେଦ, ଶ୍ରେଣୀବିହୀନ ସାମାଜିକ ଢାଞ୍ଚା ଓ ଶିଳ୍ପଗୁଡ଼ିକର ରାଷ୍ଟ୍ରୀୟକରଣ - ଏସବୁ ଥିଲା ସାମ୍ୟବାଦୀ ବିକଳ୍ପର ସୂତ୍ର । ଏହି ସୂତ୍ରକୁ ଧରି ଋଷ୍‌ରେ ସରକାରୀ ଫାର୍ମ୍ ତିଆରି ହେଲା । ଚୀନ୍‌ରେ କମ୍ୟୁନ୍ ଗଢ଼ା ହେଲା ।

ସେହିପରି ଭାବରେ ଉପରେ ଆଲୋଚିତ ହୋଇଥିବା ଚାରୋଟି ସୂତ୍ରକୁ ନିଆଯାଉ । ଜଳସେଚନର ବିକଳ୍ପ, ଶକ୍ତିର ବିକଳ୍ପ, ଉପଭୋକ୍ତାବାଦର ବିକଳ୍ପ ଓ ବିକେନ୍ଦ୍ରୀକରଣ । ଏହି ଚାରୋଟି ସୂତ୍ର ସାହାଯ୍ୟରେ ଏକ ନୂଆ ଅର୍ଥ ବ୍ୟବସ୍ଥା ଗଢ଼ାଯାଇ ପାରିବ । ଏହି ଚାରୋଟି କଥାକୁ କାର୍ଯ୍ୟକାରୀ କରିବା ସମୟରେ ବହୁତ ଅନ୍ୟ କଥା ଆପେ ଆପେ ମନକୁ ଆସିବ । ଶିକ୍ଷା, ସ୍ୱାସ୍ଥ୍ୟ, କୃଷି, ମନୋରଞ୍ଜନ, ପ୍ରତିରକ୍ଷା ଆଦି ସବୁ କ୍ଷେତ୍ରରେ ବିକଳ୍ପ ପ୍ରସ୍ତୁତ କରାଯାଇ ପାରିବ ।

# ଏକ ବିଚାର ବିହୀନ ଶତାବ୍ଦୀ

ବିଂଶ ଶତାବ୍ଦୀର ଅନ୍ତିମ ଦଶକମାନଙ୍କରେ ମଣିଷର ବିଚାର ଦୁର୍ବଳ ହୋଇ ଚାଲିଛି । ଲାଗୁଛି, ମଣିଷ ଜାତିର ମସ୍ତିଷ୍କ ହିଁ ଛୋଟ ଓ ସୀମାବଦ୍ଧ ହୋଇ ଚାଲିଛି । ପରିସ୍ଥିତିଗୁଡ଼ିକୁ ବୁଝିବା, ବୁଝେଇବା ଓ ସମାଧାନ ଖୋଜିବା ଦିଗରେ ପ୍ରଚଳିତ ବିଚାର ତଥା ସମସ୍ତ ଶାସ୍ତ୍ର ମୋଟେ ଯଥେଷ୍ଟ ନୁହେଁ, ସେକଥା ପ୍ରମାଣିତ ହେଉଛି । ଏକବିଂଶ ଶତାବ୍ଦୀ ଆରମ୍ଭ ହେବା ପୂର୍ବରୁ ଏଇ ସମସ୍ୟାକୁ ସ୍ପଷ୍ଟ ରୂପେ ବ୍ୟାଖ୍ୟା କରିଦେବାକୁ ଚାହୁଁ, ଯେପରିକି ମଣିଷର ବିଚାର ଶକ୍ତିକୁ ପୁନଃଜାଗ୍ରତ କରିବା ପାଇଁ ସବୁ ଦିଗରୁ ପ୍ରୟାସ କରାଯାଇ ପାରିବ ।

ଏଥିରେ କୌଣସି ସନ୍ଦେହ ନାହିଁ ଯେ ଅଧ୍ୟୟନ, ମନନ ଓ ଚିନ୍ତନ ଆଦି କର୍ମ ଆଗ ଅପେକ୍ଷା ଅଧିକ ମାତ୍ରାରେ ହେଉଛି । ଗ୍ରନ୍ଥ ରଚନା ଓ ଶାସ୍ତ୍ରୀୟ ଅନୁସନ୍ଧାନ ପୂର୍ବ ଅପେକ୍ଷା ଅଧିକ ମାତ୍ରାରେ ହେଉଛି । କୁହାଯାଉଛି ଯେ, ଚିନ୍ତନ-ମନନରେ ସାହାଯ୍ୟ କରିବାରେ ଆଧୁନିକ ପ୍ରଯୁକ୍ତି ବିଦ୍ୟା (ଟେକ୍ନୋଲଜି) ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଉଛି । ଏଇ ଦାବୀ ଆମକୁ ଆଶ୍ୱସ୍ତ କରିପାରୁନି । କ'ଣ ଏହାର ପରିଣାମ ସ୍ୱରୂପ ମନୁଷ୍ୟ ନିଜ ପରିସ୍ଥିତିର ମୁକାବିଲା ପାଇଁ ନିଜକୁ ଅଧିକ ସମର୍ଥ ମନେକରିବ ?

ବିଚାର କୌଣସି ଅଳିଆ ନୁହେଁ, ଯାହା ଗଦା ହେଇ ଚାଲିବ । ବିଚାର କୌଣସି ପ୍ରଦର୍ଶନୀର ବିଷୟବସ୍ତୁ ନୁହେଁ ଯେ, ଆମେ ତାକୁ ଏତେ ଲମ୍ବା, ମୋଟା କି ବିସ୍ମୟକାରୀ ବୋଲି କହିପାରିବା । ବିଚାର ଏମିତି ବି ନୁହେଁ ଯାହା ସମ୍ଭ୍ରାନ୍ତ ଲୋକେ ଅଧିକ ମାତ୍ରାରେ କିଣି ଉପଭୋଗ କରିବେ । ବିଚାରର ଉତ୍ପତ୍ତି ସେବେ ହେଲା ଯେବେ ଗୋଟିଏ ପ୍ରଜାତି ହିସାବରେ ମଣିଷକୁ ଲାଗିଲା ଯେ ସିଏ ନାନା ବିପତ୍ତି ମଧ୍ୟରେ ଅଛି ଆଉ ଏଇ ବିପତ୍ତିଗୁଡ଼ିକୁ ବୁଝି ସମାଧାନ ନ କରି ପାରିଲେ ସେ ବଞ୍ଚି ପାରିବ ନାହିଁ । ଯେବେ କେତେଗୁଡ଼ିଏ ବିଷୟ ଉପରେ ମଣିଷର ଧାରଣା ପରିପକ୍ୱ ହୋଇଯାଏ, ତେବେ ସେଇଟା ଶାସ୍ତ୍ରର ମାନ୍ୟତା ପାଇଥାଏ । ବହୁଗୁଡ଼ିଏ କଥା ବିବାଦ ଓ ଅନୁସନ୍ଧାନର ପ୍ରକ୍ରିୟା ଭିତର ଦେଇ ଗତି କରିଥାଏ । ଶେଷରେ ଯାହା ରହସ୍ୟମୟ ଓ ଅନ୍ଧାରିଆ ଜଣାପଡ଼େ, ତାକୁ ବି କଳ୍ପନା ଆଉ ମିଥ୍ର ସାହାଯ୍ୟ ନେଇ ଏକ ବୈଚାରିକ ଛାଞ୍ଚ ମଧ୍ୟରେ ରଖାଯାଏ ।

ଏହି ତିନି ପର୍ଯ୍ୟାୟର ପାରସ୍ପରିକ ସମ୍ବନ୍ଧରୁ ମାନବୀୟ ବିଚାରର ପୃଥିବୀ ସୃଷ୍ଟି ହୋଇଥାଏ । ପ୍ରତି ମନୁଷ୍ୟ କିମ୍ବା ମନୁଷ୍ୟ ସମୁଦାୟର ଗୋଟିଏ ବିଚାର ପୃଥିବୀ ଥାଏ । ଏଇ ବିଚାର ପୃଥିବୀକୁ ଯଦି ବାଦ ଦେବା ତେବେ ମଣିଷର ଅସ୍ତିତ୍ୱ ମଧ୍ୟ ରହିବ ନାହିଁ । ଏଇ ବିଚାର ପୃଥିବୀ ମଧ୍ୟରେ ରହି ମଣିଷ ବିଶ୍ୱାସ କରେ ଯେ, ସେ ବଞ୍ଚିରହିବ, ବିପରୀତ ପରିସ୍ଥିତିଗୁଡ଼ିକରୁ ମୁକୁଳି ଯାଇପାରିବ ତଥା ଏକ ସୁନ୍ଦର ଭବିଷ୍ୟତ ଗଢ଼ିପାରିବ । ଏଇ ବିଚାର ପୃଥିବୀ ସାମ୍ପ୍ରତିକ କାଳରେ ଏକ ଶୂନ୍ୟତାର ସାମ୍ନା କରୁଛି । ଯେଉଁ ସଫଳତା ଗୁଡ଼ିକ ପାଇବା ପାଇଁ ମଣିଷ ଯୁଗ ଯୁଗରୁ ଚେଷ୍ଟା କରିଆସୁଥିଲା, ଯେଉଁ ସଫଳତା ଗୁଡ଼ିକର ପ୍ରାପ୍ତି ଆମେ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଆସନ୍ନ ମନେ କରିଥିଲୁ, ତାହା ଏବେ ସୁଦୂର ପରାହତ ତଥା ଅସମ୍ଭବ ମନେହେଉଛି ।

ଗୋଟିଏ ପ୍ରଜାତି ରୂପରେ ମନୁଷ୍ୟର ସଫଳତା କ'ଣ ହୋଇପାରେ ? ଏ ସମ୍ବନ୍ଧରେ ଦୁଇଟି କଥା କୁହାଯାଇପାରେ । ପ୍ରଥମେ ବ୍ରହ୍ମାଣ୍ଡ ଓ ମଣିଷ ମଧ୍ୟରେ ଏମିତି ଏକ ସମ୍ପର୍କ ସ୍ଥାପିତ ହେଉ, ଯେଉଁଥିରେ କି ପ୍ରତିଟି ମଣିଷ ନିଜକୁ ଏଇ ସୃଷ୍ଟି ପ୍ରକ୍ରିୟାର ଅବିଚ୍ଛେଦ୍ୟ ଅଂଶ ବୋଲି ମନେ କରିବ । ସୃଷ୍ଟି ପ୍ରକ୍ରିୟାର ଅବିଚ୍ଛେଦ୍ୟ ଅଂଶ ରୂପେ ନିଜକୁ ବିଚାରିବା ହେଉଛି ସର୍ବୋଚ୍ଚ ଲକ୍ଷ୍ୟ । ଆଉ ସର୍ବନିମ୍ନ ଲକ୍ଷ୍ୟ ହେଲା ପ୍ରତ୍ୟେକ ମନୁଷ୍ୟକୁ ସ୍ୱାଭିମାନ ସହ ଗୋଟିଏ ସୁସ୍ଥ ଜୀବନ ବଞ୍ଚିବାର ପର୍ଯ୍ୟାପ୍ତ ସୁବିଧା ପ୍ରାପ୍ତ ହେବା । ଯେଉଁଠି ଉଭୟ ସର୍ବନିମ୍ନ ଓ ସର୍ବୋଚ୍ଚ ଲକ୍ଷ୍ୟକୁ ପ୍ରାପ୍ତି ପାଇଁ ପ୍ରଚେଷ୍ଟା କରାଯାଏ, ସେଇଠି ଗଢ଼ି ଉଠେ ସଭ୍ୟତା । ଆଜିପର୍ଯ୍ୟନ୍ତ ସୃଷ୍ଟ ଇତିହାସକୁ ଆମେ ଏଇଥିପାଇଁ ଧିକ୍କାରିପାରୁ ଯେ, ଏପର୍ଯ୍ୟନ୍ତ ଉପରଲିଖିତ ନିମ୍ନତମ ଲକ୍ଷ୍ୟକୁ ବି ମାନବ ସମାଜ ପାଇପାରି ନାହିଁ । ଏକବିଂଶ ଶତାବ୍ଦୀର ଆରମ୍ଭ କାଳରେ ଆମେ ଦେଖୁଛୁ ଯେ, ନିମ୍ନତମ ତଥା ସର୍ବୋଚ୍ଚ ଲକ୍ଷ୍ୟ ଉଭୟ ସ୍ତରରେ ବିଚାରର ଘୋର ଅଭାବ ରହିଛି । ଆଜି ଲାଗୁଛି ଯେ କୌଣସି ପ୍ରକାରର ମାନବୀୟ ସମସ୍ୟାର ସମାଧାନ ପାଇଁ ମନୁଷ୍ୟ ପାଖରେ ଯଥେଷ୍ଟ ବୁଦ୍ଧି ନାହିଁ ।

ପଚାଶ ବର୍ଷ ପୂର୍ବରୁ ସ୍ଥିତି ଭଲ ଥିଲା । ବିଚାର-ପୃଥିବୀ ମଧ୍ୟରେ ବହୁ ସକାରାତ୍ମକ ତତ୍ତ୍ୱ ରହିଥିଲା, ଯାହାକୁ ନେଇ ମନୁଷ୍ୟ ନିଜର ସର୍ବନିମ୍ନ ଲକ୍ଷ୍ୟ ପାଇଯିବ ବୋଲି ମନେ ହେଉଥିଲା । ଦାରିଦ୍ର୍ୟ, ରୋଗ ଓ ଅପରାଧ ମୁକ୍ତ ଏକ ବିଶ୍ୱ ସମାଜର ସମ୍ଭାବନା, ସେ ସମୟର ବିଚାର-ପୃଥବୀରେ ଦେଖିବାକୁ ମିଳୁଥିଲା । ବ୍ୟାପକ ଦାରିଦ୍ର୍ୟ, ରୋଗ ଓ ଅପରାଧର ଉପସ୍ଥିତି ଯୋଗୁଁ ମନୁଷ୍ୟର ସବୁଠୁ ଜରୁରୀ କାମ ହେଲା ନିଜକୁ ଜୀବିତ ଓ ସୁରକ୍ଷିତ ରଖିବା । କେବଳ ବଞ୍ଚି ରହିବା ପାଇଁ ଜୀବନ-ସଂଗ୍ରାମ କରି ଚଳିବା ଏକ ଅତ୍ୟନ୍ତ ନିକୃଷ୍ଟ ସ୍ଥିତି  ଧନୀ ଦେଶ କିମ୍ବା ଧନୀ ବର୍ଗର ସଦସ୍ୟ ହେବାରେ ଏଇ ସ୍ଥିତିରେ କୌଣସି ଫରକ୍ ପଡ଼େ ନାହିଁ । କାରଣ ଆଜିର ଏଇ ବିଷମତାପୂର୍ଣ୍ଣ ସମାଜରେ ଭାଗେ ଲୋକ ପେଟ ଭରିବା ପାଇଁ ଅହରହ ଜୀବନ-ସଂଗ୍ରାମ କରୁଥିବା ବେଳେ ଅନ୍ୟ ବର୍ଗଟିର ଜୀବନ କେବଳ ପେଟୁ ହୋଇ ବଞ୍ଚି ରହିବା ପାଇଁ । ଏଇ ନିକୃଷ୍ଟ ଅବସ୍ଥାରୁ ମଣିଷ ଜାତିକୁ ଉଚ୍ଚତର ଜୀବନ ଆଡ଼କୁ ନେଇଯିବା ଦିଗରେ ଆମ ସମୟର ସମସ୍ତ ଗ୍ରନ୍ଥ ନିଜର ଅସାମର୍ଥ୍ୟ ପ୍ରକାଶ କରିଛନ୍ତି ।

ବିଶ୍ୱବିଦ୍ୟାଳୟ, ସାମାଜିକ କାର୍ଯ୍ୟ, ରାଜନୀତି ଅବା ଗଣମାଧ୍ୟମ କ୍ଷେତ୍ରରେ ଥିବା ବୁଦ୍ଧିଜୀବୀଙ୍କୁ ନିମ୍ନଲିଖିତ ପ୍ରଶ୍ନ କରାଯାଉ :

ପଞ୍ଚାନବେ ଶତାଂଶ ମନୁଷ୍ୟଙ୍କୁ ସୁଖ-ଶାନ୍ତି ଦେଇପାରୁଥିବା ଗୋଟିଏ ବିଶ୍ୱ ସମାଜର ସମ୍ଭାବନା କ'ଣ ଆଗାମୀ ପଚାଶ କିମ୍ବା ଶହେ ବର୍ଷରେ ଆପଣ ଦେଖିପାରୁଛନ୍ତି ? ସେ ଦିଗରେ କୌଣସି ବିଶ୍ୱସନୀୟ ସମାଧାନର ପନ୍ଥା ଥିବା ଆପଣ ଜାଣିଛନ୍ତି କି ?

ଏବେଠାରୁ ୨୦-୩୦ ବର୍ଷ ପରର ବର୍ଦ୍ଧିତ ଜନସଂଖ୍ୟାଙ୍କୁ ପର୍ଯ୍ୟାପ୍ତ ଖାଦ୍ୟ ଯୋଗାଇ ଦେବାପାଇଁ କୌଣସି ଯୋଜନା ଯଦି ଆମ ଅମଳରେ ନାହିଁ, ତେବେ ବି ବୁଝାମଣା ସ୍ତରରେ ପଛେ ହେଉ, ଏପରି କିଛି କଥା ଚର୍ଚ୍ଚାରେ, ଆଲୋଚନାରେ ଆସୁଛି କି ?

ସମ୍ପ୍ରତି ଆମର ଶାସ୍ତ୍ର ବା ବିଚାରଧାରା ଅନୁଯାୟୀ ବେକାରୀ, ଗୃହହୀନତା, ସାମୂହିକ ବ୍ୟାଧି, ଅଶିକ୍ଷା, ଗାଁ ଗୁଡ଼ିକର ଅନୁନ୍ନତ ଦୁରବସ୍ଥା ଆଦିକୁ ଆସନ୍ତା କେତେ ଦଶକ ମଧ୍ୟରେ ସମାଧାନ କରିବାର ସମ୍ଭାବନା କିଛି ଦିଶୁଛି କି ?

ଗତ ଦଶ ବର୍ଷ ଭିତରେ ଆପଣ କ'ଣ ଏମିତି କୌଣସି ବହି ପଢ଼ିଛନ୍ତି, ଯେଉଁଥିରୁ ଜଣାପଡ଼େ ଯେ ବିଭିନ୍ନ ଦେଶର ଗଣତନ୍ତ୍ର ସାମ୍ନାରେ କେଉଁ ଆହ୍ୱାନ ସବୁ ରହିଛି ତଥା ଜନତନ୍ତ୍ରକୁ ଅଧିକ ସାର୍ଥକ ଓ କାର୍ଯ୍ୟଶୀଳ କରିବା ପାଇଁ କ'ଣ ସବୁ ପଦକ୍ଷେପ ନେବାକୁ ପଡ଼ିବ ? ପଦକ୍ଷେପଗୁଡ଼ିକ ବିଶ୍ୱସନୀୟ ହେବା ଦରକାର ।

ଆଜିର ସମାଜ ଶାସ୍ତ୍ର ବା ଯନ୍ତ୍ର ବିଜ୍ଞାନ ଏମିତି କିଛି ଅବଦାନ ଦେଇପାରିବ କି, ଯାହା ଫଳରେ ଭାରତ ବା ଆଫ୍ରିକାର ସାଧାରଣ ନାଗରିକଟିଏ ଆଶ୍ୱସ୍ତ ହୋଇ ପାରିବ ଯେ, ତା ପାଇଁ ଗୋଟିଏ ଭଲ ସମୟ ଆସୁଛି ?

ଏହି ପ୍ରଶ୍ନଗୁଡ଼ିକର ଉତ୍ତର ନକାରାତ୍ମକ ଓ ଘୋର ସନ୍ଦେହଜନକ ହେବ । ଏହାର ଅର୍ଥ ହେଲା ମନୁଷ୍ୟଙ୍କୁ ସୁଖଶାନ୍ତି ମିଳିବା ଓ ସ୍ୱାବଲମ୍ବୀ ହେବା ଦିଗରେ କୌଣସି ଶାସ୍ତ୍ର ପ୍ରଭାବଶାଳୀ ଢଙ୍ଗରେ କାମ କରିପାରୁନାହିଁ । ଇତିହାସ ଶାସ୍ତ୍ର କୁ ବିଚାରକୁ ନେବା । ଅଣୟୁରୋପୀୟ ଐତିହାସିକମାନେ ଏଯାଏଁ କୌଣସି ବିଶ୍ୱ ଇତିହାସ ଲେଖି ନାହାନ୍ତି, ଯାହାର ଦୃଷ୍ଟିକୋଣ ଅଣୟୁରୋପୀୟ । ବିଶ୍ୱ ଇତିହାସ ଲେଖନ ସମ୍ପର୍କରେ ଏହା ସ୍ପଷ୍ଟ ହୋଇସାରିଛି ଯେ, ଏହା ୟୁରୋପୀୟ ଐତିହାସିକଙ୍କ ଦ୍ୱାରା ଲିଖିତ, ୟୁରୋପୀୟ ଚେତନାର ଅନୁରୂପ ଓ ୟୁରୋପ୍ କୈନ୍ଦ୍ରିକ ।

ଏହା ସ୍ୱାଭାବିକ ଯେ, ଯଦି ଏସିଆର ଐତିହାସିକ ଲେଖିବେ, ତେବେ ବି ତାହା ପୂର୍ଣ୍ଣରୂପେ ନିରପେକ୍ଷ ହେବନାହିଁ । କିନ୍ତୁ ଏଇ ଦୁଇଟି ଇତିହାସର ତୁଳନାତ୍ମକ ସମୀକ୍ଷା କରି ଏକ ନିରପେକ୍ଷ ଇତିହାସ ଶାସ୍ତ୍ରର ଉଦୟ ସମ୍ଭବ । ବିଡ଼ମ୍ବନା ଏହି ଯେ, ଏସିଆ, ଆଫ୍ରିକା ଓ ଦକ୍ଷିଣ ଆମେରିକୀୟ ଚେତନା ଦ୍ୱାରା ପ୍ରଭାବିତ ବିଶ୍ୱ ଇତିହାସ ଲେଖା ହେଉ ନାହିଁ । ୟୁରୋପ୍-କେନ୍ଦ୍ରିତ ଇତିହାସରେ ଯାହା ବି ସୁଧାର, ସଂଶୋଧନ ହେଉଛି ସେତକ ବି ପଶ୍ଚିମା ବିଦ୍ୱାନଙ୍କ ଦ୍ୱାରା ହିଁ ହେଉଛି ।

ସୋଭିଏତ୍ ସଙ୍ଘର ପତନ ଆମ ଯୁଗର ଏକ ମହତ୍ୱପୂର୍ଣ୍ଣ ଓ ନିର୍ଣ୍ଣୟାତ୍ମକ ଘଟଣା । ଯେମିତି ମାର୍କିନ୍ ସାମ୍ରାଜ୍ୟ ଅଛି ସେମିତି ହିଁ ଥିଲା ସୋଭିଏତ୍ ସାମ୍ରାଜ୍ୟ - ଦୈତକାୟ ଓ ସ୍ଥାୟୀ ମନେ ହେଉଥିବା ସାମ୍ରାଜ୍ୟରେ କିଛି କଥା ଆମେରିକା ଠାରୁ ଭିନ୍ନ ଥିଲା । କିନ୍ତୁ ତାସ୍ ଘର ପରି ହଠାତ୍ ଭାଙ୍ଗିଗଲା ଏହି ସାମ୍ରାଜ୍ୟ । ଏହାର ପତନର ଇତିହାସ ଓ କାରଣଗୁଡ଼ିକ ବିଷୟରେ ଗୋଟିଏ ହେଲେ ଚର୍ଚ୍ଚିତ ବହି ଲେଖା ଯାଇ ନାହିଁ । ଗୋଟିଏ ହେଲେ ବି କଥା ବିଶ୍ୱସନୀୟ ଢଙ୍ଗରେ କୁହା ଯାଇ ପାରି ନାହିଁ । ହୋଇପାରେ ଠିକ୍ ଏମିତି କେବେ ଆମେରିକୀୟ ବ୍ୟବସ୍ଥା ବି ଭୁଶୁଡ଼ି ଯାଇପାରେ ଓ ଆମେ ଜାଣିପାରିବା ନାହିଁ ଯେ ଏହା କେମିତି ହେଲା । ସତରେ କେତେ ଦରିଦ୍ର ହେଇଗଲାଣି ଶାସ୍ତ୍ର । ତିନି ଚାରି ବର୍ଷ ଆଗରୁ ମଧ୍ୟ ଆମେ ଜାଣି ପାରିଲୁ ନାହିଁ ଯେ, ସୋଭିଏତ୍ ଋଷ୍‌ର ଆୟୁଷ ଏମିତି ସରି ସରି ଆସୁଛି । ତିନି ଚାରି ମାସ ଆଗରୁ ଆମେ ଜାଣିପାରିଲୁ ନାହିଁ ଯେ,ଏସିଆର ବାଘମାନେ କେବେ ଏତେ ଦୁର୍ବଳ, ନିପାରିଲା ହେଇଗଲେ । ଏ ପ୍ରକାର ହିସାବ କରି ବସିଲେ ଗୋଟିଏ ଲମ୍ୱା ସୂଚୀ ହୋଇଯିବ - ତାହା ଦର୍ଶାଇବ ଯେ, ସାମ୍ପ୍ରତିକ କାଳର ଶାସ୍ତ୍ର ନିଜର ପ୍ରାଥମିକ ଦାୟିତ୍ୱ ନିର୍ବାହ କରିପାରୁ ନାହିଁ ।

ଶାସ୍ତ୍ରଗୁଡ଼ିକ କାହିଁକି ଏମିତି କାଙ୍ଗାଳ ହୋଇଗଲେ ? ଏହାର ଉତ୍ତର ମଧ୍ୟ ପ୍ରଚଳିତ ଶାସ୍ତ୍ରରେ ମିଳିବ ନାହିଁ । ଶାସ୍ତ୍ର ନିର୍ମାଣକୁ ନେଇ ଦୁଇଟା ଧାରା ପ୍ରବାହିତ ବା ପ୍ରଚଳିତ । ଗୋଟିଏ ବିଶିଷ୍ଟ ବର୍ଗର ପ୍ରଜ୍ଞାରୁ ଶାସ୍ତ୍ରର ଉତ୍ପତ୍ତି । ଦ୍ୱିତୀୟରେ ଶୋଷିତ ବର୍ଗ ଭିତରୁ ଯେଉଁ ଉଦୀୟମାନ ସମୂହ ଥାଏ, ସେ ନିଜ ବର୍ଗଙ୍କ ହିତ ଅନୁଯାୟୀ ନୂତନ ବିଚାରକୁ ଉତ୍ପନ୍ନ କରେ । ଦୁଇଟିଯାକ ବ୍ୟାଖ୍ୟା ଆଂଶିକ ରୂପେ ସତ୍ୟ । ୧୯୫୦ ପୂର୍ବର ବିଚାର ନିର୍ମାଣ ମୁଖ୍ୟତଃ ୟୁରୋପୀୟ ଲୋକଙ୍କ ଦ୍ୱାରା ହିଁ ହୋଇ ପାରି ଥାଆନ୍ତା, କାହିଁକି ନା, ସେମାନେ ହିଁ ରାଜନୈତିକ ରୂପରେ ସ୍ୱାୟତ୍ତ, ସାର୍ବଭୌମ ରାଷ୍ଟ୍ର ଥିଲେ । ତାଙ୍କର ପ୍ରଜ୍ଞା ୟୁରୋପ୍-କୈନ୍ଦ୍ରିକ ଥିଲା ଓ ତାହା ସତ୍ତ୍ୱେ ତହିଁରେ ଗାମ୍ଭୀର୍ଯ୍ୟ ଓ ଗଭୀରତା ଥିଲା ।

ଆଧୁନିକ ପଶ୍ଚିମୀ ବିଚାରର ଶୁଭାରମ୍ଭ ୟୁରୋପୀୟ ନବଜାଗରଣରୁ ହେଲା । ଖ୍ରୀଷ୍ଟୀଆନ୍ ଧର୍ମ, ଗ୍ରୀକ୍-ରୋମାନ୍ ସଭ୍ୟତା, ଆରବୀୟ ଜ୍ଞାନ ଆଦିର ମହାମନ୍ଥନ ଏହାରି ପଛରେ ଥିଲା । କିଛିଟା ମାନବୀୟ ଲକ୍ଷ୍ୟକୁ ଶାଶ୍ୱତ ମୂଲ୍ୟ ଦେଇ ଏଇ ବିଚାର ନିର୍ମାଣର ଆରମ୍ଭ ହୋଇଥିଲା । ସେଥିପାଇଁ ପଶ୍ଚିମ-କେନ୍ଦ୍ରିତ ହୋଇ ମଧ୍ୟ ଉଚ୍ଚକୋଟୀର ଶାସ୍ତ୍ର ଜନ୍ମ ହୋଇ ପାରି ଥିଲା । ତହିଁରେ ବହୁଗୁଡ଼ାଏ ବିଚାର ଅଛି, ଯାହା ଉଦାର ଓ ଭବିଷ୍ୟତ ନିର୍ମାଣରେ ସହାୟକ ହୋଇ ପାରିବ ।

କିନ୍ତୁ ୧୯୪୫-୫୦ ପରେ ପଶ୍ଚିମ ମଧ୍ୟରେ ହିଁ ମୁଖ୍ୟକେନ୍ଦ୍ର ୟୁରୋପ୍‌ରୁ ଆମେରିକାକୁ ସ୍ଥାନାନ୍ତରିତ ହେଲା । ଯେବେଠୁଁ ଆମେରିକା ଶାସ୍ତ୍ର ଓ ବିଚାର ନିର୍ମାଣରେ ନିୟାମକ ହୋଇଛି, ପଶ୍ଚିମର ବିଚାର-ପୃଥିବୀ ୟୁରୋପୀୟ ନବଜାଗରଣର କେନ୍ଦ୍ରବିନ୍ଦୁରୁ ଅଲଗା ହୋଇଯାଉଛି । ପଶ୍ଚିମର ବିଚାରରେ ଆଗର ଔଦ୍ଧତ୍ୟ ତ ରହିଛି, କିନ୍ତୁ ଏହାର ଗାମ୍ଭୀର୍ଯ୍ୟ ଲୋପ ପାଇଗଲାଣି । ଏ ସମ୍ବନ୍ଧରେ ଆଉ କେବେ ଚର୍ଚ୍ଚା କରିବା । କିନ୍ତୁ ଏହି ସତ୍ୟ ପ୍ରତି ଧ୍ୟାନ ଦେବା ଦରକାର ଯେ, ବିଭିନ୍ନ ଯୁଗରେ ଯେବେ ବି ମାନବୀୟ ବିଚାରର ନବୀକରଣ ହେଉଛି ଜ୍ଞାନ-କେନ୍ଦ୍ରଗୁଡ଼ିକର ଭୌଗୋଳିକ ସ୍ଥାନାନ୍ତରୀକରଣ

ମଧ୍ୟ ହେଉଛି । ନୂତନ ଅର୍ଥାତ୍ ଅପେକ୍ଷାକୃତ ପଛୁଆ ଭାଷା ମାଧ୍ୟମରେ ହିଁ ଜ୍ଞାନର ପରବର୍ତ୍ତୀ ସମୟ ସମୃଦ୍ଧ ହୋଇଛି । ମାଣ୍ଡାରିନ୍, ସଂସ୍କୃତ, ଗ୍ରୀକ୍, ଲାଟିନ୍, ଇଂରାଜୀ, ଆମେରିକୀୟ ଇଂରାଜୀ ହେଉଛି ଶାସ୍ତ୍ର ନିର୍ମାଣର ଅଲଗା ଅଲଗା ଯୁଗର ତଥା ସ୍ଥାନ ଓ ଭାଷାର ନାଁ ।

୧୯୫୦ରେ ଜ୍ଞାନକେନ୍ଦ୍ରର ଯେଉଁ ମହାଦ୍ୱୀପୀୟ ସ୍ଥାନାନ୍ତର ଘଟିଲା, ସେଥିରେ ସେଦିନମାନଙ୍କରେ ଏକ ଜବରଦସ୍ତ ବିକଳ୍ପର ସମ୍ଭାବନା ଥିଲା । ୧୯୪୫ରେ ଆମେରିକା ପଶ୍ଚିମର ଚକ୍ରବର୍ତ୍ତୀ ରୂପେ ଘୋଷିତ ହେଲା । ସେଇ କାଳଖଣ୍ଡରେ ଏସିଆ, ଆଫ୍ରିକା ଆଉ ଲାଟିନ୍ ଆମେରିକାର ପ୍ରାୟ ଶହେଟି ଦେଶ ରାଜନୈତିକ ସ୍ୱାଧୀନତା ପାଇଥିଲେ । ମନୁଷ୍ୟର ଗାରିମା ବଢ଼େଇବା ଦିଗରେ ଯେଉଁ ଜନଆନ୍ଦୋଳନରୁ ଏତେବଡ଼ ମାନବତାର ରାଜନୈତିକ ପୁନଃରୁତ୍ଥାନ ହେଲା, ସେ ଭିତରେ ଏକ ବୌଦ୍ଧିକ ପୁନରୁତ୍ଥାନର ସମ୍ଭାବନା ଥିଲା । ସେହିସବୁ ରାଷ୍ଟ୍ରୀୟ ଆନ୍ଦୋଳନରେ ମାନବ କଲ୍ୟାଣର ଆକାଂକ୍ଷା ଥିଲା । କିନ୍ତୁ ଅନେକଙ୍କ ପାଇଁ ଏହା ସ୍ପଷ୍ଟ ନଥିଲା ଯେ, ଏହି ଆକାଂକ୍ଷାଗୁଡ଼ିକର ପୂର୍ତ୍ତି କେବଳ ପଶ୍ଚିମି ଶାସ୍ତ୍ରକୁ ଆଧାର କରି ସମ୍ଭବ ହେବ ନାହିଁ । ଉପରଲିଖିତ ତିନିଟି ମହାଦ୍ୱୀପର ବିଶିଷ୍ଟ ବର୍ଗ ବିଚାର କଲା ଯେ, ପଶ୍ଚିମର ପ୍ରସ୍ତୁତ ଶାସ୍ତ୍ର ଓ ଜ୍ଞାନ ବଳରେ ହିଁ ସମ୍ପୂର୍ଣ୍ଣ ମାନବ ଜାତିର କଲ୍ୟାଣ ସମ୍ଭବ; ଏଣୁ ନୂତନ ପ୍ରଜ୍ଞାର ସୃଷ୍ଟି ପାଇଁ କଷ୍ଟପୂର୍ଣ୍ଣ ଦାୟିତ୍ୱ ନେବାର ଆବଶ୍ୟକତା ନାହିଁ । ଅଣଶ୍ୱେତ ବୁଦ୍ଧିଜୀବୀମାନଙ୍କର ଏହି ଐତିହାସିକ ପଳାୟନକୁ ପଶ୍ଚିମର ବୈଚାରିକ ବର୍ଚସ୍ୱ ଆମେରିକା ଦ୍ୱାରା ପୁଣି ସ୍ଥାପିତ ହେଲା । ପାଶ୍ଚାତ୍ୟ ଶାସ୍ତ୍ରର ଏହି ଆମେରିକୀୟ ସଂସ୍କରଣ ଆଗ ଅପେକ୍ଷା ଅଧିକ ଅନୁପଯୋଗୀ । ଏବେ ମନୁଷ୍ୟ ଜାତି ଗୋଟିଏ ଶାସ୍ତ୍ର ବିହୀନ, ବିଚାର ବିହୀନ ଯୁଗ ଆଡ଼କୁ ମୁହାଁଇଛି । ଏବେଠୁ ଏହି କଥାକୁ ସେ ଭଲକରି ବୁଝିନେଉ, ଆଗାମୀ କୋଡ଼ିଏ ତିରିଶି ବର୍ଷରେ ଏଥିରୁ ନିଜକୁ ସେ ଯେପରି ମୁକୁଳେଇ ନେଇ ପାରିବ ।

ଡିସେମ୍ବର, ୧୯୯୮

# ବିଚାରଧାରାର ପତନ ଓ ଅଭ୍ୟୁଦୟ

ଆଧୁନିକ ମନୁଷ୍ୟର କାଳବୋଧର ଏକ ଉଦାହରଣ ଗତ ଦଶନ୍ଧି ଭିତରେ ଆମର ଅନୁଭବକୁ ଆସିଲା । ମନୁଷ୍ୟ ଜାତିର ଆଗାମୀ ସମୟକୁ କିଛି ଲୋକ, କେତେକ ରାଜନେତା ଓ ବୁଦ୍ଧିଜୀବୀମାନେ ଏକବିଂଶ ଶତାବ୍ଦୀ ରୂପେ ଚିତ୍ରଣ କରିବା ଆରମ୍ଭ କରିଥିଲେ । ପରବର୍ତ୍ତୀ ସମୟରେ ଶତାବ୍ଦୀ ସ୍ଥାନ ସହସ୍ରାବ୍ଦୀ ନେଇଗଲା । ଦୁନିଆର ଶାସକବର୍ଗମାନେ ଓ ତାଙ୍କର ବୁଦ୍ଧିଜୀବୀମାନେ ସହସ୍ରାବ୍ଦୀର ପକ୍ଷ ନେଲେ । ତେଣୁ ଶତାବ୍ଦୀ ଲୋପ ପାଇଲା ।

ଉଭୟ ମଧ୍ୟରେ ଗୁଣାତ୍ମକ ଅନ୍ତର ଅଛି । ଆଗାମୀ ସମୟର ବାସ୍ତବିକ ବୋଧ ସହସ୍ରାବ୍ଦୀରେ ହୋଇ ପାରେନା । ମନୁଷ୍ୟ ପାଖରେ ଯେତିକି ଜ୍ଞାନ ଓ ବୋଧଶକ୍ତି ଅଛି, ତାହା ସାହାଯ୍ୟରେ ଏକହଜାର ବର୍ଷର କୌଣସି ମୋଟା ରୂପଚିତ୍ର ମଧ୍ୟ ଅଙ୍କା ଯାଇ ପାରିବ ନାହିଁ । ସଂବେଦନଶୀଳ ଓ ବୁଦ୍ଧିସମ୍ପନ୍ନ ଲୋକମାନେ ଅବଶ୍ୟ ଆଗାମୀ ଶହେ ବର୍ଷର ଏକ ରୂପରେଖ ଦେଇ ପାରିବେ । କେବଳ ତାହା ନୁହେଁ, ଯେଉଁମାନଙ୍କର ଦୀର୍ଘ-ଦୃଷ୍ଟି ଅଛି ଓ ସଂକଳ୍ପକ୍ଷମତା ଅଛି, ସେମାନେ ଆଗାମୀ ଶହେବର୍ଷ ପାଇଁ ମାନବ କଲ୍ୟାଣର ଯୋଜନା ମଧ୍ୟ ପ୍ରସ୍ତୁତ କରିପାରିବେ । ସହସ୍ର ବର୍ଷର ଅନ୍ତରାଳରେ କ'ଣ ଘଟିବ, ଏହି ପ୍ରଶ୍ନର ଯେକୌଣସି ଲୋକ ଯେକୌଣସି ଉତ୍ତର ଦେଇପାରିବେ । ତାହାକୁ ଖଣ୍ଡନ କରିବାର ଉପାୟ ନାହିଁ, କିମ୍ବା ପ୍ରମାଣିତ କରିବାର ପଦ୍ଧତି ନାହିଁ ।

ଦେଢ଼ ଦଶନ୍ଧି ପୂର୍ବେ ଯେତେବେଳେ ଶତାବ୍ଦୀର ଶବ୍ଦାବଳୀ ପ୍ରଚଳିତ ଥିଲା, ସେତେବେଳେ ଏକବିଂଶ ଶତାବ୍ଦୀକୁ ଏକ ସ୍ୱର୍ଣ୍ଣଯୁଗ ଭାବରେ ଚିତ୍ରିତ କରିବା ପାଇଁ କେତେକ ଶ୍ରେଣୀର ରାଜନେତା ଓ ତାଙ୍କର ବୁଦ୍ଧିଜୀବୀମାନେ ଚେଷ୍ଟା କରିଥିଲେ । କିନ୍ତୁ ଶତାବ୍ଦୀର ଚିନ୍ତାରୁ ଭବିଷ୍ୟତର ଏପରି ଆଭାସ ମିଳିଲା ଯେ, ସେମାନେ ଆଉ ଉତ୍ସାହିତ ହେଲେ ନାହିଁ । ଆଗାମୀ ଶହେ ବର୍ଷର ସମୟକୁ ସ୍ୱର୍ଣ୍ଣ ଯୁଗ ଭାବରେ ପ୍ରଚାରିତ କଲେ ବିଶ୍ୱର ଜନସାଧାରଣ କିମ୍ବା ତାଙ୍କର ଯୁବ ପିଢ଼ି ତାକୁ ଗ୍ରହଣ କରିପାରିବେ ନାହିଁ । କାରଣ ଜଣେ ସାଧାରଣ ବୁଦ୍ଧିସମ୍ପନ୍ନ ଲୋକ ତିରିଶ ବର୍ଷର ଭବିଷ୍ୟତକୁ ଅନୁମାନ କରିନେବ । ସେ ନିଶ୍ଚୟ ବୁଝିପାରିବ ଯେ, ତାହାର ନିଜର ଜୀବନକାଳ ଭିତରେ ମାନବୀୟ ସୁଖଦୁଃଖର ପରିସ୍ଥିତିରେ କେତେ ଉନ୍ନତି ଘଟି ପାରିବ । ସତ କହିବାକୁ ଗଲେ ସଦ୍ୟ ଆଗତ ଏହି ଶତାବ୍ଦୀ, କିମ୍ବା ଅନ୍ତତଃ ଏହାର ପ୍ରଥମାର୍ଦ୍ଧ ମାନବ

ଇତିହାସର ବର୍ବରତମ ଯୁଗ ହୋଇପାରେ । ଯେତେ ବେଶୀ ସାମାଜିକ-ଅର୍ଥନୈତିକ ବିଷମତା, ଦାରିଦ୍ର୍ୟ, ବେମାରୀ, ଜୀବନ ଧାରଣର ଅନିଶ୍ଚିତତା, ହିଂସା, ଅପରାଧ ଓ ଯୌନ ଶୋଷଣ ଆଗାମୀ ଅର୍ଦ୍ଧ ଶତାବ୍ଦୀରେ ହେବାକୁ ଯାଉଛି, ବିଗତ ଛଅ ହଜାର ବର୍ଷର ଇତିହାସରେ ଉଲ୍ଲିଖିତ ସଭ୍ୟତାମାନଙ୍କର ସମାଜରେ ତାହା ନ ଥିଲା । ଗୋଟିଏ ହାରାହାରି ବ୍ୟକ୍ତି ପାଇଁ ଉପଲବ୍ଧ ପ୍ରାକୃତିକ ସଂସାଧନର ଏତେ ଅଭାବ କେବେ ମଧ୍ୟ ନଥିଲା । ସବୁଠାରୁ ବେଶୀ ଅଭାବ ଜ୍ଞାନର ହେବାକୁ ଯାଉଛି । ଜ୍ଞାନ ପ୍ରତି ଏତେ ଅବିଶ୍ୱାସ କେବେ ନଥିଲା ।

ଜନସାଧାରଣଙ୍କ ପାଇଁ ଜ୍ଞାନ କେବେ ଧର୍ମ ଆକାରରେ ଆସିଥିଲା; ପୁଣି ତାହା ଶାସ୍ତ୍ର ଓ ବିଚାରଧାରାର ରୂପ ନେଇ ଆସିଲା । ଆଜି ତଥ୍ୟ ବା ସୂଚନାକୁ ଜ୍ଞାନ ରୂପେ ପ୍ରସାରିତ କରିବାର ଏକ ଚେଷ୍ଟା ଚାଲିଛି । ସୂଚନା ଓ ଜ୍ଞାନ ସମାନ ଅର୍ଥକ ନୁହନ୍ତି; କିନ୍ତୁ କେତେକ ଶକ୍ତିଶାଳୀ ଆନ୍ତର୍ଜାତିକ ସଂସ୍ଥା ଉଭୟକୁ ଏକ ଅର୍ଥରେ ପ୍ରଚଳିତ କରାଇବାର ଚେଷ୍ଟାରେ ଅଛନ୍ତି । ତାହା ହେଲେ ଜ୍ଞାନ ଅନେକ ନ ହୋଇ ଏକ ହୋଇଯିବ ଓ ସବୁ ମନୁଷ୍ୟଙ୍କୁ ଗୋଟିଏ ଢଙ୍ଗରେ ବିଚାରବଦ୍ଧ କରି ଦିଆଯାଇ ପାରିବ । ଏକାଧିପତି-ସ୍ୱାମୀତ୍ୱ ଦ୍ୱାରା ଚାଳିତ ଇଲେକ୍ଟ୍ରୋନିକ୍ ମାଧ୍ୟମ ଦ୍ୱାରା ଏହା ସମ୍ଭବ ହୋଇ ପାରିବ । ପ୍ରତ୍ୟେକ ସମାଜର ଏକ ଯୁଗଦୃଷ୍ଟି ଥାଏ । ଏହି ଯୁଗଦୃଷ୍ଟିକୁ ନେଇ ତଥ୍ୟ ଓ ସୂଚନା ଗୁଡ଼ିକୁ ସଙ୍ଗଠିତ କଲେ ଶାସ୍ତ୍ର ମାନଙ୍କର ନିର୍ମାଣ ହୁଏ । ଗୋଟିଏ ଶାସ୍ତ୍ରର ଅନେକ ଧାରା ଥାଇପାରେ; କିନ୍ତୁ ସବୁଥିରେ ଏହି ଗୋଟିଏ ଯୁଗଦୃଷ୍ଟି ପ୍ରବାହିତ ହୁଏ । ଊନବିଂଶ ଓ ବିଂଶ ଶତାବ୍ଦୀର ୟୁରୋପ୍‌ରେ ଆଧୁନିକ ଶାସ୍ତ୍ରମାନଙ୍କର ଚରମୋତ୍କର୍ଷ ଘଟିଥିଲା; ଓ ଶାସ୍ତ୍ରମାନଙ୍କୁ ଆଧାର କରି ସାମଗ୍ରିକ ବିଚାରର ବିକାଶ ହୋଇଥିଲା । ଏହି ସାମଗ୍ରିକ ବିଚାରକୁ ହିଁ ଆମେ ବିଚାରଧାରା ବୋଲି କହୁଁ । ଶାସ୍ତ୍ର ଓ ବିଚାରଧାରାମାନଙ୍କର ଯେଉଁ ଚାପ ସାଧାରଣ ସଚେତ ନାଗରିକର ମସ୍ତିଷ୍କ ଉପରେ ପଡ଼େ ସେଇଥିରୁ ତାହାର ଏକ ସାମଗ୍ରିକ ବୋଧ ଜାତ ହୁଏ । ତାହାକୁ ନେଇ ସେ ନିଜ ସମାଜର, ରାଷ୍ଟ୍ରର ବା ମାନବୀୟ ସ୍ଥିତିର ଉନ୍ନତି ପାଇଁ ଉଦ୍ଦିଷ୍ଟ କାର୍ଯ୍ୟକଳାପରେ ଅଂଶଗ୍ରହଣ କରେ । ମାନବୀୟ ବିକାଶରେ ଜ୍ଞାନର ଏହା ଏକ ନିର୍ଦ୍ଦିଷ୍ଟ ଭୂମିକା ।

ପ୍ରାଚୀନ କାଳରେ ଓ ମଧ୍ୟଯୁଗୀୟ ସମାଜମାନଙ୍କରେ ଧାର୍ମିକ ତଥା ଆଧ୍ୟାତ୍ମିକ ଶାସ୍ତ୍ରଗୁଡ଼ିକର ବିଶ୍ୱସନୀୟତା ସର୍ବାଧିକ ଥିଲା ଓ ଏହା ଗଭୀର ଥିଲା । ଆଧୁନିକ ଯୁଗରେ ଧର୍ମଶାସ୍ତ୍ର ଓ ନୀତିଶାସ୍ତ୍ରମାନଙ୍କର ପ୍ରଭାବକୁ ଗୌଣ ବୋଲି ଧରିବାକୁ ହେବ । ତଥାପି ଅଧିକାଂଶ ମନୁଷ୍ୟର ଅବଚେତନରେ ଧର୍ମ ପ୍ରତି ଓ ପାରମ୍ପରିକ ନୀତିନିୟମ ପ୍ରତି ଯେଉଁ ଆସ୍ଥା ଟିକକ ଏବେ ମଧ୍ୟ ରହିଛି, ତାହାର ପରିଧି ଭିତରେ ସମକାଳୀନ ତଥ୍ୟ ଓ ସୂଚନାଗୁଡ଼ିକୁ ଯୋଡ଼ି ଆଧୁନିକ ମନୁଷ୍ୟ ତାହାର ଏକ ନିଜସ୍ୱ ଦୃଷ୍ଟିକୋଣ ତିଆରି କରୁଛି ।

ଊନବିଂଶ ଶତାବ୍ଦୀରେ ଆଧୁନିକ ଶାସ୍ତ୍ରମାନଙ୍କ ପ୍ରତି ଅର୍ଥାତ୍ ସାମାଜିକ ବିଜ୍ଞାନ ଓ ଭୌତିକ ବିଜ୍ଞାନଗୁଡ଼ିକ ପ୍ରତି ଚରମ ଆସ୍ଥା ପ୍ରକାଶ ପାଇଥିଲା । ବିଂଶ ଶତାବ୍ଦୀ ବିଚାରଧାରା ମାନଙ୍କର ଯୁଗ ହେଲା । ରାଷ୍ଟ୍ରବାଦ, ଉଦାରବାଦ, ସାମ୍ୟବାଦ ଓ

ସମାଜବାଦ ପ୍ରଭୃତି ସାମାଜିକ-ରାଜନୈତିକ ବିଚାରଧାରା ଦୁନିଆର ସବୁ ଭୂଖଣ୍ଡରେ ପ୍ରଭାବଶାଳୀ ହେଲେ । ବୁଦ୍ଧିଜୀବୀମାନଙ୍କ ଉପରେ ବିଚାରଧାରାର ଏତେ ବେଶୀ ପ୍ରଭାବଥିଲା ଯେ, ସାହିତ୍ୟ ଓ କଳା ପରି ସୃଜନଧର୍ମୀ କାର୍ଯ୍ୟକଳାପରେ ମଧ୍ୟ ସେମାନେ ବିଚାରଧାରା ଦ୍ୱାରା ଅନୁପ୍ରାଣିତ ହେଲେ । କେତେକ ଉଚ୍ଚକୋଟୀର କବି ଓ କଳାକାର ଫାସିବାଦୀ ବିଚାରଧାରାକୁ ମଧ୍ୟ ଗ୍ରହଣ କଲେ । ବରଂ କହିବାକୁ ହେବ ଯେ, ସାହିତ୍ୟିକ-କଳାକାରମାନଙ୍କର ଗୋଟିଏ ଅଂଶ ସବୁବେଳେ 'ଶକ୍ତି'ର ଉପାସକ ହୋଇ ଆସିଛି । ସର୍ବଶକ୍ତିମାନ ଶାସକମାନଙ୍କର ବ୍ୟକ୍ତିତ୍ୱରେ ସେମାନେ ମୁକ୍ତିଦାତାର ଦର୍ଶନ ପାଇଥାନ୍ତି । ଏସବୁ କହିବାର ତାତ୍ପର୍ଯ୍ୟ ହେଉଛି ଏହି ଯେ, ସୃଜନ କାର୍ଯ୍ୟଗୁଡ଼ିକ କୌଣସି ଏକ ବିଚାର କେନ୍ଦ୍ରରୁ ଉତ୍ପନ୍ନ ହୁଅନ୍ତି କିମ୍ବା ବିଚାର କେନ୍ଦ୍ରକୁ ଉଦ୍ଭାସିତ କରନ୍ତି । ଧର୍ମ ଅର୍ଥାତ୍ ଧାର୍ମିକ ବିଚାରଧାରା ଯେତିକି ଗଭୀର ଭାବରେ ମନୁଷ୍ୟର ମନ ଓ ମସ୍ତିଷ୍କକୁ ପ୍ରଭାବିତ କରିଥିଲା, ସାମାଜିକ-ରାଜନୈତିକ ବିଚାରଧାରାଗୁଡ଼ିକର ପ୍ରଭାବ ସେତିକି ଗଭୀର ନହେଲେ ମଧ୍ୟ ବିଶ୍ୱବ୍ୟାପୀ ହୋଇପାରିଥିଲା । ଜ୍ଞାନ ବା ବିଚାର ଉପରେ ଯେଉଁଠି, ବିଶ୍ୱାସ ଥାଏ, ସେଠାରେ ଭବିଷ୍ୟତକୁ ଗଢ଼ିବାର ବା ପରିସ୍ଥିତିକୁ ବଦଳାଇବାର ଏକ ଆଶା ସୃଷ୍ଟି ହୁଏ ।

ଊନବିଂଶ ଶତାବ୍ଦୀରୁ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ଯେତେବେଳେ ଶାସ୍ତ୍ରମାନଙ୍କର ବିଶ୍ୱସନୀୟତା ଥିଲା, ସେତେବେଳେ ଶିକ୍ଷିତ ଲୋକମାନେ ଭାବୁଥିଲେ ଯେ, ଶାସ୍ତ୍ର ବଳରେ ସେମାନେ ସମାଜର ସମ୍ପୃକ୍ତ ବିଭାଗର ସମସ୍ୟାମାନଙ୍କୁ କୋହଳ କରିଦେଇ ପାରିବେ । ଅଶିକ୍ଷିତ ଓ ଅଳ୍ପ ଶିକ୍ଷିତମାନେ ଭାବୁଥିଲେ ଯେ, ଉଚ୍ଚଶିକ୍ଷିତ ତଥା ବିଶେଷଜ୍ଞମାନେ ସମାଜର ସମସ୍ୟାଗୁଡ଼ିକୁ ବୁଝି ସମାଧାନ ପ୍ରସ୍ତୁତ କରିଦେବେ । ବିଶ୍ୱାସ ଓ ଆତ୍ମବିଶ୍ୱାସର ଏହି ବାୟୁମଣ୍ଡଳରେ ପୃଥିବୀର ବହୁ ଲୋକ ନିଜର ଅଳ୍ପକାଳୀନ ସୁଖ ଓ ସ୍ୱାର୍ଥକୁ ଛାଡ଼ି ମଣିଷ ଜାତି ପାଇଁ ଏକ କଲ୍ୟାଣକାରୀ ଭବିଷ୍ୟତ ଗଢ଼ିବା କାର୍ଯ୍ୟରେ ସାମିଲ ହେବାକୁ ଚାହୁଁଥିଲେ । ବିଚାରଧାରାଗୁଡ଼ିକ ଆଶାବାଦ ଓ ଉତ୍ତେଜନା ସୃଷ୍ଟି କରିପାରୁଥିଲେ; ତେଣୁ ବିଂଶ ଶତାବ୍ଦୀ ମହା ଆନ୍ଦୋଳନମାନଙ୍କର ଶତାବ୍ଦୀ ହୋଇଗଲା । ସମାଜବାଦୀ, ସାମ୍ୟବାଦୀ ଓ ରାଷ୍ଟ୍ରବାଦର ବିଚାରରେ ଅନୁପ୍ରାଣିତ ହୋଇ ବିଶ୍ୱର ଲକ୍ଷ ଲକ୍ଷ ଲୋକ ଏହି ବିଚାରଧାରାମାନଙ୍କୁ କାର୍ଯ୍ୟରୂପ ଦେବା ନିମନ୍ତେ ନିଷ୍ଠାର ସହିତ ବାହାରିଥିଲେ । ଲୁହ, ଲହୁ, ଲାଠି, ଗୁଳି, ରଚନା, ସଂଘର୍ଷ, ଜୟନାଦ, ଆର୍ତ୍ତନାଦ ଓ ବିଜୟ-ପରାଜୟ ଭିତରେ କେତେ ଦେଶରେ ସାମ୍ୟବାଦ ସ୍ଥାପିତ ହୋଇଗଲା; ଶତାଧିକ ରାଷ୍ଟ୍ର ରାଜନୈତିକ ସ୍ୱାଧୀନତା ପାଇଲେ ଓ କେତେ ଦେଶରେ (ବିଶେଷକରି ୟୁରୋପ୍‌ରେ) ସମାଜବାଦୀମାନେ ଜନକଲ୍ୟାଣ ରାଜ୍ୟ (ୱେଲ୍‌ଫେୟାର୍ ଷ୍ଟେଟ୍)ର ପ୍ରତିଷ୍ଠା କଲେ ।

୧୯୮୦ ବେଳକୁ ଏସବୁ ବିଚାରଧାରାର ଅବସାନ ଆରମ୍ଭ ହୋଇଗଲା । ୧୯୯୦ରେ ସୋଭିଏତ୍ ସଂଘର ବିଘଟନ ହେଲା ଓ ଏହି ତାରିଖ ଇତିହାସର ଏକ ମାଇଲ୍‌ଖୁଣ୍ଟ ଭାବରେ ପରିଗଣିତ ହେଲା । ବିଚାରଧାରାମାନଙ୍କର ପତନର ଏହା ସମୟ । ଏହା କେବଳ ସାମ୍ୟବାଦୀ ବିଚାରଧାରାର ପତନର କାଳବିନ୍ଦୁ ନୁହେଁ । ୟୁରୋପୀୟ

ଜ୍ଞାନ ଓ ବିଚାରରୁ ଉଦ୍ଭୁତ ସବୁପ୍ରକାରର ମାନବକଲ୍ୟାଣକାରୀ, ସମତ୍ୱବାଦୀ, ସ୍ୱାତନ୍ତ୍ରବାଦୀ ଆନ୍ଦୋଳନମାନଙ୍କର ସତେ ଯେପରି କେନ୍ଦ୍ରସ୍ଥଳ ଭୁଷୁଡ଼ି ପଡ଼ିଲା । ଯେଉଁମାନଙ୍କର ବିଜୟ ହେଲା, ସେମାନେ ବିଚାରର ଗତିକୁ ବଦଳାଇ ଦେଲେ । ସେମାନେ କହିଲେ, ବଜାର (ପୁଞ୍ଜିବାଦ) ହେଉଛି ସର୍ବୋପରି,ତାହାର ସଙ୍କଟ ଅଛି, ପରାଜୟ ନାହିଁ । ତାକୁ ବଦଳେଇବାକୁ ଚାହୁଁଥିବା ସବୁ ବିଚାରଧାରା ଗୁଡ଼ିକ ଭୁଷୁଡ଼ି ପଡ଼ିଛନ୍ତି । ଏହା ହେଉଛି ବିଚାରଧାରାର ଅନ୍ତ । ଏହାପରେ ଆଉ ବିଚାର ଉପରେ ଆଧାରିତ କୌଣସି ମହାଆନ୍ଦୋଳନ ହେବନାହିଁ ।

ୟୁରୋପ୍ ଉପରୋକ୍ତ ସବୁ ମାନବକଲ୍ୟାଣକାରୀ, ସମତ୍ୱବାଦୀ ବିଚାରଧାରାମାନଙ୍କର ଉତ୍ପତ୍ତିସ୍ଥଳ ଥିଲା । ୟୁରୋପ୍‌ର ସେହି ଅଂଶ ଯେଉଁଠି ଶିଳ୍ପ ବିପ୍ଳବର ପ୍ରାରମ୍ଭିକ ପ୍ରଭାବ ଅତି ସଘନ ଥିଲା । ଶିଳ୍ପବିପ୍ଳବ ଫଳରେ ଯେଉଁ ନୂଆ ମାନର ସମୃଦ୍ଧି ଦେଖାଗଲା, ଆହୁରି ଆହୁରି ସମୃଦ୍ଧିର ଯେଉଁ କଳ୍ପନା କରାଗଲା, ଯେଉଁ ଯନ୍ତ୍ର ବିପ୍ଳବର ବାଟ ଖୋଲିଗଲା, ଏସବୁ ଦ୍ୱାରା ଉଦ୍‌ବୁଦ୍ଧ ହୋଇ ବିଚାରକମାନେ ଚିନ୍ତାକଲେ ଯେ, ସମୃଦ୍ଧିର ସୁଅରେ ଦାରିଦ୍ର୍ୟ, ଅନ୍ୟାୟ ଓ ଶୋଷଣକୁ ମଧ୍ୟ ଲୋପ କରା ଯାଇ ପାରିବ । ଯେଉଁସବୁ ବିଚାରଧାରା ବିଶ୍ୱବ୍ୟାପୀ ପ୍ରଭାବ ପକେଇଲେ ସେମାନଙ୍କର ଉତ୍ପତ୍ତି ଏହିଭଳି । ଯନ୍ତ୍ର ବିପ୍ଳବ ଓ ଯନ୍ତ୍ର ଦ୍ୱାରା ନିର୍ମିତ ଅସରନ୍ତି ସମୃଦ୍ଧିର କଳ୍ପନାର ପରିଧି ଭିତରେ ମାନବ ସମାଜର ଦୁଃଖ, ଦୈନ୍ୟ, ଅତ୍ୟାଚାର ଓ ଶୋଷଣକୁ ସମ୍ପୂର୍ଣ୍ଣ ଦୂର କରିଦେବାର ଉଦାତ୍ତ ସ୍ୱପ୍ନକୁ ପାଶ୍ଚାତ୍ୟର ମନୀଷୀମାନେ ବିଚାରଧାରାର ରୂପଦେଲେ । ଏହା ବୋଧହୁଏ ସେମାନଙ୍କ ପାଇଁ ସ୍ୱାଭାବିକ ଥିଲା ।

ଏସିଆ ଓ ଆଫ୍ରିକାର ନେତାମାନେ ମଧ୍ୟ ଉଚ୍ଚଶିକ୍ଷା ପାଇଁ ପାଶ୍ଚାତ୍ୟ ଦେଶମାନଙ୍କୁ ଯାଇ ଉପରୋକ୍ତ ମୂଳ ଧାରଣାଗୁଡ଼ିକର ବଶବର୍ତ୍ତୀ ହେଲେ । ସେମାନେ ନିଜ ଦେଶମାନଙ୍କୁ ଫେରିଯାଇ ପ୍ରଚାର କଲେ ଯେ, ଯନ୍ତ୍ର ବିପ୍ଳବ ଓ ତଜ୍ଜନିତ ସମୃଦ୍ଧି ଦ୍ୱାରା ହିଁ ମାନବର ମୁକ୍ତି ସମ୍ଭବ । କିଏ ପୁଞ୍ଜିବାଦରେ ମୁକ୍ତି ଦେଖିଲା ତ କିଏ ସମାଜବାଦ ଓ ସାମ୍ୟବାଦରେ ମୁକ୍ତି ଦେଖିଲା । କିନ୍ତୁ ମୂଳ ଧାରଣା ହେଉଛି ଯନ୍ତ୍ର ବିପ୍ଳବ ଓ ତଜ୍ଜନିତ ସମୃଦ୍ଧି ବଳରେ ସବୁ ସମସ୍ୟାର ସମାଧାନ । ଏହିପରି ଭାବରେ ସମଗ୍ର ବିଶ୍ୱରେ ଉପରୋକ୍ତ ମୂଳ ଧାରଣାର ପ୍ରଚାର ହୋଇଗଲା । ତେଣୁ ବିଚାରଧାରା ଗୁଡ଼ିକର ମଧ୍ୟ ପ୍ରସାର ହେଲା ।

ଗାନ୍ଧୀବାଦକୁ ମଧ୍ୟ ଏକ ବିଚାରଧାରା ରୂପେ ପ୍ରସାରିତ କରିବାର ପ୍ରଚେଷ୍ଟା ହୋଇଥିଲା । ଏହି ଚେଷ୍ଟା ସଫଳ ହେଲାନାହିଁ । ଏହାକୁ ଏକ ପୂର୍ଣ୍ଣାଙ୍ଗ ବିଚାରଧାରା ରୂପେ ଗଢ଼ିବା ପାଇଁ ବୁଦ୍ଧିଜୀବୀ ଗୋଷ୍ଠୀ ମିଳିଲେ ନାହିଁ । ପାଶ୍ଚାତ୍ୟ ବିଦ୍ୟାରେ ପ୍ରଶିକ୍ଷିତ ମେଧାବୀ ଲୋକମାନେ ଏଥି ପ୍ରତି ଆକୃଷ୍ଟ ହେଲେ ନାହିଁ; କାରଣ ଆଧୁନିକ ଯନ୍ତ୍ର ବିଦ୍ୟା ଓ ଆଧୁନିକ ସମୃଦ୍ଧି ବିଷୟରେ ଗାନ୍ଧୀ ବିଚାର ସମାଲୋଚନାମୂଳକ ଥିଲା । ଔପନିବେଶିକ ମସ୍ତିଷ୍କ ପାଇଁ ଏଗୁଡ଼ିକ ଥିଲା ଧ୍ରୁବ ସତ୍ୟ ଓ ସବୁ ପ୍ରକାରର ପ୍ରଗତି ପାଇଁ ପ୍ରଥମ ସର୍ତ୍ତ ଏହି ଯେ, ଯନ୍ତ୍ର ବିଦ୍ୟା ସାହାଯ୍ୟରେ ଯେକୌଣସି ଦେଶରେ ଆଧୁନିକ ସମୃଦ୍ଧିର ବିକାଶ ହୋଇପାରିବ ।

ଋଷ୍‌ର ସାମ୍ୟବାଦୀ ଶାସକମାନେ କହୁଥିଲେ ଯେ, ସୋଭିଏତ୍ ରାଷ୍ଟ୍ର ଅତି ଶୀଘ୍ର ଆମେରିକାକୁ ସମୃଦ୍ଧିରେ ଟପିଯିବ । ଚୀନ୍ କମ୍ୟୁନିଷ୍ଟ୍ ହୋଇଯିବା ପରେ ଚୀନ୍‌ର ଶାସକମାନେ କହିଲେ ଯେ, ପ୍ରଥମେ ଚୀନ୍, ଋଷ୍‌ର ସମୃଦ୍ଧିକୁ ଟପିଯିବ, ଓ ତାହାପରେ ଆମେରିକା ଠାରୁ ଅଧିକ ସମୃଦ୍ଧ ହେବ । ଭାରତର ପ୍ରଧାନମନ୍ତ୍ରୀ ନେହେରୁ ଭାରତର ପଞ୍ଚବାର୍ଷିକ ଯୋଜନାଗୁଡ଼ିକର ଭିତ୍ତି ସ୍ଥାପନ ସମୟରେ ସେହିଭଳି ସ୍ୱପ୍ନ ଦେଖୁଥିଲେ । ବଡ଼ ବଡ଼ ଶିଳ୍ପ ଓ ପ୍ରକଳ୍ପମାନଙ୍କୁ ସେ ଆଧୁନିକ ମନ୍ଦିରର ଆଖ୍ୟା ଦେଇଥିଲେ । ୧୯୪୫ରୁ ୧୯୬୦ ମଧ୍ୟରେ ବିଭିନ୍ନ ମହାଦେଶର ଔପନିବେଶକ ରାଷ୍ଟ୍ରମାନେ ରାଜନୈତିକ ସ୍ୱାଧୀନତା ପାଇବା ପରେ ଆର୍ଥିକ ସମୃଦ୍ଧି ଗଢ଼ି ତୋଳିବା ନିମନ୍ତେ ପଶ୍ଚିମର ବିକାଶ ପଦ୍ଧତିକୁ ଅନୁସରଣ କଲେ ।

ପ୍ରାୟ କୋଡ଼ିଏ / ତିରିଶି ବର୍ଷର ଅଭିଜ୍ଞତାରୁ ସେମାନେ ଏତିକି ଜାଣିଲେ ଯେ, ସେମାନେ ଆମେରିକା ହେବେ ନାହିଁ କିମ୍ବା ଜର୍ମାନୀ ବା ବ୍ରିଟେନ୍ ହେବେ ନାହିଁ । ଋଷ୍ ବି ଜାଣିଲା, ଚୀନ୍ ବି ଜାଣିଲା, ଭାରତ ବି ଜାଣିଲା, ଆଫ୍ରିକା ମଧ୍ୟ ଜାଣିଲା, ଆରବ୍ ଦେଶମାନେ ମଧ୍ୟ ଜାଣିଲେ । କିନ୍ତୁ ତାଙ୍କର ମୂଳ ବିଚାରକୁ ବଦଳାଇ ପାରିଲେ ନାହିଁ । ବିଚାରଧାରା ଭୁଶୁଡ଼ି ପଡ଼ିଲା, କାରଣ ମୂଳ ବିଚାରରେ ଭୁଲ ଥିଲା । ଆଧୁନିକ ସମୃଦ୍ଧି ଆମର ଦରକାର ଓ ଚମତ୍କାର ଯନ୍ତ୍ରବିଦ୍ୟା 'ଟେକ୍ନୋଲୋଜି' ଦ୍ୱାରା ହିଁ ଆଧୁନିକ ସମୃଦ୍ଧି ହୋଇ ପାରିବ ଏହି ବିଶ୍ୱାସ ରହିଗଲା । ୧୯୪୫ରୁ ୧୯୬୦ ମଧ୍ୟରେ ଯେଉଁ ଦେଶମାନେ ରାଜନୈତିକ ସ୍ୱାଧୀନତା ପାଇଲେ ସେମାନେ ତାଙ୍କର ବୁଦ୍ଧିବିଚାରକୁ ସ୍ୱାଧୀନ କରିପାରିଲେ ନାହିଁ । ଆଧୁନିକ ସମୃଦ୍ଧି ଓ ଅତ୍ୟାଧୁନିକ ଟେକ୍ନୋଲୋଜିର ମୋହରେ ପଡ଼ି ସେମାନେ ଯେଉଁ ଅର୍ଥନୈତିକ ଯୋଜନାମାନ କଲେ, ସେଥିରେ ଶ୍ରେଣୀ ବିଷମତା ଓ ଆଞ୍ଚଳିକ ବିଷମତା ଦେଶ ଭିତରେ ବଢ଼ିଲା, ୟୁରୋପ୍ ଆମେରିକା ଠାରୁ ସେମାନେ ଆହୁରି ପଛରେ ପଡ଼ିଗଲେ, କିନ୍ତୁ ଦେଶ ଭିତରେ ଏକ ନବସମୃଦ୍ଧ ଶ୍ରେଣୀ ସୃଷ୍ଟି ହୋଇଗଲା । କେତେକ ମହାନଗରୀୟ ଇଲାକା ଗଢ଼ି ହୋଇଗଲା । ଟେକ୍ନୋଲୋଜି ଓ ସମୃଦ୍ଧି ସେଇଠି ସୀମାବଦ୍ଧ ହୋଇ ରହିଲା ।

ସୋଭିଏତ୍ ସଙ୍ଘ ଓ ପୂର୍ବ ୟୁରୋପୀୟ କମ୍ୟୁନିଷ୍ଟ୍ ଦେଶମାନଙ୍କର ବିଘଟନ ଓ ପତନ ବିଂଶ ଶତାବ୍ଦୀର ଏକ ବଡ଼ ଘଟଣା । କିନ୍ତୁ ଏହାର ଅନୁଶୀଳନ ଯଥେଷ୍ଟ ମାତ୍ରାରେ ହୋଇନାହିଁ । ସୋଭିଏତ୍ ଋଷ୍‌ର ବିଘଟନ କାହିଁକି ହେଲା ? ଓଡ଼ିଶା କିମ୍ବା ଭାରତର ବୁଦ୍ଧିଜୀବୀମାନେ ଏହା ବିଶ୍ଳେଷଣ କରି ନାହାନ୍ତି । ୟୁରୋପ୍ ଓ ଆମେରିକାରେ ମଧ୍ୟ ଅଳ୍ପ କିଛି ଗ୍ରନ୍ଥ ଏହି ବିଷୟରେ ଲେଖା ହୋଇଛି । କିନ୍ତୁ ଏହାର ଗୋଟିଏ ମୁଖ୍ୟ କାରଣ ଏପର୍ଯ୍ୟନ୍ତ ଚର୍ଚ୍ଚା ଓ ଆଲୋଚନାର ସ୍ତରକୁ ଆସି ନାହିଁ । ଋଷ୍ ଯଦି ଆମେରିକା ପରି ସମୃଦ୍ଧ ହେବାକୁ ଦୃଢ଼ ସଂକଳ୍ପ କରିଥିଲା, ତାହା ହେଲା ନାହିଁ କାହିଁକି ? ଟେକ୍ନୋଲୋଜି ଆଧାରିତ ସମୃଦ୍ଧି ଋଷ୍‌ରେ ଯାହା ବି ହେଲା, ମସ୍କୋ ଓ ଲେନିନ୍‌ଗ୍ରାଦ୍‌ର ଚାରିପଟେ ହେଲା, କିମ୍ବା ଅଳ୍ପ କିଛି ଶିଳ୍ପ ଅଞ୍ଚଳରେ ହେଲା । ଉଜ୍‌ବେକିସ୍ତାନ୍, କିର୍‌ଗିଜିସ୍ତାନ୍ ଆଦି ବିରାଟ ଅଞ୍ଚଳମାନଙ୍କରେ ଆଧୁନିକ ସମୃଦ୍ଧିର ବିକାଶ ଘଟିନାହିଁ । ନଗର ଓ ଗ୍ରାମର ପ୍ରଭେଦ ବଢ଼ି ଚାଲିଲା ।

ଆଗକୁ ଯିବା ପୂର୍ବରୁ ଆମେ ସମୃଦ୍ଧିର ଅବଧାରଣା ବିଷୟରେ ସ୍ପଷ୍ଟ ହୋଇଯିବା ଦରକାର । ସ୍ୱଚ୍ଛଳତା, ସମୃଦ୍ଧି,ପ୍ରାଚୁର୍ଯ୍ୟ, ବୈଭବ - ଏହି ସବୁ ଅଭିଧାନିକ ଶବ୍ଦର ପାରିଭାଷିକ ଅର୍ଥମାନଙ୍କୁ କୌଣସି ଆଧୁନିକ ଭାଷାରେ ସ୍ପଷ୍ଟ କରାଯାଇନାହିଁ । ଏସବୁ ଶବ୍ଦକୁ ସମାନ ଅର୍ଥରେ ବ୍ୟବହାର କରାଯାଇଛି । 'ସମୃଦ୍ଧି' କହିଲେ ଆଧୁନିକ ସମୃଦ୍ଧିକୁ ବୁଝାଉଛି ଓ ଆଧୁନିକ ସମୃଦ୍ଧି କହିଲେ ଆମ ଆଗରେ ଉତ୍ତର ଆମେରିକା ବା ପଶ୍ଚିମ ୟୁରୋପର ଚିତ୍ର ଝୁଲୁଛି । କିନ୍ତୁ କେଉଁ ଅବସ୍ଥାକୁ ଆମେ ସମୃଦ୍ଧ କରିବା ? 'ସମୃଦ୍ଧ' ଶବ୍ଦର ଅର୍ଥହୀନତା ଆମର ବୈଚାରିକ ବାଟବଣା ହେବାର ଏକ ଗୁରୁତ୍ୱପୂର୍ଣ୍ଣ କାରଣ । ଦାରିଦ୍ର୍ୟର ସୀମାରେଖା ତଳେ ଓ ନିମ୍ନ ମଧ୍ୟବିତ୍ତ ଶ୍ରେଣୀ ଭିତରେ ଯେଉଁ ସବୁ କ୍ଷୁଧା, ସ୍ୱାସ୍ଥ୍ୟହୀନତା ଓ ସୁବିଧାମାନଙ୍କର ଘୋର ଅଭାବ ଦେଖୁଛୁ ତାହାକୁ ଦୂର କରିବା ଗୋଟିଏ କଥା । ଦୂର ହେବା ପରେ ତାକୁ ଆମେ 'ସ୍ୱଚ୍ଛଳତା' କହିବା ।

କିନ୍ତୁ ଆଧୁନିକ ସମୃଦ୍ଧି ଆଉ ଗୋଟିଏ ଜିନିଷ । ଆଧୁନିକ ଯୁଗରେ ଆମେରିକାର ସମୃଦ୍ଧି ଯାହା, ମୋଗଲ ସାମ୍ରାଜ୍ୟ ଶାହାଜାହାଁ କିମ୍ବା ମିଶର୍‌ର ରାଣୀ କ୍ଲିଓପାଟ୍ରାଙ୍କର ବୈଭବ ତାହା । ଏଇ ଅର୍ଥରେ ବିକାଶଶୀଳ ଦେଶମାନେ କେବେ ହେଲେ ଆଧୁନିକ ସମୃଦ୍ଧି ପାଇପାରିବେ ନାହିଁ । ଆଧୁନିକ ସମୃଦ୍ଧି କ'ଣ ଆଧୁନିକ ଟେକ୍ନୋଲୋଜି ଦ୍ୱାରା ସମ୍ଭବ ନୁହେଁ ? ସମ୍ଭବ ନିଶ୍ଚୟ । କିନ୍ତୁ ଏହି ଟେକ୍ନୋଲୋଜି କେବଳ ସାମ୍ରାଜ୍ୟବାଦ-ଉପନିବେଶର ଢାଞ୍ଚା ଭିତରେ ସମୃଦ୍ଧି ସୃଷ୍ଟି କରିପାରେ । ଗୋଟିଏ ଅଞ୍ଚଳ ଆଉ ଏକ ଅଞ୍ଚଳକୁ ନିଜର ବଜାର କରିବ, ତାହା ହେଲେ ପ୍ରଥମ ଅଞ୍ଚଳ ସାମ୍ରାଜ୍ୟବାଦୀ ହେବ ଓ ଦ୍ୱିତୀୟ ଅଞ୍ଚଳ ଉପନିବେଶ ହେବ ।

ୟୁରୋପ୍ ବା ଆମେରିକା ପରେ ସୋଭିଏତ୍ ଋଷ୍ ପାଖରେ ଯଥେଷ୍ଟ ପରିମାଣର ଉପନିବେଶ ନ ଥିଲା । ପୂର୍ବ ୟୁରୋପ୍‌ର ଯେଉଁ ଦେଶମାନେ କମ୍ୟୁନିଷ୍ଟ୍ ହେବା ପରେ ସୋଭିଏତ୍ ଅଧୀନରେ ଥିଲେ, ସେମାନେ ଗୋଟିଏ ପରେ ଗୋଟିଏ ବିଦ୍ରୋହ କର ବସିଲେ । ତେଣୁ ଋଷ୍‌ର ଅଳ୍ପକିଛି ଅଞ୍ଚଳକୁ ଆଧୁନିକ ଭାବରେ ସମୃଦ୍ଧ କରିବାକୁ ଯାଇ ବାକି ଅଞ୍ଚଳକୁ, ବିଶେଷକରି ଏସୀୟ-ଗଣରାଜ୍ୟମାନଙ୍କୁ ପଛୁଆ କରି ରଖିବାକୁ ପଡ଼ିଲା । ଆଞ୍ଚଳିକ ବୈଷମ୍ୟ ବଢ଼ିଲା ଓ ଏହାହିଁ ବିଘଟନର ମୂଳ କାରଣ ହେଲା । କୌଣସି ଅର୍ଥଶାସ୍ତ୍ର ଉପରୋକ୍ତ ତଥ୍ୟଗୁଡ଼ିକୁ ଖଣ୍ଡନ କରିପାରିବେ ନାହିଁ ।

ସୋଭିଏତ୍ ସଙ୍ଘର ପତନର ଏହା ହେଉଛି ମୌଳିକ କାରଣ । ଅଗଣତାନ୍ତ୍ରିକ ଶାସନ, ପୁଞ୍ଜିବାଦୀ-ସାମ୍ରାଜ୍ୟବାଦୀ ଷଡ଼ଯନ୍ତ୍ର ଇତ୍ୟାଦି କାରଣଗୁଡ଼ିକ ଅସତ୍ୟ ନୁହେଁ; କିନ୍ତୁ ଏହା ତୁଳନାରେ କମ୍ ଗୁରୁତ୍ୱପୂର୍ଣ୍ଣ । କୌଣସି ଅଣସାମ୍ରାଜ୍ୟବାଦୀ ଦେଶ ଆମେରିକା ପରି ସମୃଦ୍ଧ ହୋଇ ପାରିବ ନାହିଁ; ଯିଏ ଚେଷ୍ଟା କରିବ, ସିଏ ନିଜ ଦେଶ ଭିତରର ଗୋଟିଏ ଅଞ୍ଚଳକୁ (ଆଦିବାସୀ ଅଞ୍ଚଳକୁ, ଓଡ଼ିଶା ପରି ରାଜ୍ୟକୁ) ଉପନିବେଶ ପରି ବ୍ୟବହାର କରିବ । ଏହା ହେଉଛି ଆଧୁନିକ ଟେକ୍ନୋଲୋଜିର ଅଭିଶାପ । ଭାରତରେ ହୁରି ପଡ଼ିଛି ଯେ, ଚୀନ୍‌ର ବହୁତ ପ୍ରଗତି ହେଉଛି । ଭାରତ ଅପେକ୍ଷା ଦେଢ଼ଗୁଣ ବେଶୀ ପ୍ରଗତି ସେଠାରେ ନିଶ୍ଚୟ ହୋଇଛି । କିନ୍ତୁ ଏହା ଆଧୁନିକ ସମୃଦ୍ଧି ନୁହେଁ । ଚୀନ୍‌ର ବହୁତ ଇଚ୍ଛା ଗୋଟିଏ ସାମ୍ରାଜ୍ୟବାଦୀ ଦେଶ ହେବାକୁ ଓ ଆଖପାଖର ଏସୀୟ

ପଡ଼ୋଶୀମାନଙ୍କୁ ନିଜର ଉପନିବେଶ କରିବାକୁ । ତାହା ହୋଇ ପାରି ନାହିଁ । ତେଣୁ ଚୀନ୍‌ର କେବଳ ଅଳ୍ପ କେତେକ ଅଞ୍ଚଳ ସମୃଦ୍ଧ ହୋଇପାରୁଛି । ବାକି ବିଶାଳ ଅଞ୍ଚଳ ପଛୁଆ ରହିଛି । ଏହି ବୈଷମ୍ୟ ପୁଣି ବଢ଼ିବାରେ ଲାଗିଛି । ଦକ୍ଷିଣ କୋରିଆର ଜୀବନସ୍ତରରେ ମଧ୍ୟ ଆସନ୍ତା ଦଶ ବର୍ଷ ଭିତରେ ଚୀନ୍ ପହଞ୍ଚି ପାରିବ ନାହିଁ । ଇତିମଧ୍ୟରେ ଅଳ୍ପ କିଛି ଲୋକଙ୍କୁ ନେଇ ଚୀନ୍‌ରେ ଏକ ଧନୀ ଶ୍ରେଣୀ ନିଜକୁ ଏପରି ଦୃଢ଼ କରିନେବ ଯେ, ତାହା ହିଁ ଶାସକ ଶ୍ରେଣୀ ପାଲଟିବ । ଆଧୁନିକ ସମୃଦ୍ଧି ସେମାନଙ୍କ ମଧ୍ୟରେ ସୀମାବଦ୍ଧ ହେବ । ଚୀନ୍‌ର ସାମ୍ୟବାଦୀମାନେ ଗୋଟିଏ ସୁନ୍ଦର ସ୍ଲୋଗାନ ବାହାର କରିଛନ୍ତି : 'ପ୍ରଥମେ ଥୋକେ ଲୋକ ପହଞ୍ଚିବେ' । ପରେ ସମସ୍ତଙ୍କୁ ଏହା ସୁଲଭ ହେବ ବୋଲି କହିବା ଗୋଟିଏ ବିଦ୍ରୂପ ଛଡ଼ା ଆଉ କ'ଣ ହୋଇପାରେ ?

ଏହା ଧ୍ରୁବ ସତ୍ୟ ଯେ ଚୀନ୍, ଭାରତ କିମ୍ବା ବ୍ରାଜିଲ୍ ଓ ମିଶର୍ ଆଧୁନିକ ସମୃଦ୍ଧି ଲାଭ କରି ପାରିବେ ନାହିଁ । ଏହି ବାସ୍ତବିକତାକୁ କୌଣସି ବିଚାରଧାରା କିମ୍ବା ବିଶ୍ୱବିଦ୍ୟାଳୟର ଶାସ୍ତ୍ର ଗ୍ରହଣ କରୁନାହିଁ । ତେଣୁ ନୂତନ ଶାସ୍ତ୍ର ଓ ବିଚାରଧାରାର ଅଭ୍ୟୁଦୟ ହେଉନାହିଁ, ଯାହା ଉପରେ ଲୋକଙ୍କର ବିଶ୍ୱାସ ପ୍ରତିଷ୍ଠିତ ହେବ ।

ଏକ ନୂତନ (ବୈକଳ୍ପିକ) ବିଚାରଧାରା ପାଇଁ ଚାରିଟି ସ୍ଥାପନା ଦରକାର; ପ୍ରଥମ, ଆଧୁନିକ ସମୃଦ୍ଧି ଏକ ମିଥ୍ୟା ଆଦର୍ଶ । ସବୁଦେଶ ଏହା ପାଇପାରିବେ ନାହିଁ । କେବଳ ସାମ୍ରାଜ୍ୟବାଦୀମାନେ ଓ ଶୋଷକ ଶ୍ରେଣୀମାନେ ଏହାକୁ ଭୋଗ କରି ପାରିବେ । ଏଣୁ ଆମର ଆଦର୍ଶ, ସ୍ୱଚ୍ଛଳ ଜୀବନସ୍ତର, ଯାହା ସମସ୍ତଙ୍କୁ ମିଳିପାରିବ । ଦ୍ୱିତୀୟ, ବିଜ୍ଞାନର ସୂତ୍ର ଉପରେ ଆଧୁନିକ ଟେକ୍ନୋଲୋଜି ଆଧାରିତ, କିନ୍ତୁ ଏହାର ପ୍ରୟୋଗ ଓ ପରିଣାମ ବୈଜ୍ଞାନିକ ନୁହେଁ; କାରଣ ଏହାର ପ୍ରୟୋଗ ହିଁ ପ୍ରକୃତି ପାଇଁ ଧ୍ୱଂସକାରୀ ହେବା ସଙ୍ଗେ ସଙ୍ଗେ ଜନସାଧାରଣଙ୍କ ପାଇଁ ଶୋଷଣକାରୀ ବୋଲି ପ୍ରମାଣିତ ହୋଇ ସାରିଛି । ବିଜ୍ଞାନର ନୂଆ ପ୍ରୟୋଗ ଦ୍ୱାରା ଟେକ୍ନୋଲୋଜିର ନବୀକରଣ ଦରକାର । ତୃତୀୟ, ସମୃଦ୍ଧି ନିର୍ଦ୍ଦିଷ୍ଟ ଶ୍ରେଣୀ ବିଶେଷ ପାଇଁ ନୁହେଁ, ସମଗ୍ର ପ୍ରଜାତି ପାଇଁ ଦରକାର । ଆଧୁନିକ ସମୃଦ୍ଧି ପ୍ରଜାତି ପାଇଁ ଉଦ୍ଦିଷ୍ଟ କି ପ୍ରଯୁଜ୍ୟ ନୁହେଁ । ତେଣୁ ସମୃଦ୍ଧିର ପାରିଭାଷିକ ଅର୍ଥକୁ ସ୍ପଷ୍ଟ କରିବାକୁ ହେବ । ଚତୁର୍ଥ, ସମାଜରେ ଜୀବନଧାରଣ ପାଇଁ ଯେତେସବୁ ପଣ୍ୟବସ୍ତୁ ଦରକାର ସେଗୁଡ଼ିକ ପ୍ରାକୃତିକ ସଂସାଧନ ଉପରେ ଆଧାରିତ । ଆଧୁନିକ ସଭ୍ୟତା ଓ ଆଧୁନିକ ଯନ୍ତ୍ର ବିଦ୍ୟା ପ୍ରାକୃତିକ ସଂସାଧନଗୁଡ଼ିକୁ ବିନଷ୍ଟ, ନିଃଶେଷ ଓ ପ୍ରଦୂଷିତ କରିବା ଦ୍ୱାରା ପ୍ରକୃତି ଓ ମାନବ ଜୀବନ ଅବକ୍ଷୟର ସମ୍ମୁଖୀନ ହୋଇଛନ୍ତି । ତେଣୁ ବିନାଶକାରୀ ବିକାଶର ଗତିପଥକୁ ବଦଳାଇବାକୁ ହେବ । ସ୍ଥିର ଓ ଚିରନ୍ତନୀ ବିକାଶ ନିମନ୍ତେ ଏପରି ଉପାୟ, ଯନ୍ତ୍ର ଓ ଅର୍ଥନୀତି ଗ୍ରହଣ କରିବାକୁ ହେବ, ଯାହା ପ୍ରକୃତି-ସଂରକ୍ଷକ ଓ ସ୍ଥାୟୀ ହେବ । ଏହାର ପରିଣାମ ସବୁବେଳେ ବଢ଼ି ଚାଲିଥିବା ଅନନ୍ତ ସମୃଦ୍ଧି ନ ହୋଇ ଏକ 'ସୀମିତ ସମୃଦ୍ଧି' ହେବ । ସୀମିତ ସମୃଦ୍ଧିର ଅବଧାରଣାରୁ ଆଗାମୀ ବିଚାରଧାରାର ଉଦ୍‌ଗମ ହେବ ।

ଆଧୁନିକ ସଭ୍ୟତାର ବିକଳ୍ପ ପ୍ରାଚୀନ ସଭ୍ୟତା ନୁହେଁ । ପ୍ରାଚୀନ ସଭ୍ୟତାର ସପକ୍ଷବାଦୀମାନେ ଆଧୁନିକ ସଭ୍ୟତାର ମୌଳିକ ବିରୋଧ ନ କରି କେବଳ ମଧ୍ୟଯୁଗୀୟ

କର୍ମକାଣ୍ଡଗୁଡ଼ିକୁ ବଞ୍ଚାଇ ରଖିବାକୁ ଚାହାନ୍ତି ଓ ଅତୀତର ସବୁ ଅନ୍ୟାୟପୂର୍ଣ୍ଣ ଭେଦଭାବକୁ ଲୋକାତୀତ ସତ୍ୟ ଭାବରେ ସିଦ୍ଧ କରିବାକୁ ଚାହାନ୍ତି । ଭବିଷ୍ୟତ ନିର୍ମାଣ ଓ ଭବିଷ୍ୟଦ୍ରଷ୍ଟାମାନଙ୍କ ପାଇଁ ଅତୀତ ଓ ଆଧୁନିକ ସମାନ ଭାବରେ ପ୍ରାସଙ୍ଗିକ ବା ଅପ୍ରାସଙ୍ଗିକ ହେବେ । ପ୍ରାକୃତିକ-ସଂସାଧନ ଗୁଡ଼ିକର ସଂରକ୍ଷଣ ଦୃଷ୍ଟିରୁ ଓ ସମୁଦାୟମାନଙ୍କର ସ୍ୱଶାସନ ଦୃଷ୍ଟିରୁ ବହୁତ ଉପାଦେୟ ନମୁନା ଓ ଆଦର୍ଶ ପ୍ରାଚୀନ ସଭ୍ୟତାମାନଙ୍କରୁ ମିଳି ପାରିବ । ସେହିପରି ଭାବେ ଆଧୁନିକ ବିଜ୍ଞାନର ସୂତ୍ରମାନଙ୍କୁ ନେଇ ବିକାଶର ନୂଆ ଯନ୍ତ୍ର ପ୍ରଣାଳୀ ବାହାର କରିବାକୁ ହେବ, ଯାହା ପ୍ରତ୍ୟେକ ଅଞ୍ଚଳକୁ ମୌଳିକ ଆବଶ୍ୟକତା ପୂରଣ ଦିଗରୁ ସ୍ୱାବଲମ୍ବୀ କରିପାରିବ, ଅଥଚ ଅନ୍ୟ ଅଞ୍ଚଳକୁ ନିଜର ଉପନିବେଶ ନକରି ସୀମିତ ସମୃଦ୍ଧି ମଧ୍ୟ ଦେଇପାରିବ । ଆଧୁନିକ ସଭ୍ୟତାର ବ୍ୟକ୍ତି ସ୍ୱାତନ୍ତ୍ର୍ୟର ଓ ପ୍ରାଚୀନ ସଭ୍ୟତାମାନଙ୍କର ସାମାଜିକତାକୁ ଗୋଟିଏ ଜୀବନ ପ୍ରଣାଳୀର ଦୁଇ ଅଭିନ୍ନ ଦିଗ ରୂପେ ବିକଶିତ କରିବାକୁ ହେବ । ଦୁନିଆର ବୈଜ୍ଞାନିକମାନେ ବହୁରାଷ୍ଟ୍ରୀୟ ନିଗମମାନଙ୍କର ବେତନଭୋଗୀ ହୋଇ ମୁନାଫାଖୋର୍ ବ୍ୟବସାୟୀମାନଙ୍କ ନିର୍ଦ୍ଦେଶରେ ବିଜ୍ଞାନ ଓ ଟେକ୍ନୋଲୋଜିକୁ ବଢ଼ାଇ ଚାଲି ଅଛନ୍ତି । ସେମାନଙ୍କୁ ଏହି ଦାସତ୍ୱରୁ ମୁକ୍ତ କରି ଏକ ନୂଆ ପୃଥିବୀର ସଂରଚନାର କାର୍ଯ୍ୟରେ ଲଗାଇବାକୁ ହେବ । ଆଗାମୀ ବିଚାରଧାରା ପାଇଁ ଏହି ସବୁ ହେବ ମନ୍ତ୍ର ଓ ସୂତ୍ର ।

ଡ଼ିସେମ୍ବର, ୨୦୦୦

# ଜଗତୀକରଣ ବନାମ ବାମପନ୍ଥୀ ଚିନ୍ତାଧାରା

୧

ପୁଞ୍ଜିବାଦର ସାମ୍ପ୍ରତିକ ବା ଆସନ୍ନ ସଙ୍କଟ ପ୍ରତି ଦୃଷ୍ଟି ଆକର୍ଷଣ କରି ସମାଜବାଦୀମାନେ ବେଳେ ବେଳେ ଭାରି ଖୁସି ହୁଅନ୍ତି, ସତେ ଯେମିତି ସେ ସଙ୍କଟଟି ପୁଞ୍ଜିବାଦୀ ବ୍ୟବସ୍ଥାକୁ ସମୂଳେ ଧ୍ୱଂସ କରିଦେବ । ପୁଞ୍ଜିବାଦ କିନ୍ତୁ ଭୁଶୁଡ଼ି ନାହିଁ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ପୁଞ୍ଜିବାଦ ଯେତୋଟି ସଙ୍କଟର ସାମ୍ନା କରିଛି,ସବୁଥିରୁ ତାହା ମୁକୁଳି ଯାଇଛି, ବରଂ ପୂର୍ବାପେକ୍ଷା ଦୃଢ଼ତର ହେଇ, ଅଧିକ ଆକ୍ରମଣାତ୍ମାକ ହେଇ ମୁକୁଳି ଆସିଛି । ସମାଜବାଦୀମାନେ ପୁଞ୍ଜିବାଦର ଯେଉଁ ସମାଲୋଚନା କରିଛନ୍ତି, ମନେ ହେଉଛି ପୁଞ୍ଜିବାଦର ମଙ୍ଗ ଧରିଥିବା ସେନାପତିମାନେ ତାହାଦ୍ୱାରା ବେଶୀ ଚାଲାକ୍ ହେଉଛନ୍ତି, ବେଶୀ ସକ୍ଷମ ହେଉଛନ୍ତି । ଆପଣା ଦୁର୍ବଳତାଟି କ'ଣ ସେମାନେ ଜାଣୁଛନ୍ତି ଓ ଆସନ୍ନ ବିଲୟରୁ ପୁଞ୍ଜିବାଦକୁ ବଞ୍ଚେଇବାକୁ ତାହାର ନିରାକରଣ ପାଇଁ ସାବଧାନତା ମଧ୍ୟ ଅବଲମ୍ବନ କରୁଛନ୍ତି । ବାମପନ୍ଥୀ ନେତାମାନେ କିନ୍ତୁ ଦକ୍ଷିଣପନ୍ଥୀ ସମାଲୋଚନା ଓ ସେମାନଙ୍କର ନିଜର ଅନୁଭୂତିରୁ ବେଶୀ କିଛି ଶିଖିନାହାନ୍ତି । ସେମାନଙ୍କର ନିଜର ସଙ୍କଟ, ଯାହାକୁ କି ସଙ୍କଟ ବୋଲି ମାନିବାକୁ ମଧ୍ୟ ସେମାନେ ପ୍ରସ୍ତୁତ ନୁହନ୍ତି, ସେମାନଙ୍କୁ ବିଲୁପ୍ତ ହେବାର କି ତାହାର ପାଖାପାଖି ଅବସ୍ଥାରେ ଆଣି ପହଞ୍ଚେଇ ଦେଇଛି । ପୁଞ୍ଜିବାଦର ସଙ୍କଟ ବିଷୟରେ ନିଶ୍ଚିତ ହେବା ପୂର୍ବରୁ ଏଣିକି ସମାଜବାଦୀଙ୍କୁ ଆପଣା ସଙ୍କଟ ବିଷୟରେ ଦାୟିତ୍ୱବାନ ହେବାକୁ ପଡ଼ିବ ।

ଯଦି ଏହା ଭିତରେ ଦିନେ କେବେ ସମାଜବାଦ ସମ୍ପୂର୍ଣ୍ଣ ଅବଲୁପ୍ତ ହୋଇଯାଏ, ତେବେ ତାହାର କାରଣ ହେବ ଏହା ଯେ, 'ଜଗତୀକରଣ'ର ପ୍ରଶ୍ନକୁ ଯେଉଁଳି ଗୁରୁତ୍ୱ ଦିଆଯିବା ଦରକାର ସେଉଁଳି ଦିଆ ଯାଇ ନାହିଁ । ଜଗତୀକରଣ ସାମ୍ରାଜ୍ୟବାଦର ଏକ ଶିଖର । ସାମ୍ରାଜ୍ୟବାଦୀ ଶକ୍ତିମାନେ ମଣିଷ ସମାଜର ବୃହତ୍ତର ଅଂଶକୁ ସାଂସ୍କୃତିକ ଓ ଅର୍ଥନୈତିକ ଦୃଷ୍ଟିରୁ ଏକ ଅତି ନିମ୍ନସ୍ତରକୁ ଖସାଇ ଦେବା ପାଇଁ ପ୍ରୟାସରତ ଅଛନ୍ତି । ହୁଏତ ପୃଥିବୀକୁ ଧ୍ୱଂସ କରିବା ସହ ସାମ୍ରାଜ୍ୟବାଦ ନିଜକୁ ବି ଧ୍ୱଂସ କରିଦେବ, କିନ୍ତୁ ତାହାର ଅନେକ ପୂର୍ବରୁ ମଣିଷ ସମାଜକୁ କ୍ଷୁଧା ଓ ଲୋଭର ଦୁଇ ବିପଦରୁ ମୁକ୍ତ କରିବାକୁ ସ୍ୱପ୍ନ ଦେଖିଥିବା ବିଶାଳ ଜନତାର ଶରୀର ଓ ଆତ୍ମାକୁ ଏହା ଧୂଳିସାତ୍ କରି ସାରିଥିବ ।

ଏଭଳି ମହା ଆକ୍ରମଣର ମୁକାବିଲା ବିବୃତିମୂଳକ ସମାଲୋଚନା, ସାମୟିକ ପ୍ରତିବାଦ ଓ ଦିନିକିଆ ପ୍ରତୀକ ଧର୍ମଘଟ ଦ୍ୱାରା କରିହେବ ନାହିଁ । ଏଭଳି ପ୍ରତିବାଦ ଏକ ସାମଗ୍ରିକ ଦର୍ଶନ, ରଣକୌଶଳ ଓ ବହୁମୁଖି କ୍ରିୟାନୁଷ୍ଠାନର ପରିପ୍ରେକ୍ଷୀରେ ହିଁ ଅର୍ଥପୂର୍ଣ୍ଣ ହେବ । ବିଂଶ ଶତାବ୍ଦୀର ଚରମପନ୍ଥୀ ଆଦର୍ଶର ଯେଉଁସବୁ ଦିଗ ସମୟର କଷଟି ପଥରରେ ପରଖା ହୋଇ ଏବେ ବି ପ୍ରାସଙ୍ଗିକ, ସେସବୁର ପୁନର୍ଘୋଷଣା ହେବା ଆବଶ୍ୟକ । ନୂତନ ଓ ସର୍ବବ୍ୟାପୀ ପ୍ରତିରୋଧ ପାଇଁ ସେସବୁକୁ ନୂଆ ଢାଞ୍ଚାରେ, ନୂଆ ତତ୍ତ୍ୱ ସାଙ୍ଗରେ ଯୋଡ଼ି ଗଢ଼ିବା ଦରକାର ହେଉଛି ।

ଭିନ୍ନ ଏକ ଯୁଗରେ ଲେନିନ୍ ଓ ଗାନ୍ଧୀଙ୍କ ସମ୍ମୁଖରେ ଏଭଳି ବିଶାଳ ଆହ୍ୱାନ ଥିଲା । ହୁଏତ ଆମେ ଖର୍ବକାୟ, କିନ୍ତୁ ଆମକୁ ସୁହାଇବ ବୋଲି ଆମେ ସମସ୍ୟା ଓ ଆହ୍ୱାନର ବିଶାଳତାକୁ କ୍ଷୁର୍ଣ୍ଣ କରିପାରିବା ନାହିଁ । ଆମେ ସଭିଏଁ ଯଦି ଖର୍ବକାୟ, ତେବେ ବରଂ ସମସ୍ତଙ୍କୁ ନିଜ ନିଜର ଅଙ୍ଗମାନଙ୍କୁ ବଳି ଦେଇ ସେଭଳି ବିଶାଳ କାୟାର ସଂରଚନା କରିବାକୁ ହେବ । ଯଜ୍ଞକୁଣ୍ଡର ଅଗ୍ନିରେ ନିଜକୁ ନିକ୍ଷେପ କରିବା ପାଇଁ ଆମେ ପ୍ରସ୍ତୁତ ହେଲେ ଯାଇ ହିଁ ସେ ବିଶାଳକାୟ ପ୍ରତିରୋଧକାରୀ ଶକ୍ତି ତାହା ଭିତରୁ ଜନ୍ମନେବ ।

ଜଗତୀକରଣ ବିରୁଦ୍ଧରେ ଲଢ଼େଇ ବାମପନ୍ଥୀଙ୍କ ଆନ୍ତର୍ଜାତୀୟ ବା ଜାତୀୟ କାର୍ଯ୍ୟସୂଚୀରେ ଏବେ ନାହିଁ, ଏକଥା ଘୋର ନୈରାଶ୍ୟଜନକ । ଆନ୍ତର୍ଜାତୀୟ ସ୍ତରରେ ଯେଉଁସବୁ ସଙ୍ଗଠନ, ବ୍ୟକ୍ତିତ୍ୱ ଓ ରାଜନୈତିକ ଦଳ ତିନି ଦଶକ ପୂର୍ବ ଯାଏଁ ମଧ୍ୟ ପୁଞ୍ଜିବାଦ ବିରୁଦ୍ଧରେ ସଂଗ୍ରାମୀ ଭାବରେ ଗଣା ହେଉଥିଲେ, ଏବେ ସେମାନଙ୍କର କୌଣସି ଭୂମିକା ନ ଥିବା ଭଳି ମନେହେଉଛି । ଆଜି ବିଶ୍ୱବାଣିଜ୍ୟ ସଂଗଠନ ଓ ଆନ୍ତର୍ଜାତୀୟ ମୁଦ୍ରାପାଣ୍ଠି ବିରୁଦ୍ଧରେ ସିଧାସଳଖ ଲଢ଼େଇ ସମାଜବାଦୀ ଓ ସାମ୍ୟବାଦୀମାନଙ୍କ ଦ୍ୱାରା ନୁହେଁ, ବରଂ ରୋମାଣ୍ଟିକ୍ ଓ ଆଡ଼ବାୟା ବୋଲି କୁହାଯାଉଥିବା ଗୋଷ୍ଠୀମାନଙ୍କ ଦ୍ୱାରା ହିଁ ହେଉଛି ।

ଜାତୀୟସ୍ତରର ଚିତ୍ର ତ ସମ୍ପୂର୍ଣ୍ଣ ପ୍ରବଞ୍ଚନାମୟ । ଯେଉଁ ପ୍ରଶ୍ନ ପ୍ରଗତିଶୀଳ, ଚରମପନ୍ଥୀ ଓ ବିପ୍ଳବୀମାନଙ୍କୁ ଘାରୁଛି, ତାହା ସାମ୍ରାଜ୍ୟବାଦ ନୁହେଁ, ସାମ୍ପ୍ରଦାୟିକତାବାଦ । ଯେହେତୁ ବିଶ୍ୱ-ସାମ୍ରାଜ୍ୟବାଦକୁ ମୁଖ୍ୟ ପ୍ରଶ୍ନ ଭାବରେ ଗ୍ରହଣ କଲେ ବାମପନ୍ଥୀମାନଙ୍କୁ କ୍ଷମତା (ଓ ତାହା ସାଙ୍ଗକୁ ସହରୀ ମଧ୍ୟବିତ୍ତ ଶ୍ରେଣୀ ମଧ୍ୟ) ହରେଇବାକୁ ପଡ଼ିବ, ତେଣୁ ଧର୍ମନିରପେକ୍ଷତାର ଗୁରୁତ୍ୱକୁ ବଢ଼େଇ ବର୍ଣ୍ଣନା କରାଯାଉଛି । ଧର୍ମନିରପେକ୍ଷତାକୁ ରାଜନୈତିକ ରଣକୌଶଳରେ ହୁଏତ ଦ୍ୱିତୀୟ ବା ତୃତୀୟ ସ୍ଥାନ ଦିଆଯିବା କଥା, ତାକୁ କିନ୍ତୁ ସବୁଠୁ ମହତ୍ତ୍ୱପୂର୍ଣ୍ଣ ଓ ପ୍ରଥମ ପ୍ରଶ୍ନ ଭାବରେ ବିଚାର କରାଯାଉଛି ଓ ସାଧାରଣ ଲୋକଙ୍କ (ନିମ୍ନ ମଧ୍ୟବିତ୍ତ ଶ୍ରେଣୀ ସମେତ) ଅର୍ଥନୈତିକ ଦୂରାବସ୍ଥା ବଢ଼ିବାରେ ଲାଗିଥିଲା ବେଳେ ଏମିତି କରାଯାଉଛି । ବୋଧହୁଏ ଧର୍ମନିରପେକ୍ଷତାର ପ୍ରବକ୍ତାମାନେ ଭାବୁଛନ୍ତି ଯେ, ନୂଆ ଆର୍ଥିକ ନୀତି ଦ୍ୱାରା ସୃଷ୍ଟ ଅର୍ଥନୈତିକ ଦୂରାବସ୍ଥାର ପ୍ରଶ୍ନକୁ ଉଠାଇ ରାଜନୀତି କରି ବସିଲେ ସଙ୍ଘ ପରିବାରର ଲୋକେ ଆମକୁ ଆଧୁନିକତାର ବିରୋଧି କହି ଲୋକହସା କରାଇଦେବେ ।

ଦଣ୍ଡବତେ ଓ ଜର୍ଜ୍ ଫର୍ଣ୍ଣାଣ୍ଡିଜ୍‌ମାନେ ଯଦିଓ ଗଣମାଧ୍ୟମରେ 'ସମାଜବାଦୀ' ବୋଲାଯାଆନ୍ତି, ସେମାନେ ଯେ ଜଗତୀକରଣ ବିରୁଦ୍ଧରେ ଆନ୍ଦୋଳନ କରିବେ ତାହା ଭାବିବା ବୃଥା । ସେମାନେ ୧୯୭୭ରେ ଆପଣା ସଙ୍ଗଠନସବୁକୁ ଜନତାପାର୍ଟିରେ ମିଶାଇ ଦେଲେ ଓ ଏଇ ଦଳ କେବେ ବି ପୁଞ୍ଜିବାଦକୁ ହଟେଇବାରେ ବିଶ୍ୱାସୀ ନଥିଲା । ବିତ୍ତମନ୍ତ୍ରୀ ଭାବରେ ଦଣ୍ଡବତେ ତ ଜଗତୀକରଣ ଓ ଆଇ.ଏମ୍.ଏଫ୍. ସର୍ତ୍ତାବଳୀକୁ ସ୍ୱାଗତ କରିଥିଲେ । ଯେଉଁମାନେ ଜର୍ଜ୍ ଫର୍ଣ୍ଣାଣ୍ଡିଜ୍‌ଙ୍କୁ ନିକଟରୁ ଜାଣିଥିଲେ, ସେମାନେ ଜାଣିଥିଲେ ଯେ, ବହୁଦେଶୀୟ କମ୍ପାନୀଙ୍କ ବିରୁଦ୍ଧରେ ତାଙ୍କ କ୍ରୋଧ ଆଦୌ ଦୀର୍ଘସ୍ଥାୟୀ ନୁହେଁ । ଓସ୍‌ମାନିଆ ବିଶ୍ୱବିଦ୍ୟାଳୟର କାଞ୍ଚା ଇଲାୟାଙ୍କର ଯୁକ୍ତି ହେଲା ଯେ, ଫର୍ଣ୍ଣାଣ୍ଡିଜ୍ ଆମେରିକୀୟ ବହୁଦେଶୀୟ କମ୍ପାନୀଙ୍କ ବିରୋଧୀ, କାରଣ ସେ ଜର୍ମାନ୍ ବହୁଦେଶୀୟ କମ୍ପାନୀଙ୍କ ସମର୍ଥକ । ଏହି ହେଉଛି ଭାରତୀୟ ସମାଜବାଦୀଙ୍କ ସ୍ଥିତି ।

ନବେ ଦଶକ ପୂର୍ବରୁ ରାଷ୍ଟ୍ରୀୟ ସ୍ୱୟଂସେବକ ସଙ୍ଘ (ରା.ସ୍ୱ.ସ.)ରାଷ୍ଟ୍ରବାଦୀ ଥିଲା ଓ ବାମପନ୍ଥୀମାନେ ସାମ୍ରାଜ୍ୟବାଦର ଘୋର ବିରୋଧୀ ଥିଲେ । ତେଣୁ ଜଗତୀକରଣ ପ୍ରତି ବିରୋଧ ଏଇ ଦୁଇଟି ଗୋଷ୍ଠୀରୁ ଆସିଛି । ଏହି ଦୁଇ ଗୋଷ୍ଠୀର ଜଗତୀକରଣ ପ୍ରତି ପ୍ରତିକ୍ରିୟାରେ ଥିବା ସାମଞ୍ଜସ୍ୟ ଦେଖିଲେ ହତାଶ ହେବାକୁ ପଡ଼େ । ଭା.ଜ.ପା. ଓ ରା.ସ୍ୱ.ସ.ର ଜଗତୀକରଣ ବିରୁଦ୍ଧରେ ନିଜର କିଛି କାର୍ଯ୍ୟକ୍ରମ ନାହିଁ, ତାହା ଏକ ଗୌଣ ଶାଖା ସଙ୍ଗଠନ 'ସ୍ୱଦେଶୀ ଜାଗରଣ ମଞ୍ଚ' ହାତକୁ ଦେଇ ଦିଆଯାଇଛି । ସେଇଭଳି ସି.ପି.ଆଇ. ଓ ସି.ପି.ଏମ୍.ର ନିଜସ୍ୱ ଦେଶବ୍ୟାପୀ କୌଣସି ଜଗତୀକରଣ ବିରୋଧୀ କାର୍ଯ୍ୟପନ୍ଥା ନାହିଁ । ସେମାନେ ଏ କାମ ସେମାନଙ୍କର ଟ୍ରେଡ୍ ୟୁନିଅନ୍‌ମାନଙ୍କୁ ସମର୍ପି ଦେଇଛନ୍ତି ଓ ଟ୍ରେଡ୍ ୟୁନିଅନ୍‌ମାନଙ୍କର ମୁଖ୍ୟ ଆଗ୍ରହ ହେଉଛି କର୍ମଚାରୀମାନଙ୍କର ଚାକିରି ବଞ୍ଚାଇବା । ସାଧାରଣ କଥାବାର୍ତ୍ତାରେ ବାମପନ୍ଥୀ ନେତାମାନେ ଓ ହିନ୍ଦୁତ୍ୱବାଦୀମାନେ ସମାନ ଢଙ୍ଗରେ କଥା କୁହନ୍ତି । ସେମାନେ ଜଗତୀକରଣର ଚଳନ୍ତି ପ୍ରକ୍ରିୟା ବିଷୟରେ ବେଶ୍ ଚିନ୍ତାଶୀଳ ଓ ତାହାର ସମାଲୋଚକ ମଧ୍ୟ । କିନ୍ତୁ ସେମାନଙ୍କର ବାସ୍ତବ-ବୁଦ୍ଧି, 'ନୂଆ ବାସ୍ତବିକତା' ସମ୍ପର୍କରେ ସଚେତନତା ତାଙ୍କ ଆଦର୍ଶଗତ ଚେତନାକୁ ଫିକା କରିଦେଇଛି । ବାସ୍ତବିକତା ପ୍ରତି ଟିକେ ସଚେତନ ରହିଲେ, ବିପ୍ଳବୀମାନେ ବାସ୍ତବଧର୍ମୀ ହୁଅନ୍ତି, କିନ୍ତୁ ମାତ୍ରାଧିକ ବାସ୍ତବଧର୍ମୀତା ସେମାନଙ୍କ ବିପ୍ଳବୀ କାର୍ଯ୍ୟକଳାପକୁ ପଙ୍ଗୁ କରିଦିଏ ।

ହୁଏତ ବାସ୍ତବିକତା ପ୍ରତି ନଜର ରଖିଲେ ଉଚ୍ଚାରଣ ସବୁ ଟିକିଏ ସଞ୍ଜତ ହୁଏ । ଫାସୀବାଦୀ ଓ ପ୍ରତିକ୍ରିୟାଶୀଳ ଶକ୍ତିମାନଙ୍କ ପଛରେ ଲୋକେ ଏତେ ବେଶୀ ସଙ୍ଗଠିତ ହୋଇନାହାନ୍ତି ଯେ, ଆମେ ବୈପ୍ଳବିକ ଆଦର୍ଶର ପ୍ରଚାର କଲେ ଆମର ମୁଣ୍ଡକାଟ ହୋଇଯିବ । ଏହା ସତ ଯେ ରାଷ୍ଟ୍ରୀୟ ଉଦ୍ୟୋଗ ଓ ସରକାରୀ ବିଭାଗଗୁଡ଼ିକର କାର୍ଯ୍ୟକଳାପରେ ଲୋକେ କ୍ଷୁବ୍ଧ, ତା ଅର୍ଥ ଏଇଆ ନୁହେଁ ଯେ, ଲୋକେ ଘରୋଇକରଣ ବାଲା କି ଠିକାଦାରମାନଙ୍କୁ ଭାରି ଭଲ ପାଉଛନ୍ତି । ୧୯୯୧ ବା ସେଇ ପାଖାପାଖି ସମୟରୁ ମାର୍କ୍ସବାଦୀ ଦଳମାନେ ଜାତୀୟ ସ୍ତରରେ ଆନ୍ଦୋଳନ ଦ୍ୱାରା ଅର୍ଥନୈତିକ ପ୍ରଶ୍ନ ଉପରେ ଗୁରୁତ୍ୱ ଦେବା ବନ୍ଦ କରିଦେଇଛନ୍ତି । ଲୋକେ ବୃହତ୍ତର ଅର୍ଥନୈତିକ

ପ୍ରଶ୍ନ ସବୁ ବିଷୟରେ ଶୁଣିବାକୁ ଆଦୌ ଆଗ୍ରହୀ ନୁହନ୍ତି ଓ ଖାଲି ଧର୍ମ, ଜାତି ବା ଲିଙ୍ଗଭେଦର ସପକ୍ଷ ବା ବିପକ୍ଷରେ ଭାଷଣ ଶୁଣିବାକୁ ଆଗ୍ରହୀ ବୋଲି ଏମାନେ ଭାବୁଛନ୍ତି କି ?

ଯେଉଁ ଭାରତୀୟ ସମାଜବାଦୀ ଆନ୍ଦୋଳନ ମତେ ଗଢ଼ିଛି, ତାକୁ ନେଇ ମୁଁ ଲଜ୍ଜିତ, କାରଣ ଏ ଆନ୍ଦୋଳନ ଆଜି ବିଶ୍ୱ ସାମ୍ରାଜ୍ୟବାଦ ବିରୁଦ୍ଧରେ ଲଢ଼େଇ କରିବାକୁ, ଭାରତରେ ଅର୍ଥନୈତିକ ସାର୍ବଭୌମତ୍ୱର ଆତ୍ମସମର୍ପଣ ବିଷୟରେ ସୁଚିନ୍ତିତ ପଦକ୍ଷେପ ଗ୍ରହଣ କରିବାକୁ, ଆଜିର ଯୁବ ସମାଜକୁ ଅନୁପ୍ରାଣିତ କରିପାରୁନାହିଁ । ହିନ୍ଦୁତ୍ୱ ଜାତୀୟତାବାଦୀମାନେ ଯେ ଆହ୍ୱାନର ମୁକାବିଲା କରିପାରୁନାହାନ୍ତି, ସେନେଇ ମୁଁ ଖୁବ୍ ଦୁଃଖିତ ନୁହେଁ । କାରଣ ଆରମ୍ଭରୁ ହିଁ ସେମାନେ ସମାନତାର ବିରୋଧୀ । କିନ୍ତୁ ମାର୍କ୍ସବାଦୀ ଦଳଗୁଡ଼ିକର ଦୁର୍ବଳ ସମାଲୋଚନା ଓ କ୍ରିୟାନୁଷ୍ଠାନର ଅଭାବ ଦେଖିଲେ ଦୁଃଖ ଲାଗେ । ବିଦେଶୀ ପୁଞ୍ଜିକୁ ଆନ୍ତର୍ଜାତିକ ଅର୍ଥନୈତିକ ଶୋଷଣର ମୁଖ୍ୟ ମାଧ୍ୟମ ବୋଲି କହିବାକୁ ଆଜି ସେମାନେ ପ୍ରସ୍ତୁତ ନୁହନ୍ତି । ଯେଉଁ ଯୁବକମାନେ ମାର୍କ୍ସବାଦୀ ଦଳଗୁଡ଼ିକର ପ୍ରଭାବରେ ଆସୁଛନ୍ତି ସେମାନେ ସାମ୍ରାଜ୍ୟବାଦ-ବିରୋଧୀ ହେଉନାହାନ୍ତି; କେବଳ ଧର୍ମ ନିରପେକ୍ଷ ହେଉଛନ୍ତି । ବୁଦ୍ଧିଜୀବୀ ଓ ସୃଜନଶୀଳ ଲେଖକମାନଙ୍କୁ ସାମ୍ରାଜ୍ୟବାଦର ପ୍ରଶ୍ନ ଉପରେ ମାର୍କ୍ସବାଦୀମାନେ ପ୍ରଭାବିତ କରିପାରିଲେ ନାହିଁ, କାରଣ ସାମ୍ରାଜ୍ୟବାଦୀ ଶୋଷଣର ମୁଖ୍ୟ ଅସ୍ତ୍ର ବିଦେଶୀ ପୁଞ୍ଜି ବିରୁଦ୍ଧରେ ସେମାନେ ସ୍ୱର ଉତ୍ତୋଳନ କରିନାହାନ୍ତି ।

୨

ବାମ ଓ ପ୍ରଗତିଶୀଳ ନେତାଙ୍କ ମୁଣ୍ଡରେ ଥିବା ବିଭ୍ରାନ୍ତି ଯୋଗୁଁ ତୃତୀୟ ବିଶ୍ୱର ଚିନ୍ତାଶୀଳ ନାଗରିକମାନ ଜଗତୀକରଣର ପ୍ରକୃତ ଅର୍ଥକୁ ବୁଝି ପାରି ନାହାନ୍ତି । ଜଗତୀକରଣର ପ୍ରକ୍ରିୟାକୁ ବୁଝେଇବାକୁ କେତେକ ବୁଦ୍ଧିଜୀବୀଙ୍କ ରଚନାରେ ଉଦ୍ୟମ ହୋଇଛି ସତ, ମାତ୍ର ସେଥିରୁ କିଛି ବିଶେଷ ଲାଭ ହୋଇନାହିଁ । ଏସବୁ ବିଷୟରେ ସ୍ପଷ୍ଟତା ଆସେ ରାଜନୈତିକ ଓ ଆନ୍ଦୋଳନାତ୍ମକ ଅନୁଭୂତିରୁ । ବିଶ୍ୱ ବ୍ୟାଙ୍କ୍ ଓ ଆଇ.ଏମ୍.ଏଫ୍. ଦ୍ୱାରା ତିଆରି ଅର୍ଥନୈତିକ ଶବ୍ଦାବଳୀ ଏତେ ମାତ୍ରାରେ ପ୍ରଚଳିତ ଯେ, ସେସବୁ ନୀତିର ସମାଲୋଚକମାନେ ମଧ୍ୟ ସେସବୁ ଶବ୍ଦାବଳୀ ବ୍ୟବହାର କରିବାକୁ ବାଧ୍ୟ । ତେଣୁ ତାଲିମ୍ ପାଇନଥିବା ଜଣେ ବୁଦ୍ଧିମାନ ଲୋକ ପକ୍ଷରେ ମଧ୍ୟ ଏସବୁ ଶବ୍ଦର ଇଙ୍ଗିତାତ୍ମକ ଅର୍ଥର ମାୟାରେ ପଡ଼ିଯିବା ସ୍ୱାଭାବିକ । ଉଦାହରଣ ସ୍ୱରୂପ: 'ଫ୍ରି ଟ୍ରେଡ୍' ବା 'ମୁକ୍ତ ବାଣିଜ୍ୟ'ର ପ୍ରକୃତ ଅର୍ଥ, ଆଲୋଚନା କରିବା ପୂର୍ବରୁ, ଭଲର ମର୍ଯ୍ୟାଦା ପାଇଯାଇଥାଏ । କାରଣ 'ମୁକ୍ତ' ଅର୍ଥ ତ ସ୍ୱାଧୀନ ! ତେଣୁ ସ୍ୱାଧୀନ ବା ମୁକ୍ତ ବାଣିଜ୍ୟକୁ କାହିଁକି ଜଣେ ବିରୋଧ କରିବ । ଯେତେବେଳ ଯାଏଁ 'ଅଭିବୃଦ୍ଧି' ବା 'ବିକାଶ' ଭଳି ଶବ୍ଦର ଫଳିତାର୍ଥଗୁଡ଼ିକୁ ବୁଦ୍ଧିମାନ ଲୋକେ ବୁଝିବେ ନାହିଁ, ସେପର୍ଯ୍ୟନ୍ତ ବୁଦ୍ଧିମାନ ଲୋକେ ମଧ୍ୟ ଏହାର ବିରୋଧ କରିବେ ନାହିଁ ।

ତେଣୁ ଜଣେ ବୁଦ୍ଧିମାନ ଲୋକ ଜଗତୀକରଣର ପ୍ରକ୍ରିୟାକୁ କେମିତି ବୁଝିବ, ତାହାର ଏକ ପରିପ୍ରେକ୍ଷୀ ତିଆରି କରାଯିବା ଦରକାର । ପୁଞ୍ଜିବାଦ, ଜଗତୀକରଣ,

ପ୍ରଯୁକ୍ତି ବା ଟେକ୍ନୋଲୋଜି ଆଦି ପ୍ରକ୍ରିୟା ବିକଶିତ ଓ ବିକାଶଶୀଳ ଦେଶସବୁରେ ଭିନ୍ନ ଭିନ୍ନ ପ୍ରଭାବ ପକାଏ । ବୁଦ୍ଧିମାନ ବ୍ୟକ୍ତିଙ୍କୁ, ଏସବୁ ତାହା ନିଜ ଦେଶ ବା ଅଞ୍ଚଳରେ କି ପ୍ରଭାବ ପକାଇବ, ସେ ବିଷୟରେ ସଚେତନ ହେବା ଦରକାର । ଏଭଳି ଏକ ପୃଷ୍ଠଭୂମି ନିର୍ମାଣ ପାଇଁ ଏକ ପ୍ରାଥମିକ ଉଦ୍ୟମ ହିଁ ଏଇଠି କରାଯାଇଛି ।

ପ୍ରଥମ, ଯେତେବେଳେ ବିକଶିତ ଦେଶର ପୁଞ୍ଜି ଓ କମ୍ପାନୀମାନେ ବିକାଶଶୀଳ ଦେଶକୁ ଅବାଧରେ ପଶିଆସନ୍ତି, ତାହା ଫଳରେ ବିକାଶଶୀଳ ଦେଶଟିର ଅର୍ଥନୀତିର ପ୍ରତିକୂଳ ପରିବର୍ତ୍ତନ ଘଟେ । ଦେଶଟିର ଅଭିବୃଦ୍ଧି ସମ୍ପୂର୍ଣ୍ଣ ରୂପେ ବିଦେଶୀ ପୁଞ୍ଜି ଉପରେ ନିର୍ଭରଶୀଳ ହୋଇଯାଏ ଓ ସେତେବେଳେ ଜଗତୀକରଣର ପ୍ରକ୍ରିୟାର ଆରମ୍ଭ ହୁଏ । ବିଦେଶୀ ପୁଞ୍ଜି ଦେଶର ଗୁରୁତ୍ୱପୂର୍ଣ୍ଣ ପୁଞ୍ଜିନିବେଶ ଓ ଅର୍ଥନୈତିକ ଅଗ୍ରାଧିକାରମାନଙ୍କୁ ନିରୂପିତ କରିଚାଲେ ଓ ନିଷ୍ପତ୍ତି-ଗ୍ରହଣକୁ ନିୟନ୍ତ୍ରିତ କରେ । ଯଦି କେହି ଭାବୁଥାନ୍ତି ଯେ, ବିଦେଶୀ ପୁଞ୍ଜିକୁ ବି ସ୍ୱାଗତ କରାଯିବା ଉଚିତ ଓ ତାହା ସାଙ୍ଗକୁ ଅର୍ଥନୀତିରେ ରାଷ୍ଟ୍ରାୟତ୍ତ କ୍ଷେତ୍ରରେ ଗୁରୁତ୍ୱ ବି ଅତୁଟ ରହୁ, ତାହାହେଲେ ସେତକ ନିରୁତା ଆତ୍ମପ୍ରବଞ୍ଚନା ମାତ୍ର, ଏକକାଳୀନ ସେ ଦୁଇଟି କଥା ଅସମ୍ଭବ ।

ବିଶ୍ୱ ବାଣିଜ୍ୟ ସଙ୍ଗଠନର ପରିପ୍ରେକ୍ଷୀରେ ଯଦି ବିଦେଶୀ ପୁଞ୍ଜି ଆସିବ, ତେବେ କେଉଁ କ୍ଷେତ୍ରରେ ପୁଞ୍ଜି-ବିନିଯୋଗ ହେବ ଓ ଅର୍ଥନୀତିର ଗତି କେଉଁ ଦିଗକୁ ହେବ, ତାହା ବିଦେଶୀ ପୁଞ୍ଜି ହିଁ ନିର୍ଣ୍ଣୟ କରିବ, ଏଥିରେ ସନ୍ଦେହ ନାହିଁ । ଏପରିକି ଘରୋଇ ପୁଞ୍ଜି ମଧ୍ୟ ବିଦେଶୀ ପୁଞ୍ଜି ଦ୍ୱାରା ନିର୍ଦ୍ଦେଶିତ ମାର୍ଗରେ ପରିଚାଳିତ ହେବ । ଏଭଳି ପରିବର୍ତ୍ତନ ପାଇଁ ଯାହାସବୁ ଆଇନ୍‌କାନୁନ୍ ଦରକାର ତାହା ସଙ୍ଗେ ସଙ୍ଗେ ପ୍ରଣିତ ହୁଏ । ସରକାର ଓ ପାର୍ଲିଆମେଣ୍ଟ ଉପରେ ଚାପ ପ୍ରୟୋଗ କରି ବିନା ଆଲୋଚନାରେ ବିଧେୟକ ସବୁ ପାରିତ କରେଇ ନିଆଯାଏ, କାରଣ ବିଧେୟକ ପାରିତ ହେବାରେ ଡେ଼ରି ହେଲେ ବିଦେଶୀ ପୁଞ୍ଜି ଆସିବା ବନ୍ଦ ହୋଇଯିବ ! ଏପରିକି କାଳେ ବିଦେଶୀ ପୁଞ୍ଜିର ଆଗମନରେ ବାଧା ପହଞ୍ଚିବ, ବିରୋଧୀଦଳର ସଦସ୍ୟମାନେ ସେଥିପାଇଁ ବିନା ଚର୍ଚ୍ଚାରେ ଭୋଟ ଦେଇଦିଅନ୍ତି । ଏହିପରି ଭାବରେ ରାଜନୈତିକ ଦାସତ୍ୱର ମୂଳଦୁଆ ପଡ଼େ ।

ଦ୍ୱିତୀୟ, ଶକ୍ତିଶାଳୀ ଦେଶସବୁରୁ ଜିନିଷପତ୍ରର ସୁଗମ ଆମଦାନୀ ପାଇଁ ଜଗତୀକରଣ ଦ୍ୱାର ଉନ୍ମୁକ୍ତ କରିଦିଏ । ଅତ୍ୟାବଶ୍ୟକ ଜିନିଷର ଘରୋଇ ଉତ୍ପାଦନ ଓ ଲୋକଙ୍କ ଦ୍ୱାରା ଉତ୍ପାଦିତ ସାମଗ୍ରୀ ଧୀରେ ଧୀରେ ଅପସାରିତ ହୋଇ ବିଦେଶୀ ବସ୍ତୁ ତାହାର ଜାଗା ମାଡ଼ିବସେ । ଯେତେବେଳେ ଆମଦାନୀ କରାଯାଇଥିବା ସାମଗ୍ରୀ ସବୁ ଲୋକଙ୍କ ଦ୍ୱାରା ଉତ୍ପାଦିତ ହେଉଥିବା ଜିନିଷପତ୍ରକୁ ଅପସାରିତ କରୁଥାଏ, ସେତେବେଳେ ଜାତୀୟ ସରକାର ଖାଲି ନୀରବଦ୍ରଷ୍ଟା ହୋଇ ରହିଯାଏ । ତେଣୁ ଲୋକଙ୍କ ଦ୍ୱାରା ଉତ୍ପାଦନ ଦୁର୍ବଳ ହୋଇଯାଏ, ଶ୍ରମିକ ହତାଶ ହୁଏ । ଲୋକେ କେବଳ ବଞ୍ଚିରହିବା ପାଇଁ କଷ୍ଟେମଷ୍ଟେ କିଛି ଉତ୍ପାଦନ କରିବେ, କିନ୍ତୁ ତାଙ୍କ ଉତ୍ପାଦିତ ବସ୍ତୁପାଇଁ ବଜାର ହୁଏତ ଶେଷ ହୋଇସାରିଥିବ । ଉତ୍ପାଦନକାରୀ ଶ୍ରେଣୀର ନିପୀଡ଼ନକୁ ରୋକିବାର କିଛି ବାଟ ବି ନଥିବ ।

ତୃତୀୟ, ବେକାରୀ ଓ ଲୁକ୍କାୟିତ ବେକାରୀ ବଢ଼ିବା ସାଙ୍ଗକୁ ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀର ସ୍ଥିତି ସୁଦୃଢ଼ ହୁଏ । ସେମାନେ ବହୁଦେଶୀୟ କମ୍ପାନୀ ଦ୍ୱାରା ପ୍ରସ୍ତୁତ ସାମଗ୍ରୀ ଏଣିକି ଉପଭୋଗ କରିବାକୁ ସୁଯୋଗ ପାଆନ୍ତି । ଆଧୁନିକ ଶିଳ୍ପ ଓ ବାଣିଜ୍ୟର ସଙ୍ଗଠନ ଏମିତି ଢଙ୍ଗରେ ପରିବର୍ତ୍ତିତ ହୁଏ ଯେ, ଶ୍ରମିକ ଶ୍ରେଣୀର ନିଯୁକ୍ତି କମେ, କିନ୍ତୁ ମେନେଜର, ଦଲାଲ୍ ଓ ସେବା-କ୍ଷେତ୍ରରେ ଲୋକଙ୍କ ଉପାର୍ଜନ ବହୁଗୁଣିତ ହୁଏ । ଭାରତରେ ସହରୀ ଓ ଶିଳ୍ପ କ୍ଷେତ୍ରରେ ଶ୍ରେଣୀ-ସଂରଚନାରେ ଯେଉଁ ପ୍ରଭୁତ ପରିବର୍ତ୍ତନ ଏ ଭିତରେ ହୋଇଛି, ତାହା ବିଷୟରେ ବାମପନ୍ଥୀ ବୁଦ୍ଧିଜୀବୀମାନେ ଯଥେଷ୍ଟ ଦୃଷ୍ଟି ଦେଉ ନାହାନ୍ତି । ପଞ୍ଚମ ବେତନ ଆୟୋଗର ସୁପାରିଶ୍ ଏଇ ନୂତନ ଶ୍ରେଣୀ ସଂରଚନାରେ ସାହାଯ୍ୟ କରିଛି । ଘରୋଇ କ୍ଷେତ୍ରରେ କାମ କରୁଥିବା ମେନେଜରମାନଙ୍କର ଦରମା ଓ ଭତ୍ତା ବୃଦ୍ଧି ତାହା ପୂର୍ବରୁ ମନମୋହନ ସିଂହଙ୍କ ବିତ୍ତମନ୍ତ୍ରୀତ୍ୱ କାଳରୁ ହୋଇସାରିଥିଲା । ଉଭୟ ବାମପନ୍ଥୀ ଓ ଜାତୀୟତାବାଦୀ ଟ୍ରେଡ୍ ୟୁନିଅନ୍‌ମାନେ ଜାଣନ୍ତି ଯେ, ସରକାରୀ କର୍ମଚାରୀଙ୍କ ଏ ବଢ଼ନ୍ତା ବେତନ ଓ ଅନ୍ୟାନ୍ୟ ଆୟ ବୃଦ୍ଧି କେବେ ହେଲେ ଶ୍ରମିକ ଶ୍ରେଣୀର ସଂଗ୍ରାମର ଫଳ ନୁହେଁ । ଏହା ବିଦେଶୀ ପୁଞ୍ଜି ଓ ବହୁ ବିଦେଶୀୟ କମ୍ପାନୀମାନଙ୍କର ସ୍ୱାର୍ଥକୁ ଆଖି ଆଗରେ ରଖି କରଯାଉଛି । ପୂର୍ବରୁ କେବେ କୌଣସି ବେତନ ଆୟୋଗର ସୁପାରିଶ୍  ଧନୀ ଓ ଦରିଦ୍ର ଶ୍ରେଣୀ ଭିତରେ ଏତେ ତାରତମ୍ୟ ସୃଷ୍ଟି କରିନଥିଲା । ଏହାଦ୍ୱାରା କେନ୍ଦ୍ର ଓ ରାଜ୍ୟ  ସରକାର ଓ ରାଷ୍ଟ୍ରାୟତ୍ତ ଉଦ୍ୟୋଗ ସବୁ ଉପରେ ଏତେ ଅଧିକା ଭାର ପଡ଼ିଲା ଯେ, ଆଉ ଯେତେ ସରକାରୀ ସମ୍ପତ୍ତି ବିକ୍ରିକଲେ ବା ପୁଞ୍ଜି ପ୍ରତ୍ୟାହାର କଲେ ମଧ୍ୟ ସରକାରମାନଙ୍କର ବିତ୍ତୀୟ ସ୍ଥିତି ସୁଧୁରିବ ନାହିଁ ।

ଚତୁର୍ଥ, ବିକଶିତ ଦେଶରେ ଯାହା ପ୍ରଯୁକ୍ତି ବିଦ୍ୟା ବା ଟେକ୍ନୋଲଜି, ବିକାଶଶୀଳ ଦେଶର ବୁର୍ଜୁଆଙ୍କ ତାହା ହେଉଛି ସୌଖୀନ ବସ୍ତୁ । ଏସବୁ ଦେଶର ମଧ୍ୟବିତ୍ତ ଶ୍ରେଣୀ ପାଗଳ ଭଳି ଜିନିଷ କିଣିବାରେ ଲାଗିଛନ୍ତି । କମ୍ପ୍ୟୁଟର, ମୋବାଇଲ୍ ଫୋନ୍, ଇଲୋକ୍‌ଟ୍ରୋନିକ୍ ସଞ୍ଚାର ବ୍ୟବସ୍ଥା, ଦ୍ରୁତଗାମୀ ଇଞ୍ଜିନ - ଏସବୁର ଅଧିକ ଉତ୍ପାଦନ ବା ସାମୂହିକ ଉନ୍ନତି ନିମନ୍ତେ ପ୍ରଯୁକ୍ତି ବା ବୈଷୟିକ କୌଶଳ ନୁହେଁ, ମୁଷ୍ଟିମେୟ ଲୋକଙ୍କର ଜୀବନ ଯାପନକୁ ଆହୁରି ବ୍ୟୟବହୁଳ କରିବାକୁ ଏସବୁ ହେଉଛି ବିଦେଶରୁ ଆମଦାନୀ କରା ପ୍ରସାଧନ ସାମଗ୍ରୀ । ସରକାରଙ୍କ ରାଜସ୍ୱ ଓ ଋଣ, ଅଫିସର ଓ ଅମଲାମାନଙ୍କୁ ଏସବୁ ଖେଳନା ପରି ଦିଶୁଥିବା ମେସିନ୍ ଯୋଗାଇଦେବାରେ ପାଣି ପରି ଟଙ୍କା ଖର୍ଚ୍ଚ କରାଯାଉଛି । ବିଶ୍ୱ ବାଣିଜ୍ୟ ସଂଗଠନର ରାଜୁତିରେ ଏହା ହିଁ ହେବ ଆଧୁନିକ ପ୍ରଯୁକ୍ତିର ଭୂମିକା । ଏହା ଉତ୍ପାଦନଶୀଳ ପ୍ରଯୁକ୍ତି ନୁହେଁ । ଯେତେବେଳେ ବିଶ୍ୱ ବାଣିଜ୍ୟ ସଙ୍ଗଠନ ବ୍ୟବସ୍ଥାର ବାହାରେ ଏସବୁ ପ୍ରଯୁକ୍ତିକୁ ପରିବର୍ତ୍ତିତ କରି, ଉତ୍ପାଦନକାରୀ ଜନତାକୁ ସିଧାସଳଖ ଓ ସୁନିର୍ବାଚିତ ଢଙ୍ଗରେ ଉନ୍ନତ ପ୍ରଯୁକ୍ତି ପହଞ୍ଚାଯାଇ ପାରିବ, ସେତେବେଳେ ତାହା ହୁଏତ ଉତ୍ପାଦନକ୍ଷମ ହେବ । ଆଜିର ପ୍ରଯୁକ୍ତି ତ ଶ୍ରମିକଙ୍କ ଛଟେଇ କରେଇବା ସାଙ୍ଗକୁ ଏକ 'ବୈଷୟିକ ସାଆନ୍ତିଆ ଗୋଷ୍ଠୀ' ବା 'ଟେକ୍ନୋଲଜିକାଲ୍ ଆରିଷ୍ଟୋକ୍ରେସି'ର ନିର୍ମାଣ କରୁଛି ।

ପଞ୍ଚମ, ଯଦି ଏହି ଢଙ୍ଗର 'ବିକାଶ' ଚାଲୁରହେ, ତେବେ ଖୁବ୍ ଶୀଘ୍ର ବିଶ୍ୱ ପୁଞ୍ଜିବାଦର କେନ୍ଦ୍ରସ୍ଥଳୀ ବା ସମ୍ରାଟ୍‌ମାନେ ଯେଭଳି ଚାହିଁବେ ଦେଶର ଅର୍ଥନୀତି ସେଇ ରାସ୍ତାରେ ଚାଲିବ । ସରକାରୀ ବିତ୍ତ ବ୍ୟବସ୍ଥା ତ ପୁରାପୁରି ଧରାଶାୟୀ ହୋଇସାରିଛି । ସାଧାରଣ ନାଗରିକର ଭାଗ୍ୟ ହେବ ବେକାରୀ ବା ପ୍ରଚ୍ଛନ୍ନ ବେକାରୀ ଓ ଲୋକଙ୍କ ହାତରେ କ୍ରୟଶକ୍ତି ନ ରହିଲେ ଅର୍ଥନୈତିକ ସ୍ଥାଣୁତ୍ୱ ଦେଖାଦେବା ନିଶ୍ଚିତ । ତେଣୁ ଏସବୁ ଦେଶରେ ପୁଞ୍ଜିବାଦର ସଙ୍କଟ ବାରମ୍ବାର ଦେଖାଦେବ ଓ ସଙ୍କଟରୁ ମୁକୁଳିବା ଲାଗି ଏସବୁ ଦେଶର ସରକାରମାନେ ମହାଶକ୍ତିମାନଙ୍କୁ ତାଙ୍କ ଚାହିଁବା ମୁତାବକ ସବୁ ରକମର ରିହାତି ଦେବାପାଇଁ ବାଧ ହେବେ । ଯଦି ଯୁବକମାନେ ଜଗତୀକରଣ ବିରୁଦ୍ଧରେ କିଛି ଶିଖିବେ ନାହିଁ, ସେମାନେ ସଦାବେଳେ ଉଚ୍ଛନ୍ନ ଓ ଅନିଶ୍ଚିତ ମାନସିକ ଅବସ୍ଥାରେ ରହିବେ ଓ ଖୁବ୍ ସହଜରେ ଜାତି, ଧର୍ମ, ସମ୍ପ୍ରଦାୟର ଭାବନାକୁ ଓ ପଡ଼ୋଶୀ ଦେଶ ବିରୁଦ୍ଧରେ ରହିଥିବା ଈର୍ଷା-ଦ୍ୱେଷକୁ ଉତ୍ତେଜିତ କରିପାରୁଥିବା ରାଜନୀତିର ଶିକାର ହେବେ । ଜଗତୀକରଣ-ପ୍ରଭାବିତ ଏକ ବିକାଶଶୀଳ ଦେଶରେ ଦେଖାଦେଉଥିବା ସାମାଜିକ ଓ ସୀମାଗତ ବିଦ୍ୱେଷର ବହ୍ନିକୁ ଧର୍ମନିରପେକ୍ଷତା ବା ପରମାଣୁ ବୋମା ଆଦୌ ନିର୍ବାପିତ କରି ପାରିବ ନାହିଁ ।

୩

ଆମକୁ ପାହାରେ ଦେବା ପାଇଁ ଚୀନ୍ ହେଉଛି ଗୋଟିଏ ବଡ଼ ଠେଙ୍ଗା । ଯେତେବେଳେ ଆମେ ବିଶ୍ୱ ବାଣିଜ୍ୟ ସଙ୍ଗଠନକୁ କେବଳ ସମାଲୋଚନା ନ କରି ତାହାର ପ୍ରତ୍ୟକ୍ଷ ବିରୋଧ କରିବା ଆରମ୍ଭ କରୁ, ଯଦି ବିଦେଶୀ ପୁଞ୍ଜିକୁ ଦେଶରୁ ତଡ଼ିବା କଥା କହୁ, ତେବେ ଅପର ପକ୍ଷ ଆମକୁ ଚୀନ୍ ଓ ତାହାର ଅଭିବୃଦ୍ଧି ବିଷୟରେ ମନେପକେଇ ଦିଅନ୍ତି । ସେମାନେ ଠିକ୍ ଜାଣିଛନ୍ତି ଯେ, ଚୀନ୍‌କୁ ଅତିକ୍ରମ କରି ଆମ ଚିନ୍ତା ବା କଳ୍ପନା ଆଗେଇପାରେ ନାହିଁ । ତେଣୁ ଆମ ମୁହଁରେ ତାଲା ପଡ଼ିଯାଏ । ଚୀନ୍ କ'ଣ ଆମଠୁ ବେଶୀ ସମାଜବାଦୀ ଓ ବେଶୀ ଜାତୀୟତାବାଦୀ ନୁହେଁ? ସତକଥା, ଅନ୍ୟାନ୍ୟ ବିକାଶଶୀଳ ଦେଶ ତୁଳନାରେ, ଖାସ୍ କରି ଭା.ଜ.ପା. ତୁଳନାରେ, ଚୀନ୍ ବେଶୀ ଜାତୀୟତାବାଦୀ । ଜାତୀୟତାବାଦ ଦୃଷ୍ଟିରୁ ଦେଖିଲେ ଚୀନ୍ ହୁଏତ ଯୁକ୍ତରାଷ୍ଟ୍ର ଆମେରିକାର ସମକକ୍ଷ । ସବୁ ଧରଣର ଭାରତୀୟ ପ୍ରଗତିଶୀଳ ଲୋକେ ଜାଣନ୍ତି ଯେ, ସେମାନେ ଟିକିଏ କମ୍ ଜାତୀୟତାବାଦୀ । ତାହାହେଲେ ସମାଜବାଦ ବିଷୟଟି କ'ଣ? ଏ ବିଷୟରେ ମଧ୍ୟ ନିଜ ଦଳ ବା ଗୋଷ୍ଠୀ ଅପେକ୍ଷା ଚୀନ୍ କମ୍ୟୁନିଷ୍ଟ୍ ପାର୍ଟି ଯେ ବେଶୀ ବାମପନ୍ଥୀ, ଏକଥା ସବୁ ଧରଣର ଭାରତୀୟ ପ୍ରଗତିଶୀଳ ବ୍ୟକ୍ତି ମାନି ନେଇଛନ୍ତି ।

ଆଜିର ଭାରତୀୟ ବାମପନ୍ଥୀମାନେ (ନିଜକୁ ଗଣତାନ୍ତ୍ରିକ-ସମାଜବାଦୀ ବୋଲାଉଥିବା ସମାଜବାଦୀଙ୍କ ସମେତ) ନିଜ ହୃଦୟ ଭିତରେ ଚୀନ୍‌ର ଜାତୀୟତାବାଦୀ ଆକାଂକ୍ଷା ଓ 'ବଜାର-ସମାଜବାଦ'ର ସମନ୍ୱୟକୁ ଦେଖି ଖୁବ୍ ଅଭିଭୂତ ହେଉଛନ୍ତି । ଏତେ ଦୂର ଉଚ୍ଚକିତ ହେଉଛନ୍ତି ଯେ, ଚୀନ୍ ସେମାନଙ୍କ ଆଦର୍ଶର ନମୂନା ବା ରୋଲ୍-ମଡ଼େଲ୍ ହୋଇଯାଉଛି । ଚୀନ୍ ଦ୍ୱାରା ସେମାନେ ଏତେ ଅଭିଭୂତ ଯେ ଚୀନ୍‌ର ପୁଙ୍ଖାନୁପୁଙ୍ଖ ଆଲୋଚନା ମଧ୍ୟ ହୁଏ ନାହିଁ । କେବେ କେମିତି ତୁଳନାତ୍ମକ ଭାବରେ

ହିଁ ଚୀନ୍‌ର ଉଲ୍ଲେଖ କରାଯାଏ । ବାମପନ୍ଥୀ ବୁଦ୍ଧିଜୀବୀମାନେ ଚୀନ୍ ବିଷୟରେ ପୂର୍ଣ୍ଣାଙ୍ଗ ଲେଖା ବା ବହି ଲେଖୁନାହାନ୍ତି । 'ଚୀନ୍ କ'ଣ ଠିକ୍ ରାସ୍ତାରେ ଚାଲିଛି ?' -ପ୍ରଶ୍ନ ଉପରେ ସେମାନେ ସବିଶେଷ ଆଲୋଚନା କରନ୍ତି ନାହିଁ । ଅଥଚ ଚୀନ୍‌ର ଅଭିବୃଦ୍ଧି ପରିସଂଖ୍ୟାନକୁ ଉଦ୍ଧୃତ କରି ଉଲ୍ଲସିତ ହୁଅନ୍ତି ।

୧ ୯ ୯ ୦ ପରେ ସୋଭିଏତ୍ ସଙ୍ଘରେ ଯାହା ହେଲା ଓ ଡେଙ୍ଗ୍‌ଙ୍କ ସମୟରୁ ଚୀନ୍‌ରେ ଯାହା ହେଉଛି, ତାହା ସବୁ ବାମପନ୍ଥୀଙ୍କ ପାଇଁ ଅନେକ ଭାବରେ ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ ଅଟେ । ଆମ ମାନସିକ ପୃଷ୍ଠଭୂମିର ଏକ ଅଂଶ ଥିଲା ସୋଭିଏତ୍ ୟୁନିଅନ୍ ଓ ତାହା ଭୁଶୁଡ଼ି ପଡ଼ିଛି । ଏ ପତନର ପରିସ୍ଥିତିକୁ ବିଶ୍ଳେଷଣ କରି ମସ୍ତିଷ୍କରେ ହୋଇଥିବା ଶୂନ୍ୟତାକୁ ଭରିବା ପାଇଁ ଚେଷ୍ଟା ହୋଇଛି କି ? ଏଭଳି ଏକ ଘଟଣା ଉପରେ ହଜାର ହଜାର ପ୍ରବନ୍ଧ, ଆଲୋଚନା ଓ ବହି ଲେଖାଯିବା କଥା ।

ସେହି ଭଳି ଆଉ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ହେଲା ଚୀନ୍ ଯେତେବେଳେ ତାହାର ଅଭିବୃଦ୍ଧିର ରାସ୍ତା ଭାବରେ ଏକ ଦକ୍ଷିଣପନ୍ଥୀ ମୋଡ଼ ନେଇ ବିଶ୍ୱ ପୁଞ୍ଜିବାଦୀ ବଜାରକୁ ଗ୍ରହଣ କରିନେଲା । ସମାଜବାଦୀ ଦିଗକୁ ଏବେ ଚୀନ୍ ଯାଉଛି କି ? ଏବେ ଚୀନ୍-ଗବେଷକମାନେ ମାର୍କ୍ସବାଦ-ଲେନିନ୍‌ବାଦ୍ ସମ୍ପର୍କରେ କ'ଣ କହୁଛନ୍ତି ? ହୁଏତ ଏ ପ୍ରଶ୍ନଗୁଡ଼ିକ ମଧ୍ୟ ଆମେ ପଚାରିପାରୁ ନାହୁଁ । ଆମ ମନ ଏମିତି ଭାଙ୍ଗି ପଡ଼ିଛି ଯେ, ଆଉ ଥରେ ସେ ବିଷୟରେ ଚିନ୍ତା କରିବା ହୁଏତ ଅଧିକ ଯନ୍ତ୍ରଣାଦାୟକ ହେବ । ଆଉକିଛି ନୂଆ ତିଆରି କରିବାର ଯୋଜନା ହିଁ ହୁଏତ ଆମକୁ ଭୟଭୀତ କରିଦେଉଛି ! ସିସିଫସ୍ ଭଳି ଖାଲି ପୁନରାବୃତ୍ତି ଆମେ କରିବା ନାହିଁ ସିନା, କିନ୍ତୁ ଏ ନୂଆ ପିଢ଼ିକୁ କ'ଣ ଆମେ ବିଶ୍ୱାସକୁ ନେବା ନାହିଁ ? ତାଙ୍କୁ ଖୋଲାଖୋଲି କହିବା ନାହିଁ ଯେ, ଆମେ ପ୍ରକୃତରେ କେତେ ଅସହାୟ ଅନୁଭବ କରୁଛୁ ? ଆମେ ଯଦି ଅସହାୟ ଅନୁଭବ କରୁଛୁ, ସେମାନେ ଆସନ୍ତୁ ଓ ଆମଠାରୁ ସ୍ୱପ୍ନଗୁଡ଼ିକୁ, ଆଦର୍ଶଗୁଡ଼ିକୁ ନେଇଯାଆନ୍ତୁ । ବାମପନ୍ଥୀ ନେତାମାନେ ନିଜର ଅସହାୟତା ଓ ଅକର୍ମଣ୍ୟତାକୁ ସ୍ୱୀକାର କରିବାର ଆତ୍ମବଳ ଦେଖାଇ ପାରୁନାହାନ୍ତି । ତେଣୁ ଅତୀତରେ ଯେଉଁସବୁ ସ୍ୱପ୍ନ ଓ ଆଦର୍ଶଗୁଡ଼ିକର ବାହକ ହୋଇଥିଲେ ସେସବୁକୁ ନୂଆ ପିଢ଼ି ହାତରେ ସମର୍ପି ପାରୁନାହାନ୍ତି ।

ପ୍ରଶ୍ନ ହେଉଛି, ଜଗତୀକରଣକୁ ବିରୋଧ କରିବାକୁ ଯାଇ ଆମେ ଜାତୀୟତାବାଦୀ ହେବା କି ? ସି.ପି.ଆଇ.ର ଜନୈକ ବୁଦ୍ଧିଜୀବୀ କହିଲେ, 'ଆମେ ଗଣତାନ୍ତ୍ରିକ ଜାତୀୟତାବାଦୀ ହେବା ଦରକାର !' ('ଗଣତାନ୍ତ୍ରିକ ଜାତୀୟତାବାଦୀ' ଅଭିବ୍ୟକ୍ତିଟି ମତେ ସତରେ ଭଲ ଲାଗିଲା) ଦ୍ୱିତୀୟ ପ୍ରଶ୍ନଟି ହେଲା: ଚୀନ୍ କ'ଣ ସମାଜବାଦ ଆଡ଼କୁ ଆଗଉଛି କି ? ଚୀନ୍‌ର ଏକ ସୀମିତ ଅଞ୍ଚଳରେ ହୋଇଥିବା ଅଭିବୃଦ୍ଧି ଆଗାମୀ ସମାଜବାଦର ଇଙ୍ଗିତ କି ? ସମସ୍ତଙ୍କ ପାଇଁ ଏକା ସମୟରେ ଉନ୍ନତି ହେଉଥିଲେ ସେ ଉନ୍ନତିକୁ ସମାଜବାଦୀ କହିହେବ । କିନ୍ତୁ ଚୀନ୍‌ର ବାକ୍‌ପଟୁଙ୍କ ସୁନ୍ଦର ଭାଷାରେ "କିଛି ଲୋକ ସେଠି ଆଗ ପହଞ୍ଚିବେ ।" କିଛି ଲୋକ ଉନ୍ନତି ପାଖରେ ଆଗ ପହଞ୍ଚିବେ କହିବାର ଅର୍ଥ 'ଅନ୍ୟମାନେ ଏବେ ପହଞ୍ଚିବେ ନାହିଁ !' ଜି-୮ର ଏକ ବୈଠକରେ, ନିକଟ ଅତୀତରେ ପୃଥିବୀର ସବୁଠୁ ଧନୀ ଦେଶର ରାଷ୍ଟ୍ରମୁଖ୍ୟମାନେ ଆମକୁ ପ୍ରତିଶ୍ରୁତି

ଦେଇଛନ୍ତି ଯେ ଅନ୍ୟମାନଙ୍କ ପାଇଁ ଏଇ 'ଏବେ ନୁହେଁ' ସମୟଟି ବେଶୀ ଲମ୍ବା ହେବ ନାହିଁ । ସେମାନେ ସତକୁ ସତ ଏକ ଶପଥ ନେଇଛନ୍ତି ଯେ, ତୃତୀୟ ବିଶ୍ୱକୁ ସୂଚନା-ପ୍ରଯୁକ୍ତି (ଇନ୍‌ଫର୍‌ମେସନ୍ ଟେକ୍ନୋଲଜି) ଦ୍ୱାରା ଏମିତି ପ୍ରସ୍ତୁତ କରିଦେବେ ଯେ, ଏଇ 'ଏବେ ନୁହେଁ'ର ସମୟ ବ୍ୟବଧାନ କମିଯିବ ଓ ତୃତୀୟ ବିଶେଷଣଟି ବିଲୁପ୍ତ ହୋଇଯିବ । ତୃତୀୟ ପ୍ରଶ୍ନ ହେଉଛି, ଆର୍ଥିକ ସମାନତାର ଯେଉଁ ଲକ୍ଷ୍ୟ ଥିଲା, ତାହାର କ'ଣ ହେବ ?

ବିଂଶ ଶତାବ୍ଦୀର ଶେଷ ଦୁଇ ଦଶକରେ 'ସମାନତା' ଉପରେ ବିଶ୍ୱାସ କମି ଯାଉଛି, ଭାଙ୍ଗି ପଡୁଛି । ବାମପନ୍ଥୀମାନେ ଅର୍ଥନୈତିକ ସମାନତାର କଥା କହୁ ବି ନାହାନ୍ତି । ସମାନତା ଉପରୁ ଆମ ବିଶ୍ୱାସ ତୁଟି ଯିବାର କାରଣ ହାଇଟେକ୍ ଓ ଆଧୁନିକ ଉନ୍ନତି ପ୍ରତି ଆଗ୍ରହ । ଧାର୍ମିକ ଅଲୌକିକ କାଣ୍ଡ ସବୁକୁ ସିନା ଆମେ ପ୍ରତ୍ୟାଖ୍ୟାନ କରିଦେଲେ, କିନ୍ତୁ ହାଇ-ଟେକ୍‌ର ଅଲୌକିକ ଶକ୍ତି ଓ ତାହା ସହ ଯୋଡ଼ି ହୋଇ ରହିଥିବା ପ୍ରଗତି ଆଗରେ ଆମେ ଅଭିଭୂତ । ସମାନତାର ଅନୁପ୍ରବେଶ ଏ ପ୍ରଗତିର ଉଚ୍ଚତାକୁ କମେଇ ଦେବ । ବାସ୍ତବରେ ତୃତୀୟ ବିଶ୍ୱର ଦେଶ ସବୁରେ ହାଇଟେକ୍ ଓ ପ୍ରଗତି ସଦାବେଳେ ଏକାଠି ଦେଖିବାକୁ ମିଳେନାହିଁ । କେବଳ ଔପନିବେଶିକ ବୁଦ୍ଧିଜୀବୀ ଶ୍ରେଣୀର କଳ୍ପନାରେ ହାଇ-ଟେକ୍ ଅର୍ଥ ପ୍ରଗତି ।

ଗୋଟିଏ ଉଦାହରଣ ଦେଲେ ଯଥେଷ୍ଟ ହେବ । ଯେଉଁଠି ଉଚ୍ଚ-ପ୍ରଯୁକ୍ତି ବା ହାଇ-ଟେକ୍ ଆସିଛି, ଆଦିବାସୀ ଜନଗୋଷ୍ଠୀମାନେ ସେଠି ସର୍ବସ୍ୱାନ୍ତ ହୋଇଯାଇଛନ୍ତି । ଏହା ସ୍ୱାଭାବିକ, କାରଣ ଏ ହାଇ-ଟେକ୍ ତିଆରି ହୋଇଛି ଉପନବେଶ ଗୁଡ଼ିକର ଶୋଷଣ କରି ଶାସକ ଦେଶକୁ ଧନୀ କରିବା ପାଇଁ । ଶସ୍ତା କଞ୍ଚାମାଲ ଓ ଶସ୍ତା ଶ୍ରମିକଙ୍କୁ ବ୍ୟବହାର କରି ଜମା ହେଉଥିବା ଲାଭକୁ ଉପନିବେଶ ଗୁଡ଼ିକରୁ ଦ୍ରୁତଗତିରେ ନେଇଯିବା ପାଇଁ ହିଁ ଏ ପ୍ରଯୁକ୍ତିର ପ୍ରୟୋଗ । ଅଧିକାଂଶ କ୍ଷେତ୍ରରେ ଉଚ୍ଚ-ପ୍ରଯୁକ୍ତି ବା ହାଇ-ଟେକ୍‌ର ଅର୍ଥ ଅଧିକ ତୀବ୍ର ଗତି ! ତୀବ୍ର ଗତି ସବୁବେଳେ ସବୁଠାରେ ଭଲ ପରିଣାମ ଦିଏ ନାହିଁ । ଯେତେବେଳେ ବିକାଶଶୀଳ ଦେଶ ସେଇ ସମାନ ପ୍ରଯୁକ୍ତିକୁ ଗ୍ରହଣ କରେ, ଦେଶ ଭିତରେ ଆଭ୍ୟନ୍ତରୀଣ ଉପନିବେଶର ସୃଷ୍ଟି ହୁଏ ଓ ଆଞ୍ଚଳିକ ବୈଷମ୍ୟ ବଢ଼ିଚାଲେ । ଅବିକଶିତ ଓ ବଞ୍ଚିତ ଅଞ୍ଚଳ ଭିତରେ ସମୃଦ୍ଧିର ଅଳ୍ପ କେତୋଟି ଗମ୍ବୁଜ କେବଳ ଇତଃସ୍ତତଃ ମୁଣ୍ଡ ଟେକିଥାଏ ।

ବିକାଶଶୀଳ ଦେଶମାନଙ୍କ ପକ୍ଷରେ ମୁଣ୍ଡପିଛା ପୁଞ୍ଜିନିବେଶ ଓ ଅଞ୍ଚଳ ପ୍ରତି ପ୍ରଯୁକ୍ତିର-ବ୍ୟବହାରରେ ବିକଶିତ ଦେଶମାନଙ୍କ ସମକକ୍ଷ ହେବା କଦାଚିତ୍ ସମ୍ଭବ ନୁହେଁ । ଉତ୍ତର ଆମେରିକା ଓ ପଶ୍ଚିମ ୟୁରୋପକୁ ଦେଖିଲେ ଯାହା ଜଣାପଡ଼େ, ଏ ଆଧୁନିକ ଉନ୍ନତି ଆଦୌ ସୁସ୍ଥ ଓ ସଭ୍ୟ ଉନ୍ନତି ନୁହେଁ । ଏହା ମୋଗଲ୍ ସମ୍ରାଟ୍ ବା କ୍ଲିଓପାଟ୍ରା ସମୟର ଉନ୍ନତି ଭଳି ବର୍ବର ଓ ଅସୁସ୍ଥ ସମୃଦ୍ଧି; ଏହା ଏକ ଉଦ୍ଧତ ସମୃଦ୍ଧି । ସମାଜବାଦ ଦ୍ୱାରା ଯେଉଁ ଉନ୍ନତି ହେବ ସେ ଉନ୍ନତି ଏକ ଭିନ୍ନ ରକମର ଉନ୍ନତି ହେବ । କାହାର ଧନଦୌଲତ୍‌ରେ ଆଶ୍ଚର୍ଯ୍ୟଜନକ ବୃଦ୍ଧି ହେବ ନାହିଁ । ସେ ଉନ୍ନତି ଯେଉଁସବୁ ସାମଗ୍ରୀ ଓ ସେବାକୁ ନେଇ ସାଧିତ ହେବ, ସେସବୁ ସାମଗ୍ରୀ ଓ ସେବା ଅଲଗା ପ୍ରକାରର

ହେବେ । ପୁଞ୍ଜିବାଦୀ ବ୍ୟବସ୍ଥାରେ ମହିମାମଣ୍ଡିତ ହୋଇଥିବା କେତେକ 'ବହୁମୂଲ୍ୟ' ସାମଗ୍ରୀ ଓ ସେବା ତ ନିହାତି ଅଦରକାରୀ ଓ ଅନାବଶ୍ୟକ ହୋଇଯିବେ । ସୋଭିଏତ୍ ସଙ୍ଘର ପତନର ଏକ ମୌଳିକ କାରଣ ହେଉଛି ବୈଷୟିକ ବା ପ୍ରଯୁକ୍ତିଗତ ବିଫଳତା । ସୋଭିଏତ୍ ସଙ୍ଘ ଯୁକ୍ତରାଷ୍ଟ୍ର ଆମେରିକା ଠାରୁ ଅଧିକ ଉନ୍ନତି କରିବାକୁ ଚାହିଁଲା ସତ, କିନ୍ତୁ ଉନ୍ନତିକୁ ଭିନ୍ନ ଅର୍ଥରେ ଗ୍ରହଣ କରାଗଲା ନାହିଁ । ତେଣୁ ସୋଭିଏତ୍ ସଙ୍ଘ ଠିକ୍ ଆମେରିକା ଭଳି ଉତ୍ପାଦନ କରିବାରେ ଲାଗିଲା । କିନ୍ତୁ ତାକୁ ବାଛିବାକୁ ହେଲା, କାରଣ ସବୁ କ୍ଷେତ୍ରରେ ଓ ସବୁ ଅଞ୍ଚଳରେ ପୁଞ୍ଜି ବିନିଯୋଗ କରିବାକୁ ତାହା ପାଖରେ ସମ୍ବଳ ନଥିଲା । ୧୯୫୬ର ସ୍ପୁଟ୍‌ନିକ୍ ଏକ ତ୍ରୁଟିପୂର୍ଣ୍ଣ ବିଜ୍ଞାନ ନୀତିର ସଫଳତା ଥିଲା, ଯାହା ଶେଷରେ କାଳ ହେଲା । ଏହି ବିଜ୍ଞାନ ନୀତି ଯୁଦ୍ଧର ପ୍ରଯୁକ୍ତି ଉପରେ ଅତ୍ୟଧିକ ପୁଞ୍ଜି ଲଗାଇ ଆମେରିକା ସାଙ୍ଗରେ ଅସ୍ତ୍ରଶସ୍ତ୍ର କ୍ଷେତ୍ରରେ ସମାନ ହେବା ପାଇଁ ଏକ ଉଦ୍ୟମ ଥିଲା । ତେଣୁ ମସ୍କୋ-ଲେନିନ୍‌ଗ୍ରାଡ୍ ଅଞ୍ଚଳ ଓ ଏସୀୟ ଅଞ୍ଚଳ ଭିତରେ କ୍ରମବର୍ଦ୍ଧିଷ୍ଣୁ ଅର୍ଥନୈତିକ ବୈଷମ୍ୟ ଆଗରେ ସ୍ପୁଟ୍‌ନିକ୍‌ର ସଫଳତା ଫିକା ପଡ଼ିଗଲା । ସହରୀ ଓ ଗାଉଁଲି ଅଞ୍ଚଳ ଭିତରେ ବିଭେଦ ତୀବ୍ରତର ହେଲା ।

ଗୋଟିଏ ସମୟରେ ସମାଜବାଦୀମାନେ ଭାବି ନେଲେ ବୁର୍ଜୁଆ-ଅଧିକୃତ ବସ୍ତୁବାଦୀ ଉନ୍ନତିକୁ ସେମାନେ ଅଧିକାର କରିନେବେ ଓ ସମାଜବାଦୀ ମାଲିକାନାରେ ଏ ଉନ୍ନତି ବହୁଗୁଣିତ ହୋଇ ଚାଲିବ । ଏହା ଏକ ଅବାନ୍ତର କଳ୍ପନା । ପୁଞ୍ଜିବାଦୀ ଧନଦୌଲତକୁ ଯେତେବେଳେ ସମାଜବାଦୀମାନେ ନିୟନ୍ତ୍ରିତ କରିବେ, ତାହାର ଆକାର ପ୍ରକାର ବଦଳିବ ନିଶ୍ଚୟ । ଧନ ଆଉ ବିଳାସ ବା କ୍ଷମତା ପାଇଁ ବ୍ୟବହୃତ ହେବ ନାହିଁ । ବିଲ୍ ଗେଟ୍‌ସ୍, ସୁପର୍ ମାରଣାସ୍ତ୍ର, ବିଳାସବ୍ୟସନ ପାଇଁ ତାରକା ହୋଟେଲ୍ ଓ ଆଡ଼ମ୍ବରପୂର୍ଣ୍ଣ ସାଜସଜ୍ଜା ଆଦି ପୁଞ୍ଜିବାଦୀ ପ୍ରତୀକ ଆଉ ସେଠି ରହିବ ନାହିଁ । ଗୋଟିଏ ହିସାବରେ ପୁଞ୍ଜିବାଦୀ ଦୁନିଆଁରେ ଉନ୍ନତିର ଯେଉଁସବୁ ରୂପକଳ୍ପ ବା ଇମେଜ୍ ଆମେ ଦେଖୁଛୁ, ତାହା ସମାଜବାଦୀ ଦୁନିଆଁରେ ଆଦୌ ନଥିବ । ପୁଞ୍ଜିବାଦୀ ବ୍ୟବସ୍ଥାରେ ଯେଉଁସବୁ ସାମଗ୍ରୀ ଓ ସେବାକୁ ଅଗ୍ରାଧିକାର ଦିଆଯାଉଛି, ସେଗୁଡ଼ିକୁ ସେଭଳି ଅଗ୍ରାଧିକାର ଦିଆଯିବ ନାହିଁ । ତେଣୁ ସମାଜବାଦୀ ଉନ୍ନତି ହୁଏତ ପୁଞ୍ଜିବାଦୀ ଉନ୍ନତି ଭଳି ଏତେ ଚକମକିଆ ଦିଶିବ ନାହିଁ । ହୁଏତ ପୁଞ୍ଜିବାଦୀ ଉନ୍ନତିର ଛବି ପ୍ରତି ଅଭ୍ୟସ୍ତ ହୋଇଯାଇଥିବା ଆଖିକୁ ସମାଜବାଦୀ ସମ୍ପଦ ପଛୁଆପଣର ଏକ ପ୍ରତୀକ ଭଳି ମନେ ହେବ ।

ଯେତେବେଳେ ଚୀନ୍‌ର ସାମ୍ୟବାଦୀ ନେତାଏ ଦେଖିଲେ ଯେ, ତାଙ୍କର ସମାଜବାଦ ଜାପାନ୍ ବା ଯୁକ୍ତରାଷ୍ଟ୍ର ଆମେରିକା ଭଳି ଧନ ଦୌଲତ ଦେଇପାରୁନାହିଁ, ସେମାନେ ବିଶ୍ୱ ପୁଞ୍ଜିବାଦୀ ବଜାରର ଆଶ୍ରୟ ଲୋଡ଼ିଲେ । ବର୍ତ୍ତମାନ ସେମାନେ ଆଶା କରୁଛନ୍ତି ଯେ, ଅନ୍ତତଃ କିଛି ଲୋକ ବା କେତୋଟି ଅଞ୍ଚଳ ବିତ୍ତଶାଳୀ ହେବେ । 'କିଛି ଲୋକ ପ୍ରଥମେ ଉନ୍ନତି କରିବେ । ଅନ୍ୟମାନେ ଏବେ ନୁହେଁ' । ଏହା ହେଉଛି ସେମାନଙ୍କର ଲକ୍ଷ୍ୟ । ବୁର୍ଜୁଆ ଉନ୍ନତି ପାଇଁ ଅତିଶୟ ଅନୁରକ୍ତି ଫଳରେ ସମାନତାର ଲକ୍ଷ୍ୟ ପଛକୁ ରହିଗଲା । ଯଦି ସମସ୍ତଙ୍କୁ ସମାନ କରିବା ଲକ୍ଷ୍ୟ, ତେବେ ଗରିବଙ୍କୁ ଓ ଅଶିକ୍ଷିତଙ୍କୁ ରୋଜଗାର ଦେବାକୁ ହେବ । ତେଣୁ ସେମାନଙ୍କୁ ସେଭଳି ପ୍ରଯୁକ୍ତି ଦେବାକୁ ହେବ

ଯାହାକୁ ସେମାନେ ବ୍ୟବହାର କରିପାରିବେ । ପୁଞ୍ଜିବାଦୀ ପ୍ରଯୁକ୍ତି ଦ୍ୱାରା ଅଭିଭୂତ ସମାଜବାଦୀଙ୍କ ପାଇଁ ଏଭଳି ଏକ ଲକ୍ଷ୍ୟ ତ ନୈରାଶଜନକ ।

କିନ୍ତୁ ଏ ପ୍ରଶ୍ନକୁ ଏଡ଼େଇ ଯାଇ ହେବ ନାହିଁ । ବୁର୍ଜୁଆ ଚିନ୍ତାଧାରା ଅନୁସାରେ ଏହା ଉନ୍ନତିର ପଶ୍ଚାତ୍‌ଗତି ! ଆନ୍ଧ୍ର ପ୍ରଦେଶର ମୁଖ୍ୟମନ୍ତ୍ରୀ ଆଦିବାସୀମାନଙ୍କ ଠାରୁ ସେମାନଙ୍କ ଚାଷଜମି ଓ ଜଙ୍ଗଲ ଛଡ଼େଇ ନେଇ, ସଦ୍ୟତମ ବୈଷୟିକ ଜ୍ଞାନ ନେଇ ଆସୁଥିବା ଆଲୁମିନିୟମ୍ କମ୍ପାନୀମାନଙ୍କୁ ଦେବାପାଇଁ ଆଗ୍ରହୀ । ଏହାକୁ କିଛି ଲୋକ ବିରୋଧ କରୁଛନ୍ତି । ସେମାନେ ଚାହାନ୍ତି ଆଦିବାସୀମାନଙ୍କୁ ଜଙ୍ଗଲ ଉପରେ ଅଧିକାର ଦିଆଯାଉ ଓ ସେମାନେ ଯେଉଁ ପ୍ରଯୁକ୍ତିର ବ୍ୟବହାର କରିପାରିବେ, ସେଇ ପ୍ରଯୁକ୍ତି ଦ୍ୱାରା ହିଁ ସେମାନେ କୃଷି ଓ ଜଙ୍ଗଲର ଉପଯୋଗ ତଥା ସଂରକ୍ଷଣ କରନ୍ତୁ ।

ଆନ୍ଧ୍ରର ମାର୍କ୍ସବାଦୀମାନେ ଏହା କରୁଛନ୍ତି, କିନ୍ତୁ ମୁଖ୍ୟଧାରାର ମାର୍କ୍ସବାଦୀ ମାନେ ଆଜିଯାଏଁ ଏଭଳି ଚିନ୍ତା କରିନାହାନ୍ତି । ଏ ସମସ୍ୟା ବିଶାଖାପାଟଣା ଜିଲ୍ଲାର ବକ୍‌ସାଇଟ୍ ସମୃଦ୍ଧ ଜଙ୍ଗଲ ଭିତରେ ସୀମିତ ନୁହେଁ, ଏହା ସମଗ୍ର ଅର୍ଥନୀତିର ସମସ୍ୟା । ଜଙ୍ଗଲ ଭିତରେ, ମାଟି ଉପରେ ଲଢୁଥିବା ମାର୍କ୍ସବାଦ ଓ ଦିଲ୍ଲୀରୁ ନେତୃତ୍ୱ ସଂଚାଳନ କରୁଥିବା ମାର୍କ୍ସବାଦ ମଧ୍ୟରେ ଦ୍ୱନ୍ଦ୍ୱ ରହୁଛି ।

ତେଣୁ ଆମେ ଏଭଳି ଏକ ମୋଡ଼ରେ ଆସି ପହଞ୍ଚିଛୁ, ଯେଉଁଠି ସମାଜବାଦୀମାନଙ୍କୁ ଧନଦୌଲତ ଓ ପ୍ରଯୁକ୍ତିର ସଂଜ୍ଞା ବଦଳାଇବାକୁ ପଡ଼ିବ । ଯଦି ସେମାନେ ଏହା ନ କରନ୍ତି, ତେବେ ସେମାନେ ଶ୍ରେଣୀଗତ ଓ ଆର୍ଥିକ ସମାନତାର ପ୍ରଶ୍ନ ଆଉ ଉଠାଇ ପାରିବେ ନାହିଁ । କାରଣ ସମାନତା ଓ ପୁଞ୍ଜିବାଦୀ ପ୍ରଯୁକ୍ତି ଭିତରୁ ଗୋଟିକୁ ବାଛିବାକୁ ହେବ, ଦୁଇଟିଯାକ ଏକାଠି ମିଳିବେ ନାହିଁ । ଶହ ଶହ ନାରୀଙ୍କୁ ରକ୍ଷିତା କରି ଅନ୍ତଃପୁରରେ ପାଳିବା, ପଣପଣ ଚାକରବାକର ରଖିବା, ଏସବୁ ହେଉଛି ସାମନ୍ତବାଦୀ ବୁର୍ଜୁଆ ବୈଭବ, ଧନଦୌଲତ୍‌ର ଚିତ୍ର । କିନ୍ତୁ ତୁମେ ହାରେମ୍ ବି ରଖିବ ଓ ଲିଙ୍ଗଗତ ସମାନତାର କଥା ବି କହିବ- ଏ ଦୁଇଟିଯାକ ଏକା ସାଙ୍ଗରେ ହେବ ନାହିଁ । ତେଣୁ ପ୍ରତିପତ୍ତି ଓ ଉନ୍ନତିର କେତୋଟି ରୂପ ଓ ମାତ୍ରାକୁ ତୁମକୁ ତ୍ୟାଗ କରିବାକୁ ହେବ । ବୁର୍ଜୁଆ ଉନ୍ନତିର ଚିତ୍ର ପାଇଁ ଆମର ପାଗଳପ୍ରାୟ ଅନୁରକ୍ତି ଯୋଗୁଁ ଅର୍ଥନୈତିକ ସମାନତାର କଥା କହିବାକୁ ଆମେ ପଛଘୁଞ୍ଚା ଦେଉଛୁ ।

କେବଳ ପୁଞ୍ଜିବାଦୀ ଦୌଲତର ପୁନର୍ବଣ୍ଟନ କରିଦେଲେ ସମାଜବାଦୀ ଉନ୍ନତି ଆସିଯିବ ନାହିଁ । ଏହା ସମାନତାକାମୀ ଉଦ୍ୟମ ଓ ଉଦ୍‌ଯୋଗ ଦ୍ୱାରା ହିଁ ସମ୍ଭବ । ମଣିଷ ସମାଜ ବିଭିନ୍ନ ଯୁଗରେ ପୁରୁଣା ପ୍ରଯୁକ୍ତି ବିଦ୍ୟାକୁ ବଦଳେଇଛି ବା ନୂଆ ଆବଶ୍ୟକତା ଅନୁଯାୟୀ ସେଥିରେ ପରିବର୍ତ୍ତନ ଆଣିଛି । ଏ ଯେଉଁ ଆଧୁନିକ ପ୍ରଯୁକ୍ତି ବିଦ୍ୟା ପୃଥିବୀର ଅଣଶ୍ୱେତାଙ୍ଗ ଲୋକଙ୍କ ଜୀବନକୁ ନାରଖାର କରିଦେଇଛି, ତାହା କଦାପି ପ୍ରଶ୍ନର ଉର୍ଦ୍ଧ୍ୱରେ ନୁହେଁ । ପୁରୁଣା ପ୍ରଯୁକ୍ତି ବିଦ୍ୟାକୁ ବ୍ୟବହାର କରିବା କି ସେଥିରେ ସୁଧାର ଆଣିବାରେ କିଛି ଅଯୌକ୍ତିକତା ନାହିଁ । ମଣିଷ ତ ଏବେ ବି ସବୁଠୁ ପ୍ରାଚୀନ ପ୍ରଯୁକ୍ତି ବିଦ୍ୟା ନିଆଁ ଓ ଚକକୁ ବ୍ୟବହାର କରୁଛି ! କମ୍ପ୍ୟୁଟର ଆମର ପ୍ରଥମ

ଆବଶ୍ୟକତା ହେବନାହିଁ । କିଭଳି ଓ କେଉଁ ମାତ୍ରାରେ କମ୍ପ୍ୟୁଟର ବ୍ୟବହୃତ ହେବ, ତାହାର ପୁଙ୍ଖାନୁପୁଙ୍ଖ ପରୀକ୍ଷା ଆବଶ୍ୟକ ।

ବିକାଶଶୀଳ ଦେଶମାନେ ଉତ୍ପାଦନକ୍ଷମ ବୈଷୟିକ କୌଶଳକୁ ପ୍ରାଥମିକତା ଦେବେ । କମ୍ପ୍ୟୁଟର ତ ମୂଳତଃ ପ୍ରବନ୍ଧନ ବା ମ୍ୟାନେଜ୍‌ମେଣ୍ଟ୍ ପାଇଁ ଦରକାରୀ ପ୍ରଯୁକ୍ତି । ଦ୍ୱିତୀୟତଃ, କେତେକ ପ୍ରଯୁକ୍ତି ଯାହା ଶ୍ରମିକକୁ ଅପସାରିତ କରିବ, ଉପଭୋକ୍ତାବାଦକୁ ପ୍ରଶ୍ରୟ ଦେବ ବା ଶିକ୍ଷା ଓ ସ୍ୱାସ୍ଥ୍ୟରେ ଖର୍ଚ୍ଚ ବଢ଼ାଇବ ସେସବୁକୁ ବାଦ୍ ଦେବା ଜରୁରୀ । ତଥାକଥିତ 'ଜୀବନ ରକ୍ଷାକାରୀ' ଔଷଧ ମଧ୍ୟ ଉପଭୋକ୍ତାବାଦୀ ଶ୍ରେଣୀ ପାଇଁ ଉଦ୍ଦିଷ୍ଟ । ତେଣୁ ତାକୁ ମଧ୍ୟ ଏଡ଼େଇ ଦିଆଯାଇ ପାରେ । ଭାରତର କୋଟି କୋଟି ଲୋକଙ୍କ ପାଇଁ ମେଲେରିଆ ଓ ଯକ୍ଷ୍ମାର ନିରାକରଣ ହିଁ ଅସଲ ଜୀବନ ରକ୍ଷାକାରୀ । ଏସବୁ କାମରେ ତୃତୀୟ ବିଶ୍ୱର ବୈଜ୍ଞାନିକ ଓ ଇଞ୍ଜିନିୟରମାନଙ୍କୁ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରିବାକୁ ହେବ । ସେମାନଙ୍କୁ ଖାଲି ଯେ ନୂତନତ୍ୱ ଆଣିବାକୁ ହେବ ତାହା ନୁହେଁ, ଉଦ୍ଭାବକ ବି ହେବାକୁ ପଡ଼ିବ ।

## ୪

ସର୍ବପ୍ରଥମ ରାଜନୈତିକ ଓ ଅର୍ଥନୈତିକ ଦୃଢ଼ ପଦକ୍ଷେପ ହେଉଛି ବିଦେଶୀ ପୁଞ୍ଜି ଉପରେ ନିର୍ଭରଶୀଳତାକୁ ପ୍ରତ୍ୟାଖ୍ୟାନ କରିବା । ଯଦି ଜଗତୀକରଣକୁ ସାମଗ୍ରିକ ଭାବରେ ବିରୋଧ କରାନଯାଏ, ତେବେ ଏହାର ସମାଲୋଚନାର କୌଣସି ଅର୍ଥ ନାହିଁ । ଦ୍ୱିତୀୟ ପର୍ଯ୍ୟାୟ ସୁଧାରକୁ ବନ୍ଦ କରାଯିବା ଦରକାର ଓ ଯେଉଁଠି ତାହା ଚାଲୁ ହୋଇ ସାରିଛି, ତାହାକୁ ପଛକୁ ଫେରେଇ ନେବା ଦରକାର । ତୃତୀୟତଃ, ତୃତୀୟ ବିଶ୍ୱ ଭିତରେ ହିଁ ପୁଞ୍ଜି ଓ ପୁଞ୍ଜିର ଉତ୍ସ ଖୁବ୍ ଭଲଭାବରେ ଖୋଜାଯିବା ଆବଶ୍ୟକ । ସରକାରୀ, ବେସରକାରୀ ସବୁ କ୍ଷେତ୍ରରେ ଅଦରକାରୀ ଖର୍ଚ୍ଚ କମାଯାଇ ଶ୍ରେଣୀଗତ ସମୃଦ୍ଧିର ଉଚ୍ଚତାକୁ ହ୍ରାସ କରିବା ଦରକାର । କଳାଧନକୁ ଖୋଜି ବାହାର କରିବା ଦରକାର ଓ ପ୍ରଭାବଶାଳୀ ଶ୍ରେଣୀର ସବୁ ଟିକସ୍ ଫାଙ୍କୁଥିବା ଲୋକଙ୍କର ଏକ ବିଶେଷ ଆଇନ୍ ବଳରେ ଶାସ୍ତିବିଧାନ କରିବାକୁ ହେବ । ସବୁ ସୁପର୍-ଦରମା ଓ ଅନ୍ୟାନ୍ୟ ଭତ୍ତା ବାତିଲ୍ କରାଯିବ । କେବଳ ତଳ ପାହ୍ୟାର କର୍ମଚାରୀଙ୍କୁ ବାଦ୍ ଦେଇ ବାକି ପଞ୍ଚମ ବେତନ ଆୟୋଗର ସବୁ ସୁପାରିଶ୍‌କୁ ରଦ୍ଦ କରାଯିବା ଆବଶ୍ୟକ । ଅବଶ୍ୟ ଏସବୁ ପଦକ୍ଷେପ ସେଇ ଶାସକ ଦଳ ନେଇପାରିବ ଯାହାପଛରେ ଏକ ଦୃଢ଼ ଜନସମର୍ଥନ ଥିବ ଓ ଯାହାର ନେତାମାନେ ସେମାନଙ୍କର ତ୍ୟାଗ ପାଇଁ ଜଣାଶୁଣା ହୋଇଥିବେ । ଏବର ଶାସକମାନେ ଏସବୁ ପଦକ୍ଷେପ ନେଇପାରିବେ ନାହିଁ, କିନ୍ତୁ ଏ ବିଷୟରେ ସର୍ବସାଧାରଣରେ ଆଲୋଚନା ହେବା ଦରକାର । ଏସବୁ ବିଚାରର ଭିତ୍ତିରେ ଏକ ଆଶାମୟ ଭବିଷ୍ୟତର ସମ୍ଭାବନା ଅବଶ୍ୟ ଅଛି ।

ଅଣଜଗତୀକରଣର ପ୍ରାଥମିକ ପର୍ଯ୍ୟାୟରେ କୌଣସି ବିକାଶଶୀଳ ଦେଶରେ ପୁଞ୍ଜିର ସବୁଠାରୁ ବଡ଼ ଉତ୍ସ ହେଉଛି ଶ୍ରମ-ଶକ୍ତି । ଯଦି ଶ୍ରମ-ଶକ୍ତିକୁ ଉତ୍ପାଦନଶୀଳ ଢଙ୍ଗରେ ପୁଞ୍ଜି ତିଆରି ପାଇଁ ବ୍ୟବହାର କରା ନ ଯାଏ, ତାହାହେଲେ ଭାରତର ଜନସଂଖ୍ୟା

ଏକ ସମ୍ପଦ ନ ହୋଇ ଅଭିଶାପରେ ପରିଣତ ହେବ । ଆଜିର ଅର୍ଥଶାସ୍ତ୍ରୀମାନେ କିଭଳି ବିଶ୍ୱ ବଜାର ସହ ଖାପ୍ ଖୁଆଇ ଚଳିବାକୁ ହେବ ସେ ବିଷୟରେ ସରକାରଙ୍କୁ ଉପଦେଶ ଦେଉଛନ୍ତି । ପୃଥିବୀର ବୃହତ୍ତମ ଶ୍ରମଶକ୍ତିର ଉପଯୁକ୍ତ ବିନିଯୋଗ ପାଇଁ ଆବଶ୍ୟକୀୟ ଯୋଜନା କରିବାକୁ ଏକ ନୂତନ ଅର୍ଥଶାସ୍ତ୍ରୀ ଗୋଷ୍ଠୀ ଦରକାର ହେବେ ।

ଯେଉଁମାନେ ବିଦେଶୀ ପୁଞ୍ଜି ଉପରେ ନିର୍ଭରଶୀଳତାକୁ ବିରୋଧ କରୁଛନ୍ତି, ସେମାନଙ୍କ ଆଗରେ ଉପରୋକ୍ତ ପଦକ୍ଷେପ ସବୁ ହିଁ ଏକମାତ୍ର ବିକଳ୍ପ । 'ଆଧୁନିକ ପ୍ରଯୁକ୍ତିବିଦ୍ୟା' ପ୍ରତି ଅତିଶୟ ଅନୁରକ୍ତିରୁ ନିଜକୁ ମୁକ୍ତ କଲାମାତ୍ରେ ହିଁ ଜଣେ 'ଆଉ କୌଣସି ବିକଳ୍ପ ନାହିଁ' ବୋଲି ପ୍ରଚାରର ହତାଶାକୁ ଭାଙ୍ଗି ପାରିବ । ଯଦି ଏକ ଗୋଷ୍ଠୀ ଭାବରେ, ଏକ ଅନୁଷ୍ଠାନ ଭାବରେ ବା ଏକ ଚିନ୍ତାଧାରା ଭାବରେ ଏକାଠି ହେଇ ଆମେ ପ୍ରଯୁକ୍ତି ପ୍ରତି ଅତିଶୟ ଅନୁରକ୍ତିରୁ ମୁକ୍ତ ହୋଇପାରିବା, ତାହେଲେ ସମାଜବାଦ ଏକ ଅପହୃତ ସ୍ୱପ୍ନ ହୋଇ ରହିଯିବ ନାହିଁ । ସାମ୍ରାଜ୍ୟବାଦର ଅନ୍ତିମ ଯୁଗ ଜଗତୀକରଣ ରୂପେ ପ୍ରମାଣିତ ହେବ । ଏ ଯୁଗରେ ପୁଞ୍ଜିବାଦର ସ୍ଥାୟିତ୍ୱ ସମ୍ପର୍କରେ ସାଧାରଣ ଲୋକ ଓ ମଧ୍ୟବିତ୍ତ ବର୍ଗର ଅଧିକାଂଶଙ୍କ ମୋହ ଭାଙ୍ଗୁଛି । ସାଧାରଣ ଜନତା ସର୍ବସ୍ୱାନ୍ତ ହେବା ଯୋଗୁଁ ଓ ମଧ୍ୟବିତ୍ତ ଶ୍ରେଣୀ ବେକାରୀ ଓ ଅନିଶ୍ଚୟତାର ସାମ୍ନା କରୁଥିବା ଯୋଗୁଁ ସେମାନଙ୍କର ମୋହଭଙ୍ଗ ହେଉଛି । ଯଦି ଅଧିକାଂଶ ବିକାଶଶୀଳ ଦେଶ (ବିଶେଷକରି ଚୀନ୍, ଭାରତ, ବ୍ରାଜିଲ୍ ଭଳି ଦେଶ) ସାମ୍ରାଜ୍ୟବାଦୀ ଅର୍ଥନୀତି ସହ ସମ୍ପର୍କ ତୁଟେଇ ନିଜକୁ ବିଚ୍ଛିନ୍ନ କରିଦିଅନ୍ତି, ତାହାହେଲେ ପୁଞ୍ଜିବାଦ ପ୍ରକୃତ ସଙ୍କଟର ସମ୍ମୁଖୀନ ହେବ । ଏହା ହିଁ ହେବ ପୁଞ୍ଜିବାଦର ଅସଲ ସଙ୍କଟ । ଅର୍ଥନୈତିକ ଉପନିବେଶ ବିନା ପୁଞ୍ଜିବାଦର ସ୍ଥିରତା ଓ ଅସ୍ତିତ୍ୱ ରହିବା ଅସମ୍ଭବ । ଏଭଳି ସଙ୍କଟ ପୁଞ୍ଜିବାଦକୁ ବିକାଶଶୀଳ ଦେଶଙ୍କ ବିରୁଦ୍ଧରେ ଆଣବିକ ଯୁଦ୍ଧ କରିବାକୁ ବା ନିଜକୁ ଏକ ଅଣ-ପୁଞ୍ଜିବାଦୀ ବ୍ୟବସ୍ଥାରେ ପରିଣତ କରିବାକୁ ବାଧ୍ୟ କରିବ ।

(ମୂଳ ଇଂରାଜୀର ମର୍ମାନୁବାଦ)

ଡିସେମ୍ବର, ୧୯୯୯

# ଚୀନ୍, ଭାରତ ଓ ବିଶ୍ୱ ପୁଞ୍ଜିବାଦ

ଧନୀ ଓ ଶକ୍ତିଶାଳୀ ଗୋରା ଦେଶମାନଙ୍କର ଚାପ ଓ ପ୍ରରୋଚନାରେ ତୃତୀୟ ବିଶ୍ୱର ଦୁଇଟି ବିଶାଳ ଦେଶ ଚୀନ୍ ଓ ଭାରତ ତାଙ୍କର ଆର୍ଥିକ ବ୍ୟବସ୍ଥାଗୁଡ଼ିକର ଅଧିକରୁ ଅଧିକ ପୁଞ୍ଜିବାଦୀକରଣ କରି ଚାଲିଛନ୍ତି । ଏହା ସତ୍ୟ ଯେ, ବିଦେଶୀ ଶକ୍ତିମାନଙ୍କର ଚାପ କିମ୍ବା ନିର୍ଦ୍ଦେଶ ଆଗରେ ଭାରତ ଯେପରି ଭାବରେ ଆତ୍ମ ସମର୍ପଣ କରିଛି, ଚୀନ୍ ସେପରି କରୁନାହିଁ । ଭାରତରେ କେବେ ମଧ୍ୟ ଏକ ସମାଜବାଦୀ ଅର୍ଥ ବ୍ୟବସ୍ଥା ନଥିଲା । ବେଶୀ ହେଲେ ତାକୁ ଏକ ମିଶ୍ରିତ ବ୍ୟବସ୍ଥା ବୋଲି କୁହାଯାଉଥିଲା । ୧୯୪୯ରେ ଚୀନ୍ ଏକ ସାମ୍ୟବାଦୀ ଦେଶରେ ପରିଣତ ହେଲା ।  କିନ୍ତୁ ମାଓଙ୍କ ପରେ ଡେଙ୍ଗ୍‌ଙ୍କର ଗୋଷ୍ଠୀର ନେତୃତ୍ୱ କାଳରେ ବିକାଶର ପୁଞ୍ଜିବାଦୀ ଉପାୟମାନ ଗ୍ରହଣ କରାଗଲା ଓ ବଜାର ବ୍ୟବସ୍ଥାର ଗୁରୁତ୍ୱ ସ୍ୱୀକାର କରାଗଲା ।

ଚୀନ୍‌ର ନେତାମାନେ ଏହାକୁ ଚୀନ୍‌ମାର୍କା ସମାଜବାଦ ବା ବଜାର ସାମ୍ୟବାଦ ବୋଲି ଅଭିହିତ କଲେ । ଏଥିରେ ଉତ୍ସାହିତ ହୋଇ ପଶ୍ଚିମର ଶକ୍ତିଶାଳୀ ଦେଶମାନେ ଓ ବିଶେଷକରି ଆମେରିକା ଚୀନର ଅର୍ଥନୀତିକୁ ପ୍ରଭାବିତ କରି ବିଶ୍ୱ ପୁଞ୍ଜିବାଦର ଅନୁକୂଳ କରାଇବା ଉଦ୍ଦେଶ୍ୟରେ କୌଶଳମାନ ଗ୍ରହଣ କରୁଛନ୍ତି । କେତେବେଳେ ତିଆନନ୍‌ମେନ୍ ଛକର ଗଣହତ୍ୟା ବା ମାନବିକ ଅଧିକାରର ପ୍ରଶ୍ନ ଉଠାଇ ଧମକ ଦିଆଯାଉଛି, ତ କେତେବେଳେ 'ପ୍ରିୟତମ ବନ୍ଧୁରାଷ୍ଟ୍ର' ରୂପେ ଆଲିଙ୍ଗନ କରି ଚୀନ୍‌ରେ ପୁଞ୍ଜିବାଦର ଗତିକୁ ତ୍ୱରାନ୍ୱିତ କରିବା ପାଇଁ ଚେଷ୍ଟା ହେଉଛି ।

ଗାଟ୍ ସନ୍ଧିରେ ସମ୍ମିଳିତ ହେବାକୁ ଚୀନ୍ ଆଗ୍ରହ ପ୍ରକାଶ କରୁଥିଲା । ମାତ୍ର ବୌଦ୍ଧିକ ସମ୍ପତ୍ତି ଅଧିକାର ଆଦି କେତେକ କଥାରେ ନିଜର ଆପତ୍ତିଗୁଡ଼ିକୁ ଏପର୍ଯ୍ୟନ୍ତ ଛାଡ଼ିନାହିଁ । ତେଣୁ ଚୀନ୍ ବିଶ୍ୱବ୍ୟାପାର ସଙ୍ଗଠନର ସଦସ୍ୟ ଏପର୍ଯ୍ୟନ୍ତ ହୋଇ ନାହିଁ । ଭାରତର ଯେଉଁମାନେ ଗାଟ୍ ସନ୍ଧିର ସମର୍ଥନରେ ତର୍କ ଦେବାପାଇଁ ଚୀନ୍‌ର ଆଗ୍ରହର ଉଦାହରଣ ଦେଉଥିଲେ, ସେମାନେ ଏ ବିଷୟରେ କିଛି କହୁ ନାହାନ୍ତି ଯେ, ଚୀନ୍ କାହିଁକି ବିଶ୍ୱ ବ୍ୟାପାର ସଙ୍ଗଠନରେ ଏପର୍ଯ୍ୟନ୍ତ ଯୋଗଦେଇ ନାହିଁ ଓ ଭାରତ କାହିଁକି ତରବରିଆ ଭାବରେ ଅଧ୍ୟାଦେଶ ଜାରିକରି ଏଥିରେ ଯୋଗ ଦେଇ ଦେଲା ? ଚୀନ୍ ଯେ ବିଶ୍ୱ ବ୍ୟାପାର ସଙ୍ଗଠନକୁ ଆସିବ ନାହିଁ, ତାହା ନୁହେଁ । ପୁଞ୍ଜିବାଦର ଥୋପ ଗିଳିବା ପରେ, ଶୀଘ୍ର ନ ହେଲେ ମଧ୍ୟ ବିଳମ୍ବରେ, ଚୀନ୍ ମଧ୍ୟ ବିଶ୍ୱ ପୁଞ୍ଜିବାଦର ଅଙ୍ଗ ହୋଇଯିବ

ବୋଲି ଅନେକେ ଆଶା ପୋଷଣ କରୁଛନ୍ତି । କିନ୍ତୁ ଚୀନ୍‌ର ଶାସକ ଗୋଷ୍ଠୀର ମନରେ ଏବେ ମଧ୍ୟ ଦେଶଭକ୍ତିର ପ୍ରବଳ ଭାବନା ରହିଛି ଓ ଚୀନ୍‌କୁ ବିଶ୍ୱର ଏକ ଶ୍ରେଷ୍ଠ ଦେଶ ରୂପେ ଗଢ଼ି ତୋଳିବାର ସ୍ୱପ୍ନ ସେମାନେ ଏବେ ମଧ୍ୟ ଛାଡ଼ି ନାହାନ୍ତି । ତେଣୁ ବିଦେଶୀ ଶକ୍ତିମାନଙ୍କର ସବୁ ପରାମର୍ଶ ଓ ଧମକକୁ ନିର୍ଦ୍ଦେଶ ଭଳି ମାନିନେବାର ଦୁର୍ବଳତା ସେମାନଙ୍କର ଚରିତ୍ରକୁ ଦୂଷିତ କରିନାହିଁ । ସେମାନେ ତାଙ୍କର ଏକଛତ୍ରବାଦକୁ ମଧ୍ୟ ଛାଡ଼ିବାକୁ ପ୍ରସ୍ତୁତ ନୁହନ୍ତି । କାରଣ ସେମାନେ ଭାବନ୍ତି ଯେ,ଏକଛତ୍ରବାଦ ନ ରହିଲେ ଦେଶ ଭିତରର ସୁବିଧାବାଦୀ ଗୋଷ୍ଠୀମାନେ ଶାସନକୁ ଆସିଯିବେ ଓ ନିଜର ସ୍ୱାର୍ଥ ଓ ସୁବିଧା ପାଇଁ ଚୀନ୍‌ର ରାଷ୍ଟ୍ରୀୟ ସ୍ୱାର୍ଥକୁ ବଳିଦେବେ ।

ଯଦିଓ ରାଷ୍ଟ୍ରାୟତ୍ତ ଶିଳ୍ପ ଓ କୃଷିରେ ଲାଭ ଓ ପ୍ରଲୋଭନର ସିଦ୍ଧାନ୍ତକୁ ସେମାନେ କାର୍ଯ୍ୟକାରୀ କରୁଛନ୍ତି, ତଥାପି ଆର୍ଥିକ ବିକାଶ ଉପରେ ସରକାରୀ ନିୟନ୍ତ୍ରଣକୁ କୋହଳ କରୁ ନାହାନ୍ତି । ତେଣୁ ଏହା ଦୃଢ଼ ଭାବରେ କହିହେବ ନାହିଁ ଯେ, ଚୀନ୍‌ର ଶିଳ୍ପ ଓ ବାଣିଜ୍ୟରେ କେତେବର୍ଷ ହେଲା ଯେଉଁ ଆପେକ୍ଷିକ ଅଗ୍ରଗତି ହୋଇଛି ତାହା ଡେଙ୍ଗ୍ ଗୋଷ୍ଠୀର ସଂସ୍କାର ଯୋଗୁଁ, ନା ମାଓବାଦୀ ଯୁଗର ମୂଳଦୁଆ କାରଣରୁ ?

ମାଓବାଦୀ ସାମ୍ୟବାଦ ଆର୍ଥିକ ବିକାଶ ପାଇଁ ତିନି ପ୍ରକାରର ଅନୁକୂଳ ପରିସ୍ଥିତି ସୃଷ୍ଟି କରିଥିଲା । ପ୍ରଥମ, ଦେଶରୁ ଆର୍ଥିକ ବୈଷମ୍ୟ ଦୂର କରାଯାଇ ଧନୀ-ଗରିବ ଭେଦଭାବକୁ ଦୂର କରିବାକୁ ଉତ୍ପାଦକ ପରିଶ୍ରମ କରିବା ପାଇଁ ଜନସାଧାରଣଙ୍କର ଏକ ନୂଆ ଉତ୍ସାହ ସୃଷ୍ଟି ହୋଇଥିଲା । ଦ୍ୱିତୀୟ, ବିଳାସ, ଆଡ଼ମ୍ବର ଓ ଅନାବଶ୍ୟକ ଖର୍ଚ୍ଚକୁ ସମାଜରୁ ଏଡ଼ି ଦେଇପାରିବାରୁ ବିଦେଶୀ ଋଣର ବୋଝ ଚୀନ୍ ଉପରେ ନଥିଲା । ଏହି ବିଦେଶୀ ଋଣକୁ ନେଇ ଭାରତରେ ଯେଉଁ ସଙ୍କଟ ସୃଷ୍ଟି ହେଲା ତାହାର ଦ୍ୱାହି ଦେଇ ଭାରତର ଶାସକ ବର୍ଗ ଓ ବୁଦ୍ଧିଜୀବୀ ଶ୍ରେଣୀ ନୂଆ ଅର୍ଥନୀତିକୁ ଗ୍ରହଣ କରିବାପାଇଁ ସମର୍ଥନ ଜୁଟାଇଲେ । ତୃତୀୟ, ଚୀନ୍‌ର ସାମ୍ୟବାଦରେ ଏକ ଉଗ୍ର ରାଷ୍ଟ୍ରବାଦୀ ତତ୍ତ୍ୱ ରହିଛି । ବେଳେବେଳେ ଚୀନ୍‌ର ଶାସକ ଓ ବୁଦ୍ଧିଜୀବୀମାନେ ଅନ୍ଧ ରାଷ୍ଟ୍ରବାଦର ଶିକାର ହୋଇ ପଡ଼ୋଶୀ ଦେଶମାନଙ୍କ ପ୍ରତି ଆକ୍ରମକ ନୀତି ଗ୍ରହଣ କରୁଛନ୍ତି । ଭିଏତ୍‌ନାମ୍, ଭାରତ ଓ ତିବ୍ବତ୍ ପ୍ରତି ଚୀନ୍‌ର ଏହି ନୀତି ଏବେ ମଧ୍ୟ ରହିଛି । କିନ୍ତୁ ଅନ୍ୟ ପକ୍ଷରେ ଏହି ରାଷ୍ଟ୍ରବାଦ ଫଳରେ ଚୀନ୍‌ର ଲୋକମାନେ ଆତ୍ମସମ୍ମାନ ଓ ଆତ୍ମ-ଗୌରବପୂର୍ଣ୍ଣ ଏକ ଚରିତ୍ର ଗଠନ କରିପାରିଛନ୍ତି । ତେଣୁ ମହାଶକ୍ତିମାନଙ୍କର ଉପନିବେଶ ହେବା ପାଇଁ ସେମାନେ ସହଜରେ ରାଜି ହେଉନାହାନ୍ତି ।

ଏହି ଚରିତ୍ର କେତେଦୂର ସ୍ଥାୟୀ ହେବ, ତାହା କହିହେବ ନାହିଁ । ପଡ଼ୋଶୀମାନଙ୍କ ପ୍ରତି ଆକ୍ରମଣ ମନୋଭାବ ନିଶ୍ଚୟ ରହିବ, କାରଣ ଭାରତ ଓ ପାକିସ୍ଥାନ୍ ଭଳି ଦୁର୍ବଳ ଚରିତ୍ରର ଦେଶମାନେ ମଧ୍ୟ ନିଜ ନିଜ ପଡ଼ୋଶୀ ପ୍ରତି ଆକ୍ରମକ ତଥା ଦ୍ୱେଷପୂର୍ଣ୍ଣ ନୀତି ଗ୍ରହଣ କରୁଛନ୍ତି । ମହାଶକ୍ତିମାନଙ୍କର ଚାପକୁ ପ୍ରତିରୋଧ କରିବା ପାଇଁ ଯେଉଁଭଳି ରାଷ୍ଟ୍ରବାଦ ଦରକାର ତାହା ଏବେ ଭାରତରେ ନାହିଁ କିନ୍ତୁ ଚୀନ୍‌ରେ ଅଛି । ଏହା କେତେଦିନ ରହିବ ? ମନୋରଞ୍ଜନ ମହାନ୍ତିଙ୍କର ଆଶଙ୍କା ଯେ, ନୂଆ ଅର୍ଥନୀତିର କୁପରିଣାମ ସ୍ୱରୂପ ଚୀନ୍ ସମାଜରେ ବୈଷମ୍ୟ, ଦୁର୍ନୀତି, ଅର୍ଥଲାଭ ହିଁ ସର୍ବୋତ୍ତମ

ବୋଲି ଭାବିବା – ଏହିସବୁ ଦୁର୍ଗୁଣ ବଢ଼ିପାରେ । ଯଦି ଦୁର୍ନୀତି, ଅପରାଧ ଓ ବୈଷମ୍ୟ ବଢ଼ିଚାଲିବ, ତାହାହେଲେ ରାଷ୍ଟ୍ରପ୍ରେମ ମଧ୍ୟ ଦୁର୍ବଳ ହୋଇଯିବ ନାହିଁ କି ? ଆମେରିକା ଓ ୟୁରୋପ୍‌ର ଧନୀ ଦେଶମାନେ ଭାବୁଛନ୍ତି ଯେ, ଡେଙ୍ଗ୍‌ଙ୍କର ମୃତ୍ୟପରେ ଡେଙ୍ଗ୍ ଗୋଷ୍ଠୀର ପତନ ହେବ ଓ ରାଜନୈତିକ ନେତୃତ୍ୱରେ ପରିବର୍ତ୍ତନ ଘଟିବ । ଏପରି ଏକ ନେତୃତ୍ୱ ବାହାରିବ, ଯାହା ବିଶ୍ୱ ପୁଞ୍ଜିବାଦକୁ ବେଶୀ ସୁହାଇବ, ଯିଏ ବିଶ୍ୱ ପୁଞ୍ଜିବାଦର ସର୍ତ୍ତଗୁଡ଼ିକୁ ପ୍ରତିରୋଧ କରିବ ନାହିଁ । ଗରିବ ଓ ପଛୁଆ ଦେଶମାନଙ୍କ ପାଇଁ ଏହା ଏକ ଅଶୁଭ ଘଟଣା ହେବ ।

ଆମେ ଚାହୁଁ ଯେ, ଚୀନ୍‌ରେ ଏପରି ଏକ ନୂଆ ନେତୃତ୍ୱର ଉଦୟ ହେଉ, ଯିଏ ଡେଙ୍ଗ୍ ଗୋଷ୍ଠୀର ଆର୍ଥିକ ନୀତିରୁ ଉପୁଜିଥିବା ବୈଷମ୍ୟ ଓ ଦୁର୍ନୀତିକୁ ବିପଦ ସଙ୍କେତ ମନେକରି ବିକାଶର ଏକ ଭିନ୍ନ ପଦ୍ଧତି ବିଷୟରେ ଚିନ୍ତା କରିବ । ଏତିକି ନିଶ୍ଚିତ ଯେ, ଏକଛତ୍ରବାଦ ଆଉ ଆଗଭଳି ମଜବୁତ୍ ହୋଇପାରିବ ନାହିଁ, ବରଂ ଅଧିକରୁ ଅଧିକ ଢିଲା ହୋଇ ଚାଲିବ । ପ୍ରଶ୍ନ ହେଉଛି ଯେ, ଏକଛତ୍ରବାଦର ବିକଳ୍ପ ପୁଞ୍ଜିବାଦୀ–ଗଣତନ୍ତ୍ର ହେବ, ନା ଏକ ନୂଆ ପ୍ରକାରର ସମାଜବାଦୀ ଗଣତାନ୍ତ୍ରିକ ବ୍ୟବସ୍ଥାର ପ୍ରଚଳନ କରାଯିବ ? ଏପରି ବ୍ୟବସ୍ଥା କୌଣସି ଦେଶରେ ନାହିଁ କହିଲେ ଚଳେ । ତେଣୁ ଏକ ମୌଳିକ ଦୃଷ୍ଟିସମ୍ପନ୍ନ ନୂଆ ନେତୃତ୍ୱ ଦରକାର, ଯିଏ ବୈଷମ୍ୟ ଓ ଏକଛତ୍ରବାଦର ବିରୋଧ କରିବା ସଙ୍ଗେ ସଙ୍ଗେ ରାଷ୍ଟ୍ରୀୟ ଆତ୍ମସମ୍ମାନକୁ ଅକ୍ଷୁର୍ଣ୍ଣ ରଖିବ । ବର୍ତ୍ତମାନ ଚୀନ୍‌ର ଲୌହ ପରଦାର ଅନ୍ତରାଳରେ ଏପରି ଏକ ନେତୃତ୍ୱର ବିକାଶ ହେଉଛି କି ନାହିଁ, ଆମେ ଜାଣୁନା । କିନ୍ତୁ କଳ୍ପନା କରିବାକୁ ହେଉଛି, କାରଣ ଏହା ମାନବ ସମାଜର ଆବଶ୍ୟକତା । ଚୀନ୍‌ରେ ଏପରି ଏକ ନେତୃତ୍ୱର ଆବିର୍ଭାବ ନହେଲେ ଚୀନ୍ ଯେ କିପରି ମହାଶକ୍ତିମାନଙ୍କର ଚାପକୁ ପ୍ରତିରୋଧ କରିପାରିବ ଓ ଦରିଦ୍ର ଶ୍ରେଣୀର ସଂଖ୍ୟା ବୃଦ୍ଧିକୁ ରୋକିପାରିବ, ତାହା ଏକ ଜଟିଳ ପ୍ରଶ୍ନ ।

ମାଓ ଓ ଡେଙ୍ଗ୍‌ଙ୍କ ମଧ୍ୟରେ ଥିବା କେତେକ ବୈଚାରିକ ମତଭେଦ ଅତି ଗୁରୁତ୍ୱପୂର୍ଣ୍ଣ । ସବୁକଥାରେ ମାଓ ଠିକ୍ ବୋଲି କହିହେବ ନାହିଁ । ତେବେ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ବିଷୟରେ ମାଓଙ୍କର ବିଚାର ବିଶେଷ ପ୍ରଣିଧାନ ଯୋଗ୍ୟ । "ମାଓ କହୁଥିଲେ ଯେ, ବିଜ୍ଞାନ ଓ ଟେକ୍ନୋଲଜି ସମାଜର ଶ୍ରେଣୀ ଚରିତ୍ର ସାଙ୍ଗରେ ଓତଃପ୍ରୋତ ଭାବରେ ଜଡ଼ିତ । ଏହା ଫଳରେ ସମାଜ ବ୍ୟବସ୍ଥା ପରିବର୍ତ୍ତିତ ହୁଏ । ପୁଞ୍ଜିବାଦୀ ସମାଜରେ ବିଜ୍ଞାନ ପୁଞ୍ଜିବାଦୀ ଉତ୍ପାଦନ ବ୍ୟବସ୍ଥାକୁ ତ୍ୱରାନ୍ୱିତ କରେ । ସମାଜବାଦୀ ସମାଜରେ ବିଜ୍ଞାନକୁ ସର୍ବହରାର ଉତ୍ପାଦନ ପ୍ରକ୍ରିୟା ଓ ସମତାପନ୍ନ ସମାଜର ଆୟୁଧ ରୂପେ ବ୍ୟବହାର କରାଯିବା ଉଚିତ୍ ।"

ଡେଙ୍ଗ୍‌ଙ୍କର ମତ ଏହାଠାରୁ ସମ୍ପୂର୍ଣ୍ଣ ଭିନ୍ନ । ତାଙ୍କ ମତରେ ବିଜ୍ଞାନ ଏକ ମୌଳିକ ଉତ୍ପାଦିକା ଶକ୍ତି । ମାନବର ପ୍ରଗତି ଉଦ୍ଦେଶ୍ୟରେ ଉତ୍ପାଦନ କୌଶଳର ବିକାଶ ପାଇଁ ବିଜ୍ଞାନର ପ୍ରୟୋଗ ହୋଇ ଚାଲିଛି । ତେଣୁ ଏହାକୁ ଶ୍ରେଣୀ ଚରିତ୍ର ବା ଶ୍ରେଣୀ ସ୍ୱାର୍ଥ ସଙ୍ଗେ ଜଡ଼ିତ ବୋଲି ଭାବିବା ଭୁଲ୍ ହେବ । ପରମ୍ପରାଗତ ମାର୍କ୍ସବାଦ ମଧ୍ୟ ଏହି ମତ ପୋଷଣ କରିଆସିଛି । ପରମ୍ପରାଗତ ମାର୍କ୍ସବାଦ ଓ ରକ୍ଷଣଶୀଳ ସମାଜବାଦ ବିଜ୍ଞାନ ଓ

ପ୍ରଯୁକ୍ତି ବିଦ୍ୟାକୁ ଏକ ବିଶିଷ୍ଟ ସ୍ଥାନ ଦେଇଛି । ଦର୍ଶନଶାସ୍ତ୍ର, ଅର୍ଥଶାସ୍ତ୍ର, ନୈତିକତା, ଚାଲିଚଳନ, ପ୍ରେମ, ବିବାହ, ପରିବାର ସବୁକିଛି ଶ୍ରେଣୀ ଚରିତ୍ର ସାଙ୍ଗରେ ଜଡ଼ିତ; ଶ୍ରେଣୀ ସ୍ୱାର୍ଥ ଦ୍ୱାରା ପ୍ରଭାବିତ । କେବଳ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ପ୍ରଭାବିତ ନୁହନ୍ତି । ଏହା ଟିକିଏ ଖାପଛଡ଼ା ଲାଗିଲେ ମଧ୍ୟ ଏହାହିଁ ମାର୍କ୍ସବାଦୀ ମୁଖ୍ୟ ଧାରାର ଦୃଷ୍ଟିକୋଣ ହୋଇ ରହି ଆସିଛି । ଯଦି ଯନ୍ତ୍ରପାତିଗୁଡ଼ିକୁ ମଧ୍ୟ ଶ୍ରେଣୀ ପ୍ରଭାବିତ ବୋଲି ଧରାଯାଆନ୍ତା, ତାହାହେଲେ ଯନ୍ତ୍ରପାତିଗୁଡ଼ିକ ବିଷୟରେ ଏକ ନୂଆ ବିଚାର ବାହାରିଥାଆନ୍ତା । ଆମେ କହିଥାଆନ୍ତୁ ଯେ, ପୁଞ୍ଜିବାଦୀ ଯୁଗରେ, ପୁଞ୍ଜିବାଦୀ ସମାଜମାନଙ୍କରେ ଯେଉଁସବୁ ଯନ୍ତ୍ରର ଉଦ୍ଭାବନ ଓ ବ୍ୟବହାର ହେଉଛି, ତାହା ପୁଞ୍ଜିବାଦୀ ଶ୍ରେଣୀର ସ୍ୱାର୍ଥକୁ ବଢ଼ାଇବାରେ ଲାଗୁଛି । ଏକ ଅଣପୁଞ୍ଜିବାଦୀ ବା ସମାଜବାଦୀ ସଭ୍ୟତା ଓ ସଂସ୍କୃତି ପାଇଁ ଏହାର ବ୍ୟବହାର କରାଯାଇ ପାରିବ ନାହିଁ । ଜନସାଧାରଣଙ୍କର ସ୍ୱାର୍ଥରେ ବିଜ୍ଞାନର ବ୍ୟବହାର କରିବାକୁ ହେଲେ ବର୍ତ୍ତମାନର ପ୍ରଯୁକ୍ତି ବିଦ୍ୟାକୁ ଛାଡ଼ିବାକୁ ହେବ କିମ୍ବା ସେଥିରେ ମୌଳିକ ପରିବର୍ତ୍ତନ କରିବାକୁ ପଡ଼ିବ । ଏହି ମତକୁ ଗାନ୍ଧୀମତ ବୋଲି କୁହା ନ ଗଲେ ମଧ୍ୟ ଗାନ୍ଧୀ ମତର ବହୁତ ପାଖାପାଖି । ସଂଯୋଗବଶତଃ ମାଓ-ମତ ମଧ୍ୟ ପ୍ରାୟ ଏହି ଧରଣର । ଏହାର ପରିଣାମ ହେବ ଯେ, ବିକଶିତ ପୁଞ୍ଜିବାଦୀ ଦେଶର ପ୍ରଯୁକ୍ତି ବିଦ୍ୟାକୁ ଆମଦାନୀ କରି ସମାଜବାଦୀ ସମାଜର ନିର୍ମାଣ କରାଯାଇ ପାରିବ ନାହିଁ । ତାହାକୁ ବ୍ୟବହାର କରିବାକୁ ହେଲେ ଯଥେଷ୍ଟ ସତର୍କ ହେବାକୁ ପଡ଼ିବ ଓ ଅନେକ ପରିବର୍ତ୍ତନ କରିବାକୁ ହେବ ।

ମାଓଙ୍କ କାଳରେ ଚୀନ୍‌ର ଅର୍ଥ ବ୍ୟବସ୍ଥାର ଯେ ଅତ୍ୟାଧୁନିକୀକରଣ ହୋଇ ନ ଥିଲା, ତାହା ପଛରେ ବୋଧହୁଏ ଏହି ଦାର୍ଶନିକ ଦ୍ୱିଧା ଥିଲା । ମାଓ ଆଧୁନିକୀକରଣ ଓ ଶିଳ୍ପୀକରଣର ଜଣେ ଘୋର ସମର୍ଥକ ଥିଲେ । ଏହି ବିନ୍ଦୁରେ ସେ ଗାନ୍ଧୀଙ୍କଠାରୁ ସମ୍ପୂର୍ଣ୍ଣ ଭିନ୍ନ ଥିଲେ ବୋଲି କହିହେବ । କିନ୍ତୁ ପୁଞ୍ଜିବାଦୀ ବିକାଶକୁ ଯେଉଁ ପ୍ରଯୁକ୍ତିବିଦ୍ୟା ସଫଳ କରିଛି, ସାମ୍ୟବାଦକୁ ମଧ୍ୟ ସେହି ପ୍ରଯୁକ୍ତିବିଦ୍ୟା ସଫଳ କରିପାରିବ ବୋଲି ମାଓଙ୍କର ବିଶ୍ୱାସ ହେଉ ନ ଥିଲା । ଅତ୍ୟାଧୁନିକୀକରଣ ପାଇଁ ବାଟ ଖୋଲିଦେବା ପରେ ଚୀନ୍‌ରେ ଯେଉଁ ବୈଷମ୍ୟ ବଢ଼ିଚାଲିଛି, ସେଥିରୁ ମାଓଙ୍କର ଦ୍ୱିଧାର ଯଥାର୍ଥତା ପ୍ରମାଣିତ ହେଉନାହିଁ କି ? ମାଓଙ୍କର ଏହି ବୈଚାରିକ ଦ୍ୱିଧାର ସମାଧାନ ପାଇଁ ସାମ୍ୟବାଦୀମାନେ କୌଣସି ବିସ୍ତୃତ ଆଲୋଚନା କରି ନାହାନ୍ତି । ଭାରତର ମାଓବାଦୀମାନେ ମଧ୍ୟ ଏହାର ଚର୍ଚ୍ଚା କରାଇ ନାହାନ୍ତି । ଏହି ପ୍ରଶ୍ନ ଉପରେ ଯଦି ବାମପନ୍ଥୀ ବୁଦ୍ଧିଜୀବୀମାନେ ଯଥେଷ୍ଟ ପରିମାଣର ଆଲୋଚନା କରିଥାଆନ୍ତେ, ତାହାହେଲେ ବୋଧହୁଏ ଆଜି ଏହି ବାଟବଣା ଅବସ୍ଥା ଉପୁଜି ନଥାଆନ୍ତା । ମାନବ ସମାଜର ଭବିଷ୍ୟତ ପାଇଁ ଏହା ଏକ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ । ବୋଧହୁଏ ସବୁଠାରୁ ବେଶୀ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ।

ଲଣ୍ଡନରେ 'ଇକୋନୋମିଷ୍ଟ୍' ବୋଲି ଗୋଟିଏ ପତ୍ରିକା ଅଛି । ବିଶ୍ୱ ପୁଞ୍ଜିବାଦର ଏହା ଏକ ଗୁରୁତ୍ୱପୂର୍ଣ୍ଣ ପ୍ରବକ୍ତା । କେତେବର୍ଷ ପୂର୍ବେ ଯେତେବେଳେ ଭାରତର ବିଦେଶୀ ଋଣ ସଙ୍କଟ ବଢ଼ିଲା ଓ ଅନ୍ତଃରାଷ୍ଟ୍ରୀୟ ମୁଦ୍ରାକୋଷର ସର୍ତ୍ତ ମାନି ଗୋଟିଏ ବଡ଼ ଧରଣର ଋଣ ନେବା ପାଇଁ ପ୍ରସ୍ତାବ ଆସିଲା, ସେତେବେଳେ ଏହି ପତ୍ରିକାଟି ଲେଖିଲା ଯେ,

ଭାରତର ଅର୍ଥନୀତିରେ ଗୋଟିଏ ବାଘର ଶକ୍ତି ଅଛି । କିନ୍ତୁ ଏହି ବାଘକୁ ସମାଜବାଦୀ ଢାଞ୍ଚାରେ ବାନ୍ଧି ଦିଆ ଯାଇଛି । ତାହାକୁ ମୁକ୍ତ କରିଦେଲେ ଭାରତ ଏକ ଅର୍ଥନୈତିକ ବାଘ ହୋଇ ପୃଥିବୀକୁ ଚମତ୍କୃତ କରିବ । ଏହା ପରେ ଖବରକାଗଜମାନଙ୍କରେ ଓ ଅର୍ଥନୈତିକ ପତ୍ରପତ୍ରିକାରେ ବାଘ, ବାଘ ବୋଲି ହୁରି ପଡ଼ିଛି । କୁହାଯାଉଛି ଯେ, ଏସିଆ ମହାଦେଶରେ ବହୁତ ବାଘ ହେଲେଣି । ଦକ୍ଷିଣ କୋରିଆ, ଫର୍ମୋଜା ଓ ସିଙ୍ଗାପୁର୍ ବହୁତ ଆଗରୁ ବାଘ ହୋଇ ସାରିଛନ୍ତି । ଏବେ ଥାଇଲାଣ୍ଡ୍, ଇଣ୍ଡୋନେସିଆ, ଫିଲିପାଇନ୍ସ୍ ମଧ୍ୟ ବାଘ ହୋଇଛନ୍ତି ଓ ଚୀନ୍ ତ ମହାବଳ ବାଘ ହେବାକୁ ବସିଛି । ଚୀନ୍ ଏକ ଆର୍ଥିକ ମହାଶକ୍ତି ହେବ ବୋଲି ପଶ୍ଚିମା ସମାଚାର-ଏଜେନ୍ସିମାନଙ୍କ ସୂତ୍ରରୁ ଭାରତର ଖବରକାଗଜରେ ବେଶ୍ ପ୍ରଚାରିତ ହେଉଛି । ଚୀନ୍‌ର ଦାୟିତ୍ୱପୂର୍ଣ୍ଣ ଓ ମହତ୍ୱାକାଂକ୍ଷୀ ନେତାମାନେ ବିଶ୍ୱରେ ଏକ ମଧ୍ୟମ ଧରଣର ଶକ୍ତି ରୂପେ ଚୀ୍ନ ଉତ୍‌ଥିତ ହେବ ବୋଲି ଲକ୍ଷ୍ୟ ଘୋଷଣା କରିଛନ୍ତି, କିନ୍ତୁ ପଶ୍ଚିମର ପତ୍ରପତ୍ରିକା କହୁଛନ୍ତି ଯେ ଏହି ଦେଶ ଶୀଘ୍ର ଏକ ମହାଶକ୍ତି ହେବାକୁ ଯାଉଛି ।

'ପିଲାକୁ ମାଆଠାରୁ ଯେ ବେଶୀ ଭଲ ପାଏ, ସେ ଡାଆଣୀ' ବୋଲି ଯେଉଁ କଥା ଅଛି, ସେଇ ନ୍ୟାୟରେ ସେମାନେ ବିକାଶଶୀଳ ଦେଶମାନଙ୍କୁ ଏହି ପରି ଭାବରେ ପ୍ରଲୋଭିତ କରୁଛନ୍ତି । ବିଶ୍ୱବ୍ୟାଙ୍କ୍ ଓ ମୁଦ୍ରାକୋଷ ସଙ୍ଗେ ଜଡ଼ିତ ଅର୍ଥଶାସ୍ତ୍ରୀମାନେ ବୋଧହୁଏ ଦୁନିଆର ସବୁଠାରୁ ଅସାଧୁ ବୁଦ୍ଧିଜୀବୀ । ବିକାଶଶୀଳ ଦେଶମାନଙ୍କର ବୁଦ୍ଧିଜୀବୀମାନଙ୍କ ଭିତରେ ସବୁଠାରୁ ବେଶୀ ଦରମା, ଭତ୍ତା ଓ ପେନ୍‌ସନ୍ ମଧ୍ୟ ସେଇମାନେ ପାଇ ଥାଆ ନ୍ତି । ଏହି ଦୁଇ ସଂସ୍ଥାରେ ଚାକିରୀ ପାଇବା ପରେ ସେମାନେ ଅର୍ଥନୀତିର ବିଶେଷଜ୍ଞ ବୋଲି ତାଙ୍କ ନିଜ ଦେଶରେ ପ୍ରସିଦ୍ଧ ହୁଅନ୍ତି ଓ ବିଦେଶରୁ ଫେରି ଦେଶର ମୁଖ୍ୟ ପରାମର୍ଶଦାତା ବନି ଯାଆନ୍ତି । ଅଥଚ ସେମାନଙ୍କର ଅସଲ ମାଲିକମାନେ ଧନୀ ଦେଶରେ ଓ ଉପରୋକ୍ତ ସଂସ୍ଥାମାନଙ୍କରେ ଥାଆନ୍ତି । କଣ୍ଢେଇ ନାଚର ଅଦୃଷ୍ଟ ସୂତା ଓସ୍ତାଦ୍ ନଚାଳୀ ହାତରେ ଥିବାଭଳି ଏମାନଙ୍କର ଅବସ୍ଥା । ବିକାଶଶୀଳ ଦେଶମାନଙ୍କରେ ଧନୀ ଦେଶର ସ୍ୱାର୍ଥ ବଢ଼ାଇବା କାମରେ ଏହି ବୁଦ୍ଧିଜୀବୀମାନେ ଏକ ମାରାତ୍ମକ ଭୂମିକା ଗ୍ରହଣ କରନ୍ତି । ଏମାନଙ୍କର ଦେଶଦ୍ରୋହୀ ଚରିତ୍ର ଏ ପର୍ଯ୍ୟନ୍ତ ପଦାରେ ପଡ଼ିନାହିଁ, କାରଣ ଏମାନେ ବିଭିନ୍ନ ସମୟରେ ତାଙ୍କର ମତାମତରେ ଯେଉଁ ହଠାତ୍ ପରିବର୍ତ୍ତନ କରୁଛନ୍ତି, ତାହାର ପୁଙ୍ଖାନୁପୁଙ୍ଖ ବିଶ୍ଲେଷଣ ହେଉନାହିଁ ।

ଖୋଦ୍ ବିତ୍ତମନ୍ତ୍ରୀ ମନମୋହନ ସିଂହଙ୍କର ବୌଦ୍ଧିକ ଜୀବନର ଇତିହାସ ଏହିପରି ପଙ୍କିଳ । ବିତ୍ତମନ୍ତ୍ରୀ ହେବାର ପୂର୍ବରୁ ଅଳ୍ପ କେତେବର୍ଷ ତଳେ ସେ 'ସାଉଥ୍ କମିଶନ୍'ର ସଚିବ ଭାବରେ ଯେଉଁ ମତାମତର ସମର୍ଥନ କରିଥିଲେ, ମନ୍ତ୍ରୀ ହେବାପରେ ଠିକ୍ ତାହାର ଓଲଟା ନୀତି ଗ୍ରହଣ କଲେ । ଅଥଚ ସେ ଏ ପର୍ଯ୍ୟନ୍ତ ସେ ସ୍ପଷ୍ଟୀକରଣ ଦେଇନାହାନ୍ତି ଯେ, କାହିଁକି ଓ କିପରି ଭାବରେ ସେ ତାଙ୍କର ମତାମତକୁ ବଦଳାଇଲେ । ବୌଦ୍ଧିକ ଅସାଧୁତାର ଏହା ଏକ ଚରମ ନିଦର୍ଶନ । ଏଭଳି କାମ ବିଶ୍ୱବ୍ୟାଙ୍କ୍-ମୁଦ୍ରାକୋଷ ସାଙ୍ଗରେ ଜଡ଼ିତ ଅଧିକାଂଶ ଅର୍ଥଶାସ୍ତ୍ରୀ କରିଥାନ୍ତି । ବିକାଶଶୀଳ ଦେଶମାନଙ୍କରେ ଶିକାର

କରିବା ପାଇଁ ଅନେଇ ରହିଥିବା ବିଦେଶର ବାଘମାନଙ୍କୁ ଏମାନେ ବାଟ କଢ଼େଇ ନିଜ ନିଜ ଦେଶକୁ ଆଣିଥାଆନ୍ତି ।

୧୯୮୦ରୁ ୧୯୯୦, ଏହି ଦଶବର୍ଷ ମଧ୍ୟରେ ଭାରତର ଅର୍ଥ ବ୍ୟବସ୍ଥାରେ ଯେଉଁସବୁ ନୀତି ଓ ଆଭିମୁଖ୍ୟ ଗ୍ରହଣ କରାଗଲା, ତାହାପଛରେ ବିଶ୍ୱବ୍ୟାଙ୍କର ପରାମର୍ଶ ଥିଲା । ମଝିରେ ମଝିରେ ବିଶ୍ୱବ୍ୟାଙ୍କ୍ ଓ ତାହା ସଙ୍ଗେ ଜଡ଼ିତ ଅର୍ଥଶାସ୍ତ୍ରୀମାନେ ଏସବୁର ପ୍ରଶଂସା କରି ଚାଲିଥିଲେ । ଏହି ସମୟ ଭିତରେ ହିଁ ଭାରତ ଉପରେ ବିଦେଶୀ ଋଣର ପରିମାଣ ତ୍ରିଗୁଣିତ ହୋଇଗଲା ଓ ବିଦେଶୀ ମୁଦ୍ରାର ଅଭୂତପୂର୍ବ ସଙ୍କଟ ହୋଇଗଲା ବୋଲି ପ୍ରଚାର ଆରମ୍ଭ ହେଲା । ବିଶ୍ୱବ୍ୟାଙ୍କ୍ ମଧ୍ୟ କହିଲା ଯେ, ଏହା ଏକ ବଡ଼ ସଙ୍କଟ । ଏହି ସଙ୍କଟ କେବେ ତିଆରି ହେଲା ଓ କେଉଁ କେଉଁ ନୀତିରୁ ଉଦ୍ଭୁତ ହେଲା – ସେହି କଥାଟି ଲୁଚିଗଲା । ତେଣୁ ଯେଉଁମାନେ ୧୯୮୦ ଦଶନ୍ଧିର ଶିଳ୍ପନୀତିର ଉଚ୍ଚ ପ୍ରଶଂସା କରୁଥିଲେ, ସେହିମାନେ ହିଁ 'ସଙ୍କଟ' 'ସଙ୍କଟ' କହି ଦେଶକୁ ଆତଙ୍କିତ କଲେ । ଏଭଳି ବିଶେଷଜ୍ଞମାନଙ୍କୁ 'ବୌଦ୍ଧିକ ଟାଉଟର୍' ଛଡ଼ା ଆଉ କ'ଣ କୁହାଯାଇପାରେ ?

୧୯୯୦ର ସଙ୍କଟ ପ୍ରକୃତରେ ଏତେ ବଡ଼ ସଙ୍କଟ ନଥିଲା, ଯେପରି ଭାବରେ ତାହାର ଚିତ୍ରଣ କରାଗଲା । ସଙ୍କଟ ଯଦିଓ ଥିଲା, ତାହାର ସମାଧାନର ସମ୍ମାନପୂର୍ଣ୍ଣ ଉପାୟ ମଧ୍ୟ ଥିଲା । ଖବରକାଗଜମାନଙ୍କରେ ଆତଙ୍କ ସୃଷ୍ଟି ହେବା ଫଳରେ ଭାରତର ମେରୁଦଣ୍ଡ ବିହୀନ ଉଚ୍ଚ ଶିକ୍ଷିତ ଗୋଷ୍ଠୀ ଏହା ମାନିବାକୁ ପ୍ରସ୍ତୁତ ହୋଇଗଲେ ଯେ, ଦେଶ ପଛକେ ବନ୍ଧା ପଡ଼ୁ, କିନ୍ତୁ ଏ ସଙ୍କଟରୁ ଉଦ୍ଧାର ପାଇବାକୁ ହେବ । ଆତ୍ମସମ୍ମାନପୂର୍ଣ୍ଣ କଠିନ ଉପାୟଗୁଡ଼ିକୁ ଜାଣିବା ପାଇଁ ସେମାନଙ୍କର ଧୈର୍ଯ୍ୟ ନଥିଲା । ୨୪.୯.୮୮ର ଦୈନିକ 'ଟେଲିଗ୍ରାଫ୍'ରେ ଏକ ପ୍ରବନ୍ଧ ଲେଖି ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମେନେଜ୍‌ମେଣ୍ଟ୍‌ର ଉଦୀୟମାନ ଅର୍ଥନୀତିଜ୍ଞ ରଣଜିତ ସାହୁ ଲେଖିଥିଲେ, 'ଭାରତୀୟ ନେତା ଓ ବ୍ୟବସାୟୀମାନେ ବିଦେଶୀ ବ୍ୟାଙ୍କ୍‌ମାନଙ୍କରେ ଅବୈଧ ଭାବରେ ଯେତିକି ମୁଦ୍ରା ଗଚ୍ଛିତ କରି ରଖିଛନ୍ତି, ସେଗୁଡ଼ିକର ଅନୁସନ୍ଧାନ କରି ବାଜ୍ୟାପ୍ତ କରିନେଲେ ବିଦେଶୀ ଋଣଭାର ମଧ୍ୟ ଯଥେଷ୍ଟ ହାଲୁକା ହୋଇଯିବ ।' ତାଙ୍କର ଏହି ଉକ୍ତି ନିର୍ବାଚନ ସଭାର ଭାଷଣ ନଥିଲା, ଗବେଷଣା ଆଧାରିତ ଜ୍ଞାନରୁ ନିସୃତ ହୋଇଥିଲା । ସେ ଜଣାଇଥିଲେ ଯେ, ଅନ୍ତଃରାଷ୍ଟ୍ରୀୟ ସାହାଯ୍ୟ ଓ ଅନୁଦାନ ନାମରେ ଯାହାକିଛି ଭାରତକୁ ଦିଆଯାଏ, ତାହା ମଧ୍ୟରୁ ଅଧିକାଂଶ ସାହାଯ୍ୟର ଏକ ତୃତୀୟାଂଶ କେବେହେଲେ ଭାରତକୁ ଆସେ ନାହିଁ । ନେତା ଓ ବ୍ୟବସାୟୀମାନେ ମିଳିତ ଭାବରେ ନିଜ ନିଜ ବିଦେଶୀବ୍ୟାଙ୍କ୍ ଖାତାରେ (କେବଳ ସୁଇଜରଲାଣ୍ଡ୍‌ରେ ନୁହେଁ) ସେତକ ରଖି ନିଅନ୍ତି । ସ୍ୱର୍ଗତ ମାଲ୍‌କମ୍ ଆଦିଶେଷୟାଙ୍କ ଭଳି ଅର୍ଥନୀତିଜ୍ଞମାନେ ଆମଦାନୀ ହ୍ରାସ ଇତ୍ୟାଦିର ପରାମର୍ଶ ଦେଉଥିଲେ । ପରବର୍ତ୍ତୀ କାଳରେ ଆଦିଶେଷୟା ନୂଆ ଅର୍ଥନୀତିକୁ ସମର୍ଥନ କଲେ, କିନ୍ତୁ ବିସ୍ତୃତ ଭାବରେ କିଛି ଲେଖିଲେ ନାହିଁ । ରଣଜିତ ସାହୁଙ୍କର ଲେଖା ଆଉ ଖବରକାଗଜମାନେ ଛାପୁ ନାହାନ୍ତି କିମ୍ବା ରଣଜିତ ସାହୁ ଲେଖୁ ନାହାନ୍ତି ।

ବିଚିତ୍ର ବିଷୟ ଏହି ଯେ, ଯେଉଁ ବିଦେଶୀ ଋଣର ସଙ୍କଟକୁ ନେଇ ଏତେ ଚର୍ଚ୍ଚା ହେଉଥିଲା, ସେହି ସଙ୍କଟ ବର୍ତ୍ତମାନ କେଉଁ ଅବସ୍ଥାରେ ଅଛି, ସେ ବିଷୟରେ ଖବର କାଗଜମାନେ ଆଉ ବେଶୀ ଚର୍ଚ୍ଚା କରୁନାହାନ୍ତି । ଫଳେ ଜଣାପଡ଼ିବ ଯେ, ବିଦେଶୀ ଋଣ ବଢ଼ି ବଢ଼ି ଚାଲିଛି ଓ ଦୁଇ/ତିନିବର୍ଷ ପରେ ହୁଏତ ଆଉ ଏକ ମହା ସଙ୍କଟର ରୂପ ଧାରଣ କରିବ । କାରଣ ଯଦିଓ ବିଦେଶୀ ଋଣର ଆତଙ୍କ ସୃଷ୍ଟିକରି ନୂଆ ଅର୍ଥନୀତିକୁ ଗ୍ରହଣ କରାଗଲା, ଆମ ଦେଶ କିପରି ସେଥିରୁ ମୁକ୍ତ ହେବ, ତାହାର କୌଣସି ବିଶ୍ୱାସଯୋଗ୍ୟ ସମାଧାନ ଦେଖାଯାଉ ନାହିଁ । ନୂଆ ଅର୍ଥନୀତିର ସ୍ତାବକମାନେ ମଧ୍ୟ ଦାବୀ କରୁନାହାନ୍ତି ଯେ, ଏହି ନୀତି ଫଳରେ ଆମ ଦେଶ ଦଶ ବା କୋଡ଼ିଏ ବର୍ଷ ଭିତରେ ବିଦେଶୀ ଋଣରୁ ମୁକ୍ତ ହୋଇଯିବ, ଅଥବା ୧୯୮୦ର ସ୍ତରକୁ ଆସିଯିବ ।

ବିଦେଶୀ ଋଣର ପରିଣାମ ଯେ କେତେ ଅନିଷ୍ଟକାରୀ ଓ ଭବିଷ୍ୟତରେ କେଉଁ ଭୟାବହ ରୂପ ଧାରଣ କରିପାରେ, ଆଫ୍ରିକା ଓ ଆମେରିକାର କେତେକ ଦେଶର ଉଦାହରଣରୁ ଅନୁମାନ କରିହୁଏ । ସେସବୁକୁ ଆଖି ବୁଜିଦେଇ ବିଶ୍ୱବ୍ୟାଙ୍କ୍ ଓ ମୁଦ୍ରାକୋଷର ଅନୁଗାମୀ ଅର୍ଥନୀତିଜ୍ଞମାନେ ଉପରଠାଉରିଆ ଭାବେ କହିଦେଉଛନ୍ତି ଯେ, ଆମ ଦେଶର ଆର୍ଥିକ ବିକାଶ କାର୍ଯ୍ୟଗୁଡ଼ିକ ପାଇଁ ତ ବିଦେଶରୁ ଧନ ବିଦେଶୀ ପୁଞ୍ଜି ଆକାରରେ ଆସିଯାଉଛି । ବିକାଶର କାର୍ଯ୍ୟ ପାଇଁ ସରକାରଙ୍କୁ ପଇସା ଖର୍ଚ୍ଚ କରିବା ଦରକାର ନାହିଁ, ତେଣୁ ଋଣ ଆଉ ହେବନାହିଁ । ସାଧାରଣ ଲୋକଙ୍କୁ ଶୁଣିବା ପାଇଁ ଏହା ଯୁକ୍ତିସଙ୍ଗତ ଲାଗିପାରେ । କିନ୍ତୁ ବାସ୍ତବତା ଅନ୍ୟ ପ୍ରକାରର । ଋଣ ଆଉ ବିଦେଶୀ ପୁଞ୍ଜି ମଧ୍ୟରେ କୌଣସି ଫରକ ନାହିଁ । ବରଂ ବିଦେଶୀ ପୁଞ୍ଜି ବେଶୀ ମାରାତ୍ମକ ଓ ଗଭୀର ଭାବରେ ଦେଶର ଅର୍ଥନୀତିକୁ ପରାଧୀନ କରିଦିଏ । ଏ ବିଷୟରେ କେତେକ କଥା ଜନ ଚେତନାରେ ପ୍ରବେଶ କରିବା ଦରକାର ।

ପ୍ରଥମ, ଗୋଟିଏ ଗରିବ ଚାଷୀ ଅତ୍ୟଧିକ ଋଣଗ୍ରସ୍ତ ହେବା ପରେ ଆଉ ଋଣ ମିଳିବାର ବାଟ ନ ଦେଖି ପାରି ସମ୍ପତ୍ତିର ଗୋଟିଏ ଅଂଶକୁ ବିକ୍ରି କରେ କିମ୍ବା ସମ୍ପତ୍ତିକୁ ବନ୍ଧା ପକାଏ । ଠିକ୍ ସେହିପରି ଗରିବ ଦେଶମାନେ ଋଣ ଜାଲରେ ଛନ୍ଦି ହେଲାପରେ ସେମାନଙ୍କୁ ସାଧାରଣ ସର୍ତ୍ତରେ ଋଣ ମିଳିବା ବନ୍ଦ ହୋଇଯାଏ । ଧନୀ ଦେଶମାନଙ୍କ ତରଫରୁ ତାଙ୍କୁ କୁହାଯାଏ ଯେ, ତମ ଦେଶର ଆର୍ଥିକ ସଂସାଧନଗୁଡ଼ିକୁ ଆମ ହାତରେ ସମର୍ପି ଦିଅ । ଆମେ ସେଗୁଡ଼ିକରେ ପୁଞ୍ଜି ଖଟାଇ ଶିଳ୍ପ ବ୍ୟବସାୟ ଚଳାଇବୁ, ଲାଭ ନେବୁ ଓ ତମକୁ ଋଣ ଦେବୁ । ତାହା ଛଡ଼ା ତମ ଦେଶର କେତେକ ମୂଲ୍ୟବାନ ସଂସାଧନ (ଧାତୁ , ଚମଡ଼ା, ଖାଦ୍ୟପଦାର୍ଥ ଇତ୍ୟାଦି) ଆମକୁ ଶସ୍ତାରେ ବିକ୍ରି କରିଦିଅ । ଏହି ଚୁକ୍ତିର ନାମ ହେଉଛି ଢାଞ୍ଚାଗତ ସୁଧାର କାର୍ଯ୍ୟକ୍ରମ । ଏହାକୁ କାର୍ଯ୍ୟକାରୀ କରିବା ପାଇଁ ଭାରତର ଆଇନକାନୁନ୍‌ଗୁଡ଼ିକ ବଦଳି ଚାଲିଲା । ୧୯୯୪ ଜୁଲାଇରେ ପ୍ରକାଶିତ 'ପବ୍ଲିକ୍ ଇଣ୍ଟେରେଷ୍ଟ୍ ରିସର୍ଚ୍ଚ୍ ଗ୍ରୁପ୍'ର ଏକ ପୁସ୍ତିକାରେ ୨୨ଟି କେନ୍ଦ୍ରୀୟ ଆଇନର ସୂଚୀ ରହିଛି । ଆଇନ୍‌କାନୁନ୍‌ରେ ସଂଶୋଧନଗୁଡ଼ିକର ଏକମାତ୍ର ଉଦ୍ଦେଶ୍ୟ ହେଉଛି ଯେ, ଶସ୍ତାରେ ଓ ସୁବିଧାରେ ଆମ ଦେଶର ସଂସାଧନଗୁଡ଼ିକ ବିଦେଶୀ

କମ୍ପାନୀମାନଙ୍କ ହାତକୁ ଚାଲିଯିବ । ସେମାନେ ନିଜ ଇଚ୍ଛାରେ ସେଗୁଡ଼ିକର ବ୍ୟବାହାର କରିବେ ଓ ତାଙ୍କ ଦେଶର ଜିନିଷ କିଣିବା ପାଇଁ ଆମେ ଆମଦାନୀର ଦ୍ୱାରକୁ ମେଲା କରିଦେବୁ ।

ଋଣଠାରୁ ବନ୍ଧକ ନିଶ୍ଚୟ ବେଶୀ ମାରାତ୍ମକ । ଋଣ ନମିଳିଲେ ବିକ୍ରି ଓ ବନ୍ଧକ ଅବସ୍ଥାକୁ ଗତି କରିବାକୁ ହୁଏ । ସମ୍ପତ୍ତି ବିକ୍ରିର ଅବସ୍ଥା ୧୯୯୧ର ଯଥେଷ୍ଟ ପୂର୍ବରୁ ଆସିଯାଇଥିଲା । ରପ୍ତାନୀ ନାମରେ କଞ୍ଚାମାଲ୍‌ଗୁଡ଼ିକୁ ବିଦେଶରେ ବିକ୍ରି କରିବା ଏହି ନୀତିର ଅନ୍ତର୍ଗତ । ଏହାକୁ ହିଁ ରପ୍ତାନୀ ଅଭିମୁଖୀ ବିକାଶ ବୋଲି କୁହାଯାଉ ଥିଲା । ବନ୍ଧକର ଅବସ୍ଥା ଆସିବା ପରେ ସର୍ବପ୍ରଥମେ ସତକୁ ସତ ସୁନା ବନ୍ଧକ କରାହେଲା ଓ ତାହାପରେ ଦେଶର ସମ୍ପତ୍ତିଗୁଡ଼ିକୁ ବିଦେଶୀ କମ୍ପାନୀ ହାତରେ ବନ୍ଧା ପକାଇବାର ଆଇନ୍ ତିଆରି ହେଲା । ଆମ ସମୁଦ୍ରକୁ ଆସି ସେମାନେ ମାଛ ନେଇଯାଇ ପାରିବେ । ଶେଷୋକ୍ତ ବ୍ୟବସାୟରେ ଯଦି ସେମାନେ ଯଥେଷ୍ଟ ଲାଭ ଅର୍ଜନ କରିପାରିବେ ନାହିଁ, ତାହାର ଭରଣା ଆମ ଦେଶ କରିବ ଅର୍ଥାତ୍ ତାଙ୍କ ଲାଭ ପରିମାଣ ବଢ଼ାଇବା ପାଇଁ ଲୋକଙ୍କ ଉପରେ ଟିକସ ବସାଯିବ ।

ଦ୍ୱିତୀୟ, ବିଦେଶୀ ପୁଞ୍ଜିର ଆଉ ଏକ ଚରିତ୍ର ଏପରି ଯେ, ଅନୁତ୍ପାଦକ ବ୍ୟବସାୟମାନଙ୍କରେ ଏହାର ଗୋଟିଏ ବଡ଼ ଅଂଶ ବ୍ୟବହୃତ ହେଉଛି । ଗୋଟିଏ ଅଧ୍ୟୟନ ଅନୁସାରେ ଭାରତକୁ ଆସୁଥିବା ବିଦେଶୀ ପୁଞ୍ଜିର ୪୩ ପ୍ରତିଶତ କେବଳ ବିତ୍ତୀୟ ନିବେଶ ପାଇଁ ଖର୍ଚ୍ଚ ହେଉଛି । ଅର୍ଥାତ୍ ସାହୁକାରୀ କାମରେ ଓ ଅଂଶଧନ ବଜାରର ଜୁଆ ଖେଳରେ ଲାଗୁଛି । ଯେଉଁ ଅଂଶ ଶିଳ୍ପ ପ୍ରସାର କାର୍ଯ୍ୟରେ ଲାଗୁଛି ତାହାର ଏକ ବଡ଼ ଭାଗ ସାବୁନ୍ ଓ ଶାମ୍ପୁ, ଜଳଖିଆ ଓ ହୋଟେଲ, କୋକାକୋଲା, ପେପ୍‌ସିକୋଲା ଓ ବିଲାତୀ ମଦର ଉତ୍ପାଦନରେ ଖର୍ଚ୍ଚ ହେଉଛି । ଏହିସବୁ ଶିଳ୍ପରେ ନିଯୁକ୍ତିର କ୍ଷମତା ନଥାଏ । ତେଣୁ ଏହାର ବୃଦ୍ଧିକୁ ରୋଜଗାର ବିହୀନ ଅଭିବୃଦ୍ଧି କୁହାଯାଇ ପାରେ ।

ତୃତୀୟ, ଆଉ ଗୋଟିଏ କଥା ଯେ, ଅଳ୍ପ କେତେକ ବ୍ୟତିକ୍ରମକୁ ଛାଡ଼ି ବାକି ସବୁ ବିଦେଶୀ କମ୍ପାନୀରେ ଶତକଡ଼ା କୋଡ଼ିଏ, ଚାଳିଶି କିମ୍ବା ପଚାଶ ଭାଗ ସେମାନଙ୍କର ପୁଞ୍ଜି ଥାଏ । ଅବଶେଷ ପୁଞ୍ଜି ଦେଶ ଭିତରୁ ଆସେ । କିନ୍ତୁ ପରିଚାଳନା ବିଦେଶୀ ହାତରେ ରହେ । ସେମାନେ ନିଜ ଇଚ୍ଛାରେ ଏପରି ଅତ୍ୟାଧୁନିକ ଯନ୍ତ୍ର ବିଦ୍ୟା ଆଣନ୍ତି, ଯେଉଁଥି ପାଇଁ ପ୍ରଭୁତ ପରିମାଣର ବିଦେଶୀ ମୁଦ୍ରା ଖର୍ଚ୍ଚ ହୋଇଯାଏ ଓ ଏହି ନୂତନ ଯନ୍ତ୍ର ବିଦ୍ୟା ଯୋଗୁଁ ଶ୍ରମିକ ନିଯୁକ୍ତିରେ ଛଟେଇ କରିବାକୁ ପଡ଼େ । କିଛିବର୍ଷ ପରେ ଦେଖିବାକୁ ମିଳେ ଯେ, ବିଦେଶୀ କମ୍ପାନୀମାନେ ଯେତିକି ପୁଞ୍ଜି ଆଣିଥିଲେ ତାହାର ଅନେକ ଗୁଣ ପର୍ଯ୍ୟାପ୍ତ ଧନ 'ଲାଭ ଏବଂ ଅନ୍ୟାନ୍ୟ ଉପାର୍ଜନ' ନାମରେ ନିଜ ଦେଶକୁ ନେଇ ଯାଉଛନ୍ତି । ଉଭୟ ଦିଗର ମୋଟ ହିସାବ କଲାବେଳେ ବାରମ୍ବାର ଏହା ଜଣାପଡ଼ିଛି ଯେ, ଯେତିକି ଅର୍ଥ ଧନୀ ଦେଶରୁ ଗରିବ ଦେଶମାନଙ୍କୁ ଋଣ ସାହାଯ୍ୟ ଓ ପୁଞ୍ଜି ନିବେଶ ଆକାରରେ ଆସୁଛି, ତାହାଠାରୁ ବେଶୀ ଅର୍ଥ ଗରିବ ଦେଶମାନଙ୍କରୁ ଧନୀ ଦେଶ ପାଖକୁ ଋଣ ପରିଶୋଧ ଓ ଲାଭାଂଶ ଆକାରରେ ଯାଉଛି ।

ଅର୍ଥାତ୍ ଗରିବ ଦେଶମାନେ ହିଁ ଧନୀ ଦେଶମାନଙ୍କର ସମୃଦ୍ଧି ଓ ପ୍ରତିପତ୍ତି ବଢ଼ାଇବାରେ ସାହାଯ୍ୟ କରୁଛନ୍ତି ।

ଚତୁର୍ଥ, ଧନୀ ଦେଶମାନେ ତାଙ୍କର ପ୍ରାକୃତିକ ସଂସାଧନକୁ ଓ ପରିବେଶକୁ ଅକ୍ଷତ ଓ ସୁସ୍ଥ ରଖିବା ଉଦ୍ଦେଶ୍ୟରେ କେତେ ପ୍ରକାରର କଳକରାଖାନା ନିଜ ଦେଶରେ ଆଉ ବସାଉ ନାହାନ୍ତି । ପୁଞ୍ଜି ନିବେଶ ନାମରେ ସେମାନେ ଏହିପରି କାରଖାନାଗୁଡ଼ିକୁ (ଯଥା, ଗୋଆର ପ୍ଲାଷ୍ଟିକ୍ ତିଆରି କାରାଖାନା) ଗରିବ ଦେଶମାନଙ୍କରେ ବସାଇବା ପାଇଁ ସ୍ଥିର କରିଛନ୍ତି ଓ ଏସବୁ ଦେଶରେ କମି ଆସୁଥିବା ପ୍ରାକୃତିକ ସଂସାଧନକୁ ଶେଷ କରିଦେଇ ମାଟି, ପାଣି ଓ  ପବନକୁ ପ୍ରଦୂଷିତ କରିବାରେ ଲାଗିଛନ୍ତି । ଏପରିକି ତାଙ୍କ ଦେଶର ଅଳିଆ ଆବର୍ଜନାକୁ (ଆଣବିକ ଆବର୍ଜନା ସମେତ) ଗରିବ ଦେଶମାନଙ୍କୁ ନେଇ ଆସି ନିଜ ଦେଶକୁ ସମ୍ପୂର୍ଣ୍ଣ ପ୍ରଦୂଷଣ ମୁକ୍ତ ରଖିବାକୁ ଚେଷ୍ଟା କରୁଛନ୍ତି । ହଲାଣ୍ଡ୍‌ରୁ ଆମ ଦେଶକୁ ଆବର୍ଜନାର ଆମଦାନୀ କରାଯିବା କଥା ଅନେକ ପତ୍ରପତ୍ରିକାରେ ପ୍ରକାଶ ପାଇଲାଣି । ଏହି ଭାବରେ ତୃତୀୟ ବିଶ୍ୱର ଦେଶମାନଙ୍କରେ ପ୍ରକୃତିର ବିନାଶ ଲୀଳା ଓ ପ୍ରଦୂଷଣକୁ ତୀବ୍ର କରା ଯାଉଛି, ଯାହାଫଳରେ ମନୁଷ୍ୟର ଜୀବନଧାରଣ ଦୁର୍ବିସହ ହୋଇପଡ଼ିବ । ପରିବେଶ ବିଜ୍ଞାନୀମାନେ 'ପୃଥିବୀର ଅବଶ୍ୟମ୍ଭାବୀ ଧ୍ୱଂସ' ବିଷୟରେ ଯେଉଁ ଚେତାବନୀ ଦେଉଛନ୍ତି, ତାହା ପ୍ରଥମେ ବିକାଶଶୀଳ ଦେଶମାନଙ୍କରେ ହିଁ ଘଟିବ ।

ଏହା ପରେ ଗାଟ୍ ସନ୍ଧିର ଜଟିଳତା ବୁଝିବାରେ ଅସୁବିଧା ହେବନାହିଁ । ଉପରୋକ୍ତ ସୁଯୋଗ ଓ ଅଧିକାର ହାସଲ କରିବା ପାଇଁ ଧନୀ ଦେଶମାନଙ୍କୁ ପ୍ରତ୍ୟେକ ବିକାଶଶୀଳ ଦେଶ ସାଙ୍ଗରେ ଅଲଗା ଅଲଗା ଆଲୋଚନା ଓ ବୁଝାମଣା କରିବା ଦରକାର ହେବ ନାହିଁ । ଗାଟ୍ ସନ୍ଧିରେ ଏହି ସବୁକୁ ଆଇନ୍ କରିଦିଆ ହୋଇଛି । ତେଣୁ ଯେଉଁ ବିକାଶଶୀଳ ଦେଶ 'ବିଶ୍ୱ ବ୍ୟାପାର ସଙ୍ଗଠନ'ର ସଦସ୍ୟ ହେବ, ତାକୁ ଏହି ସବୁ ସର୍ତ୍ତ ଆଇନତଃ ମାନିବାକୁ ପଡ଼ିବ । ଗାଟ୍ ସନ୍ଧିର ଦୁଇଟି ମୁଖ୍ୟସ୍ତମ୍ଭ ହେଲା ଟ୍ରିପ୍‌ସ୍ ଓ ଟ୍ରିମ୍‌ସ୍ । ପ୍ରଥମଟି ହେଉଛି ବୌଦ୍ଧିକ ସମ୍ପତ୍ତି ଅଧିକାର, ଯାହା ମାନିବାକୁ ଚୀନ୍ ପ୍ରସ୍ତୁତ ହେଉନାହିଁ । ଯେତେ ନୂଆ ରକମର ଯନ୍ତ୍ରପାତି ଓ ଉତ୍ପାଦନ କୌଶଳ ବୈଜ୍ଞାନିକମାନେ ଉଦ୍ଭାବନ କରୁଛନ୍ତି, ସେଗୁଡ଼ିକ ବଡ଼ ବଡ଼ କମ୍ପାନୀର ନିଜ ସମ୍ପତ୍ତି ବୋଲି ଧରାଯିବ । ସେଗୁଡ଼ିକର ବ୍ୟବହାର ଅନ୍ୟମାନେ ବିନା ଅନୁମତିରେ କରିପାରିବେ ନାହିଁ । ଯଦି ଅନୁମତି ମିଳେ, ସେଥିପାଇଁ ବହୁପରିମାଣର ଅର୍ଥସତ୍ତ୍ୱ ବା ରୟାଲ୍‌ଟି ଆକାରରେ ଦେବାକୁ ପଡ଼ିବ । ତେଣୁ ସେଥିରୁ ଉତ୍ପାଦନ ହେଉଥିବା ଜିନିଷପତ୍ରର ମୂଲ୍ୟ ବହୁ ଗୁଣରେ ବୃଦ୍ଧି ପାଇବ । ଭାରତ ବିଶ୍ୱ ବ୍ୟାପାର ସଙ୍ଗଠନର ସଦସ୍ୟ ହେବାପରେ ସର୍ବପ୍ରଥମେ ଔଷଧଗୁଡ଼ିକର ଦାମ୍ ବଢ଼ି ଯାଉଛି । ଔଷଧର ଦାମ୍ ଦଶ ଗୁଣ ପର୍ଯ୍ୟନ୍ତ ବଢ଼ିଯାଇ ପାରେ ।

ଟ୍ରିମ୍‌ସ୍‌ର ଅର୍ଥ ହେଉଛି ଯେ, ଯେଉଁ ବିଦେଶୀ କମ୍ପାନୀମାନେ ଆମ ଦେଶକୁ ଶିଳ୍ପ ବାଣିଜ୍ୟର ପ୍ରସାର କରିବା ପାଇଁ ଆସିବେ, ବିଦେଶୀ ନାଗରିକ ହିସାବରେ ତାଙ୍କ ଉପରେ କୌଣସି ପ୍ରତିବନ୍ଧକ ରହିବ ନାହିଁ । ଦେଶର ବେପାରୀକୁ ଯେତେ ସୁଯୋଗ

ଓ ଅଧିକାର ମିଳିବ, ବିଦେଶୀ ବେପାରୀଙ୍କୁ ମଧ୍ୟ ସେସବୁ ଦେବାପାଇଁ ଆମେ ବାଧ୍ୟ। ସେମାନେ ସବୁ କ୍ଷେତ୍ରରେ ପଶିପାରିବେ, ସ୍ଥାବର ସମ୍ପତ୍ତି ମଧ୍ୟ କିଣି ପାରିବେ। ଏହାବ୍ୟତୀତ ସେମାନେ ଭାରତ ପାଇଁ ବିଦେଶୀ ମୁଦ୍ରା ଅର୍ଜନ ନ କରି ମଧ୍ୟ ଇଚ୍ଛା ମୁତାବକ ବିଦେଶୀ ମୁଦ୍ରାର ଖର୍ଚ୍ଚ କରିପାରିବେ। ସେମାନେ ଯଦି ଚାହିଁବେ ତାହାହେଲେ ଏ ଦେଶର କଞ୍ଚାମାଲ୍‌କୁ ବ୍ୟବହାର ନ କରି ଅନ୍ୟ ଦେଶର କଞ୍ଚାମାଲ୍ ଆଣିପାରିବେ। ଏସବୁର ସର୍ବଶେଷ ପରିଣାମ ହେବ ଯେ, ଅର୍ଥନୀତିର ସଞ୍ଚାଳନରେ ଦେଶର ଲୋକଙ୍କର ଭାଗୀଦାରୀ କମି କମି ଯିବ ବା ଗୌଣ ହୋଇଯିବ; ବିଦେଶୀ ଆଧିପତ୍ୟ ବଢ଼ି ଚାଲିବ। ଏହି ପ୍ରକ୍ରିୟାରେ ବିଶ୍ୱ ପୁଞ୍ଜିବାଦ ଦ୍ୱାରା ଚୀନ୍ ଦେଶ ଅର୍ଦ୍ଧଗ୍ରାସିତ ହୋଇ ଯାଇଛି।

ସ୍ୱାଧୀନତାର ଅର୍ଦ୍ଧ ଶତାବ୍ଦୀ ପୂରିବା ବେଳକୁ ଦେଶ ପୁଣିଥରେ ଏକ ଆର୍ଥିକ ଉପନିବେଶରେ ପରିଣତ ହୋଇଛି। ଏହି ଅପମାନଜନକ ସ୍ଥିତିରୁ ମୁକ୍ତି ପାଇଁ ବିପ୍ଲବ ଛଡ଼ା ଅନ୍ୟ ବାଟ ନାହିଁ। ବୈପ୍ଲବିକ ପରିବର୍ତ୍ତନ ପାଇଁ ଆତ୍ମନିର୍ଭରତା ହିଁ ମହାମନ୍ତ୍ର। ଏହା କିନ୍ତୁ ଲୋକପ୍ରିୟ ନୁହେଁ। ତେଣୁ ଡାକରା ଦେଲେ ବିପ୍ଲବ ହୋଇଯିବ ନାହିଁ। ଦଲାଲ୍ ଶ୍ରେଣୀର ନେତାମାନେ ଦେଶକୁ ଶାସନ କରୁଛନ୍ତି ଓ ଦଲାଲ୍ କିସମର ବୁଦ୍ଧିଜୀବୀମାନେ ଜନସାଧାରଣଙ୍କର ମସ୍ତିଷ୍କକୁ ପ୍ରଭାବିତ କରି ରଖିଛନ୍ତି। ବିଦେଶରୁ ଅତ୍ୟାଧୁନିକ ଯନ୍ତ୍ରପାତି ନ ଆସିଲେ ମୋଟେ ବିକାଶ ହୋଇ ପାରିବ ନାହିଁ ବୋଲି ଏକ ଭୁଲ ଧାରଣାକୁ ଲୋକଙ୍କ ମନରେ ପଶେଇ ଦିଆ ହୋଇଛି। ଏହି ଯନ୍ତ୍ରପାତି ଓ ଉତ୍ପାଦନ କୌଶଳ ପାଇବା ପାଇଁ ଋଣ କରିବାକୁ ପଡୁଛି, ଓ ଗାଟ୍ ସନ୍ଧିର ସର୍ତ୍ତ ମାନିବାକୁ ହେଉଛି। ସମାଜବାଦୀ ଓ ମାର୍କ୍ସବାଦୀମାନେ ଏହି ବିଷୟରେ ଦ୍ୱିଧାଗ୍ରସ୍ତ ହେଉଛନ୍ତି। ଆତ୍ମନିର୍ଭରତାର ଧ୍ୱନି ଏକ ଗାନ୍ଧିବାଦୀ ନୀତି ଭାବି ସେମାନେ ଏଥିରେ ଉତ୍ସାହ ପ୍ରକାଶ କରନ୍ତି ନାହିଁ।

ସୁଖର ବିଷୟ ଯେ, କିଛିଦିନ ପୂର୍ବେ ଜଣେ ପ୍ରସିଦ୍ଧ ମାର୍କ୍ସବାଦୀ ପଲ୍ ସ୍ୱିଜୀଙ୍କର ମନ୍ତବ୍ୟ ପ୍ରକାଶ ପାଇଛି। ଦୁନିଆରେ ବଞ୍ଚିଥିବା ତିନି ଚାରି ଜଣ ଶ୍ରେଷ୍ଠ ମାର୍କ୍ସବାଦୀ ଚିନ୍ତକମାନଙ୍କ ମଧ୍ୟରୁ ଆମେରିକାର ପଲ୍ ସ୍ୱିଜୀ ଜଣେ। ସେ କ୍ୟୁବା ଓ ଭାରତର ଚର୍ଚ୍ଚା କରି କହିଛନ୍ତି ଯେ, ଏହି ଦେଶମାନେ ବିଶ୍ୱ ପୁଞ୍ଜିବାଦର ଯନ୍ତାରୁ ରକ୍ଷା ପାଇବା ନିମନ୍ତେ ଆତ୍ମନିର୍ଭର ଅର୍ଥ ବ୍ୟବସ୍ଥାର ଯୋଜନା କରନ୍ତୁ। ଗାନ୍ଧୀ, ମାଓ ବା ମାର୍କ୍ସଙ୍କର ବିଚାରରେ ମଧ୍ୟ ଏପରି ତତ୍ତ୍ୱ ରହିଛି, ଯାହାକୁ ଅନୁସରଣ କଲେ ଆଜିର ପରିସ୍ଥିତିରେ ଗରିବ ଦେଶମାନେ ଧନୀ ଦେଶମାନଙ୍କର ବିନା ସାହାଯ୍ୟରେ ସମ୍ପୂର୍ଣ୍ଣ ସ୍ୱାବଲମ୍ବୀ ହୋଇ ବିକାଶ କରିବାର ବାଟ ପାଇ ପାରିବେ।

ରକ୍ଷଣଶୀଳ ଗାନ୍ଧିବାଦୀମାନେ ସବୁପ୍ରକାରର ଆଧୁନିକ ଯନ୍ତ୍ରପାତିକୁ ଗାନ୍ଧି ବିରୋଧୀ ବୋଲି କହି ପାରନ୍ତି। ଏପରି ଗାନ୍ଧିବାଦକୁ ଜନସାଧାରଣ ମଧ୍ୟ ଗ୍ରହଣ କରିବେ ନାହିଁ। ଆତ୍ମ-ନିର୍ଭରତାର ଦୁହାଇ ଦେବା ପାଇଁ ଗାନ୍ଧୀବାଦୀ ହେବା ଦରକାର ନୁହେଁ। ଯେଉଁସବୁ ଯନ୍ତ୍ରପାତି ଦ୍ୱାରା ବିଳାସ ଓ ଉପଭୋଗବାଦ ବଢୁଛି, କର୍ମନିଯୁକ୍ତିର ସଂକୋଚନ ହେଉଛି କିମ୍ବା ଯେଉଁ ଯନ୍ତ୍ରପାତି ବା ଉତ୍ପାଦନ କୌଶଳର ବ୍ୟବହାର ପାଇଁ ବୌଦ୍ଧିକ ସମ୍ପତ୍ତି

ଅଧିକାର ମାନିବାକୁ ପଡ଼ିବ, ସେସବୁକୁ ଦୃଢ଼ ଭାବରେ ପ୍ରତ୍ୟାଖ୍ୟାନ କରିବା ଓ ଖାଦ୍ୟ, ବସ୍ତ୍ର ଆଦି ସବୁ ପ୍ରୟୋଜନୀୟ ବସ୍ତୁର ଉତ୍ପାଦନ ଦେଶ ଭିତରେ ଉପଲବ୍ଧ ପ୍ରଯୁକ୍ତି ବିଦ୍ୟା ଦ୍ୱାରା କରିବା - ବର୍ତ୍ତମାନ ପାଇଁ ଏହା ହିଁ ଆତ୍ମନିର୍ଭରତା, ଏହା ହିଁ ସ୍ୱଦେଶୀ । ବୁଦ୍ଧିଜୀବୀ ବର୍ଗ ଯେତେ ଶୀଘ୍ର ଏହାକୁ ବିଶ୍ୱାସ କରିବେ, ଜନସାଧାରଣ ସେତେ ଶୀଘ୍ର ଏକ ବିପ୍ଳବ ପାଇଁ ପ୍ରସ୍ତୁତ ହୋଇଯିବେ । (୧୨ ଫେବୃୟାରୀ, ୧୯୯୫)

# ଅର୍ଥଶାସ୍ତ୍ରର ନୂତନ ଦିଗନ୍ତ

ପ୍ରତ୍ୟେକ ରାଷ୍ଟ୍ରର ଗୋଟିଏ ନିଜସ୍ୱ ଅର୍ଥ ବ୍ୟବସ୍ଥା ଅଛି ବୋଲି ସମସ୍ତଙ୍କର ଧାରଣା । ଭାରତର ଅର୍ଥନୀତି, ପାକିସ୍ଥାନ୍‌ର ଅର୍ଥନୀତି, ଜାପାନ୍ ବା ଆମେରିକାର ଅର୍ଥନୀତି ବୋଲି ଆମେ କହିଥାଉ । ବିଶ୍ୱ ଅର୍ଥନୀତି ବିଷୟରେ ମଧ୍ୟ ଅନେକ ଥର ଚର୍ଚ୍ଚା ହୁଏ । ଏବେ ଏକ ଆଇନ୍‌ସମ୍ମତ ବିଶ୍ୱ ଅର୍ଥ ବ୍ୟବସ୍ଥା ତିଆରି କରିବାର ନିଷ୍ପତ୍ତି (ଗାଟ୍ ଚୁକ୍ତି) ହୋଇ ଗଲାଣି । କିନ୍ତୁ ରାଷ୍ଟ୍ର ଭିତରେ ଗୋଟିଏ ଅଞ୍ଚଳର ଅର୍ଥାତ୍ ରାଜ୍ୟର କିମ୍ବା ଜିଲ୍ଲାର ଏକ ନିଜସ୍ୱ ଅର୍ଥନୀତି ହୋଇପାରେ କି ? ଓଡ଼ିଶା ପରି ଗୋଟିଏ ରାଜ୍ୟର, କେନ୍ଦୁଝର ପରି ଗୋଟିଏ ଜିଲ୍ଲାର, ପଦ୍ମପୁର ପ୍ରଖଣ୍ଡ ବା ଡୁଙ୍ଗୁରିପାଲି ପଞ୍ଚାୟତର ଏକ ନିଜସ୍ୱ ଅର୍ଥନୀତି ହୋଇପାରେ କି ?

ଅର୍ଥଶାସ୍ତ୍ରର ବହିମାନଙ୍କରେ ଏହାର କୌଣସି ନିଷେଧ ନାହିଁ । କିନ୍ତୁ ପ୍ରଚଳନ ମଧ୍ୟ ନାହିଁ । ବରଂ ଜଣାପଡ଼େ ଯେ, ଆଧୁନିକ ଅର୍ଥଶାସ୍ତ୍ର ଏହାକୁ ଉତ୍ସାହିତ କରିବାକୁ ଚାହେଁନା । "ଇଣ୍ଡିଆନ୍ ଇକନମି' ବା 'ଭାରତୀୟ ଅର୍ଥନୀତି' ଓ "ଓ୍ୱାର୍ଲ୍ଡ୍ ଇକୋନମି' ବା 'ବିଶ୍ୱ ଅର୍ଥନୀତି' ବିଷୟରେ ଗଣ୍ଡା ଗଣ୍ଡା ବହି ମିଳୁଛି । ଦେଶୀଭାଷାରେ ମଧ୍ୟ ମିଳିଯାଉଛି । କିନ୍ତୁ ଉତ୍ତର ପ୍ରଦେଶ ବା ବିହାରର ଅର୍ଥନୀତି ବିଷୟରେ କିମ୍ବା କଳାହାଣ୍ଡି ଓ ଢେଙ୍କାନାଳ ଜିଲ୍ଲା ବା ରେଢ଼ାଖୋଲ ପଞ୍ଚାୟତର ଅର୍ଥନୀତି ବିଷୟରେ ବହି ମିଳେ ନାହିଁ । ପାଠ୍ୟ ପୁସ୍ତକରେ ତାକୁ ସ୍ଥାନ ଦିଆଯାଏ ନାହିଁ । ଓଡ଼ିଶାର ପ୍ରତ୍ୟେକ ବିଶ୍ୱବିଦ୍ୟାଳୟରେ ଓଡ଼ିଶାର ଅର୍ଥ ବ୍ୟବସ୍ଥା ବା ସମ୍ପୃକ୍ତ ଅଞ୍ଚଳର ଅର୍ଥ ବ୍ୟବସ୍ଥା ବିଷୟରେ, ଏକ ସ୍ନାତକୋତ୍ତର ପାଠ୍ୟକ୍ରମ ରଖିଲେ ଶାସ୍ତ୍ର ଅଶୁଦ୍ଧ ହୋଇଯିବ କି ? 'ମାଇକ୍ରୋ' ବା କ୍ଷୁଦ୍ରସ୍ତରୀୟ ଅର୍ଥଶାସ୍ତ୍ର ଅଧ୍ୟୟନ ବୋଲି ଯେଉଁ ନୂଆ ପାଠ ବାହାରିଲା, ସେଥିରେ ଛୋଟ ଅଞ୍ଚଳମାନଙ୍କର ଅର୍ଥନୀତିକୁ ସମଗ୍ର ଏକକ ରୂପେ ଗ୍ରହଣ କରି ଅଧ୍ୟୟନ କରିବାର ମାର୍ଗ ପ୍ରଶସ୍ତ ହେଲାନାହିଁ । ଅର୍ଥ ବ୍ୟବସ୍ଥାର ଏକ ନିର୍ଦ୍ଦିଷ୍ଟ ଶାଖା କିମ୍ବା ସ୍ଥାନୀୟ ଘଟଣାର ଅଧ୍ୟୟନରେ 'ମାଇକ୍ରୋ ଇକୋନମିକ୍ସ' ସୀମିତ ହୋଇଯାଇଛି ।

ତେଣୁ 'ଓଡ଼ିଶାର ଅର୍ଥ ବ୍ୟବସ୍ଥା' କହିଲେ ଜଣେ ଶିକ୍ଷିତ ଓଡ଼ିଶାବାସୀ କିଛି ଧାରଣା କରିପାରେ ନାହିଁ । ଓଡ଼ିଶାର କୃଷି, ଓଡ଼ିଶାର ବନ ସମ୍ପଦ, ଓଡ଼ିଶାର ଶିଳ୍ପ ବିକାଶ – ଏହି ସବୁକୁ ଏକ ଏକ ଅଲଗା ବିଷୟବସ୍ତୁ ବା ସମସ୍ୟା ବୋଲି ସେ

ବୁଝେ । କିନ୍ତୁ ଏହି ସବୁ ଅଲଗା ଅଲଗା ସମସ୍ୟାଗୁଡ଼ିକର ଅନ୍ତଃସମ୍ବନ୍ଧ ଗୋଟିଏ ନିର୍ଦ୍ଦିଷ୍ଟ ଅର୍ଥନୀତି ବା ଅର୍ଥ ବ୍ୟବସ୍ଥା ଭିତରେ ପରିଚାଳିତ ହେବ – ତାହା ସେ ଧାରଣା କରିପାରେ ନାହିଁ । ଉତ୍ତର ପ୍ରଦେଶ କ'ଣ କମ୍ ଗୋଟିଏ ରାଜ୍ୟ ? ବିହାର ପ୍ରଦେଶ କ'ଣ କମ୍ ବିବିଧତାପୂର୍ଣ୍ଣ ? ପ୍ରାକୃତିକ ସମ୍ପଦ ଓ ଲୋକସଂଖ୍ୟା ଦୃଷ୍ଟିରୁ ଜାପାନ୍ ଏହା ତୁଳନାରେ ଛୋଟ । କିନ୍ତୁ ବିହାର ଓ ଉତ୍ତର ପ୍ରଦେଶର ଅର୍ଥ ବ୍ୟବସ୍ଥା ସମ୍ପର୍କରେ କୌଣସି ବିଧିବଦ୍ଧ ଅଧ୍ୟୟନ ହୋଇଥିବାର ଜଣାପଡ଼େ ନାହିଁ ।

ଏପରି କାହିଁକି ? କାରଣ ଏହି ଯେ, ଅର୍ଥଶାସ୍ତ୍ରୀମାନେ ଏହାକୁ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ରୂପେ ଗ୍ରହଣ କରନ୍ତି ନାହିଁ । ରାଜନେତାମାନଙ୍କ ପରି ସେମାନେ ମଧ୍ୟ ରାଜ୍ୟର ଅର୍ଥନୀତିକୁ ବିଭିନ୍ନ ଆଡୁ ପ୍ରସ୍ତାବିତ ହୋଇ ଆସୁଥିବା 'ପ୍ରକଳ୍ପ'ମାନଙ୍କର ଅଥବା ବଜେଟୀୟ ଅନୁଦାନମାନଙ୍କର ଏକ ସମଷ୍ଟି ବୋଲି ଭାବିଥାଆନ୍ତି । କୌଣସି ରାଜ୍ୟର ବା ଇଲାକାର ଏକ ଅର୍ଥ ବ୍ୟବସ୍ଥା ରହୁ – ଏ ବିଷୟରେ ଶାସକ ଓ ରାଜନେତାମାନଙ୍କର ଆଗ୍ରହ ନାହିଁ । ରାଷ୍ଟ୍ରୀୟ ସ୍ତରରେ (ବା ଅନ୍ତଃରାଷ୍ଟ୍ରୀୟ ସ୍ରୋତମାନଙ୍କରୁ) ଯେଉଁସବୁ ଆର୍ଥିକ ଯୋଜନା ତିଆରି ହେଉଛି, ବିକାଶର ଯେଉଁ କାର୍ଯ୍ୟକ୍ରମମାନ ମଞ୍ଜୁରିପ୍ରାପ୍ତ ହେଉଛି, ସେହିସବୁ ଯୋଜନା, କାର୍ଯ୍ୟକ୍ରମ ଓ ବିତ୍ତୀୟ ସମ୍ଭାବନାକୁ କେନ୍ଦ୍ରକରି ସେମାନେ ରାଜ୍ୟ ବଜେଟ୍ ବା ରାଜ୍ୟ ଯୋଜନା ତିଆରି କରୁଛନ୍ତି ।

ଏହା ଏକପ୍ରକାର ସମାଯୋଜନ ବା ଏଡ୍‌ଜଷ୍ଟ୍‌ମେଣ୍ଟ୍ ଯୋଜନା ନିର୍ମାଣ ଓ ନୀତି ନିର୍ଦ୍ଧାରଣ ଏକ ବାହ୍ୟ କେନ୍ଦ୍ରରେ ହେଉଛି – ଦିଲ୍ଲୀରେ ବା ୱାଶିଂଟନ୍‌ରେ । ତାହା ସଙ୍ଗରେ ସାମଞ୍ଜସ୍ୟ ସ୍ଥାପନ କଲେ ସେଠାରୁ ପ୍ରବାହିତ ହୋଇ ଆସିବ ବିକାଶର କାର୍ଯ୍ୟକ୍ରମ, ପ୍ରକଳ୍ପ ଓ ଅନୁଦାନ ବା ଋଣ । ଗାଁ'କୁ ଆସିବ ବ୍ଲକ୍‌ରୁ, ବ୍ଲକ୍‌କୁ ଆସିବ ଜିଲ୍ଲାରୁ, ଜିଲ୍ଲାକୁ ଆସିବ ରାଜ୍ୟରୁ, ରାଜ୍ୟକୁ ଆସିବ ରାଷ୍ଟ୍ରରୁ ତଥା ରାଷ୍ଟ୍ରକୁ ଆସିବ ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ବିକାଶ ସଂସ୍ଥାମାନଙ୍କରୁ । ଏସବୁକୁ ପାଇବା ନିମନ୍ତେ ନିଜ ଅଞ୍ଚଳ, ରାଜ୍ୟ ବା ରାଷ୍ଟ୍ରର ଆଇନ୍‌କାନୁନ୍, କର ପ୍ରଣାଳୀ, ସଂସ୍ଥାଗତ ଢାଞ୍ଚା, ସବୁକୁ ଉପରିସ୍ଥ କେନ୍ଦ୍ରର ଅନୁକୂଳ କରି ଗଢ଼ିବାକୁ ହେବ । ଏହାକୁ କୁହାଯାଏ ଢାଞ୍ଚାଗତ ସମାଯୋଜନ ବା ଷ୍ଟ୍ରକ୍‌ଚରାଲ୍ ଏଡ୍‌ଜଷ୍ଟ୍‌ମେଣ୍ଟ୍ । ଏହା ଅର୍ଥନୀତି ଓ ଅର୍ଥ ବ୍ୟବସ୍ଥାର ସ୍ଥାନ ନେଉଛି ।

ପ୍ରତ୍ୟେକ ଅଞ୍ଚଳକୁ ଏକ ଶକ୍ତିଶାଳୀ ଆର୍ଥିକ କେନ୍ଦ୍ର ସାଙ୍ଗରେ ଯୋଡ଼ି ହୋଇ ରହିବାକୁ ପଡୁଛି । ଏହା ହେଉଛି ଆଧୁନିକ ବିକାଶ ପଦ୍ଧତିର ଆବଶ୍ୟକତା । ଆଧୁନିକ ଅର୍ଥଶାସ୍ତ୍ର ଏହି ବିକାଶ ପଦ୍ଧତି ସାଙ୍ଗରେ ଏତେ ବେଶୀ ଜଡ଼ିତ ଯେ, ଯେଉଁଠି ପ୍ରତିବ୍ୟକ୍ତି ପୁଞ୍ଜିର ପରିମାଣ ଯଥେଷ୍ଟ ନୁହେଁ, ଯେଉଁଠି ବହୁ ଅଞ୍ଚଳର କଞ୍ଚାମାଲ ଓ ବଜାର ଉପରେ ନିୟନ୍ତ୍ରଣ ନାହିଁ, ସେଇଠି ଗୋଟିଏ ଅର୍ଥ ବ୍ୟବସ୍ଥା ହୋଇ ପାରେ ବୋଲି ଅର୍ଥଶାସ୍ତ୍ରୀମାନେ ଭାବିପାରନ୍ତି ନାହିଁ । ପୁଞ୍ଜିର ସଘନତା, ଯନ୍ତ୍ର ବିଦ୍ୟାର ଅତ୍ୟାଧୁନିକତା ଓ ସୁଦୂରପ୍ରସାରୀ ବଜାରର ନିୟନ୍ତ୍ରଣ–ଏହି ତିନୋଟି କଥାର ସମ୍ଭାବନା ଯେଉଁଠି ଦେଖି ହେଉ ନାହିଁ, ସେଥିରେ ବିକାଶର ପରିକଳ୍ପନା କରିହେବ କି ? ଏକ ସ୍ୱତନ୍ତ୍ର ଅର୍ଥ ବ୍ୟବସ୍ଥାର ଅବଧାରଣା କରିହେବ କି ?

ଉତ୍ତର ଯଦି ନକାରାତ୍ମକ ହୁଏ, ତାହାହେଲେ ସେହିସବୁ ରାଷ୍ଟ୍ର, ରାଜ୍ୟ ଓ ଅଞ୍ଚଳ ସମୂହର ପ୍ରଶ୍ନ ନିଆଯାଉ, ଯେଉଁଗୁଡ଼ିକ ଅବିକଶିତ ଅବସ୍ଥାରେ ଅଛନ୍ତି । ଓଡ଼ିଶାର ଲୋକ, କଳାହାଣ୍ଡିର ଲୋକ, ନୂଆପଡ଼ା ଜିଲ୍ଲାର ଲୋକ – ଏମାନେ ନିଜର ଚିନ୍ତା, ନିଜର ଶ୍ରମ ଓ ନିଜର ପ୍ରାକୃତିକ ସମ୍ପଦକୁ ନେଇ ନିଜର ଯୋଜନା ମାଧ୍ୟମରେ ନିଜ ଆର୍ଥିକ ବିକାଶ କରି ପାରିବେ କି ନାହିଁ? ଆଧୁନିକ ଅର୍ଥଶାସ୍ତ୍ର କହେ – ନା, ବୃଥା ଚେଷ୍ଟା କରନାହିଁ, ତୁମର ଯଦି ବୁଦ୍ଧି ଅଛି, ତୁମେ ଏକ ଶକ୍ତିଶାଳୀ ବ୍ୟବସ୍ଥା ସାଙ୍ଗରେ ଯୋଡ଼ି ହୋଇଯାଅ । ତମର ଶ୍ରମକୁ, ତମର ମୂଳଧନ ଓ ପ୍ରାକୃତିକ ସମ୍ପଦକୁ ସେଇ ବାହ୍ୟ କେନ୍ଦ୍ରର ହାତରେ ସମର୍ପି ଦିଅ । ଜିଲ୍ଲା ହୋଇଥିଲେ ରାଜ୍ୟ ହାତରେ, ରାଜ୍ୟ ହୋଇଥିଲେ ବିଶ୍ୱ ବ୍ୟବସ୍ଥା ହାତରେ ନିଜର ସବୁ

କିଛି ବନ୍ଧା ପକାଇଦିଅ । ବନ୍ଧା ପକାଇଲେ ପୁଞ୍ଜି ଆସିବ । ପୁଞ୍ଜି ଆସିଲେ ଯନ୍ତ୍ର ଆସିବ । ଯନ୍ତ୍ର ଆସିଲେ ବଜାର ହେବ । ବଜାର ହେଲେ ବିକାଶ ହେବ । ଏହା ଠିକ୍ କି ଭୁଲ୍, ଏହାର ବିଶ୍ଲେଷଣ କରିବା ଏଠି ଆମର ଉଦ୍ଦେଶ୍ୟ ନୁହେଁ । କଥା ହେଉଛି, ଏହା ହିଁ ଆଧୁନିକ ଅର୍ଥଶାସ୍ତ୍ର ।

ଆମର ମାନ୍ୟତା ଏହି ଯେ, ଯେତେଦୂର ସମ୍ଭବ ଓଡ଼ିଶାର ଏକ ନିଜସ୍ୱ ଅର୍ଥବ୍ୟବସ୍ଥା ବିକଶିତ ହେବା ଦରକାର । ଅର୍ଥାତ୍ ଓଡ଼ିଶାବାସୀଙ୍କ ବୁଦ୍ଧିରେ ଓଡ଼ିଶାର ଶ୍ରମ ଓ ପ୍ରାକୃତିକ ସମ୍ପଦକୁ ଭିତ୍ତିକରି, ଓଡ଼ିଶାବାସୀଙ୍କର ଉନ୍ନତି ଉଦ୍ଦେଶ୍ୟରେ ତଥା ଦେଶ ଓ ବିଶ୍ୱର ମଙ୍ଗଳକୁ ଆଖିରେ ରଖି ଏକ ଆର୍ଥିକ ଯୋଜନା ତିଆରି କରିବା ଉଚିତ । ଏହା କରିବାକୁ ଗଲେ ଆର୍ଥିକ ବିକାଶ ସମ୍ପର୍କୀୟ କେତେକ ପ୍ରଚଳିତ ଧାରଣାମାନଙ୍କୁ ଛାଡ଼ିବାକୁ ହେବ । କିଛିଦିନ ପୂର୍ବେ, 'ଓଡ଼ିଶା ଦରିଦ୍ର କାହିଁକି?'ଏହି ଶୀର୍ଷକରେ, ପ୍ରାଧ୍ୟାପକ ମନୋରଞ୍ଜନ ମହାନ୍ତି ଓ ବିଜୟ କୁମାର ବହିଦାର ଓଡ଼ିଆ ଭାଷାରେ ଓଡ଼ିଶାର ଅର୍ଥବ୍ୟବସ୍ଥା ବିଷୟରେ ଏକ ଗ୍ରନ୍ଥ ରଚନା କରିଛନ୍ତି । ଏହା ଓଡ଼ିଶାର ଅର୍ଥନୈତିକ ଆଲୋଚନାରେ ଏକ ମାଇଲ୍‌ଖୁଣ୍ଟ । ବହୁଦିନ ପର୍ଯ୍ୟନ୍ତ ଏହି ବିଷୟର ନୂଆ ଲେଖକମାନେ ଏହି ପୁସ୍ତକ ଦ୍ୱାରା ପ୍ରଭାବିତ ହେବେ । ଶିକ୍ଷା ବିଷୟରେ ସେମାନେ ଯେଉଁ ଦୃଷ୍ଟିଭଙ୍ଗୀ ଲିପିବଦ୍ଧ କରିଛନ୍ତି ତାହା ଏକ ମାର୍ଗଦର୍ଶକ ସୂତ୍ର ରୂପେ ପାଠ୍ୟପୁସ୍ତକରେ ମଧ୍ୟ ସ୍ଥାନିତ, ସ୍ଥାପିତ ହେବା ଦରକାର ।

'... ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ହେଲା, କୃଷି ଓ ଶିକ୍ଷାର ପରସ୍ପର ନିର୍ଭରଶୀଳତା । କେଉଁ ପ୍ରକାର ଶିକ୍ଷାକରଣ ଫଳରେ ଗ୍ରାମବାସୀଙ୍କୁ କାମ ମିଳିବ ଓ ଅଧିକ ଆୟ ମିଳିବ, ତାହା ସଙ୍ଗେ ସଙ୍ଗେ ଚାଷର ଉନ୍ନତି ହେବ – ସେଥି ପ୍ରତି ଧ୍ୟାନ ଦେଇ ଶିକ୍ଷାକରଣ କରାଯିବା ଆବଶ୍ୟକ । ଶିକ୍ଷାକରଣର ଅର୍ଥ ନୁହେଁ ମନଇଚ୍ଛା ଆଧୁନିକ କାରଖାନା ବସାଇବା । ଏହା ଏକ ଅର୍ଥନୈତିକ ବ୍ୟବସ୍ଥା, ଯାହା ଫଳରେ ନୂଆ ପ୍ରଣାଳୀରେ ଅଧିକ ଉତ୍ପାଦନ ପାଇଁ ପ୍ରାକୃତିକ ସମ୍ପଦ ଓ ମାନବ ସମ୍ବଳର ସଦୁପଯୋଗ କରାଗଲେ ଯାଇ ସାଧାରଣ ଲୋକ ଉପକୃତ ହେବେ । ଦୁର୍ଭାଗ୍ୟର କଥା, ଅନେକ ସମୟରେ କେତେକ ନେତା, ବୁଦ୍ଧିଜୀବୀ ଶିକ୍ଷାକୁ ରାଷ୍ଟ୍ରୀୟ ବିକାଶର ପ୍ରତୀକ ରୂପେ ନେଇ ମୌଳିକ ଉଦ୍ଦେଶ୍ୟ ଭୁଲିଯାଇ ଥାଆନ୍ତି । ଓଡ଼ିଶାରେ ରାଉରକେଲା ଇସ୍ପାତ

କାରଖାନା ଭଳି କାରଖାନା ଖାଲି ସ୍ଥାପନା କଲେ ଯେ, ଓଡ଼ିଶାର ଶିଳ୍ପ ବିକାଶ ନିଶ୍ଚିତ ରୂପେ ଆଗେଇ ଚାଲିବ, ତାହା ନୁହେଁ । ଏପରି କାରଖାନା ବସାଇବା ସଙ୍ଗେ ସଙ୍ଗେ କିପରି ଏହାକୁ ଆଞ୍ଚଳିକ ଶିଳ୍ପୀକରଣ ଓ କୃଷି ବିକାଶ ସହିତ ସମ୍ପୃକ୍ତ କରିହେବ, ତାହା ଗୁରୁତ୍ୱପୂର୍ଣ୍ଣ'(ପୃଷ୍ଠା-୪୧) ।

ଆଧୁନିକ ଶିଳ୍ପ ବିକାଶ ସମ୍ପର୍କରେ ଯେଉଁ ଦିଗହୀନ ଉପର-ଠାଉରିଆ 'ଅଭିବୃଦ୍ଧି-କେନ୍ଦ୍ରିତ' ଧାରଣାମାନ ପ୍ରଚଳିତ ଅଛି, ତାହାର ମୂଳଚ୍ଛେଦନ କରି ଏହା ଶିଳ୍ପକୁ ଏକ ଜଟିଳ ଓ ଦାୟିତ୍ୱପୂର୍ଣ୍ଣ ଭୂମିକା ପ୍ରଦାନ କରୁଛି । ରପ୍ତାନୀ ଅଭିମୁଖୀ ହେବା ଶିଳ୍ପର ପ୍ରାରମ୍ଭିକ ବା ମୌଳିକ କାର୍ଯ୍ୟ ନୁହେଁ, ଏହା ଏକ ଅନ୍ତିମ ପରିଣତି । ଅର୍ଥ ବ୍ୟବସ୍ଥାକୁ ସଜାଡ଼ିବା ଓ ବିଭିନ୍ନ କ୍ଷେତ୍ରରେ ଚାଲୁଥିବା ଆର୍ଥିକ କାର୍ଯ୍ୟାବଳୀକୁ ଦମ୍ଭ ଯୋଗାଇବା ହେଉଛି ଶିଳ୍ପର ଅସଲ କାମ ।

ଓଡ଼ିଶାର ଅର୍ଥନୈତିକ ସମସ୍ୟାଗୁଡ଼ିକ ବିଷୟରେ ଏପର୍ଯ୍ୟନ୍ତ ଯେଉଁ ଆଲୋଚନା ହୋଇ ଆସିଛି, ତାହା କେବଳ ଅଲଗା ଅଲଗା ଦିଗ ଓ ଭିନ୍ନ ଭିନ୍ନ ସମସ୍ୟା ବିଷୟରେ ଆଲୋଚନା ମାତ୍ର । ତେଣୁ ବିତ୍ତୀୟ ସମ୍ବଳର ପ୍ରଶ୍ନ କେବେ ମଧ୍ୟ ଓଡ଼ିଶାର ଶିକ୍ଷିତ ସମାଜକୁ ବିବ୍ରତ କରିନାହିଁ ଯେ, ବିନା ସମ୍ବଳରେ ଗୋଟିଏ ରାଜ୍ୟର ଅଭିବୃଦ୍ଧି ହେବ କିପରି ?

ବିନା ସମ୍ବଳରେ ଅର୍ଥନୀତିକୁ ଚଳାଇବା ଅର୍ଥ ବାହାରୁ ଯାହା ପ୍ରସ୍ତାବ ଆସୁଛି ତାହା ଗ୍ରହଣ କରିନେବା । ଦିଲ୍ଲୀ ହେଉ ବା ଆମେରିକାର କମ୍ପାନୀ ହେଉ, ଯିଏ ଯେଉଁଥି ପାଇଁ ପଇସା ଲଗାଇବାକୁ ଚାହୁଁଛି, ତାହା ଆମେ ଗ୍ରହଣ କରିବୁ । କାରଣ ଏହାକୁ ଛାଡ଼ିଦେଲେ ଓଡ଼ିଶା ଆଉ କୌଣସି ବିକାଶ ଖର୍ଚ୍ଚ କରିପାରିବ ନାହିଁ । ଏପରି ଭାବରେ ଯେତେ ରକମର କାର୍ଯ୍ୟ ହେବ ସେଗୁଡ଼ିକ ମଧ୍ୟରେ କୌଣସି ପାରସ୍ପରିକ ସମ୍ପର୍କ ରହିବ ନାହିଁ । କିଏ ଗୋଟିଏ ହୋଟେଲ୍ ଖୋଲିଦେଲା, କିଏ ଆସି ପଲିଷ୍ଟର୍ ଲୁଗାକଳ ସ୍ଥାପନ କରିଦେଲା, ଆଉ କିଏ ଆସି ବୃକ୍ଷରୋପଣ ବ୍ୟବସାୟ କରିବସିଲା - ଏପରି ଅସମନ୍ୱିତ କାର୍ଯ୍ୟକ୍ରମ ଫଳରେ କେବେ ମଧ୍ୟ ଗୋଟିଏ ଗତିଶୀଳ ଅର୍ଥ ବ୍ୟବସ୍ଥା ତିଆରି ହେବନାହିଁ ।

ଏକ ନ୍ୟୂନତମ ପରିମାଣର ସମ୍ବଳ ପାଇଁ ଓଡ଼ିଶାକୁ ଆତ୍ମନିର୍ଭର ହେବାକୁ ପଡ଼ିବ । ଏଭଳି ବିକାଶ କାର୍ଯ୍ୟକୁ ଅଗ୍ରାଧିକାର ଦେବାକୁ ପଡ଼ିବ ଯେଉଁଥିରେ ଅଳ୍ପ ପୁଞ୍ଜି ଲାଗିଲେ ମଧ୍ୟ ଦୂରଗାମୀ ପରିଣାମ ଦେବ, ପରିଣାମ ଶୀଘ୍ର ହେବ ଓ ଅଧିକ କର୍ମ ନିଯୁକ୍ତି ସୃଷ୍ଟି କରିବ । କୃଷି ଓ ଜଙ୍ଗଲ ଏହିପରି କ୍ଷେତ୍ର । ସୌଭାଗ୍ୟକ୍ରମେ ଓଡ଼ିଶାରେ ବିସ୍ତୃତ ଜଙ୍ଗଲ ଇଲାକା ରହିଛି । ଧ୍ୱଂସ ପାଇଥିବା ଜଙ୍ଗଲଗୁଡ଼ିକୁ ଆଂଶିକ ଭାବରେ ପୁନଃରୁଦ୍ଧାର କରିବାର ଏବେ ମଧ୍ୟ ସମ୍ଭାବନା ରହିଛି । ଜଙ୍ଗଲ ଯେ କେତେ ମୂଲ୍ୟବାନ ସମ୍ବଳ ଓ ଏହାର ବଜାର ମୂଲ୍ୟ ଯେ କେତେ ଅଧିକ କରାଯାଇ ପାରେ, ତାହାର ଅନୁମାନ ଓ ଆକଳନ ନିର୍ମଳଚନ୍ଦ୍ର ସାହୁଙ୍କର ଗବେଷଣା-ମୂଳକ ନିବନ୍ଧରୁ କରିହେବ । ବନ ସମ୍ପଦର ଆର୍ଥିକ ମୂଲ୍ୟାୟନ ଏକ ଅପେକ୍ଷାକୃତ ନୂଆ ବିଷୟ ।

କିନ୍ତୁ ଏହା ଭିତରେ ଲୁଚି ରହିଛି ଏକ ସମୃଦ୍ଧ ଭବିଷ୍ୟତର ସଙ୍କେତ । ଶିଳ୍ପଯୁଗର ଲୋକମାନେ ଖଣିଜ ଦ୍ରବ୍ୟକୁ ଯେପରି ମୂଲ୍ୟବାନ ମନେକଲେ, ଆଗାମୀ ଯୁଗର ବିକାଶ ପଦ୍ଧତିରେ ଜଙ୍ଗଲ ଓ ଦ୍ରୁମଲତା ସେହିପରି ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିବେ । ତେଣୁ ଆମର ବନ ସମ୍ପଦକୁ ବିଦେଶୀ ନିୟନ୍ତ୍ରଣ ପାଇଁ ଛାଡ଼ି ନ ଦେଇ ଓଡ଼ିଶାର କୃଷି ଓ ଶିଳ୍ପର ସମନ୍ୱିତ ବିକାଶ ପାଇଁ ତାକୁ ସୁରକ୍ଷିତ କରିବା ସଙ୍ଗେ ସଙ୍ଗେ ତାହାର ବୈଜ୍ଞାନିକ ଉପଯୋଗର ଏକ ପଦ୍ଧତି ଉଦ୍ଭାବନ କରିବାକୁ ହେବ । ଆମର ଅନେକ ପାଠକ ଜାଣି ନ ଥିବେ ଯେ, ଉଭୟ କଂଗ୍ରେସ୍ ଓ ଜନତା ଶାସନ କାଳରେ ଓଡ଼ିଶାର ବନ ନୀତି ବିଦେଶୀମାନଙ୍କ ଦ୍ୱାରା ନିର୍ଦ୍ଦେଶିତ ହୋଇ ଆସୁଛି ।

ଜଙ୍ଗଲ ସରଂକ୍ଷଣର ଅର୍ଥ ଏହା ନୁହେଁ ଯେ – ବନବାସୀମାନେ ଓ ବଣର ଉପକଣ୍ଠରେ କାର୍ଯ୍ୟରତ କୃଷକମାନେ ଜଙ୍ଗଲର ଉପଯୋଗ କରିପାରିବେ ନାହିଁ । ବରଂ ଏ ବିଷୟରେ ଏକ ପକ୍ଷପାତୀ ନୀତି ଗ୍ରହଣ କରିବାକୁ ହେବ । ଜଙ୍ଗଲରୁ ଦୂରରେ ରହୁଥିବା ଲୋକଙ୍କର ପାଇଁ ଜଙ୍ଗଲଜାତ ଦ୍ରବ୍ୟ ବେଶୀ ଦାମିକା ହେବ ଓ ଜଙ୍ଗଲ ନିକଟବର୍ତ୍ତୀ ଲୋକଙ୍କ ପାଇଁ ଏହା ଅତି ସହଜରେ ଉପଲବ୍ଧ ହେବ । ପ୍ରଶାସକ ଓ ବ୍ୟବସାୟୀମାନେ ଜଙ୍ଗଲ ଚଳାଇ ପାରିବେ ନାହିଁ । ଏହିଭଳି ନୀତି ଯେଉଁଠି ଅଛି ସେଠାରେ ଦୁର୍ନୀତି ବଢୁଛି ଓ ଜଙ୍ଗଲ ଧ୍ୱଂସ ପାଉଛି । ଜଙ୍ଗଲର ରକ୍ଷଣାବେକ୍ଷଣ ବନବାସୀମାନଙ୍କ ହାତରେ ଓ ଗ୍ରାମ୍ୟ ଗଛଲତାର ରକ୍ଷଣାବେକ୍ଷଣ କୃଷକ ଓ ଗ୍ରାମ୍ୟଶିଳ୍ପୀମାନଙ୍କ ହାତରେ ଛାଡ଼ି ଦେବାକୁ ହେବ । ବହୁତ ଅଂଶରେ ଆଦିବାସୀମାନଙ୍କୁ ସେମାନଙ୍କର ଜଙ୍ଗଲ ଫେରାଇ ଦେବାକୁ ହେବ ଓ ସେମାନଙ୍କ ସହ ଏକ ସନ୍ଧି କରିବାକୁ ହେବ ଯେ, ଜଙ୍ଗଲ ଆଧାରିତ ଶିଳ୍ପଗୁଡ଼ିକର ସଞ୍ଚାଳନ ସେମାନେ ହିଁ କରିବେ । ଲଘୁ ଶିଳ୍ପ ପଦ୍ଧତିରେ କରିବେ । ଏହା ଫଳରେ କେବଳ ଯେ, ଓଡ଼ିଶାର ଅର୍ଥନୀତିରେ ଆଦିବାସୀମାନଙ୍କର ଏକ କେନ୍ଦ୍ରୀୟ ଭୂମିକା ରହିବ, ତାହା ନୁହେଁ; ଜଙ୍ଗଲର ଭବିଷ୍ୟତ ମଧ୍ୟ ସୁରକ୍ଷିତ ହୋଇଯିବ । ବୃକ୍ଷରୋପଣକୁ ବ୍ୟବସାୟ କରି ହଜାର ହଜାର ଏକର ଜମିକୁ ଲିଜ୍‌ରେ ନେଇ ନିଜ ନିୟନ୍ତ୍ରଣରେ ରଖିବା ପାଇଁ ସହରୀ ଧନୀଲୋକଙ୍କୁ ଯେଉଁ ସୁବିଧା ପ୍ରଦାନ କରାଯାଉଛି, ଏହାର ଶୀଘ୍ର ଅନ୍ତ ହେବା ଦରକାର । ଏହା ଦ୍ୱାରା ନୂଆ ଗଛ ସୃଷ୍ଟି ହେବା ପରିବର୍ତ୍ତେ ଜଙ୍ଗଲର ଯେଉଁ ଅବଶେଷ ରହିଛି, ତାହା ମଧ୍ୟ ଧ୍ୱଂସ ପାଇଯିବ । କେବଳ ଗ୍ରାମୀଣମାନଙ୍କୁ, ଜମିହୀନ ଓ ଭୂସ୍ୱାମୀ ଉଭୟ ପ୍ରକାରର ଚାଷୀମାନଙ୍କୁ ବୃକ୍ଷରୋପଣ ପାଇଁ ଉତ୍ସାହିତ କରିବାକୁ ହେବ । ବୃକ୍ଷର ଉପଯୋଗ ପାଇଁ ମିଳୁଥିବା ସୁବିଧା ତାଙ୍କଠାରୁ ଛଡ଼ାଇ ନେବା ପରେ ଗଛ ପ୍ରତି ସେମାନଙ୍କର ଅବହେଳା ବଢ଼ିଛି ।

ଖଣିଜ ଦ୍ରବ୍ୟ ମଧ୍ୟ ଓଡ଼ିଶାର ଭବିଷ୍ୟତ ବିକାଶର ଏକ ଦ୍ୟୋତକ ହୋଇ ପାରିବ । କିନ୍ତୁ ଓଡ଼ିଶାର ରତ୍ନଗର୍ଭା ଖଣିଗୁଡ଼ିକର କିଭଳି ଉପଯୋଗ କଲେ ତାହା ଓଡ଼ିଶାରେ ଏକ ସୁଦୃଢ଼ ଅର୍ଥ ବ୍ୟବସ୍ଥା ଗଢ଼ିବା ପାଇଁ ସାହାଯ୍ୟକାରୀ ହେବ, ସେଭଳି ଅଧ୍ୟୟନ ଓଡ଼ିଶାର ବୁଦ୍ଧିଜୀବୀମାନେ ଓ ବିଶେଷଜ୍ଞମାନେ କରି ନାହାନ୍ତି । କେବଳ ସରକାର ଓ ଖଣି ମାଲିକମାନଙ୍କ ଠାରୁ ନଗଣ୍ୟ ଟିକସ ବା ରୟାଲ୍‌ଟି ପ୍ରାପ୍ତ କରି ଆମେ ସନ୍ତୁଷ୍ଟ ଅଛୁ କିମ୍ବା ମଝିରେ ମଝିରେ ରୟାଲ୍‌ଟି ବଢ଼ାଇବାର ଦାବୀ କରୁଛୁ । ଏହା ଏକ ପଛୁଆ ଓ

ଅବିକଶିତ ଦୃଷ୍ଟିକୋଣ । ଯେଉଁ ମାତ୍ରାରେ ଖଣିଜ ପଦାର୍ଥର ଉତ୍‌ଖନନ ହେବା ଦରକାର ଓ ଯେଉଁଭଳି ଶିଳ୍ପୀକରଣ ଦ୍ୱାରା ଓଡ଼ିଶାର ଖଣିର ବ୍ୟବହାର ଓଡ଼ିଶାର ଆର୍ଥିକ ଢାଞ୍ଚାର ଏକ ମୂଳଦୁଆ ପକାଇ ପାରିବ ତାହାର ବିବେଚନା ଦରକାର ।

ଇବ୍ ଉପତ୍ୟକାର ସମସ୍ତ କୋଇଲାର ଶିଳ୍ପ-କ୍ଷମତାକୁ ମାର୍କିନ୍ କମ୍ପାନୀମାନେ ଦୋହନ କରିନେବେ ଓ ଆମକୁ ତାହାର ବିଜୁଳି ବିକ୍ରିକରି ସମସ୍ତ ମୁନାଫା ନିଜ ଦେଶ ପାଇଁ ନେଇଯିବେ,ଏହାର ମସୁଧା ହୋଇ ସାରିଛି । କୋଇଲାକୁ ନିଃଶେଷ କରିବା ସଙ୍ଗେ ସଙ୍ଗେ ଓଡ଼ିଶାକୁ ଏଥିରେ ପଇସାଟିଏ ଲାଭ ମଧ୍ୟ ମିଳିବ କି ନାହିଁ - ଏହାର ହିସାବ କିତାବ କେଉଁଠି ହୋଇଛି ବୋଲି ଆମେ ଜାଣି ନାହୁଁ । ଯେଉଁ ବିଜୁଳି ଉତ୍ପାଦନ ହେବ, ତାହାର ବ୍ୟବହାର କରି ଓଡ଼ିଶାର କୌଣସି ସ୍ଥାୟୀ ଶିଳ୍ପ ବ୍ୟବସ୍ଥା ଗଢ଼ି ଉଠିବ କି ? ତାହାର କୃଷି କ୍ଷେତ୍ରରେ କିପରି ଉପଯୋଗ ହେବ, ଏହାର କୌଣସି ଭବିଷ୍ୟତଧର୍ମୀ ଯୋଜନା ତିଆରି ହୋଇଛି କି ? ଯଦି ନ ହୋଇଛି, ତାହାହେଲେ ଏସିଆର ଏହି ସର୍ବବୃହତ୍ କୋଇଲା ଭଣ୍ଡାରକୁ ପାଉଁଶରେ ପରିଣତ କରିଦେବା ପରେ ମଧ୍ୟ ଓଡ଼ିଶାବାସୀ ଯେଉଁ କାଙ୍ଗାଳକୁ ସେଇ କାଙ୍ଗାଳ ରହିଯିବେ । ଏହି ଦଶନ୍ଧିର ବୁଦ୍ଧିଜୀବୀମାନଙ୍କର ଛଡ଼ା ଏଥିପାଇଁ ଆଉ କିଏ ଦାୟୀ ହେବ ?

ଓଡ଼ିଶାର ଅର୍ଥ ବ୍ୟବସ୍ଥାରେ କୃଷିକୁ କେନ୍ଦ୍ରୀୟ ମହତ୍ୱ ପ୍ରଦାନ କରିବା ଅର୍ଥ ଏହା ନୁହେଁ ଯେ, ଓଡ଼ିଶା କେବଳ ଏକ କୃଷିର ପ୍ରଦେଶ ହୋଇଯାଉ । କିନ୍ତୁ କୃଷିକୁ ଉନ୍ନତ ନ କରି ଓ କୃଷକର ମେରୁଦଣ୍ଡକୁ ସୁଦୃଢ଼ ନ କରି ଆଧୁନିକ ଓ ଅତ୍ୟାଧୁନିକ ଶିଳ୍ପୀକରଣର ଯୋଜନା କରିବା ଏକ ଦୂରଭିସନ୍ଧିପୂର୍ଣ୍ଣ ପ୍ରବଞ୍ଚନା - ଏ ବିଷୟରେ ଶିକ୍ଷିତ ସମାଜର ଚେତନା ସୃଷ୍ଟି ହେବା ଦରକାର । ଆମେ କୃଷିରେ ଜଙ୍ଗଲକୁ ସାମିଲ୍ କରିବାକୁ ଚାହୁଁ । ଓଡ଼ିଶା ସରକାର ତାଙ୍କର ନୂତନ ଶିଳ୍ପ ନୀତିରେ ଜଙ୍ଗଲ ଓ ବୃକ୍ଷ ରୋପଣକୁ ଶିଳ୍ପ ତାଲିକାଭୁକ୍ତ କରି ଦେଶୀ ବିଦେଶୀ ବ୍ୟବସାୟୀଙ୍କ ହାତରେ ଦେଇ ଦେବାର ଉଦ୍ଦେଶ୍ୟ ରଖିଛନ୍ତି ।

କୃଷି ଏକ ପ୍ରାଚୀନ ଆର୍ଥିକ କାର୍ଯ୍ୟ ହେଲେ ମଧ୍ୟ କୃଷିର ବିକାଶକୁ ଆଧୁନିକ ବିଚାର ଏକ ଜଟିଳ ଓ ଅନ୍ତଃବିରୋଧପୂର୍ଣ୍ଣ ବିଷୟ କରି ଦେଇଛି । କୃଷିର ସଞ୍ଚାଳନ ସ୍ୱଳ୍ପପୁଞ୍ଜି ଥିବା କୃଷକମାନେ ନିଜେ କରିବେ, ନା ଏହାକୁ ବୃହତ୍ ଶିଳ୍ପର ଆକୃତି ଦେଇ ସରକାରୀ ଅମଲାତନ୍ତ୍ର ଓ ବ୍ୟବସାୟୀ କମ୍ପାନୀମାନେ ଚଳେଇବେ ? ଆଧୁନିକ କାଳର ସମୃଦ୍ଧ ଦେଶମାନଙ୍କ ମଧ୍ୟରୁ ସୋଭିଏତ୍ ରୁଷ୍ ଅମଲାତାନ୍ତ୍ରିକ ଢଙ୍ଗରେ ଓ ଆମେରିକା ତଥା ୟୁରୋପ୍ ଘରୋଇ-ବ୍ୟବସାୟିକ ଉପାୟରେ ଏହାର ପ୍ରୟୋଗ କରିବା ପରେ ଦେଖାଗଲା ଯେ, ଆମେରିକା ଓ ୟୁରୋପ୍‌ର ପଦ୍ଧତି ସଫଳ ହୋଇଛି ଓ ତାଙ୍କର କୃଷି ଏତେ ପ୍ରଭାବଶାଳୀ ହୋଇଛି ଯେ, ସେମାନେ ଦୁର୍ବଳ ଦେଶମାନଙ୍କର କୃଷିକୁ ନିଜ ନିୟନ୍ତ୍ରଣରେ ରଖିବାକୁ ଏକ ବିଶ୍ୱ ବ୍ୟବସ୍ଥା ସୃଷ୍ଟି କରି ସାରିଲେଣି ।

ଭାରତର ଦକ୍ଷିଣପନ୍ଥୀମାନେ ଏହି ଭଳି କୃଷି ବିକାଶର ପକ୍ଷପାତି ହୋଇଛନ୍ତି, କାରଣ ଗାଟ୍ ସନ୍ଧି ଏହାକୁ ଉତ୍ସାହିତ କରୁଛି । ଭାରତର ବାମପନ୍ଥୀମାନେ ପ୍ରାରମ୍ଭିକ

କାଳରେ କୃଷିର ସରକାରୀକରଣକୁ ଯେତିକି ଉତ୍ସାହ ସହକାରେ ପ୍ରଚାର କରୁଥିଲେ, ସ୍ୱାଧୀନତା ପରେ ତାହାକୁ ନ ଛାଡ଼ିଲେ ମଧ୍ୟ ପ୍ରଚାରକୁ ଧିମେଇ ଦେଲେ । ସୋଭିଏତ୍ ଋଷ୍‌ର ପତନ ଓ ଚୀନ୍‌ରେ ଘରୋଇକରଣର ନୂଆ ମୋଡ଼ ଆସିଯିବା ପରେ ବାମପନ୍ଥୀମାନେ କୃଷି ବିକାଶର ସ୍ୱରୂପ ବିଷୟରେ ପୁରାପୁରି ଅସ୍ପଷ୍ଟ ହୋଇ ଯାଇ ଅଛନ୍ତି । ଯେଉଁ କୃଷିକୁ ଏତେ ଗୁରୁତ୍ୱ ଦିଆ ହେଉଅଛି, ତାହାର ବିକାଶ ବିଷୟରେ ସ୍ପଷ୍ଟ ଧାରଣା ନ ରହିବା ଏକ ବିଡ଼ମ୍ବନା ।

ଏହା ଫଳରେ ଏକ ବିଚିତ୍ର ସ୍ଥିତି ସୃଷ୍ଟି ହୋଇଛି । ଗତ ଦୁଇଦଶନ୍ଧି ମଧ୍ୟରେ ଦେଶର ନାନା ସ୍ଥାନରେ କୃଷକ ଆନ୍ଦୋଳନ ମୁଣ୍ଡ ଟେକିଲା ଓ ପ୍ରଭାବଶାଳୀ ହେଲା । କିନ୍ତୁ ତାକୁ ଏକ ଆର୍ଥିକ ପରିବର୍ତ୍ତନର ହତିଆର ରୂପେ ବ୍ୟବହାର କରିବା ପାଇଁ ପ୍ରଗତିଶୀଳ ଶକ୍ତିମାନେ କୌଣସି ଚେଷ୍ଟା କଲେ ନାହିଁ । କେବଳ ଧନୀ ଚାଷୀମାନଙ୍କର ନେତୃତ୍ୱକୁ ପ୍ରତିଗାମୀ କହି ସନ୍ତୁଷ୍ଟ ହୋଇଗଲେ । ଫଳତଃ ଯେଉଁଠି ଧନୀ ଚାଷୀ ପ୍ରକୃତରେ ନେତୃତ୍ୱକୁ ଆସିଲେ, ସେଠାରେ ଏହା ଏବେ ମଧ୍ୟ ବଳବତ୍ତର ରହିଛି । କିନ୍ତୁ ଯେଉଁଠି ଏହି ଶ୍ରେଣୀର ନେତୃତ୍ୱ ନ ଥିଲା ସେଇଠି ଆନ୍ଦୋଳନ ଧିମେଇ ଯାଇଛି ।

ସଙ୍ଗଠିତ ବାମପନ୍ଥୀମାନେ ଏ ପର୍ଯ୍ୟନ୍ତ ସ୍ପଷ୍ଟ କରିପାରି ନାହାନ୍ତି ଯେ, ସେମାନେ ଆର୍ଥିକ ବିକାଶର ଏକ ଗୁରୁତ୍ୱପୂର୍ଣ୍ଣ ଅଙ୍ଗ ଭାବରେ କୃଷି ବିକାଶର କେଉଁ ଉପାୟ ଗ୍ରହଣ କରିବାକୁ ଚାହାନ୍ତି । ସାଧାରଣତଃ ସେମାନେ କୃଷି ଶ୍ରମିକ ଓ ଭୂମିହୀନମାନଙ୍କର ଆନ୍ଦୋଳନକୁ ହିଁ କୃଷକ ଆନ୍ଦୋଳନ ବୋଲି କହିଥାନ୍ତି । ମଜୁରୀ ବୃଦ୍ଧି ଓ ଭୂମିର ପୁନର୍ବିତରଣ ବିଷୟରେ ଦାବୀମାନ କରିଥାନ୍ତି ।

ଏହା ସତ୍ୟ ଯେ, ମଜୁରିଆମାନେ ଓ ଭୂମିହୀନମାନେ ଯେତେ ସହଜରେ ଆନ୍ଦୋଳନ ପାଇଁ ସଙ୍ଗଠିତ ହୁଅନ୍ତି, ଜମି ଥିବା କୃଷକମାନେ ଏତେ ଶୀଘ୍ର ସଙ୍ଗଠିତ ହେଉ ନାହାନ୍ତି । କିନ୍ତୁ ମଜୁରିଆମାନଙ୍କର ବା ଭୂମିହୀନମାନଙ୍କର ଆନ୍ଦୋଳନ ମାଧ୍ୟମରେ କୃଷି ବିକାଶର କୌଣସି ରୂପରେଖ ଦୃଷ୍ଟିଗୋଚର ହୁଏ ନାହିଁ; କେତୋଟି କଥା ଅସ୍ପଷ୍ଟ ରହିଥାଏ ।

ମଜୁରିଆମାନେ ଓ ଭୂମିହୀନମାନେ କୃଷି ବିକାଶର କଳ୍ପନା କରିପାରନ୍ତି ନାହିଁ । କୃଷି ଉତ୍ପାଦନ ପାଇଁ କେଉଁ ସବୁ ଉପାୟମାନ ଗ୍ରହଣ କରାଯିବା ଦରକାର ସେ ବିଷୟରେ ସେମାନଙ୍କର ଆଗ୍ରହ ନ ଥାଏ, କାରଣ ସେମାନେ ଭୂମିର ମାଲିକ କିମ୍ବା ପରିଚାଳକ ନୁହନ୍ତି ।

କୃଷିର ବିକାଶ ପାଇଁ ଜମିର ଆକୃତିର ନ୍ୟୂନତମ ଓ ଅଧିକତମ ସୀମା କେଉଁଠି ହେବ ତାହା ସେମାନେ ନିର୍ଦ୍ଧାରଣ କରି ପାରନ୍ତି ନାହିଁ । ଜମିଗୁଡ଼ିକର ରାଷ୍ଟ୍ରୀୟକରଣ ହୋଇଯାଉ ଓ ଅତ୍ୟାଧୁନିକ ପଦ୍ଧତିରେ ବଡ଼ ବଡ଼ କୃଷି ଫାର୍ମ କରି ସବୁ ଚାଷୀଙ୍କୁ ମଜୁରିଆରେ ପରିଣତ କରାଯାଉ, ତାହା ମଧ୍ୟ ସେମାନେ ଆନ୍ଦୋଳନର ଦାବୀ ରୂପେ ରଖି ପାରନ୍ତି ନାହିଁ । ଅନ୍ୟ ଆଡ଼େ ଭୂମିକୁ କେତେ ବଡ଼ ବା କେତେ ଛୋଟ କଲେ ଭାରତୀୟ କୃଷିର ଆର୍ଥିକ ବିକାଶ ହୋଇ ପାରିବ, ତାହାକୁ ସ୍ପଷ୍ଟ କରନ୍ତି ନାହିଁ ।

ସାମନ୍ତବାଦୀ ଚାଷୀ, ଧନୀ ଚାଷୀ ଓ ଆଧୁନିକ ଚାଷୀ ମଧ୍ୟରେ ସେମାନେ ଫରକ ଦେଖି ପାରନ୍ତି ନାହିଁ । ଧନୀ ଚାଷୀ କେଉଁମାନେ ଓ ଓଡ଼ିଶା ଭଳି ରାଜ୍ୟରେ ତାହାଙ୍କର ସଂଖ୍ୟା ଓ ପ୍ରଭାବ କେତେ, ତାହା ସେମାନେ ନିରୂପିତ କରନ୍ତି ନାହିଁ । ଭୂସଂସ୍କାରକୁ କୃଷି ବିକାଶର ଆୟୁଧ କରିବା ନିମନ୍ତେ ସିଲିଂ ଆଇନ୍‌କୁ କାର୍ଯ୍ୟକାରୀ କରିବା ଛଡ଼ା ଆଉ ଭୂମି ବ୍ୟବସ୍ଥାରେ ଅନ୍ୟ କେଉଁ ସବୁ ପରିବର୍ତ୍ତନ ଦରକାର, ତାହା ସେମାନେ ସ୍ପଷ୍ଟ କରନ୍ତି ନାହିଁ ।

ଉଦାରୀକରଣ ଓ ଜଗତୀକରଣର ଫଳସ୍ୱରୂପ କୃଷି ଓ କୃଷକ ଶ୍ରେଣୀ ଉପରେ ଯେଉଁ ବିପଦ ଆସିବାର ଆଶଙ୍କା କରା ଯାଉଅଛି, ସିଲିଂ ଆଇନକୁ ପୂର୍ଣ୍ଣ ବା ଆଂଶିକ ଭାବରେ ରଦ୍ଦ କରିବାର ଯେଉଁ ଅପରିହାର୍ଯ୍ୟ ସମ୍ଭାବନା ରହିଛି, ତାହାର ମୁକାବିଲା ପାଇଁ କେଉଁ କେଉଁ ଶ୍ରେଣୀକୁ କେଉଁ କେଉଁ ଦାବୀ ଉପରେ ସଙ୍ଗଠିତ କରିବାକୁ ହେବ, ସେମାନେ ସୂତ୍ରବଦ୍ଧ କରିନାହାନ୍ତି । କୃଷି ବିକାଶ ସମ୍ପର୍କରେ ବାମପନ୍ଥୀ ଆନ୍ଦୋଳନର ଏହି ଅସ୍ପଷ୍ଟତା, ସାମ୍ପ୍ରତିକ ପରିସ୍ଥିତିରେ ସେମାନଙ୍କ ବିଚାରଧାରାର ଏକ ମୌଳିକ ଦୁର୍ବଳତା ହୋଇ ପଡ଼ିଅଛି ।

କୃଷି ବିକାଶର ପଦ୍ଧତି ସାଙ୍ଗରେ ଗ୍ରାମର ଭବିଷ୍ୟତ ଜଡ଼ିତ । କେତେକ ବାମପନ୍ଥୀ ଦଳ କୃଷି ଓ କୃଷକ ବିଷୟରେ ଯେଉଁ ଧାରାର ଆଲୋଚନା କରନ୍ତି, ସେଥିରୁ ଜଣାପଡ଼େ ଯେ, ଗ୍ରାମ କେବଳ କୃଷିର କ୍ଷେତ୍ର ହେବ । କୃଷି ବ୍ୟତୀତ ଅନ୍ୟ କୌଣସି ଆର୍ଥିକ କ୍ଷେତ୍ର ସେଥିରେ ରହିବ ନାହିଁ । 'ଭୂମିହୀନ'ର ଅବଧାରଣା ଏପରି ଏକ ଦୃଷ୍ଟିକୋଣରୁ ଉତ୍ପନ୍ନ ହୁଏ । ଭୂମିହୀନ କହିଲେ ସାଙ୍ଗେ ସାଙ୍ଗେ ବୁଝାଏ ଯେ, ଏହି ଶ୍ରେଣୀର ଲୋକମାନଙ୍କ ପାଇଁ ହୁଏତ ଜମି ଦରକାର କିମ୍ୱା କୃଷିରେ ପୂରା ବର୍ଷର ମଜୁରି କାମ ଦରକାର । ଭୂମିହୀନ ହେବା ମାତ୍ରକେ ସେ ଯେ କାହିଁକି କେବଳ କୃଷିରେ ନିଜର ରୋଜଗାର ଖୋଜିବ, ଏହାର କୌଣସି ସନ୍ତୋଷଜନକ ଉତ୍ତର ମିଳିପାରୁ ନାହିଁ ।

ବାସ୍ତବରେ ଆଜି ଯେଉଁମାନେ ଭୂମିହୀନ, ନିକଟ ଅତୀତରେ ସେମାନେ ହୁଏତ କୌଣସି ଅଣକୃଷି ବ୍ୟବସାୟରେ ଥିଲେ । ସେହି ବ୍ୟବସାୟ ଲାଭଜନକ ନ ହେବାରୁ ସେମାନେ ସର୍ବହରା ହୋଇ କାମ ଖୋଜୁଛନ୍ତି । କିମ୍ୱା ସେମାନେ ଏତେ ଅଳ୍ପ ପରିମାଣର ଜମିର ମାଲିକ ଥିଲେ ଯେ, କୃଷି ଦ୍ୱାରା ପେଟ ପୋଷିବା ସମ୍ଭବ ହେଲାନାହିଁ । ସହରକୁ ଯାଇଥିଲେ ରିକ୍ସା ଚାଳକ କିମ୍ୱା ଘରୋଇ ଚାକର କିମ୍ୱା ସେପରି କିଛି ହୋଇ ଥାଆନ୍ତେ ।

ଗ୍ରାମରେ ରହି ଯିବାରୁ ସେ ସମସ୍ତଙ୍କୁ ବର୍ତ୍ତମାନର 'ଭୂମିହୀନ' ଓ ଭବିଷ୍ୟତର କୃଷକ ବୋଲି ସଞ୍ଜ୍ଞା ଦେବା ମୋଟେ ବୈଜ୍ଞାନିକ ନୁହେଁ । ଯେଉଁମାନେ ବର୍ତ୍ତମାନର ଭୂମିହୀନଙ୍କୁ ଭବିଷ୍ୟତର କୃଷକ ବୋଲି ଗଣନା କରନ୍ତି, ସେମାନେ ଗ୍ରାମରେ ଅଣକୃଷି ବ୍ୟବସାୟର କଳ୍ପନା ମଧ୍ୟ କରନ୍ତି ନାହିଁ । ପରମ୍ପରାଗତ ଅର୍ଥରେ ଗ୍ରାମ କହିଲେ କେବେ ମଧ୍ୟ କୃଷିକ୍ଷେତ୍ର ବୁଝାଏ ନାହିଁ, ଯଦିଓ ବିନା କୃଷିରେ ଗ୍ରାମର କଳ୍ପନା ମଧ୍ୟ କରିହୁଏ ନାହିଁ । ବିଶୁଦ୍ଧ କୃଷି ଅଞ୍ଚଳ ଏକ ଆଧୁନିକ ପୁଞ୍ଜିବାଦୀ ଅବଧାରଣା । ଏହି

ଅବଧାରଣାରେ ମୁଖ୍ୟ ଜନବସତିମାନେ ହେବେ ସହର ଓ ମହାନଗର । ତାହା ଛଡ଼ା ଅନେକ ଶିଳ୍ପ ଅଞ୍ଚଳ ରହିବ ଓ ଅନେକ କୃଷି ଫାର୍ମ ରହିବ । ଶିଳ୍ପାଞ୍ଚଳରେ କେବଳ ଶିଳ୍ପରେ କାର୍ଯ୍ୟରତ ଲୋକ ରହିବେ । ବଡ଼ ବଡ଼ କୃଷି ଫାର୍ମଗୁଡ଼ିକରେ କେବଳ କୃଷିରେ କାର୍ଯ୍ୟରତ ଲୋକମାନେ ରହିବେ । ସେଗୁଡ଼ିକ ବିବିଧ କାର୍ଯ୍ୟ କରୁଥିବା ଲୋକଙ୍କର ଜନବସତି ହୋଇପାରିବ ନାହିଁ । ଏହା ଏକ ଭ୍ରାନ୍ତ ଅବଧାରଣା ।

ଓଡ଼ିଶାରେ କୃଷି କ୍ଷେତ୍ରକୁ ଛାଡ଼ିଦେଲେ ଉତ୍ପାଦକ ଶ୍ରମର ଦ୍ୱିତୀୟ କ୍ଷେତ୍ର ହେଉଛି ଗ୍ରାମ୍ୟ ବା କୁଟୀରଶିଳ୍ପ । ଏକଶତାବ୍ଦୀ ପଛର ଜନସଂଖ୍ୟାର ବିଶ୍ଳେଷଣ କଲେ ଜଣାପଡ଼ିବ ଯେ, ଓଡ଼ିଶାର ଚାରିଆଡ଼େ ସୂତା ତିଆରି ଓ କପଡ଼ା ଉତ୍ପାଦନର ଶିଳ୍ପ ବ୍ୟାପିଥିଲା ଯାହାର ଏକ ବଡ଼ ଅଂଶ ପ୍ରତିକୂଳ ଶାସନ ନୀତିର ମୁକାବିଲା କରିନପାରି ଲୋପ ପାଇଗଲାଣି । ବୁଣାକାରମାନଙ୍କର ଯେଉଁ ବଂଶଧରମାନେ ସହରକୁ ପଳାଇଯାଇ ନାହାନ୍ତି, ସେମାନେ 'ଭୂମିହୀନ' ଅବସ୍ଥାରେ ଅଛନ୍ତି । ଯେଉଁ ବୁଣାକାରମାନେ ତାଙ୍କର ବ୍ୟବସାୟ ଛାଡ଼ିନାହାନ୍ତି, ସେମାନଙ୍କ ଉତ୍ପାଦନ କୌଶଳ ଓ ସେମାନଙ୍କର ଉତ୍ପାଦିତ ବସ୍ତ୍ରର ଗୁଣବତ୍ତା ନିଶ୍ଚୟ ଅସାଧାରଣ ହୋଇଥିବ । ନଚେତ୍ ଏତେ ଭୟଙ୍କର ପ୍ରତିକୂଳ ପରିସ୍ଥିତିରେ ସେମାନେ ତିଷ୍ଠି ରହିଥାନ୍ତେ କିପରି ? ଓଡ଼ିଶାର ଏହି ସଶକ୍ତ ଉତ୍ପାଦକ ବର୍ଗକୁ ଉତ୍ସାହିତ, ସଙ୍ଗଠିତ, ସଂରକ୍ଷିତ କରିବା ନିମନ୍ତେ ଆମେ ସମାଜବାଦୀ-ସାମ୍ୟବାଦୀ-ସର୍ବୋଦୟୀମାନେ କିଛି କରିଛେ କି ? ଖଦୀ ହୋଇ ନ ଥିବାରୁ ସେମାନେ ଗାନ୍ଧୀବାଦୀମାନଙ୍କ ଦ୍ୱାରା ତ୍ୟାଜ୍ୟ । 'ପାତି ବୁର୍ଜୁଆ' ହୋଇଥିବାରୁ ସେମାନେ ସୋସାଲିଷ୍ଟ୍-କମ୍ୟୁନିଷ୍ଟ୍‌ମାନଙ୍କ ଦ୍ୱାରା ବର୍ଜିତ । ସେମାନଙ୍କ ବିଷୟରେ କେବେ କୌଣସି ଗମ୍ଭୀର ଅଧ୍ୟୟନ ମଧ୍ୟ ହୁଏ ନାହିଁ ।

କୌତୂହଳ ହୁଏ ଯେ, ରାଜକିଶୋର କ'ଣ 'ମେହେର୍' ହୋଇଥିବାରୁ ଏମାନଙ୍କର ହ୍ରାସମାନ ଅବସ୍ଥାର ଅନୁସନ୍ଧାନ କରିବାର ଦାୟିତ୍ୱ ଗ୍ରହଣ କଲେ ? ନବକୃଷ୍ଣ ଚୌଧୁରୀ ଉନ୍ନୟନ ଅଧ୍ୟୟନ କେନ୍ଦ୍ରର ଗବେଷକ ଡଃ ରାଜ୍‌କିଶୋର୍ ମେହେର୍ ପଶ୍ଚିମ ଓଡ଼ିଶାର ବୁଣାକାରମାନଙ୍କ ଅବସ୍ଥା ସଙ୍କ୍ରାନ୍ତରେ ଏକ ଗୁରୁତ୍ୱପୂର୍ଣ୍ଣ ଗବେଷଣା କରିଛନ୍ତି । କୌଣସି ମିଶ୍ର ବା ମାହାନ୍ତି ଏ ସମ୍ପର୍କରେ ଏହାଠାରୁ ଗଭୀର ଅଧ୍ୟୟନ କରିଛନ୍ତି କି ? ରାଜ୍ୟ ହସ୍ତତନ୍ତ ନିଗମର ଚାଟାର୍ଜୀ, ମିଶ୍ର, ପଟ୍ଟନାୟକ (ଅର୍ଥାତ୍ ଏହି ଶ୍ରେଣୀର) ଅମଲାତାନ୍ତ୍ରିକ ଅଧ୍ୟକ୍ଷମାନେ କ'ଣ କେବେହେଲେ ସର୍ବସାଧାରଣଙ୍କୁ ଜଣାଇଛନ୍ତି ଯେ ଓଡ଼ିଶାର ସର୍ବବୃହତ୍ ଅଣକୃଷି ରୋଜଗାରର ଏହି କ୍ଷେତ୍ରରେ କାମ କରୁଥିବା ଲୋକଙ୍କର ଶତକଡ଼ା ୮୦ ଭାଗ ଦାରିଦ୍ର୍ୟ ସୀମାରେଖା ତଳେ ରହିଛନ୍ତି ? ଦଶନ୍ଧି ପରେ ଦଶନ୍ଧି ତାଙ୍କରି ଭିତରୁ ଗୋଟିଏ ଅଂଶ ଏହି 'ଶିଳ୍ପଗତ' ବ୍ୟବସାୟ ଛାଡ଼ି 'ଭୂମିହୀନ' ବାହିନୀରେ ଯୋଗ ଦେଇଛନ୍ତି । ସେମାନଙ୍କର ପରିସଂଖ୍ୟାନ ଏହି ବ୍ରାହ୍ମଣ, କରଣ ଜାତିର ନିଗମ ଅଧ୍ୟକ୍ଷମାନେ ଦେଇପାରିବେ କି ?

ଏକ ଦିଗରେ ଦକ୍ଷିଣପନ୍ଥୀ ଓ ବାମପନ୍ଥୀ ଉଭୟ ପ୍ରକାରର ଅର୍ଥଶାସ୍ତ୍ର କହେ ଯେ, କୃଷି କ୍ଷେତ୍ରରୁ ଅଣ-କୃଷି କ୍ଷେତ୍ରକୁ ଯାତ୍ରା କରିବା ଏକ ପ୍ରଗତିର ଲକ୍ଷଣ । ଅନ୍ୟ ଦିଗରେ ଗ୍ରାମାଞ୍ଚଳର ଅଣକୃଷି ବ୍ୟବସାୟ ସବୁ ଭାଙ୍ଗି ପଡ଼ୁଛି ଓ ଭୂମିହୀନ ସର୍ବହରାମାନଙ୍କର

ଶ୍ରେଣୀ ବଢ଼ି ଚାଲିଛି । ଏମାନଙ୍କର ବର୍ଗ ସଙ୍ଘର୍ଷ କାହା ବିରୁଦ୍ଧରେ ହେବ ? କିଏ ସେମାନଙ୍କର ସହଯୋଗୀ ହେବେ ? ଏହାର ବ୍ୟୁହ ରଚନା ହୋଇ ପାରୁ ନାହିଁ । ଅଧିକାଂଶ ସମୟରେ ଦେଖାଯାଉଛି ଯେ, ପାରମ୍ପରିକ ବାମପନ୍ଥୀ ପଦ୍ଧତିରେ ଆନ୍ଦୋଳନ କଲେ ନିମ୍ନ ମଧ୍ୟବିତ୍ତ ସ୍ତରୀୟ ଚାଷୀ ପରିବାରମାନଙ୍କର ବିରୁଦ୍ଧରେ ଭୂମିହୀନ ସର୍ବହରାମାନଙ୍କର ରକ୍ତାକ୍ତ ଲଢ଼େଇ ହୋଇ ଯାଉଛି । କିନ୍ତୁ କୃଷିକ୍ଷେତ୍ରର ବାହାରେ ଥାଇ ଯେଉଁମାନେ କୃଷକ, ଭୂମିହୀନ ଓ ସମଗ୍ର ଗ୍ରାମ୍ୟ ଅର୍ଥନୀତିକୁ ଶୋଷଣ କରି ଧନୀ ବେପାରୀ, ପୁଞ୍ଜିପତି ହେଉଛନ୍ତି ବା ତାଙ୍କର ଦଲାଲ୍ ହେଉଛନ୍ତି, ସେମାନଙ୍କ ବିରୁଦ୍ଧରେ ସମ୍ମୁଖ ସଙ୍ଘର୍ଷ କେଉଁଠି ହେଲେ ଦେଖା ଯାଉ ନାହିଁ ।

ଉଦାହରଣ ସ୍ୱରୂପ, ପଶ୍ଚିମ ଓ ଦକ୍ଷିଣ ଓଡ଼ିଶାର ଚାଉଳ କଳ ମାଲିକମାନଙ୍କର କଥା ଦେଖାଯାଉ । ଏହି ଅଞ୍ଚଳରେ ଲୋକ ଖାଇବାକୁ ଯଥେଷ୍ଟ ପାଆନ୍ତୁ ନ ପାଆନ୍ତୁ, ପ୍ରଚୁର ପରିମାଣର ଧାନ ଏଠାରୁ ଓଡ଼ିଶା ଭିତର ଓ ବାହାର ଅଞ୍ଚଳକୁ ଯାଏ । ସରକାରୀ ଆଇନ୍‌ବ୍ୟବସ୍ଥା ଓ କଟକଣାମାନ ଏପରି ହୋଇଛି ଯେ କେବଳ ଚାଉଳ କଳ ମାଲିକମାନେ ହିଁ 'ରପ୍ତାନୀ' ବ୍ୟବସାୟ କରିପାରିବେ । କାରଣ କେବଳ ସେମାନେ ହିଁ ଚାଷୀମାନଙ୍କର ଠାରୁ ଧାନ ସଂଗ୍ରହ କରିପାରୁଛନ୍ତି ଓ ସରକାର ଯେଉଁ ଚାଉଳ ସଙ୍ଗ୍ରହ କରି ଚାଉଳ ଭଣ୍ଡାର ରଖିବା କଥା, ସରକାର ତାହାର ଦାୟିତ୍ୱ ଏହି ଚାଉଳ କଳମାନଙ୍କୁ ଦେଇଛନ୍ତି ।

ଏତେ ବଡ଼ ଏକଚାଟିଆ  କାରବାରର ସୁଯୋଗ ପାଇ ଚାଉଳ କଳ ମାଲିକମାନେ ସଙ୍ଘବଦ୍ଧ ହୋଇ ନୂଆ ଫସଲ ବିକ୍ରି ହେବା ସମୟରେ ସରକାର ଦ୍ୱାରା ନିର୍ଦ୍ଧାରିତ ନ୍ୟୁନତମ ମୂଲ୍ୟଠାରୁ ପ୍ରତି ବସ୍ତାରେ ୨୦ ଟଙ୍କା ଲେଖାଏଁ କମ୍ ମୂଲ୍ୟ ଦେଇ ଧାନ କିଣିଥାଆନ୍ତି । ବିଶ୍ୱବିଦ୍ୟାଳୟ ବା ଗବେଷଣା ସଂସ୍ଥାମାନଙ୍କର ଦ୍ୱାରା ଏହି କାରବାର ଓ ଗ୍ରାମାଞ୍ଚଳରୁ ହେଉଥିବା ତଦ୍‌ଜନିତ ଲୁଟ୍ ବିଷୟରେ ତଥ୍ୟ ସଂଗ୍ରହ ହୋଇଛି କି ନାହିଁ, ଆମେ ଜାଣୁନା । କିନ୍ତୁ ଆନୁମାନିକ ଭାବରେ ଏହା ସତ୍ୟ ଯେ ଧାନ କିଣାରୁ ଚାଉଳ ବିକା ପର୍ଯ୍ୟନ୍ତ କାରବାରରେ ପ୍ରତି ଗ୍ରାମ ପଞ୍ଚାୟତରୁ ପ୍ରାୟ ୧୦ ଲକ୍ଷ ଟଙ୍କାର ଲୁଟ୍ ପ୍ରତିବର୍ଷ ହୋଇଥାଏ ।

ଅତଏବ ସାରା ଅଞ୍ଚଳର ଶ୍ରମିକ ଓ କୃଷକମାନଙ୍କର ଉତ୍ପାଦକ ଶ୍ରମରୁ କୋଟି କୋଟି ଟଙ୍କା ଲୁଣ୍ଠିତ ହେଉଛି ଓ ଅପହୃତ ବା ଲୁଟ୍‌ରୁ ପ୍ରାପ୍ତ ଧନର ଖର୍ଚ୍ଚ ମଧ୍ୟ ଏହି ଅଞ୍ଚଳମାନଙ୍କରେ ହେଉ ନାହିଁ । ପଶ୍ଚିମ ଓଡ଼ିଶାର ନିର୍ଭରଯୋଗ୍ୟ ଜଳସେଚିତ ଅଞ୍ଚଳରେ ମଧ୍ୟ 'ଧନୀ ଚାଷୀ' ଶ୍ରେଣୀ  ଯେ ସୃଷ୍ଟି ହୋଇପାରୁ ନାହିଁ, ତାହାର କାରଣ ଏହି ଲୁଣ୍ଠନ । କେବଳ ଯେ ଧନୀ ଚାଷୀ ଶ୍ରେଣୀ ସୃଷ୍ଟି ହେଉ ନାହିଁ, ତାହା ନୁହେଁ, ମିଲ୍ ମାଲିକମାନଙ୍କର ଆଇନଗତ ଓ ବେଆଇନ୍ ଭାବରେ ପ୍ରାପ୍ତ ଲାଭଗୁଡ଼ିକ ଅଞ୍ଚଳ ବାହାରକୁ ଚାଲି ଯାଉଥିବାରୁ ଏହି ଅଞ୍ଚଳର ଅଭିବୃଦ୍ଧି ପାଇଁ ପୁଞ୍ଜି ନିର୍ମାଣ କିମ୍ବା ବଜାରର ପ୍ରସାର କିମ୍ବା ରୋଜଗାର ସୃଷ୍ଟି ହୋଇ ପାରୁ ନାହିଁ । ମିଲ୍‌ମାଲିକମାନଙ୍କର ଶୋଷଣ ବିରୁଦ୍ଧରେ ଯେଉଁ ଅଧାପନ୍ତରିଆ, କ୍ଷୀଣ ଆନ୍ଦୋଳନମାନ ଚାଲିଛି, ଶିକ୍ଷିତ ସମାଜର ପ୍ରଗତିଶୀଳ ଅଂଶ ତାହା ପ୍ରତି ସମର୍ଥନ ନ ଜଣାଇବାରୁ ଏହି ଆନ୍ଦୋଳନଗୁଡ଼ିକ ଏ ପର୍ଯ୍ୟନ୍ତ ବ୍ୟର୍ଥ ହୋଇଛି ।

କୃଷି ଓ କ୍ଷୁଦ୍ର ଶିଳ୍ପର ଉତ୍ପାଦକମାନଙ୍କ ବିଷୟରେ, ସେମାନଙ୍କର ଭବିଷ୍ୟତ ବିଷୟରେ, ବିଶେଷ କରି ଗାଟ୍ ଚୁକ୍ତି ପରବର୍ତ୍ତୀ କାଳର ଭବିଷ୍ୟତ କ'ଣ ହେବ, ସେ ବିଷୟରେ ଦକ୍ଷିଣପନ୍ଥୀମାନଙ୍କର ଦୃଷ୍ଟିକୋଣ ଯେତିକି ସ୍ପଷ୍ଟ, ବାମପନ୍ଥୀ ବା ପ୍ରଗତିଶୀଳ ବୁଦ୍ଧିଜୀବୀମାନଙ୍କର ଦୃଷ୍ଟିକୋଣ ସେତିକି ସଂଶୟଯୁକ୍ତ ଓ ଭ୍ରମିତ । ଏହିସବୁ ଆର୍ଥିକ କ୍ଷେତ୍ର ଓ ସାମାଜିକ ଶ୍ରେଣୀମାନଙ୍କର ସମ୍ବନ୍ଧରେ, ଅର୍ଥାତ୍ କୃଷି ଓ କ୍ଷୁଦ୍ରଶିଳ୍ପ ବିଷୟରେ, ଯେତେ ଶୀଘ୍ର ବାମପନ୍ଥୀ ବିଚାରଧାରାର ଏକ ଯୁଗୋପଯୋଗୀ ବିବର୍ତ୍ତନ ହେବ, ଆଧୁନିକ ବିକାଶ ପଦ୍ଧତିର ଶିକାର ହୋଇ ପଛେଇ ପଡ଼ିଥିବା ଓଡ଼ିଶା ଭଳି ଅଞ୍ଚଳମାନଙ୍କର ସେତିକି ଶୀଘ୍ର ଉନ୍ନତିର ବାଟ ଫିଟିବ । ଏହି ନୂତନ ଦିଗକୁ ଆଲୋକିତ କରିବାରେ ଅର୍ଥଶାସ୍ତ୍ରୀମାନଙ୍କର ବିଶେଷ ଯୋଗଦାନ ରହିବ ।

୧୪ ଏପ୍ରିଲ୍, ୧୯୯୪

# ଓଡ଼ିଶା ରାଜନୀତିର ନିରାଶା ଓ ଆଶା

ଓଡ଼ିଶାର ରାଜନୀତି ଏକ ଗୌଣ ରାଜନୀତି । ଏକ ପଛୁଆ ଓ ଗୋଡ଼ାଣିଆ ରାଜନୀତି । ଏକ ପଛୁଆପଣର ରାଜନୀତି ମଧ୍ୟ ଓଡ଼ିଶାରୁ ବାହାରି ପାରି ନାହିଁ । ଅର୍ଥାତ୍ ଓଡ଼ିଶାର ଅତି ଅନଗ୍ରସର ଅବସ୍ଥାର ଆହ୍ୱାନରେ ଯେଉଁ ରାଜନୀତି ସୃଷ୍ଟି ହେବାକଥା, ତାହା ହୋଇ ନାହିଁ । ରାଜନୀତିର ବିଭିନ୍ନ ଧାରା ଓଡ଼ିଶାରେ ସକ୍ରିୟ ହୋଇଛି, କିନ୍ତୁ କୌଣସି ଧାରା ଓଡ଼ିଶାରୁ ବାହାରି ନାହିଁ କିମ୍ବା ସେହି ଧାରାକୁ ନୂଆ ମୋଡ଼ ଦେବାର କାମ ମଧ୍ୟ ଓଡ଼ିଶା କରି ନାହିଁ । ଅଖିଳ ଭାରତୀୟ ସ୍ତରରେ କିଛି ଗୋଟିଏ ଗୁରୁତ୍ୱପୂର୍ଣ୍ଣ ମୋଡ଼ ଆସିଲେ ଓଡ଼ିଶାରେ ତାହାର ଏକ ଶାଖା ଗଢ଼ିବାର ଚେଷ୍ଟା ହୋଇଥାଏ । ତେଣୁ କେତେଗୁଡ଼ିଏ ଅଖିଳ ଭାରତୀୟ ରାଜନୈତିକ ଦଳମାନଙ୍କର ନିସ୍ତେଜ୍ ଶାଖାମାନଙ୍କର ସମଷ୍ଟି ହେଉଛି ଓଡ଼ିଶାର ରାଜନୈତିକ ବ୍ୟବସ୍ଥା ।

ଏକ ଦିଗରେ ଓଡ଼ିଶାର ନିଜସ୍ୱ ପରିଚିତି ନାହିଁ । ଦ୍ୱିତୀୟରେ ଓଡ଼ିଶାର ରାଜନେତାମାନଙ୍କର ରାଷ୍ଟ୍ରୀୟ ନେତୃତ୍ୱରେ ମଧ୍ୟ ପ୍ରଭାବକାରୀ ସ୍ଥାନ ନାହିଁ । ଏକଦା ଗଣତନ୍ତ୍ର ପରିଷଦ ଓଡ଼ିଶାର ଏକ ନିଜସ୍ୱ ରାଜନୈତିକ ଶକ୍ତି ଥିଲା, କିନ୍ତୁ ତାହାର ନେତୃତ୍ୱ ଏତେ ସଙ୍କୀର୍ଣ୍ଣ, ଦୂରଦୃଷ୍ଟିହୀନ ଓ ଅପାରଗ ଥିଲା ଯେ, ଏହାର ବିକାଶ ହୋଇ ପାରିଲା ନାହିଁ । ଏହାର ଶକ୍ତିକୁ ପୁଞ୍ଜିକରି କେତେକ ଅଖିଳ ଭାରତୀୟ ନେତା (ବମ୍ବେର ମୀନୁ ମାସାନୀ ପ୍ରଭୃତି) ସ୍ୱତନ୍ତ୍ର ଦଳର ଗଠନ କଲେ । ସେହି ଦଳରେ ମଧ୍ୟ ଓଡ଼ିଶାର କୌଣସି ନେତୃତ୍ୱ ନ ଥିଲା ।

ବେଳେ ବେଳେ କିଛି ଓଡ଼ିଆ ରାଜନେତା ତାଙ୍କ ଦଳର ସର୍ବୋଚ୍ଚ କମିଟି ବା ପଦମାନଙ୍କରେ ରହି ଆସି ଅଛନ୍ତି; ଯଥା ସୁରେନ୍ଦ୍ର ଦ୍ୱିବେଦୀ, ରବି ରାୟ ଓ ବିଜୁ ପଟ୍ଟନାୟକ । କିନ୍ତୁ ସେମାନେ ଦଳର ନୀତି ବା ରଣନୀତି ସ୍ଥିର କଲା ବେଳେ ନିର୍ଣ୍ଣାୟକ ହୁଅନ୍ତି ନାହିଁ । ଓଡ଼ିଶା ଭିତରେ ବିଜୁ ପଟ୍ଟନାୟକ ଯେତେ ଉତ୍ତୁଙ୍ଗ ଦେଖାଯାଆନ୍ତୁ ନା କାହିଁକି, ଜନତା ଦଳର ନୀତି-ରଣନୀତିର ନିଷ୍ପତ୍ତିରେ ତାଙ୍କର ଭୂମିକା ନିର୍ଣ୍ଣାୟକ ହୁଏ ନାହିଁ; ବାଙ୍ଗରା ଆକୃତିର ଶରଦ ଯାଦବ୍, ଲାଲୁପ୍ରସାଦ ଯାଦବ୍ ବା ରାମ୍‌ବିଲାସ୍ ପାସ୍‌ୱାନ୍ ତାଙ୍କଠାରୁ ବେଶୀ ଭାରି ହୁଅନ୍ତି । ନିଜର କୌଣସି ସାଙ୍ଗଠନିକ ଆଧାର ନ ଥାଇ ବିଶ୍ୱନାଥ ପ୍ରତାପ ସିଂହ ତାଙ୍କ ଅପେକ୍ଷା ବେଶୀ ପ୍ରଭାବଶାଳୀ ଢଙ୍ଗରେ ଦେଶର ରାଜନୀତିକୁ ମୋଡ଼ ଦେଇ ପାରନ୍ତି ।

ଅଖିଳ ଭାରତୀୟ ସ୍ତରରେ ନେତୃତ୍ୱ ନ ଦେଇ ପାରିଲେ କିଛି ଯାଏ ଆସେ ନାହିଁ ବୋଲି ଆମେ କହି ପାରିବା । କିନ୍ତୁ ରାଜ୍ୟର ବିଶିଷ୍ଟ ପରିସ୍ଥିତିକୁ ନେଇ ଏକ ଟାଣୁଆ ରାଜନୀତି ଗଢ଼ି ନ ପାରିବା ନିଶ୍ଚୟ ଏକ ବ୍ୟର୍ଥତାର ସୂଚକ । ଓଡ଼ିଶାର ବିଶିଷ୍ଟ ପରିସ୍ଥିତିକୁ ନେଇ ଅତୀତରେ ଯେଉଁ ଉଲ୍ଲେଖନୀୟ ରାଜନୀତି ହୋଇଥିଲା, ତାହା ଗୋପବନ୍ଧୁ ଓ ମଧୁସୂଦନ ଦାସଙ୍କର ଅମଳରେ ଦୁଇଟି କଥାକୁ ନେଇ, ଦେଶ ମିଶ୍ରଣ ବା ଉତ୍କଳ ରାଜ୍ୟଗଠନକୁ ନେଇ ଓ ଓଡ଼ିଶାର କାଙ୍ଗାଳ ଅବସ୍ଥାକୁ ନେଇ ଅର୍ଥାତ୍ ବନ୍ୟା ଓ ଦୁର୍ଭିକ୍ଷ ସମସ୍ୟା ପରିପ୍ରେକ୍ଷୀରେ ହୋଇ ପାରିଥିଲା । ଗୋପବନ୍ଧୁଙ୍କର ମୃତ୍ୟୁ ପରେ ଓ ସ୍ୱତନ୍ତ୍ର ଓଡ଼ିଶା ଗଠନ ପରେ ମଧ୍ୟ ଏହି ସମସ୍ୟାମାନ ରହିଲା, କିନ୍ତୁ ଉଚ୍ଚକୋଟୀର ନେତୃତ୍ୱ ଅଥବା ସୁଦୃଢ଼ ସଙ୍ଗଠନ ଅଭାବରୁ ଏହି ସମସ୍ୟାମାନଙ୍କୁ ନେଇ କୌଣସି ଉଲ୍ଲେଖନୀୟ ରାଜନୈତିକ ଧାରା ଚାଲିପାରି ନାହିଁ । ଷଢ଼େଇକଳା-ଖରସୁଆଁ ବିଭ୍ରାଟ ପରେ ଦେଶ ମିଶ୍ରଣ ରାଜନୀତି କେବଳ ସରିଯାଇଛି ତାହା ନୁହେଁ, ଏହାର ଏକ ବିପରୀତଧର୍ମୀ ରାଜନୀତି ମଧ୍ୟ ମୁଣ୍ଡ ଟେକୁଛି । ଓଡ଼ିଶାର ଉତ୍କଟ ଦାରିଦ୍ର୍ୟ ପ୍ରସଙ୍ଗକୁ ନେଇ ପଶ୍ଚିମ ଓଡ଼ିଶାର ସମାଜବାଦୀମାନେ ମରୁଡ଼ି ଓ କଳାହାଣ୍ଡିର ସମସ୍ୟାକୁ ରାଜନୀତିର ବିଷୟ କରିବାକୁ ଚାହିଁଥିଲେ ମଧ୍ୟ ସଙ୍ଗଠନ ଅଭାବରୁ ଓ ମୁଖ୍ୟ ରାଜନୈତିକ ଦଳମାନଙ୍କର ଉଦାସୀନତା ଯୋଗୁଁ କୌଣସି ରାଜନୈତିକ ଆନ୍ଦୋଳନର ସୂତ୍ରପାତ ହେଲା ନାହିଁ ।

ଓଡ଼ିଶାର ବିଶିଷ୍ଟ ପରିସ୍ଥିତିକୁ ନେଇ ରାଜନୀତି କହିଲେ ଦୁଇ ପ୍ରକାରର ରାଜନୀତିକୁ ବୁଝାଏ । ପ୍ରଥମତଃ ସରକାରୀ ସ୍ତରରେ ସାରା ଦେଶରେ ଯେଉଁ ପ୍ରକାରର ବିକାଶ ଯୋଜନା ଚାଲିଛି ତାହାର ଢାଞ୍ଚା ଭିତରେ ଓଡ଼ିଶାର ଯଥେଷ୍ଟ ପରିମାଣର ବିକାଶ କାର୍ଯ୍ୟ କରାଇ ନେବା ପାଇଁ ସରକାରୀ ଚେଷ୍ଟାକରିବା ଓ ଦ୍ୱିତୀୟତଃ ଓଡ଼ିଶାର ବିଶିଷ୍ଟ ସମସ୍ୟାମାନଙ୍କର ସମାଧାନ ପାଇଁ ବୈକଳ୍ପିକ ବିକାଶର ଆନ୍ଦୋଳନ ତଥା ଜନସଙ୍ଗଠନ ଗଢ଼ିବାର ରାଜନୀତିକୁ ସୁଦୃଢ଼ ଓ ବ୍ୟାପକ କରିବା ।

ପ୍ରଥମ ପ୍ରକାରର ରାଜନୀତିର ବିଶେଷ ସମ୍ଭାବନା କଂଗ୍ରେସ୍ ରାଜନୀତିରେ ଥିଲା । କେନ୍ଦ୍ରର ଶାସନ ଆଜି ପର୍ଯ୍ୟନ୍ତ ମୁଖ୍ୟତଃ କଂଗ୍ରେସ୍‌ର ନିୟନ୍ତ୍ରଣରେ ରହି ଥିବାରୁ କେନ୍ଦ୍ର ସଙ୍ଗେ ସହଯୋଗ ରକ୍ଷା କରୁଥିବା ଓଡ଼ିଶାର ଶାସକମାନେ ଏହି ରାଜନୀତିକୁ ସାର୍ଥକ କରିପାରି ଥାଆନ୍ତେ । କିନ୍ତୁ ହରେକୃଷ୍ଣ ମହତାବ, ବିଜୁ ପଟ୍ଟନାୟକଙ୍କ ଭଳି କଂଗ୍ରେସ୍ ଶାସକମାନେ ଓଡ଼ିଶାକୁ ଏକ ଶିଳ୍ପୋନ୍ନତ ରାଜ୍ୟ କରିବାର ଉଦ୍ଦେଶ୍ୟ ଉପରେ ବେଶୀ ଜୋର୍ ଦେଲେ । ରାଉରକେଲା ଇସ୍ପାତ୍ କାରଖାନା, ପାରଦୀପ ବନ୍ଦର, ବରଗଡ଼, ରାଜଗାଙ୍ଗପୁର୍ ସିମେଣ୍ଟ୍ କାରାଖାନା ଆଦିର ବିସ୍ତାର ଏହି ସମୟରେ ହେଲା । ଏହା ଏକ ଅବାସ୍ତବ ଉଦ୍ଦେଶ୍ୟ ଥିଲା, କାରଣ ଓଡ଼ିଶାର ବିଶିଷ୍ଟ ପରିସ୍ଥିତିରେ ଆଧୁନିକ କଳ-କାରଖାନା ଦ୍ୱାରା ଅଧିକାଂଶ ଓଡ଼ିଶାବାସୀଙ୍କର ଜୀବନରେ ସମୃଦ୍ଧି ଘଟିବାର କୌଣସି ଆଶା ନାହିଁ ।

ସ୍ୱାଧୀନତାର ପ୍ରଥମ ତିରିଶ ବର୍ଷ ମଧ୍ୟରେ ବିଭିନ୍ନ ପ୍ରକାର ବିକାଶ ଯୋଜନାରୁ ଫାଇଦା ଉଠାଇ ଭାରତର ଅନ୍ୟ କେତେକ ରାଜ୍ୟ ସରକାର ନିଜ ଅଞ୍ଚଳର କୃଷି

ଅର୍ଥନୀତିକୁ ସବଳ କରିବା ନିମନ୍ତେ ଯେଉଁ ଚେଷ୍ଟା କଲେ, ତାହା ଫଳରେ ସମଗ୍ର ଚାଷୀ ଶ୍ରେଣୀର ଲାଭ ନ ହେଲେ ମଧ୍ୟ କୃଷି ଉତ୍ପାଦନ ଓ କୃଷକର ଆୟରେ ଯଥେଷ୍ଟ ଉନ୍ନତି ଘଟିଛି । ଜଳସେଚନ, ଗ୍ରାମ୍ୟ ବିଦ୍ୟୁତୀକରଣ, କ୍ଷୁଦ୍ର ଶିଳ୍ପ, ସମବାୟ ବ୍ୟବସ୍ଥା, ଫସଲର ବିବିଧତା ଆଦି ଉପାୟକୁ କାର୍ଯ୍ୟକାରୀ କରାଇ ଓ କେତେକ ରାଜ୍ୟରେ ଶିକ୍ଷାର ବ୍ୟାପକତା ଉପରେ ବିଶେଷ ଜୋର୍ ଦେଇ ମଧ୍ୟ ରାଜ୍ୟର ଗ୍ରାମାଞ୍ଚଳକୁ ଓ ନିମ୍ନ ମଧ୍ୟବିତ୍ତ ଶ୍ରେଣୀକୁ ବିକାଶରେ ଆଗେଇ ନେବାଭଳି ଉପଲବ୍ଧି ହାସଲ କରିଛନ୍ତି । ପଞ୍ଜାବ୍, ହରିଆଣା, ତାମିଲ୍‌ନାଡୁ, କେରଳ ଓ ମହାରାଷ୍ଟ୍ରରେ ଗ୍ରାମୀଣ ଅର୍ଥନୈତିକ ବିକାଶ ପଛରେ ଏହି ପ୍ରକାର ସରକାରୀ ରାଜନୀତିର ଅବଦାନ ରହିଛି ।

ସ୍ୱାଧୀନତାର ପ୍ରାରମ୍ଭିକ ଅବସ୍ଥାରେ ଯେଉଁ ହୀରାକୁଦ ଯୋଜନା କାର୍ଯ୍ୟକାରୀ ହେଲା, ତାହାର ଗୋଟିଏ ମୁଖ୍ୟ ଉଦ୍ଦେଶ୍ୟ ଥିଲା ଜଳସେଚନ । ଏହାକୁ ଛାଡ଼ିଦେଲେ ଓଡ଼ିଶାର କୃଷିର ଉନ୍ନତି ପାଇଁ କୌଣସି ବଡ଼ ଧରଣର ପ୍ରୟାସ ହୋଇ ନାହିଁ । କ୍ଷୁଦ୍ର ଶିଳ୍ପର ପ୍ରସାର ନିମନ୍ତେ ମୋଟେ କୌଣସି ଚେଷ୍ଟା ହୋଇ ନାହିଁ । ଯେଉଁ ସମୟରେ ଶାସକମାନେ ଅପେକ୍ଷାକୃତ କମ୍ ସ୍ୱାର୍ଥପର ଓ କମ୍ ଦୁର୍ନୀତିଗ୍ରସ୍ତ ଥିଲେ, ସେହି ସମୟରେ ଓଡ଼ିଶାର ଶାସକମାନେ କାହିଁକି ଓଡ଼ିଶାରେ କୃଷି ଓ ଗ୍ରାମାଞ୍ଚଳର ଉନ୍ନତି ପାଇଁ ଏତେ ଉଦାସୀନ ରହିଲେ ଓ କେବଳ କେତେକ ଆଧୁନିକ ଶିଳ୍ପ ପ୍ରତିଷ୍ଠାକୁ ହିଁ ରାଜ୍ୟସ୍ତରୀୟ ବିକାଶର ପ୍ରତୀକ ବୋଲି ଧରିଲେ ତାହା ନିହାତି ଆଶ୍ଚର୍ଯ୍ୟର ବିଷୟ ।

ତାମିଲ୍‌ନାଡୁ, ପଞ୍ଜାବ୍, ହରିଆଣା, କେରଳ ଓ ମହାରାଷ୍ଟ୍ର ଆଦି ସାଙ୍ଗରେ ତୁଳନା କଲେ ହୁଏତ ବିଭିନ୍ନ କାରଣ ବାହାରିବ । କିନ୍ତୁ ଏଠାରେ ଗୋଟିଏ କାରଣର ଉଲ୍ଲେଖ କରାଯାଇ ପାରେ । ଏହି ଅପେକ୍ଷାକୃତ ଅଳ୍ପ ଦୁର୍ନୀତିର ଯୁଗରେ (୧୯୪୭ ରୁ ୧୯୬୭) ଯେଉଁ ରାଜ୍ୟମାନଙ୍କରେ କୃଷକ ଜାତିର ପ୍ରତିନିଧିମାନେ ହିଁ ମୁଖ୍ୟମନ୍ତ୍ରୀ ଓ ମୁଖ୍ୟ ରାଜନେତା ହେଲେ, ସେଇସବୁ ରାଜ୍ୟରେ ଗ୍ରାମର ସମସ୍ତଙ୍କ ପାଇଁ ନ ହେଲେ ମଧ୍ୟ ଗୋଟିଏ ବ୍ୟାପକ ଶ୍ରେଣୀର ସ୍ୱାର୍ଥକୁ ଦୃଷ୍ଟିରେ ରଖି କୃଷିର ଉନ୍ନତି ଓ ନଗର ନିର୍ମାଣ ଦ୍ୱାରା ତାଙ୍କ ନିଜର ସାମାଜିକ ଗୋଷ୍ଠୀର ଲୋକମାନେ ଲାଭାନ୍ୱିତ ହେବେ ବୋଲି ସେମାନେ ଆଶା କରିପାରୁ ଥିଲେ । ସ୍ୱାଧୀନତାର ଏହି ପ୍ରଥମ କୋଡ଼ିଏ ବର୍ଷ ମଧ୍ୟରେ ଯେଉଁସବୁ ରାଜ୍ୟରେ କେବଳ ଉଚ୍ଚଜାତିର ଶାସକ ରହିଲେ ସେମାନେ ତାଙ୍କର ନିଜର ସାମାଜିକ ଗୋଷ୍ଠୀର ସ୍ୱାର୍ଥ ଦୃଷ୍ଟିରୁ ଆଧୁନିକ କଳ କାରଖାନା ଓ ନଗର ବିକାଶକୁ ବେଶୀ ମହତ୍ତ୍ୱ ଦେଇ କୃଷି ପ୍ରତି ଉଦାସୀନ ହେଲେ ।

ଓଡ଼ିଶାରେ ଏପର୍ଯ୍ୟନ୍ତ ବ୍ରାହ୍ମଣ-କରଣ ରାଜତ୍ୱ ଚାଲିଥିବା ହେତୁ ବିଜୁ ପଟ୍ଟନାୟକଙ୍କ ପରେ ଜାନକୀ ପଟ୍ଟନାୟକ ମଧ୍ୟ ଦ୍ୱିତୀୟ ଇସ୍ପାତ୍ କାରଖାନାକୁ ନିଜର ମୁଖ୍ୟ କାର୍ଯ୍ୟକ୍ରମ ହିସାବରେ ଘୋଷଣା କଲେଣି । ୧୯୪୭ରୁ ଏବେ ପର୍ଯ୍ୟନ୍ତ ହୋଇଥିବା ମୁଖ୍ୟମନ୍ତ୍ରୀମାନଙ୍କ ମଧ୍ୟରେ ସବୁଠାରୁ ବେଶୀ ଆଦର୍ଶବାଦୀ ଓ ଦୁର୍ନୀତିମୁକ୍ତ ବ୍ୟକ୍ତି ଥିଲେ ନବକୃଷ୍ଣ ଚୌଧୁରୀ । ଦରିଦ୍ରଙ୍କ ପାଇଁ ତାଙ୍କର ହୃଦୟ କାନ୍ଦୁଥିଲା । କିନ୍ତୁ ସେ ମଧ୍ୟ ଓଡ଼ିଶାର କୃଷିର ଉନ୍ନତି ପାଇଁ କୌଣସି ଆଖିଦୃଶିଆ ନୀତି ଗ୍ରହଣ କରିପାରିଲେ ନାହିଁ ।

ଭୂମିହୀନଙ୍କର ମଙ୍ଗଳ ଉଦ୍ଦେଶ୍ୟରେ ସେ ଓଡ଼ିଶାରେ ଭୂଦାନ ଆନ୍ଦୋଳନର ଝଡ଼ ବୁହାଇ ଦେଲେ ଓ ଜମିଦାର ଶ୍ରେଣୀର ଦ୍ୱାରସ୍ଥ ହେଲେ; କିନ୍ତୁ ମଧ୍ୟମ ଓ ଛୋଟଚାଷୀର ସମୃଦ୍ଧି କଥା ତାଙ୍କ ମନକୁ ଦଖଲ କଲା ନାହିଁ। ପରିଣାମରେ, ଭୂମିହୀନ ଶ୍ରେଣୀ ମୋଟେ ଲାଭ ପାଇଲା ନାହିଁ। କୃଷକର ଉନ୍ନତି ତ ଉଦ୍ଦେଶ୍ୟରେ ହିଁ ନ ଥିଲା। ତାଙ୍କର ଓ ତାଙ୍କ ପରାମର୍ଶଦାତାମାନଙ୍କର ସାମାଜିକ ପୃଷ୍ଠଭୂମି ଏଥି ପାଇଁ ଦାୟୀ।

ଦ୍ୱିତୀୟ କାରଣ ଏହା ହୋଇପାରେ ଯେ, ଓଡ଼ିଶାରେ ପ୍ରାୟ ଏକ ତୃତୀୟାଂଶ ଅଞ୍ଚଳ ହେଉଛି ଆଦିବାସୀ ଅଧ୍ୟୁଷିତ। ଆଦିବାସୀମାନଙ୍କର ବିକାଶ କେଉଁ ପଦ୍ଧତିରେ ହେବ, ଏ ବିଷୟରେ କୌଣସି ରାଜନୈତିକ ଦଳର, ଏପରିକି ବାମପନ୍ଥୀ ଦଳମାନଙ୍କର ମଧ୍ୟ, ସ୍ପଷ୍ଟ ଓ ସୁଚିନ୍ତିତ ନୀତି ନାହିଁ। ଆଦିବାସୀମାନେ ନିଜେ ସଚେତନ ନୁହନ୍ତି ଓ ସେମାନଙ୍କର କୌଣସି ମଧ୍ୟବିତ୍ତ ଶ୍ରେଣୀ ମଧ୍ୟ ପ୍ରାୟ ନାହିଁ କହିଲେ ଚଳେ। ଏ ପ୍ରକାରର ଅନଗ୍ରସରତା ଇଂରାଜୀ-ଶିକ୍ଷିତ ଉଚ୍ଚ ଜାତିର ରାଜନେତାମାନଙ୍କ ପାଇଁ ଏକ ସୁବର୍ଣ୍ଣ ସୁଯୋଗ।

ଆଧୁନିକୀରଣ ଓ ଉଦ୍ୟୋଗୀକରଣର ନାଁରେ ଆଦିବାସୀ ଅଞ୍ଚଳର ଜଙ୍ଗଲ ଓ ଖଣି ଆଦି ପ୍ରାକୃତିକ ସଂସାଧନଗୁଡ଼ିକୁ ଧରି ଦୋହନକାମୀ ଓ ଲୁଣ୍ଠନ ସର୍ବସ୍ୱ ଏପରି ବିକାଶ ଯୋଜନାଗୁଡ଼ିକୁ କାର୍ଯ୍ୟକାରୀ କରାଗଲା, ଯେଉଁଥିରେ ସେହି ଲୋକମାନଙ୍କର କୌଣସି ଦାୟିତ୍ୱପୂର୍ଣ୍ଣ ଭାଗିଦାରୀ ରହିଲା ନାହିଁ। ତେଣୁ ତାଙ୍କ ନାଁରେ ଓ ତାଙ୍କ ଅଞ୍ଚଳରେ ଯାହା କିଛି ହେଲା, ତାହାର ସବୁ ସୁଫଳ ଅଣଆଦିବାସୀ କିମ୍ବା ବହିରାଗତ ଉଚ୍ଚ ଜାତିମାନଙ୍କୁ ମିଳିଲା। ଏହିମାନେ ପୁଣି ସେହି ଅଞ୍ଚଳ ପାଇଁ ଶାସକ ଦଳର ମୁଖ୍ୟ ସମର୍ଥକ ବା ସଞ୍ଚାଳକ ହୋଇ ବାହାରିଲେ ଓ ବିକାଶର ଉପରୋକ୍ତ ଢାଞ୍ଚାକୁ ଆହୁରି ମଜବୁତ୍ କଲେ। ଅର୍ଥାତ୍ ରାଜନୀତି ଅନଗ୍ରସରତାକୁ ବଢ଼ାଇଲା ଓ ଏହାର ପ୍ରକ୍ରିୟାରୁ ଯେଉଁ ଧନୀ ଗୋଷ୍ଠୀ ସୃଷ୍ଟି ହେଲା, ସେମାନେ ପୁଣି ଏହି ପ୍ରକ୍ରିୟାକୁ ଚଳାଇବା ପାଇଁ ଶାସକ ଗୋଷ୍ଠୀର ସମର୍ଥକ ଭାବରେ ବାହାରି ପଡ଼ିଲେ ଓ ଆର୍ଥିକ ବିଷମତାକୁ ଆଗ ଅପେକ୍ଷା ଆହୁରି ବେଶୀ ବଢ଼ାଇ ଚାଲିଲେ। ପ୍ରଫେସର ମନୋରଞ୍ଜନ ମହାନ୍ତି ରାଜନୀତି ଓ ବିକାଶ ପଦ୍ଧତିର ଏହିଭଳି ଦୁଷ୍ଚରିତ୍ରମାନଙ୍କୁ ଲକ୍ଷ୍ୟକରି ବୋଧହୁଏ 'ଅନଗ୍ରସରତାର ରାଜନୀତି' ବୋଲି ଏକ ଅବଧାରଣା ଦେଇଛନ୍ତି।

ଯଦି ପ୍ରଚଳିତ ନୀତି ଓ ଯୋଜନାର ଢାଞ୍ଚା ଭିତରେ ଓଡ଼ିଶାର ସମ୍ଭାବିତ ବିକାଶ ହୋଇପାରିଲା ନାହିଁ, ତାହା ହେଲେ ଏକ ବୈକଳ୍ପିକ ବିକାଶଧାରା ସପକ୍ଷରେ କୌଣସି ସମର୍ଥ ରାଜନୀତି ମୁଣ୍ଡ ଟେକିଲା କି?

ନିଶ୍ଚୟ ମୁଣ୍ଡ ଟେକିଥିଲା। କଂଗ୍ରେସ୍‌ର ବିକାଶ ନୀତିକୁ ପୁଞ୍ଜିବାଦୀ ବା 'ମିଶ୍ରିତ' ଅର୍ଥନୀତି ବୋଲି କହି ସମାଜବାଦୀ ଓ ସାମ୍ୟବାଦୀମାନେ ଷାଠିଏ ଦଶକ ପର୍ଯ୍ୟନ୍ତ ବେଶ୍ ସକ୍ରିୟ ରହିଲେ ଓ ଆର୍ଥିକ ଶୋଷଣ ତଥା ବୈଷମ୍ୟ ବିରୁଦ୍ଧରେ ଏକ ବାୟୁମଣ୍ଡଳ ସୃଷ୍ଟି କରିପାରି ଥିଲେ। ଏହା ସ୍ୱାଭାବିକ ଯେ, ଏଭଳି ରାଜନୀତି ଜନଆନ୍ଦୋଳନର ରୂପ ନେବ ଓ ଆଦର୍ଶବାଦୀ ଯୁବକମାନଙ୍କର ପରିବର୍ତ୍ତନକାମୀ ଉତ୍ସାହ ଓ ସଙ୍କଳ୍ପ ଶକ୍ତି

ଦ୍ୱାରା ପରିଚାଳିତ ହେବ । ହଜାର ହଜାର ଯୁବକ ଓଡ଼ିଶାର ଚାଷୀ ମୂଲିଆ ଓ ଗରିବ ମଧ୍ୟବିତ୍ତ ଶ୍ରେଣୀର ଆର୍ଥିକ ମୁକ୍ତି ନିମନ୍ତେ ସଙ୍ଘର୍ଷର ଦୁସ୍ତର ରାଜନୀତିକୁ ଡେଇଁପଡ଼ିଥିଲେ । ଉପକୂଳ ଜିଲ୍ଲାମାନଙ୍କରେ ଓ ପଶ୍ଚିମ ଓଡ଼ିଶାର କେତେକ ସ୍ଥାନରେ ବାମପନ୍ଥୀ ରାଜନୀତିର ବେଶ୍ ପ୍ରଭାବ ସୃଷ୍ଟି ହୋଇଥିଲା ।

୧୯୭୦ ଦଶକରେ ଏହା ତୀବ୍ର ଗତିରେ ହ୍ରାସ ପାଇବାକୁ ବସିଲା । ସତୁରି ଦଶକର ପ୍ରଥମ ଭାଗରେ ଯେତେବେଳେ ଇନ୍ଦିରା ଗାନ୍ଧୀଙ୍କର ଶାସନ ଅଧିକରୁ ଅଧିକ ଅଗଣତାନ୍ତ୍ରିକ ହୋଇପଡ଼ିଲା, ସେତେବେଳେ ଦେଶର ଏହା ଦୁର୍ଭାଗ୍ୟ ଯେ, ସାମ୍ୟବାଦୀମାନଙ୍କର ଏକ ବଡ଼ ଅଂଶ ଏହି ଶାସନର ପୂର୍ଣ୍ଣ ସମର୍ଥକ ହୋଇଗଲା ଓ ଅନ୍ୟ ଏକ ଭାଗ ତଟସ୍ଥ ରହିଲା । ସମାଜବାଦୀମାନଙ୍କର ଦୀପ ସମ୍ପୂର୍ଣ୍ଣ ଲିଭିଯିବା ପୂର୍ବରୁ ଜୟପ୍ରକାଶ ନାରାୟଣଙ୍କର ସମ୍ପୂର୍ଣ୍ଣ କ୍ରାନ୍ତି ଆନ୍ଦୋଳନର ତୈଳ, ତେଜ ଓ ଉଷ୍ମତା ଲାଭକରି ଶେଷଥର ପାଇଁ ଜୋର୍‌ରେ ଜଳିଲା ଓ ସାରା ଦେଶରେ ସମାଜବାଦୀମାନେ ଏକଛତ୍ରବାଦୀ ରାଜନୀତିର ବିରୋଧ କଲେ । ଓଡ଼ିଶାରେ ମଧ୍ୟ ସମାଜବାଦୀ ଆନ୍ଦୋଳନର ମୁଖ୍ୟ ନେତାମାନେ (ସୁରେନ୍ଦ୍ର ଦ୍ୱିବେଦୀ, ବାଙ୍କବିହାରୀ ଦାସ ପ୍ରମୁଖ)ଇନ୍ଦିରା ଗାନ୍ଧୀଙ୍କର ଦଳରେ ଯୋଗ ଦେଇସାରିଥିଲେ । ୧୯୭୩-୭୫ର ଏହି ବିଡ଼ମ୍ବନାମୂଳକ ସ୍ଥିତି ଓଡ଼ିଶାରେ ସମାଜବାଦୀ-ସାମ୍ୟବାଦୀ ଆନ୍ଦୋଳନ ପ୍ରତି ଏକ କୃର ବ୍ୟଙ୍ଗ ଥିଲା । ସେତେବେଳେ ଓଡ଼ିଶାର ସର୍ବଶ୍ରେଷ୍ଠ ସମାଜବାଦୀ ନେତାମାନେ ଇନ୍ଦିରା ଗାନ୍ଧୀ-ସଞ୍ଜୟ ଗାନ୍ଧୀ ଶାସନରେ ଗାଦୀମାନ ମାଡ଼ି ବସିଥିଲେ ଓ ସର୍ବଶ୍ରେଷ୍ଠ ସାମ୍ୟବାଦୀ ନେତାମାନେ ଇନ୍ଦିରା ଶାସନର ସ୍ତାବକ ପାଲଟି ଯାଇଥିଲେ । ଭାବି ଦେଖିବା ଉଚିତ୍ ଯେ, ଏହା ବେଶୀ କଳଙ୍କିତ ଥିଲା, ନା ଇନ୍ଦିରାଙ୍କର ପରାଜୟର ଲକ୍ଷଣ ଦେଖିବା ମାତ୍ରେ ଜୟପ୍ରକାଶ ନିର୍ମିତ ଜନତା ଗାଡ଼ିରେ ଚଢ଼ିବା ପାଇଁ ବ୍ୟଗ୍ରତା ଦେଖାଇବା ବେଶୀ କଳଙ୍କିତ ଥିଲା ?

ଯେଉଁ ମୁଷ୍ଟିମେୟ ସମାଜବାଦୀ ଓ ସାମ୍ୟବାଦୀ କର୍ମୀ ଏହି ଲଜ୍ଜାଜନକ ଅଧ୍ୟାୟର ଅଂଶୀଦାର ନଥିଲେ ସେମାନେ ଆମ ଭଳି ଅନାମଧେୟ ଓ ଗୁରୁତ୍ୱବିହୀନ ହୋଇଥିବାରୁ ସେମାନଙ୍କର ଭୂମିକାର ଅବତାରଣା କରିବା ଅନାବଶ୍ୟକ । ଶ୍ମଶାନ ଭିତରେ ଜୀବନ୍ୟାସ ପାଇଁ ସେମାନେ ଯଦି ଏବେ ବି ଚେଷ୍ଟା କରୁଛନ୍ତି, ତାହା ହେଲେ ଠିକ୍ ସମୟରେ ଇତିହାସ ତାହାର ବିବରଣୀ ଲେଖିବ । ଆମେ ଏଠାରେ ତାହାର ସବିଶେଷ ଉଲ୍ଲେଖ କରିବୁ ନାହିଁ ।

କାଳର ଅପରିବର୍ତ୍ତନୀୟ ଅତୀତରେ ଯାହା ହେଲା ନାହିଁ, ତାକୁ 'ଯଦି ହୋଇଥାନ୍ତା' ବୋଲି କହି ଆତ୍ମସନ୍ତୋଷ ଲାଭ କଲେ, ତାହା ସାମାଜିକ ବିଶ୍ଳେଷଣକୁ ସାହାଯ୍ୟ କରିବ ନାହିଁ । କିନ୍ତୁ ସମାଜବାଦୀ-ସାମ୍ୟବାଦୀମାନଙ୍କର ତୁଙ୍ଗ ନେତାମାନେ ଯଦି ଇନ୍ଦିରା ଗାନ୍ଧୀଙ୍କର ସହଯୋଗୀ ନ ହୋଇ, ଜୟପ୍ରକାଶ ନାରାୟଣଙ୍କର ଉପରେ ମଧ୍ୟ ସମ୍ପୂର୍ଣ୍ଣ ନିର୍ଭରଶୀଳ ନ ହୋଇ, ନିଜ ଗୋଡ଼ରେ ନିଜ ରାସ୍ତାରେ ଠିଆ ହୋଇ କଂଗ୍ରେସ୍ ଏକଛତ୍ରବାଦର ସମ୍ମୁଖୀନ ହୋଇଥାଆନ୍ତେ, ତାହାହେଲେ ଆଜି ଓଡ଼ିଶାରେ କଂଗ୍ରେସ୍‌ର ମୁଖ୍ୟ ପ୍ରତିଦ୍ୱନ୍ଦ୍ୱୀ ଭାବରେ ଜନତା ଦଳ ନୁହେଁ, ସେଇମାନେ ହିଁ ଦିଶୁ ଥାଆନ୍ତେ ।

୧୯୭୩ର ପ୍ରଜା ସୋଶାଲିଷ୍ଟ୍‌ଙ୍କର ଭୁଲ୍, ୧୯୭୭ର ଲୋହିଆ-ସୋଶାଲିଷ୍ଟ୍‌ଙ୍କର ଭୁଲ, ୧୯୭୪ର ସାମ୍ୟବାଦୀମାନଙ୍କର ଭୁଲ୍ - ଏହିପରି ପୂର୍ବର ଐତିହାସିକ ତୃଟିଗୁଡ଼ିକ ସାଙ୍ଗରେ ଏହିସବୁ ନିକଟ ଅତୀତର ତ୍ରୁଟିବିଚ୍ୟୁତି ପାଇଁ କଠୋର ଆତ୍ମସମୀକ୍ଷା ନ କରି ସମାଜବାଦୀ ଓ ସାମ୍ୟବାଦୀମାନଙ୍କର ଏବେର ବଂଶଧରମାନେ ଯେ ବର୍ତ୍ତମାନକୁ ସାର୍ଥକ କରି ପାରିବେ, ତାହା ବିଶ୍ୱାସଯୋଗ୍ୟ ନୁହେଁ ।

ଏ ବର୍ଷ ମାର୍ଚ୍ଚ୍ ମାସରେ ଅନୁଷ୍ଠିତ ହୋଇଥିବା ବିଧାନସଭା ନିର୍ବାଚନରେ 'ଭା.ଜ.ପା. ଅଧିକ ଲାଭବାନ : ବାମପନ୍ଥୀ କ୍ଷତିଗ୍ରସ୍ତ' ବୋଲି ଖବରକାଗଜମାନେ ଟିପ୍‌ପଣୀ କଲେ । ଭାରତୀୟ ଜନତା ପାର୍ଟିର ଓଡ଼ିଶାରେ କୌଣସି ଜନାଧାର ନ ଥିଲା । ଏବେ ମଧ୍ୟ କୌଣସି ବ୍ୟାପକ ଜନାଧାର ନାହିଁ । ତାହାର ଆସନ ସଂଖ୍ୟା ତିନିରୁ ନଅକୁ ବୃଦ୍ଧି ପାଇବା ଏକ ଚମକପ୍ରଦ ଘଟଣା । କଂଗ୍ରେସ୍ ଓ ଜନତା ଦଳର ନୀତି, ଚରିତ୍ର ଓ ସାମାଜିକ ପୃଷ୍ଠଭୂମି ଏକ ପ୍ରକାରର ହୋଇଥିବା ବେଳେ ଭିନ୍ନ ନୀତି ଭିନ୍ନ ଲକ୍ଷ୍ୟର ରାଜନୈତିକ ଶକ୍ତିର ଆବଶ୍ୟକତା ରହିଛି । ସମାଜବାଦୀ ଓ ସାମ୍ୟବାଦୀମାନେ ଜନତା ଦଳର ଛତ୍ରଛାୟାକୁ ଚାଲିଯିବା ପରେ ଯେଉଁ ରାଜନୈତିକ ଶୂନ୍ୟତା ଅନୁଭୂତ ହେଉଛି, ତାହାର ଲାଭ ଭାରତୀୟ ଜନତା ପାର୍ଟିକୁ ମିଳୁଛି ।

ପ୍ରଜାତନ୍ତ୍ର (୧୫.୩.୯୫)ର ସମୀକ୍ଷକ ଯାହା କହନ୍ତି ଯେ, 'ଏଇ ଦୁଇ ଦଳ (ସି.ପି.ଆଇ. ଓ ସି.ପି.ଏମ୍.) ଗତ ଦୁଇ ଦଶନ୍ଧି ଧରି ରାଜ୍ୟରେ କୌଣସି ନା କୌଣସି (ଶାସକ) ଦଳର ସହଯୋଗରେ ନିର୍ବାଚନ ଲଢ଼ି ଆସିଛନ୍ତି', ଏହାକୁ ଏଇ ଦଳମାନେ ଖଣ୍ଡନ କରି ପାରିବେ କି ? ସେମାନଙ୍କର ତାତ୍ତ୍ୱିକ ଚର୍ଚ୍ଚା ତାଙ୍କରି ଭିତରେ ଯାହା ହେଉ ଥାଉ ପଛକେ ରାଜନୀତିର ବଡ଼ଦାଣ୍ଡରେ ସେମାନଙ୍କର ନିଜର ଅସ୍ତିତ୍ୱ ଅଲଗା ଭାବରେ ଦେଖାଯାଏ ନାହିଁ । କେବେ କଂଗ୍ରେସ୍‌ର ବୀରେନ୍ ମିତ୍ର ବା ନନ୍ଦିନୀ ଶତପଥୀଙ୍କ ଶିବିରରେ ତ କେବେ ବିଜୁ ପଟ୍ଟନାୟକଙ୍କ ଜନତା ଦଳର ତମ୍ବୁ ଭିତରେ ଦେଖି ଦେଖି ଲୋକେ ତାଙ୍କର ସ୍ୱତନ୍ତ୍ର ଅସ୍ତିତ୍ୱକୁ ଗୁରୁତ୍ୱ ଦେଉ ନାହାନ୍ତି ।

ଗତ ବିଧାନସଭାର ବର୍ଷେ ଦେଢ଼ ବର୍ଷ ପୂର୍ବରୁ ଏହି ଦୁଇ ସାମ୍ୟବାଦୀ ଦଳ ଭିତରେ ବିଜୁ ପଟ୍ଟନାୟକ ସମର୍ଥନ ପ୍ରଶ୍ନକୁ ନେଇ ଟଣା-ଓଟରା ଲାଗିଲା । ଅଖିଳ ଭାରତୀୟ ସ୍ତରରେ ସେମାନେ ଜନତା ଦଳର ସହଯୋଗୀ ହେଲେ ମଧ୍ୟ ବିଜୁ ପଟ୍ଟନାୟକଙ୍କର ବିରୋଧ କରିବେ ବୋଲି ଦଳର ବହୁ କର୍ମୀ ଓ ନେତା ମତ ଦେଲେ । କିଛି ବିଜୁ ବିରୋଧି ସ୍ଲୋଗାନ୍ ମଧ୍ୟ ରାସ୍ତାରେ ଶୁଣାଗଲା, କିନ୍ତୁ ଉଭୟ ଦଳ ଦ୍ୱିଧାରେ ରହିଲେ । ଏହା ଦେଖି ବିଜୁ ପଟ୍ଟନାୟକ ମଧ୍ୟ ତାଙ୍କୁ ଛାଡ଼ିବାର ଘୋଷଣା କରିଦେଲେ । ଦ୍ୱିଧା ଯୋଗୁଁ ଏହି ଦଳମାନେ ଜନସାଧାରଣଙ୍କୁ ବିଶ୍ୱାସରେ ନେଇ ପାରିଲେ ନାହିଁ ଓ ଅତି ଶୋଚନୀୟ ଭାବରେ ନିର୍ବାଚନରେ ମୂଳପୋଛ ହେଲେ ।

ଏହିସବୁ କଥାକୁ ଠିକ୍ ଭାବରେ ବୁଝିବା ପାଇଁ ଓ ଏକ ନୂଆ ରଣନୀତିର ରଚନା କରିବା ପାଇଁ ସେମାନେ ତିନି ମାସ ମଧ୍ୟ ଧୈର୍ଯ୍ୟ ରଖିପାରିଲେ ନାହିଁ । ସତେ ଯେପରି ବିଜୁଙ୍କର ଡାକକୁ ସେମାନେ ଅପେକ୍ଷା କରି ରହିଥିଲେ । ବେଗୁନିଆ ଉପ-ନିର୍ବାଚନର

ଆଳରେ ଯେମିତି ବିଜୁବାବୁ ସାମ୍ୟବାଦୀମାନଙ୍କୁ ପୁଣି ଥରେ ତାଙ୍କ ତମ୍ବୁକୁ ଫେରି ଆସିବାର ଡାକରା ଦେଲେ, କ୍ଷଣିକ ବିଳମ୍ବ ନକରି ସେମାନେ ହାଜିର ହୋଇଗଲେ । ଲୋକସଭା ନିର୍ବାଚନ ବେଳକୁ ସ୍ୱତନ୍ତ୍ର ଅସ୍ତିତ୍ୱର ଆଉ ବୋଝ ରହିବ ନାହିଁ, ଏହା ଭାବି ସେମାନେ ଆଶ୍ୱସ୍ତ ହୋଇଗଲେ ।

ଏବେ ୧୫ ସେପ୍ଟେମ୍ବରରେ ଜାନକୀ ବିରୋଧୀ 'ଜେଲ୍ ଭରୋ' ଆନ୍ଦୋଳନରେ ବିଜୁଙ୍କର ଦୁଇ ପାର୍ଶ୍ୱରେ ଠିଆ ହୋଇ କମ୍ୟୁନିଷ୍ଟ୍ ନେତାମାନେ ପୁଣି ଥରେ ରାଜ୍ୟର ଜନତାଙ୍କୁ ଜଣାଇ ଦେଲେ ଯେ, ସେମାନେ ଜନତା ଦଳର ନ ହେଲେ ମଧ୍ୟ ଜନତା-ପରିବାରର । ଏହା ପରେ ପୁଣି କେବେ ଯେ ଏହି ଦୁଇ ଦଳ ନିଜର ଅସ୍ତିତ୍ୱକୁ (ସ୍ୱତନ୍ତ୍ର ବାମପନ୍ଥୀ ଅସ୍ତିତ୍ୱକୁ) ପ୍ରତିଷ୍ଠା କରିପାରିବେ, ତାହା ଆଶା କରିହେଉ ନାହିଁ । ସେହିମାନେ ହିଁ ଓଡ଼ିଶାରେ ଏକ ତୃତୀୟ ଶକ୍ତିର ନିର୍ମାଣ ଆରମ୍ଭ କରି ଥାଆନ୍ତେ, ସେମାନଙ୍କର ଏତିକି ଯୋଗ୍ୟତା ଥିଲା (ଅଛି ? ?) । ତାହା ନ କରିବା ଫଳରେ ଯେଉଁ ରାଜନୈତିକ ଶୂନ୍ୟତା ସୃଷ୍ଟି ହେଉଛି, ସେଥିରେ ଭା.ଜ.ପା. ଓଡ଼ିଶାର ତୃତୀୟ ଶକ୍ତି ଭାବରେ ମୁଣ୍ଡ ଟେକୁଛି । ଏଥି ପାଇଁ କାହାକୁ ଦାୟୀ କରାଯିବ, ଅର୍ଥାତ୍ ଏହି ଭବିଷ୍ୟତକୁ ଏଡ଼ାଇବା ପାଇଁ କୌଶଳ କରିବାର ଦାୟିତ୍ୱ କାହା ଉପରେ ? ସାମ୍ୟବାଦୀମାନେ କ'ଣ ଭାବୁଛନ୍ତି ଯେ, କଂଗ୍ରେସ୍ କିମ୍ବା ଜନତା ଦଳକୁ ଜିତାଇବାର ରାଜନୀତି ଚଳାଇ ଭା.ଜ.ପା.ର ପ୍ରସାରକୁ ବନ୍ଦ କରିହେବ ?

୧୯୯୩-୯୪ର ପରିସ୍ଥିତିରେ ଏକ ତୃତୀୟ ଶକ୍ତିର ଅଭ୍ୟୁଦୟ ପାଇଁ ଚେଷ୍ଟା କରିବାର ଯୋଗ୍ୟତା ସାମ୍ୟବାଦୀମାନଙ୍କର ଥିଲା । ସେମାନେ ଏହା ନ କରିବାରୁ ଜନତା ଦଳର ଏକ କ୍ଷୁଦ୍ର ଅସନ୍ତୁଷ୍ଟ ଗୋଷ୍ଠୀର ନେତା ରବି ରାୟ ଅତ୍ୟନ୍ତ ମୁଖର ହୋଇ ଏହି କାର୍ଯ୍ୟକୁ ଆରମ୍ଭ କଲେ । ଆଶା କରାଗଲା ଯେ, ଏହା ଫଳରେ କମ୍ୟୁନିଷ୍ଟ୍‌ମାନଙ୍କର ଦ୍ୱିଧା ତୁଟିବ ଓ ସେମାନେ ଏହାର ସ୍ରୋତକୁ ଆସିଯାଇ ଏହାକୁ ଗତିଶୀଳ କରିବେ । ପରେ ପରେ ରବି ରାୟ, ଜର୍ଜ୍ ଫର୍ଣ୍ଣାଣ୍ଡିସ୍‌ଙ୍କ ସାଙ୍ଗରେ ମିଶି ଜନତା ଦଳ ତ୍ୟାଗ କଲେ ଓ ସମତା ପାର୍ଟି ନାମରେ ନୂଆ ପାର୍ଟି ଘୋଷଣା କଲେ । ଏହା ଫଳରେ ଜନତା ଦଳରେ ଥିବା ଅସନ୍ତୁଷ୍ଟ ନେତାମାନେ ଆଉ ରବି ରାୟଙ୍କୁ ସହଯୋଗ ଦେଲେ ନାହିଁ । ସାମ୍ୟବାଦୀମାନଙ୍କର ମଧ୍ୟ ଦ୍ୱିଧା ତୁଟିଲା ନାହିଁ । ଚନ୍ଦ୍ରଶେଖରଙ୍କର ସମାଜବାଦୀ ଜନତା ପାର୍ଟି, ନିର୍ବାଚନ ବେଳେ ଛତୁ ଭଳି ଫୁଟିଥିବା ବିଶ୍ୱନାଥ ପଣ୍ଡିତ୍‌ଙ୍କର ଓଡ଼ିଶା ସାମ୍ୟବାଦୀ ପାର୍ଟିକୁ ସାଙ୍ଗରେ ଧରି ଗୋଟିଏ ସାମ୍ମୁଖ୍ୟ ଗଢ଼ିଲେ । ଏହି ସାମ୍ମୁଖ୍ୟରେ ବନ୍ଧୁତା ଅପେକ୍ଷା ପରସ୍ପର ବିରୁଦ୍ଧରେ ପ୍ରାର୍ଥୀ ଦେବା ହିଁ ବେଶୀ ହେଲା ଓ ନିର୍ବାଚନରେ ସେମାନେ ଶୂନ୍ୟସ୍ଥାନ ଅଧିକାର କଲେ । ନିର୍ବାଚନ ପରେ ଏହି ସାମ୍ମୁଖ୍ୟର ଆଉ ନାମଗନ୍ଧ କିଛି ନାହିଁ । ଏସ୍.ଜେ.ପି. ବିଜୁଙ୍କ ପାଖକୁ ଚାଲିଯାଇଛି ଓ ସମତା ପାର୍ଟି ଭା.ଜ.ପା. ସାଙ୍ଗରେ ମେଣ୍ଟ କରିବ ବୋଲି ଖୋଦ୍ ଫର୍ଣ୍ଣାଣ୍ଡିସ୍ ବିବୃତି ଦେଇଛନ୍ତି । ତେଣୁ ଜଣାପଡୁଛି ଯେ, ସମତା ପାର୍ଟିର ମଧ୍ୟ ତୃତୀୟ ଶକ୍ତି ଗଢ଼ିବାରେ କୌଣସି ସୁଚିନ୍ତିତ ଲକ୍ଷ୍ୟ ବା ବିଚାର ନ ଥିଲା । ତାହା କେବଳ ନିର୍ବାଚନ ବେଳର ଧୂଆଁବାଣ ଥିଲା ।

ପରିସ୍ଥିତି ଯେତେ ନିରାଶଜନକ ହେଲେ ସୁଦ୍ଧା ଓଡ଼ିଶାରେ ଏକ ପ୍ରଗତିଶୀଳ ତୃତୀୟ ଶକ୍ତିର ଅଭ୍ୟୁଦୟ ନିମନ୍ତେ ଚିନ୍ତା କରିବାକୁ ହେବ, ଓ ତାହାର ଉପାଦାନ ଗୁଡ଼ିକ ଖୋଜିବାକୁ ହେବ । ଭା.ଜ.ପା. ତୃତୀୟ ଶକ୍ତି ନୁହେଁ । କାରଣ ଏହା ଅଖିଳ ଭାରତୀୟ ସ୍ତରରେ କଂଗ୍ରେସ୍‌ର ସମକକ୍ଷ ହେବାକୁ ବସିଛି । ଏକ ନୂଆ ଶକ୍ତିକୁ ହିଁ ତୃତୀୟ ଶକ୍ତି ବୋଲି କହି ହେବ । ମୁଖ୍ୟ ବାମପନ୍ଥୀ ଦଳମାନଙ୍କ ବାହାରେ କେତେକ ଛୋଟ ଛୋଟ କମ୍ୟୁନିଷ୍ଟ୍ ଓ ସମାଜବାଦୀ ଗୋଷ୍ଠୀ ରହିଛନ୍ତି । ସର୍ବୋଦୟର ଏକ କ୍ଷୁଦ୍ର ଅଂଶ ନୂଆ ଅର୍ଥନୀତିର ସମ୍ପୂର୍ଣ୍ଣ ବିରୋଧ କରିବା ଉଦ୍ଦେଶ୍ୟରେ ଆନ୍ଦୋଳନ ଓ ସଙ୍ଘର୍ଷର ବାଟ ଅଣ୍ଡାଳୁଛନ୍ତି ।

ବାସଚ୍ୟୁତ ବା ବିସ୍ଥାପନ ସମସ୍ୟାର ସମ୍ମୁଖୀନ ହେବାପାଇଁ ସ୍ଥାନୀୟ ଭାବରେ ପ୍ରତିରୋଧକାରୀ ସଙ୍ଗଠନମାନ ଗଢ଼ା ହେଉଛି । ଏମାନଙ୍କ ମଧ୍ୟରୁ ଯେଉଁମାନଙ୍କର ସଙ୍ଗଠନ ଏନ୍.ଜି.ଓ. ଢାଞ୍ଚାର ନୁହେଁ, ସେମାନଙ୍କର ଏକ ରାଜନୈତିକ ସମ୍ଭାବନା ଅଛି । ବାଲିଆପାଳ, ଗନ୍ଧମାର୍ଦ୍ଦନ, ଚିଲିକା ବଞ୍ଚାଅ ଆନ୍ଦୋଳନ ଆଦି ଏହି ପର୍ଯ୍ୟାୟର । ଏଗୁଡ଼ିକ ଗୋଟିଏ ଗୋଟିଏ ସକାରାତ୍ମକ ବିନ୍ଦୁ ସତ, କିନ୍ତୁ ସେମାନଙ୍କର ଆକାର ଓ ପ୍ରଭାବ କ୍ଷେତ୍ର ଏତେ ସୀମିତ ଓ ନଗଣ୍ୟ ଯେ, ସେମାନଙ୍କୁ ନେଇ, ଏକ ଭବିଷ୍ୟତ ଶକ୍ତିର ଆକୃତି ଓ ପ୍ରତିଶ୍ରୁତି ରଖିହେବ ନାହିଁ । ନିର୍ବାଚନ ରାଜନୀତିରେ ଏମାନଙ୍କର କୌଣସି ସ୍ଥିତି ନାହିଁ । ଏମାନଙ୍କ  ମଧ୍ୟରେ ବୈଚାରିକ ଏକତା ପ୍ରତିଷ୍ଠିତ ହେବାର ଆଶା ମଧ୍ୟ ଉଜ୍ଜଳ ନୁହେଁ । ଏମାନଙ୍କ ମଧ୍ୟରୁ କେତେକ ଗୋଷ୍ଠୀ ଯଦି ଏକ ବୈଚାରିକ ଏକତାରେ ପହଞ୍ଚିପାରିବେ ଓ ଓଡ଼ିଶା ପାଇଁ ଏକ କାର୍ଯ୍ୟକ୍ରମ ସ୍ଥିର କରି ନିରବଚ୍ଛିନ୍ନ ଭାବରେ ତାହାକୁ ଚଳାଇ ପାରିବେ, ଏହାକୁ ଏକ ଅଭିକ୍ରମ ବୋଲି ଧରାଯିବ । ଯେଉଁମାନଙ୍କ ପାଖରେ ବୈପ୍ଳବିକ ଧୈର୍ଯ୍ୟ ଅଛି, ସେମାନେ ହିଁ ଏହାର ଦାୟିତ୍ୱ ବହନ କରିପାରିବେ, କାରଣ ବିଂଶ ଶତାବ୍ଦୀର ଶେଷ ଦଶକରେ ସାମ୍ରାଜ୍ୟବାଦୀ ପୁଞ୍ଜିବାଦ ଅତ୍ୟଧିକ ଶକ୍ତିଶାଳୀ ହୋଇପଡ଼ିଛି । ସମାନତା ଓ ନ୍ୟାୟର ରାଜନୀତି ପାଇଁ ଏହା ମୋଟେ ଅନୁକୂଳ ସମୟ ନୁହେଁ ।

ଭାରତରେ ରାଜନୈତିକ ଦଳଗୁଡ଼ିକର ଚରିତ୍ର ସେମାନଙ୍କର ଅର୍ଥନୈତିକ ଓ ସାମାଜିକ ଆଭିମୁଖ୍ୟ ଉପରେ ନିର୍ଭର କରୁଛି । ୧୯୯୧ ମସିହାର ପରବର୍ତ୍ତୀ ଯୁଗରେ ଆର୍ଥିକ ବିକାଶରେ ଦିଗଗୁଡ଼ିକ ସ୍ପଷ୍ଟ ହୋଇଯାଇଛି । ଉଦାରୀକରଣ ଓ ଜଗତୀକରଣର ଲାଭ ସମାଜର ନିର୍ଦ୍ଦିଷ୍ଟ କେତେକ ଶ୍ରେଣୀକୁ ମିଳିବ । ଓଡ଼ିଶାରେ ଏହି ଶ୍ରେଣୀ ମୁଷ୍ଟିମେୟ ଓ ତାହାର ପ୍ରତିନିଧିତ୍ୱ କଂଗ୍ରେସ୍ ଓ ଜନତା ଦଳ କରୁଛନ୍ତି । ଓଡ଼ିଶାର ନବେ ଭାଗ ଲୋକ ଉଦାରୀକରଣ ଅର୍ଥନୀତିର ହିତାଧିକାରୀ ହୋଇ ପାରିବେ ନାହିଁ । ସେମାନଙ୍କର ଆଶା ଓ ବିଶ୍ୱାସକୁ ଜାଗୃତ କରିବା ଭଳି ଏକ ଅର୍ଥନୈତିକ କାର୍ଯ୍ୟକ୍ରମର ରୂପରେଖ ପ୍ରସ୍ତୁତ କରିବା ତୃତୀୟ ଶକ୍ତି ନିର୍ମାଣର ପ୍ରଥମ ପଦକ୍ଷେପ ହେବ ।

ସାମାଜିକ ବିଷମତା ବନାମ ସାମାଜିକ ନ୍ୟାୟର ଚେତନା ଭାରତର ଅଧିକାଂଶ ରାଜ୍ୟର ରାଜନୀତିକୁ ପ୍ରଭାବିତ କରିସାରିଛି । ଏହାର ସୁଫଳ ଓ କୁଫଳ ଉଭୟ ଦୃଷ୍ଟିଗୋଚର ହେଉଛି । କୁପରିଣାମ ଏହା ଯେ, ସାମାଜିକ ବିଷମତା ଦୂରୀକରଣ

ନାମରେ ସମାଜର ବିଭାଜନ ବଢ଼ିଛି ଓ ଜାତିଆଣ ଦ୍ୱେଷ ରାଜନୀତିକୁ ଆହୁରି ଦୂଷିତ କରିଛି । ସୁଫଳ ଏହି ଯେ, ପଛୁଆ ଜାତିମାନଙ୍କ ମଧ୍ୟରୁ ଗୋଟିଏ ଦୁଇଟି ଜାତି ରାଜନୀତିର ମୁଖ୍ୟ ସ୍ରୋତରେ ଆପଣା ଆଧିପତ୍ୟ ବିସ୍ତାର କରି ସାମାଜିକ ପ୍ରତିଷ୍ଠା ମଧ୍ୟ ଲାଭ କରିଛନ୍ତି । ଓଡ଼ିଶା ହେଉଛି ମୁଖ୍ୟତଃ ଏକ ଶୂଦ୍ର-ଦଳିତ ସମାଜ; କିନ୍ତୁ ରାଜନୀତି, ପ୍ରଶାସନ କିମ୍ବା ଆର୍ଥିକ କାର୍ଯ୍ୟକଳାପର କେନ୍ଦ୍ରରେ ସେମାନେ ନାହାନ୍ତି କହିଲେ ଚଳେ । ଏହି ଅସନ୍ତୁଳନ ଦୂର କରିବା ପାଇଁ ଓଡ଼ିଶାର ଆଗାମୀ ଯୁଗର ରାଜନୈତିକ ଶକ୍ତିମାନେ କେଉଁ ଉପାୟ ଅବଲମ୍ବନ କରିବେ ?

ନିଷ୍ପେଷିତ ଜାତିମାନଙ୍କୁ ଜାଗ୍ରତ କରାଇବା ପାଇଁ ସେମାନଙ୍କୁ ଜାତିପ୍ରଥା ବିରୁଦ୍ଧରେ ସଚେତନ କରିବା ଛଡ଼ା ଅନ୍ୟ ଉପାୟ ନାହିଁ । କିନ୍ତୁ ଜାତିଆଣ ବିଦ୍ୱେଷ ଓ ରାଜନୈତିକ ଦୁର୍ନୀତିକୁ ନ ବଢ଼ାଇ ସାମାଜିକ ନ୍ୟାୟର ପ୍ରଚାର କରିବାକୁ ହେଲେ ତାହା ସାଙ୍ଗରେ ଆର୍ଥିକ-ଅନ୍ୟାୟ ବିରୋଧୀ ସଂଗ୍ରାମମାନ ଚଳାଇବାକୁ ହେବ । ତାହା ହେଲେ ଉଚ୍ଚ, ମଧ୍ୟମ ଓ ଦଳିତ ଜାତିର ଗରିବ ଶ୍ରେଣୀମାନେ ପରସ୍ପର ଠାରୁ ବିଚ୍ଛିନ୍ନ ହେବେ ନାହିଁ । ଏପରି ଏକ ବ୍ୟାପକ ଅର୍ଥନୈତିକ କାର୍ଯ୍ୟକ୍ରମ ଓଡ଼ିଶାରେ କେବଳ କୃଷି କ୍ଷେତ୍ରରେ ସମ୍ଭବ । ଓଡ଼ିଶାରେ କୃଷି-ନିର୍ଭର ଜନସଂଖ୍ୟାର ଅନୁପାତ ଏବେ ମଧ୍ୟ ହ୍ରାସ ପାଇ ନାହିଁ । ବେକାର ଯୁବକଙ୍କର ସଂଖ୍ୟା କୃଷକ ଶ୍ରେଣୀରେ ହିଁ ସର୍ବାଧିକ । ଏହି ବିଶାଳ ଜନସଂଖ୍ୟାର ଆଶା ଓ ଆକାଂକ୍ଷାକୁ କିପରି ଭାବରେ ଗୋଟିଏ ରାଜନୈତିକ ଲକ୍ଷ୍ୟ ଆଡ଼କୁ ଢଳେଇ ହେବ, ଓ ଗୋଟିଏ ସାମାଜିକ-ଆର୍ଥିକ ଆନ୍ଦୋଳନରେ ବାନ୍ଧିହେବ, ତାହା ମୌଳିକ ଚିନ୍ତା ଓ ପ୍ରୟୋଗର ବିଷୟ ।

ଗତ ଦେଢ଼ ଦଶକ ମଧ୍ୟରେ ଓଡ଼ିଶାରେ ଯେତିକି ଉଲ୍ଲେଖନୀୟ ଗଣ ଆନ୍ଦୋଳନ ହୋଇଛି, ସେସବୁ ରାଜନୈତିକ ମୁଖ୍ୟ ସ୍ରୋତର ବାହାରେ ଘଟିଛି ଓ କୃଷିକ୍ଷେତ୍ର ସାଙ୍ଗରେ ହିଁ ସେଗୁଡ଼ିକ ଜଡ଼ିତ । ନିର୍ଦ୍ଦଳୀୟ କୃଷକ ଆନ୍ଦୋଳନ, ବାଲ୍‌କୋ ହଟାଓ ଆନ୍ଦୋଳନ, ଚିଲିକା ବଞ୍ଚାଅ ଆନ୍ଦୋଳନ ଓ ବାଲିଆପାଳ ଆନ୍ଦୋଳନ – ଏଗୁଡ଼ିକ ପରସ୍ପର ଠାରୁ ବିଚ୍ଛିନ୍ନ ହୋଇ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ଆନ୍ଦୋଳନ ଭାବରେ ଦୃଷ୍ଟି ଆକର୍ଷିତ କରିଥିଲେ । ବିଚ୍ଛିନ୍ନ ହୋଇଥିବାରୁ ସେଗୁଡ଼ିକରୁ କୌଣସି ରାଜନୈତିକ ଶକ୍ତି ବାହାରି ପାରିଲା ନାହିଁ । କେବଳ ଏକ ସମ୍ଭାବନାର ସୂଚକ ମିଳିଲା । ଏହି ସମ୍ଭାବନାକୁ ସାକାର କରିବାକୁ ହେଲେ ବିଚ୍ଛିନ୍ନ ହୋଇ ପଡ଼ିଥିବା ଆନ୍ଦୋଳନମାନଙ୍କର କର୍ମୀ ଓ ସହଯୋଗୀମାନଙ୍କୁ ଏକତ୍ରିତ ହେବାକୁ ପଡ଼ିବ । ଏଦିଗରେ ବେଳେବେଳେ ପ୍ରୟାସ ହେଉଥିବାର ଦେଖାଯାଉଛି । କେବଳ ଏକତ୍ରିତ ହେଲେ ହେବନାହିଁ; ଏକ ନୂଆ ବିଚାର ଓ କାର୍ଯ୍ୟଶୈଳୀ ମଧ୍ୟ ପ୍ରସ୍ତୁତ କରିବାକୁ ହେବ । ପୁରୁଣା ଗାନ୍ଧୀବାଦୀ-ସାମ୍ୟବାଦୀ ଜପାମାଳିଗୁଡ଼ିକର ବନ୍ଧନରୁ ମୁକୁଳିବାକୁ ହେବ ।

ବିଧାନସଭା ନିର୍ବାଚନ ପରେ ଆଞ୍ଚଳିକ ବିକାଶ ପରିଷଦର ଗୋଟିଏ ନୂଆ ରାଜନୀତି ଉଙ୍କିମାରୁଛି । ଝାଡ଼ଖଣ୍ଡର ନିର୍ବାଚନ ସଫଳତା ଓ ପଶ୍ଚିମ ଓଡ଼ିଶାରେ ବଢ଼ି ଚାଲିଥିବା ଆଞ୍ଚଳିକ ଓ ସାଂସ୍କୃତିକ ଅସନ୍ତୋଷର ଚାପରେ ଶାସକ ଦଳମାନେ ବିକାଶ ପରିଷଦର ରାଜନୀତିକୁ ଉତ୍ସାହିତ କରୁଛନ୍ତି । ଓଡ଼ିଶା ରାଜନୀତିର ଏହି ନୂଆ ତତ୍ତ୍ୱକୁ

ଠିକ୍ ଭାବରେ ବୁଝିଲେ ଜଣାପଡ଼ିବ ଯେ, ତ୍ରୁଟିପୂର୍ଣ୍ଣ ବିକାଶ ନୀତି ଓ ଅନୁନ୍ନତ କୃଷିକ୍ଷେତ୍ରର ଅସନ୍ତୋଷରୁ ଏହାର ଉତ୍ପତ୍ତି ହୋଇଛି । ମୂଳ ସମସ୍ୟାଗୁଡ଼ିକ ପ୍ରତି ଦୃଷ୍ଟି ନଦେଇ କେବଳ ଅସନ୍ତୋଷକୁ ସଙ୍ଗଠିତ କରିବା ଦ୍ୱାରା ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ ହିଁ ଏହି ଆନ୍ଦୋଳନରୁ ଫାଇଦା ଉଠାଇବେ । ଶାସକ ଶ୍ରେଣୀର ରାଜନେତାମାନେ ଏହାକୁ ଆଞ୍ଚଳିକ ବିଦ୍ୱେଷର ରାଜନୀତିରେ ପରିଣତ କରିବାକୁ ଚାହିଁଲାବେଳେ, ବିକାଶ ନୀତିକୁ ବଦଳାଇବାର ରାଜନୀତିଟିଏ ମୁଣ୍ଡ ଟେକିପାରିବ କି ନାହିଁ ତାହା କହି ହେବ ନାହିଁ । ଏହା ମଧ୍ୟ ସେହି ଅନାଗତ ତୃତୀୟ ଶକ୍ତିପାଇଁ ଏକ ଆହ୍ୱାନ ।

୧୮ ସେପ୍ଟେମ୍ବର, ୧୯୯୫

# ଖଣିର ବିକଳ୍ପ

ବିକ୍ରିଯୋଗ୍ୟ ବସ୍ତୁମାନଙ୍କୁ ପଣ୍ୟ ବୋଲି କୁହାଯାଏ ଓ ସେଗୁଡ଼ିକର ସଙ୍ଗ୍ରହ ହେଉଛି ସମ୍ପତ୍ତି । ଆଧୁନିକ ସମାଜରେ ସର୍ବତ୍ର ସମ୍ପତ୍ତିକୁ ଟଙ୍କା (ମୁଦ୍ରା) ଆକାରରେ ମୂଲ୍ୟାୟିତ କରାଯାଇଥାଏ । ମୁଁ ଯଦି କୋଟିପତି, ତାହାର ଅର୍ଥ ହେଉଛି ଯେ ମୋର ସମ୍ପତ୍ତିର ବଜାର ମୂଲ୍ୟ ହେଉଛି କୋଟି କୋଟି ଟଙ୍କା । ଦୁନିଆଁରେ ଯାହା ବି ସମ୍ପତ୍ତି ଅଛି ସେସବୁର ମୂଳ ହେଉଛି ପ୍ରାକୃତିକ ସଂସାଧନ । ଏହାକୁ ପ୍ରାକୃତିକ ସମ୍ପଦ ବୋଲି କୁହାଯାଏ । ପରିଶ୍ରମ ଓ ବୁଦ୍ଧି ଦ୍ୱାରା ଓ ଯନ୍ତ୍ର ଦ୍ୱାରା ପ୍ରାକୃତିକ ସଂସାଧନଗୁଡ଼ିକୁ ନାନା ରକମର ପଣ୍ୟ ବସ୍ତୁରେ ପରିଣତ କରାଯାଏ । ଯନ୍ତ୍ରଗୁଡ଼ିକ ମଧ୍ୟ ପ୍ରାକୃତିକ ସଂସାଧନ (ଧାତୁ ଆଦି)ରୁ ତିଆରି ହୁଅନ୍ତି । ପୃଥିବୀର ମୋଟ୍ ପ୍ରାକୃତିକ ସମ୍ପଦ ସୀମିତ ହୋଇଥିବାରୁ ସମ୍ପତ୍ତି ଅସୀମିତ ହୋଇପାରିବ ନାହିଁ । ତେଣୁ ଯେ କୌଣସି ଯୁଗରେ ହେଲେ ମଧ୍ୟ ସମ୍ପତ୍ତି ସବୁବେଳେ ସୀମିତ ହିଁ ରହିବ ଓ ଭୂସମ୍ପତ୍ତି ଭଳି ସେସବୁ ବୃଦ୍ଧି ପାଇବାର ସମ୍ଭାବନା ନାହିଁ; ବରଂ ପ୍ରତି ମୁହୂର୍ତ୍ତରେ କ୍ଷୟ ହୋଇଚାଲିଛି । ଦିନ ଆସୁଛି, ପୃଥିବୀ ପୃଷ୍ଠରୁ ଓ ଗର୍ଭରୁ ଖଣିଜ ଦ୍ରବ୍ୟ ସମ୍ପୂର୍ଣ୍ଣ ନିଃଶେଷ ହୋଇଯିବ । ଏହାର ପହିଲା ଶିକାର ହେବ ପେଟ୍ରୋଲ୍ ଓ କୋଇଲା ।

ଉପରୋକ୍ତ ସତ୍ୟକୁ ଭଲ ଭାବରେ ମୁଣ୍ଡ ଭିତରେ ରଖିବାକୁ ହେବ । କାରଣ ପୁଞ୍ଜିବାଦୀ ଶାସ୍ତ୍ର ଓ ପ୍ରଚାର ମାଧ୍ୟମ ଲୋକଙ୍କୁ ଭୁଲ୍ ଧାରଣା ଦିଅନ୍ତି, ସତେ ଯେପରି ସମ୍ପତ୍ତି ଅସୀମ ଓ ଅସରନ୍ତି । ସମାଜବାଦୀ ଓ ସାମ୍ୟବାଦୀମାନେ ମଧ୍ୟ ଅତୀତରେ ଏହି ଭ୍ରମ ଧାରଣାର ଶିକାର ହୋଇଛନ୍ତି । ଧନୀ ଦେଶ ଓ ଧନୀ ଶ୍ରେଣୀମାନଙ୍କର ଭୋଗ ଓ ଆଡ଼ମ୍ବରର ବହୁଳତାକୁ ଦେଖି ଏଇ ଭୁଲ୍ ଧାରଣାଟି ସୃଷ୍ଟି ହୁଏ, ସତେ ଯେପରି ସମ୍ପତ୍ତି ବଢ଼ି ବଢ଼ି ଚାଲିଛି ଓ ଏହାର ଶେଷ ସୀମା ନିର୍ଦ୍ଧାରିତ ହୋଇପାରିବ ନାହିଁ । ସୂକ୍ଷ୍ମ ଭାବରେ ଦେଖିଲେ ଜଣା ପଡ଼ିବ ଯେ, ଯାହାକୁ ଆମେ ସମ୍ପତ୍ତିର ଅଭୂତପୂର୍ବ ବୃଦ୍ଧି ବୋଲି କହୁଛୁ, ତାହା ପଛରେ ଏକ ଭୟଙ୍କର ସତ୍ୟ ଲୁଚି ରହିଛି । ମୂଳ ବସ୍ତୁଗୁଡ଼ିକର ଅବକ୍ଷୟ ତୀବ୍ର ଭାବରେ ହୋଇ ଚାଲିଛି । ବୈଜ୍ଞାନିକମାନେ ସ୍ୱୀକାର କରନ୍ତି ଯେ, ବହୁ ପ୍ରକାରର ପ୍ରାକୃତିକ ସମ୍ପଦ ଯଥା, ପେଟ୍ରୋଲ୍, କୋଇଲା ଇତ୍ୟାଦି ଅତି ଶୀଘ୍ର ନିଃଶେଷ ହୋଇଯିବ । ଏପରିକି ପାଣି ଓ ପବନ ମଧ୍ୟ କମ୍ ହୋଇଯିବ । ସମଗ୍ର ପୃଥିବୀ ଶୁଷ୍କ ହୋଇଯାଇ ପାରେ ଓ ମଣିଷ ଜୀବନର ଅସ୍ତିତ୍ୱ ବିପନ୍ନ ହେବ ।

କେତେ ବର୍ଷ ତଳେ ଜାପାନର କ୍ୟୋଟୋ ସହରରେ ଏହି ବିଷୟରେ ଆଲୋଚନା ପାଇଁ ଏକ ଆନ୍ତର୍ଜାତିକ ସମ୍ମିଳନୀ ହୋଇଥିଲା । ବିଭିନ୍ନ ଦେଶର ସରକାର ତଥା ବେସରକାରୀ ପ୍ରତିନିଧିମାନେ ସମ୍ମିଳନୀରେ ଯୋଗ ଦେଇ ଏହାର ସନ୍ଧିପତ୍ରର ଚିଠା ପ୍ରସ୍ତୁତ କରିଥିଲେ । ଏହି ସନ୍ଧିପତ୍ରରେ ପରିବେଶ ଅର୍ଥାତ୍ ପ୍ରକୃତିକୁ ନଷ୍ଟ ନ କରିବା ପାଇଁ ନିୟମଗୁଡ଼ିକ ଲିପିବଦ୍ଧ ହୋଇଛି ଓ ରାଷ୍ଟ୍ରମାନେ ଆଇନ୍ ଦ୍ୱାରା ନିଜ ନିଜ ଦେଶରେ ଏହି ନିୟମସବୁ ପାଳନ କରନ୍ତୁ ବୋଲି ଆହ୍ୱାନ କରାଯାଇଛି । ଏହାକୁ କ୍ୟୋଟୋ ସନ୍ଧିପତ୍ର ବୋଲି କୁହାଯାଏ । ଆମେରିକା ସରକାର ଏହି ସନ୍ଧିପତ୍ରର ବିରୋଧ କରୁଛି, କାରଣ ଏତେ ସବୁ ନିୟମ ମାନିବାକୁ ହେଲେ ଆଧୁନିକ ସମୃଦ୍ଧି ନିର୍ମାଣର ଢାଞ୍ଚା ବାଧାପ୍ରାପ୍ତ ହେବ । ଜର୍ଜ୍ ବୁଶ୍ ଆମେରିକାର ନୂଆ ରାଷ୍ଟ୍ରପତି ଭାବରେ ନିର୍ବାଚିତ ହେବା ପରେ, ଗତ ୨୮ ମାର୍ଚ୍ଚରେ ତାଙ୍କ ସରକାର ଦୃଢ଼ ଘୋଷଣା କରିଛି ଯେ, କ୍ୟୋଟୋ ସନ୍ଧିକୁ ଆମେରିକା ମାନିବ ନାହିଁ । କାରଣ ଆମେରିକାର ଧନ ବୃଦ୍ଧିର ଯେଉଁ ତୀବ୍ର ଗତି ରହିଛି ତାହାକୁ ମନ୍ଥର କରିବା ଓ ଆମେରିକାର ଶ୍ରମିକମାନଙ୍କର ଜୀବନସ୍ତରକୁ କମେଇବା ତାଙ୍କର ଉଦ୍ଦେଶ୍ୟ ହୋଇନପାରେ ।

ଏଥିରୁ ସ୍ପଷ୍ଟ ହେଉଛି ଯେ, ଯଦି ପ୍ରକୃତି ଓ ପରିବେଶର ସୁରକ୍ଷାର ଲକ୍ଷ୍ୟକୁ ଗ୍ରହଣ କରାଯାଏ, ତାହା ହେଲେ ଧନ ବୃଦ୍ଧିର ଗତିକୁ କମେଇବା ଦରକାର ହେବ । ଜର୍ଜ୍ ବୁଶ୍ଙ୍କର ସରକାରରେ ଯେଉଁ ମନ୍ତ୍ରୀମାନେ ଅଛନ୍ତି, ସେମାନେ ସେ ଦେଶର ପ୍ରଭାବଶାଳୀ ଶିଳ୍ପପତି ଅର୍ଥାତ୍ ବହୁରାଷ୍ଟ୍ରୀୟ କମ୍ପାନୀଗୁଡ଼ିକର ମାଲିକ ପରିବାରର ସଦସ୍ୟମାନେ । ପୃଥିବୀର ବିଭିନ୍ନ ଦେଶରେ ସେମାନଙ୍କର କଳ କାରଖାନା ଓ ଖଣି ବ୍ୟବସାୟ ଅଛି, ଯାହା ଦ୍ୱାରା ପ୍ରାକୃତିକ ସମ୍ପଦ ସବୁ ନଷ୍ଟ ହୋଇଯାଉଛି ।

ପ୍ରାକୃତିକ ସମ୍ପଦରୁ ସମ୍ପତ୍ତି ସୃଷ୍ଟି କରିବାର ଦୁଇଟି ପନ୍ଥା ଅଛି । ପ୍ରକୃତି ସବୁବେଳେ ନୂଆ ଜୀବନ ଓ ନୂଆ ସମ୍ପଦ ସୃଷ୍ଟି କରି ଚାଲିଛି, ଏଗୁଡ଼ିକର ବ୍ୟବହାର ଯଦି ଅଳ୍ପ ମାତ୍ରାରେ କିମ୍ବା ସମ୍ୟକ୍ ମାତ୍ରାରେ ହେବ, ତାହା ହେଲେ ମଣିଷର ମଧ୍ୟ କାମ ଚଳିବ ଓ ପ୍ରାକୃତିକ ସମ୍ପଦ ମଧ୍ୟ ଅକ୍ଷୂର୍ଣ୍ଣ ହୋଇ ରହିବ । ଏହାକୁ ସମ୍ୟକ ବିକାଶ ବା ସ୍ଥାୟୀ ବିକାଶର ପଦ୍ଧତି ବୋଲି କୁହାଯିବ । କିନ୍ତୁ ବିକାଶର ଆଧୁନିକ ପଦ୍ଧତି ହେଉଛି ଏକା ସାଙ୍ଗରେ ବହୁତ ସମ୍ପତ୍ତି ଅର୍ଜନ କରିବା ଲୋଭରେ ଅଳ୍ପ ସମୟ ଭିତରେ ବହୁତ ପରିମାଣର ପ୍ରାକୃତିକ ସମ୍ପଦକୁ ନଷ୍ଟ କରିବା । ଏହି ନଷ୍ଟ ସମ୍ପଦର ଆଉ ଭରଣା ହୋଇ ପାରେ ନାହିଁ, ତେଣୁ ମୂଳ ବସ୍ତୁଗୁଡ଼ିକ କମି କମି ଚାଲେ ଓ ମାଟି, ପାଣି,ପବନ ସବୁକିଛି ପ୍ରଦୂଷିତ ହୁଏ । ଏହା ଏକ ବିକଟ ସତ୍ୟ ଯେ, ପରିଷ୍କାର ଜଳ ଓ ପରିଷ୍କାର ପବନର ପରିମାଣ କମି ଚାଲିଛି । ଜଙ୍ଗଲ, ପାହାଡ଼, ବନ୍ୟପ୍ରାଣୀ ଓ ଜଳଜନ୍ତୁମାନଙ୍କ କଥା ତ ଛାଡ଼ । ଅନେକ ପଶୁପକ୍ଷୀ ଓ ପତଙ୍ଗ ପୃଥିବୀରୁ ସମୂଳେ ଲୋପ ହୋଇଗଲେଣି ।

ଏପରି ଭାବରେ ଯେଉଁ ସମ୍ପତ୍ତି ବୃଦ୍ଧି ହେଉଛି, ତାହା ଏକ ପବିତ୍ର ମାନବୀୟ ଲକ୍ଷ୍ୟ ହୋଇନପାରେ । ଯେଉଁ ସମ୍ପତ୍ତି ବୃଦ୍ଧି ଦ୍ୱାରା ଭୂପୃଷ୍ଠରେ ମାନବ ଜୀବନ ବିପନ୍ନ ହେବାକୁ ଯାଉଛି ଓ ପୃଥିବୀ ନାମକ ଏହି ଗ୍ରହର ମଧ୍ୟ ଅକାଳ ମୃତ୍ୟୁ ଘଟିପାରେ, ତାହା କ'ଣ ପ୍ରକୃତରେ ରାଷ୍ଟ୍ରମାନଙ୍କର ଓ ବିଶ୍ୱ ଜନସାଧାରଣର କୌଣସି ମଙ୍ଗଳ କାର୍ଯ୍ୟରେ

ଲାଗୁଛି ? ଏହାର ପରୀକ୍ଷା କରିବା ସମୟ ଆସିଯାଇଛି । ପ୍ରଚଳିତ ଢଙ୍ଗର ଧନବୃଦ୍ଧି ଏଣିକି ସମାଜର କୌଣସି କାର୍ଯ୍ୟରେ ଲାଗିବ ନାହିଁ । ପ୍ରତ୍ୟେକ ଦେଶରେ କେବଳ ଗୋଟିଏ ଗୋଟିଏ ଅତି ଧନୀ ଶ୍ରେଣୀ ଓ ଗୋଟିଏ ଲେଖାଏଁ ଧନୀ ମଧ୍ୟବିତ୍ତ ଶ୍ରେଣୀ ତିଆରି ହେଉଛନ୍ତି । ସେମାନଙ୍କର ଧନର ହୋରିଖେଳରେ ସମାଜରେ ଦୁର୍ନୀତି ଓ ବ୍ୟଭିଚାର ବଢ଼ୁଛି, ବିଷମତା ବଢ଼ୁଛି ଓ ଅଧିକାଂଶ ଲୋକଙ୍କର ଜୀବନ ଅଭାବ ଓ ଅସୁରକ୍ଷାର ଘେରରେ କଟୁଛି । ଧନବାନ ଲୋକଙ୍କର ମଧ୍ୟ ଲୋଭ ଓ ଅଭାବ ଏତେ ବେଶୀ ହେଉଛି ଯେ, ମନଟା ସବୁବେଳେ କାଙ୍ଗାଳ ହୋଇ ରହୁଛି । ଆଉ ଏକ ଅନୁଧ୍ୟାନର ବିଷୟ ଏହି ଯେ, ଏହି ଧନବୃଦ୍ଧି ଦ୍ୱାରା ରାଷ୍ଟ୍ର ଅର୍ଥାତ୍ ସରକାରର ଆର୍ଥିକ କ୍ଷମତା ବଢ଼ୁ ନାହିଁ, କେବଳ ସେହି ଧନୀ ଶ୍ରେଣୀମାନଙ୍କର ଆୟ ଓ ବ୍ୟୟ ବଢ଼ୁଛି । ପୃଥିବୀରେ ଯେତିକି ବିକାଶଶୀଳ ଦେଶ ଅଛନ୍ତି, ତନ୍ମଧ୍ୟରୁ ଅଧିକାଂଶ ଦେଶର ସରକାର ପାଖରେ ରାଜ୍ୟ ଚଳାଇବା ଭଳି ପାଣ୍ଠି ନାହିଁ । ଭାରତର ସବୁ ସରକାର ଦେବାଳିଆ ହୋଇଗଲେଣି ।

ଏହା କିଭଳି ଧନ ବୃଦ୍ଧି ଅଟେ ? ଯେଉଁ ଧନ ବୃଦ୍ଧି ଦ୍ୱାରା ରାଷ୍ଟ୍ର ଲାଭବାନ ହେଉ ନାହିଁ ଓ ଜନସାଧାରଣ ଲାଭାନ୍ୱିତ ହେଉ ନାହାନ୍ତି, କେବଳ ଏକ ମୁଷ୍ଟିମେୟ ଲୋକଙ୍କର ଶ୍ରେଣୀ ପ୍ରଚଣ୍ଡ ଭାବରେ ଧନୀ ହୋଇଯାଉଛି ଓ ଧନର ଅପବ୍ୟୟ କରୁଛି, ଏହି ଧନ ବୃଦ୍ଧିର ଅବସାନ ଅତି ଶୀଘ୍ର ଘଟାଇବାକୁ ହେବ । ଗତ ଦଶ ବର୍ଷ ଭିତରେ ଭାରତ ଭଳି ଦେଶମାନଙ୍କ ଧନ ବୃଦ୍ଧି ପାଇଁ ଦୁଇଟି କଥାର ବହୁତ ପ୍ରଚାର ହେଲା । ବଜାରର ଜଗତିକରଣ କରିଦିଅ, ଆମଦାନୀ-ରପ୍ତାନୀକୁ ସମ୍ପୂର୍ଣ୍ଣ ମୁକ୍ତ, ଅବାଧ, ନିଧଡ଼କ କରିଦିଆଯାଉ । ଆମର ଉତ୍ପାଦକମାନେ ବିଶ୍ୱ ବଜାରରେ ତାଙ୍କର ଜିନିଷ ବିକ୍ରି କରି ଧନୀ ହୋଇଯିବେ । କୃଷକ ନେତା ଶରଦ ଯୋଶୀ ମଧ୍ୟ ଏହାର ଏକ ପ୍ରଚାରକ ହେଲେ ଓ କହିଲେ ଯେ, ଭାରତର ଚାଷୀ ବିଦେଶରେ ଧାନ, ଗହମ, ଚିନାବାଦାମ ବିକ୍ରି କରିପାରିବ ଓ ଡଲାର୍ ଅର୍ଜନ କରିବ । ଫଳ କିନ୍ତୁ ଓଲଟା ହୋଇଛି । ରପ୍ତାନୀ ଅପେକ୍ଷା ଆମଦାନୀ ହିଁ ବେଶୀ ହେଲା ଓ ଭାରତର ଲଘୁ ଉଦ୍ୟୋଗ ପ୍ରାୟ ଶେଷ ହୋଇଗଲା । ବର୍ତ୍ତମାନ ପଞ୍ଜାବ୍‌ରୁ କେରଳ ଓ ଗୁଜୁରାଟ୍‌ରୁ ଓଡ଼ିଶା ପର୍ଯ୍ୟନ୍ତ ସବୁ ରାଜ୍ୟର ଚାଷୀ ତ୍ରାହି ତ୍ରାହି ଡାକୁଛନ୍ତି ।

କମ୍ପ୍ୟୁଟର ଓ ସୂଚନା ପ୍ରଯୁକ୍ତି ବିଦ୍ୟାର ହଟଚମଟ କିଛିଦିନ ପ୍ରଚାର ମାଧ୍ୟମକୁ ଚମକୃତ କଲା । କିନ୍ତୁ ଏବେ ଖବର ଆସୁଛି ଯେ, ଭାରତର କମ୍ପ୍ୟୁଟର ବିଶେଷଜ୍ଞମାନେ ଆମେରିକାରୁ ବହିଷ୍କୃତ ହେଉଛନ୍ତି । ଆମେରିକାରେ ଯଦି ସେମାନଙ୍କର ଚାହିଦା କମିଗଲାଣି, ଭାରତ ତାଙ୍କୁ ଏତେ ବେଶୀ ପଇସା ଦେଇ ରଖିବ କିପରି ? ଦିନକୁ ଦିନ ଏହା ସ୍ପଷ୍ଟ ହୋଇଯାଇଛି ଯେ, ସୂଚନା ପ୍ରଯୁକ୍ତି ବିଦ୍ୟା ଉପରେ ନିର୍ଭର କରି ଲକ୍ଷ ଲକ୍ଷ ଶିକ୍ଷିତ ଯୁବକ ଯୁବତୀମାନେ ତାଙ୍କର ଭବିଷ୍ୟତ ଗଢ଼ିପାରିବେ ନାହିଁ । ଓଡ଼ିଶାରେ ପ୍ରଚୁର ଖଣିଜ ସମ୍ପଦ ରହିଛି । ଓଡ଼ିଶାରେ ଧନ ବୃଦ୍ଧି ପାଇଁ ଏହାକୁ ସବୁଠାରୁ ବଡ଼ ସମ୍ବଳ ବୋଲି ଧରାଯାଉଛି । ଏହା ଏକ ନିତାନ୍ତ ଭ୍ରମ ଧାରଣା । ଖଣି ଅଞ୍ଚଳଗୁଡ଼ିକ ଓଡ଼ିଶାର ସମୃଦ୍ଧ ଅଞ୍ଚଳ ବୋଲି କେବେ ମଧ୍ୟ ଖ୍ୟାତି ଲାଭ କରିନାହିଁ । ଏବେ ତ

ଆହୁରି ଖରାପ ଅବସ୍ଥା । ଖଣି ପ୍ରକଳ୍ପର ପ୍ରଥମ ପଦକ୍ଷେପ ହେଉଛି ବିସ୍ଥାପନ । ଶହ ଶହ ବର୍ଷ ଧରି ଯେଉଁ ଭିଟାମାଟି ଓ ପରିବେଶ ଉପରେ ନିର୍ଭର କରି ଜନଗୋଷ୍ଠୀମାନେ ତାଙ୍କର ଜୀବନ ଓ ଜୀବିକା ଚଳାଇ ଆସୁଥିଲେ, ସେଥିରୁ ଉଚ୍ଛେଦ ହେବା ପରେ ସରକାରୀ ଯୋଜନା ଦ୍ୱାରା ସେମାନଙ୍କର ଉପଯୁକ୍ତ ପୁନର୍ବାସ ହୋଇଥିବାର ଗୋଟିଏ ମଧ୍ୟ ସଫଳତାର କାହାଣୀ ଓଡ଼ିଶାରେ ନାହିଁ ।

ଖଣି ପ୍ରକଳ୍ପର ଦ୍ୱିତୀୟ ପଦକ୍ଷେପ ହେଉଛି ଓଡ଼ିଶା ବାହାରୁ ଦେଶୀ ବିଦେଶୀ କମ୍ପାନୀମାନଙ୍କ ହାତରେ ଖଣି ଅଞ୍ଚଳ ସବୁ ସମର୍ପି ଦେବା । ସେହି ଅଞ୍ଚଳର ଜନସାଧାରଣଙ୍କର କୌଣସି ଉନ୍ନତି ସେମାନେ କରିବେ ନାହିଁ । ଓଲଟା ପରିବେଶକୁ ଧ୍ୱଂସ କରିଦେବେ, ବାୟୁକୁ ଓ ଜଳସ୍ରୋତମାନଙ୍କୁ ପ୍ରଦୂଷିତ କରିଦେବେ । ସ୍ଥାନୀୟ ଲୋକଙ୍କୁ ରୋଜଗାର ଦେବାର କ୍ଷମତା ସେମାନଙ୍କର ଅତି ସୀମିତ । ଯାହା ହେବ ତାହା କେବଳ ଲୋକ ଦେଖାଣିଆ ଓ ସେଥିରୁ ଅଧିକାଂଶ ଦୈହିକ ଶ୍ରମ ଜାତୀୟ । ଅଥଚ କମ୍ପାନୀ ଉପରେ ନିର୍ଭର ନ କରି ଯେଉଁମାନେ ଚାଷବାସରେ ଲାଗିଛନ୍ତି ସେମାନେ ନାନା ପ୍ରକାରର ପ୍ରଦୂଷଣର ଶିକାର ହେବେ ।

ତେଣୁ ଖଣି ଦ୍ୱାରା ଧନ ବୃଦ୍ଧି କେଉଁଠି ହେବ ? କେତେକ ଦେଶୀ ବିଦେଶୀ କମ୍ପାନୀମାନେ, ସେମାନଙ୍କର ଠିକାଦାରମାନେ ଓ ଏହି ସମସ୍ତଙ୍କୁ ବେଆଇନ୍ ତଥା ଅନୈତିକ ଭାବରେ ସାହାଯ୍ୟ କରୁଥିବା ନେତା, ଅଫିସର ଓ ବୁଦ୍ଧିଜୀବୀମାନେ ହିଁ ପ୍ରଚୁର ଧନର ମାଲିକ ହୋଇଯିବେ । ଓଡ଼ିଶା ରାଜ୍ୟ ମଧ୍ୟ ଏହା ଦ୍ୱାରା ଲାଭାନ୍ୱିତ ହେବ ନାହିଁ । ଖଣି ଅଞ୍ଚଳର ବିକାଶ ପାଇଁ ବହୁ ପ୍ରକାରର ସୁବିଧା ଯୋଗାଇ ଦେବା ହେଉଛି ସରକାରର ଦାୟିତ୍ୱ । ବିଦେଶରୁ ଋଣ ନେଇ ଓଡ଼ିଶା ସରକାର ଓ ଭାରତ ସରକାର ସଡ଼କ, ରେଳପଥ, ବିଦ୍ୟୁତ୍, ଦୂରସଞ୍ଚାର ଇତ୍ୟାଦିର ବ୍ୟବସ୍ଥା କରିବେ । ଅନେକ ପ୍ରକାରର ସୁବିଧା ରିହାତି ଦରରେ ଦେବେ । ଏହାର ପ୍ରତିବଦଳରେ ଯେଉଁ ଖଣି ଶୁଳ୍କ ବା ଅନ୍ୟାନ୍ୟ ଟିକସ ସରକାରକୁ ମିଳିବ, ତାହା ଅତ୍ୟନ୍ତ ନଗଣ୍ୟ । ମୋଟ ଉପରେ ରାଜ୍ୟ ଓ ଜନସାଧାରଣ ଉଭୟେ କ୍ଷତିରେ ରହିବେ । କେବଳ ଏକ ଧନୀକ ଶ୍ରେଣୀ ଲାଭାନ୍ୱିତ ହେବ । ତେଲିଆ ମୁଣ୍ଡରେ ତେଲ ବର୍ଷା ହେବ, ଦରିଦ୍ର ଦେହରୁ ତେଲତକ ନିଗାଡ଼ି ନିଆଯିବ । ଖଣି ହେଉଛି ଆଦିବାସୀମାନଙ୍କ ପାଇଁ ଏକ ଅଭିଶାପ । ତେଣୁ ଏହାର ବିକଳ୍ପ ଖୋଜିବାକୁ ହେବ ।

ଖଣି ଅଞ୍ଚଳମାନଙ୍କରେ ଦୁଇ ପ୍ରକାରର କାର୍ଯ୍ୟ ହୋଇପାରେ । ପ୍ରାୟ ସବୁ ଖଣି ଜଙ୍ଗଲ ପାହାଡ଼ମାନଙ୍କରେ ଥାଏ । ଭୂପୃଷ୍ଠକୁ ଖୋଳି, ନଷ୍ଟ କରି ଖଣିଜ ପଦାର୍ଥଗୁଡ଼ିକୁ ବାହାର କରିବାକୁ ହୁଏ । ଏହା ହେଉଛି ଖଣିର ଉତ୍ଖନନ । ଦ୍ୱିତୀୟ ଉପାୟ ହେଉଛି ଭୂପୃଷ୍ଠକୁ ହିଁ କୃଷି ଏବଂ ଜଙ୍ଗଲର ବିକାଶ ଦ୍ୱାରା ଉନ୍ନତ କରାଇବା । ଖଣି ଅଞ୍ଚଳର ଭୂପୃଷ୍ଠର ମାଟି-ଧାନ, ଆଖୁ ଭଳି ଚାଷ ଦୃଷ୍ଟିରୁ ଅନୁର୍ବର ହେଲେ ମଧ୍ୟ ଜଙ୍ଗଲ, ଫଳ ଚାଷ ଓ ଜଙ୍ଗଲ ଆଧାରିତ କ୍ଷୁଦ୍ର ଶିଳ୍ପ ପାଇଁ ବହୁତ ଉପଯୋଗୀ । ଓଡ଼ିଶାର ଅନେକ ଖଣି ଅଞ୍ଚଳରେ ଛୋଟ ଛୋଟ ନଦୀ ଓ ଝରଣା ବହୁ ସଂଖ୍ୟାରେ ଦେଖାଯାଏ । 'ୱାଟର୍‌ସେଡ୍ ଡେଭ୍‌ଲପ୍‌ମେଣ୍ଟ୍' ବା 'ଜଳ ସଂରକ୍ଷଣ ଯୋଜନା'ର ଯେଉଁସବୁ ପ୍ରୟୋଗ

ହେଉଛି, ସେଥିରୁ ଜଣାପଡ଼େ ଯେ, ଓଡ଼ିଶାର ସମଗ୍ର ମାଳ ଅଞ୍ଚଳ ଏହାଦ୍ୱାରା ଜଳସେଚିତ ହୋଇ ପାରିବ । କମ୍ପ୍ୟୁଟର, ଟେଲିଫୋନ୍, ବିମାନ ବନ୍ଦର ଓ ଖଣି ଅଞ୍ଚଳର ବିକାଶ ପାଇଁ ସରକାର ଯେତିକି ଖର୍ଚ୍ଚ କରୁଛନ୍ତି, ତାହା ଯଦି କୃଷି, ଜଙ୍ଗଲ ଓ ଜଙ୍ଗଲ ଆଧାରିତ କ୍ଷୁଦ୍ର ଶିଳ୍ପ ଉଦ୍ଦେଶ୍ୟରେ ଖର୍ଚ୍ଚ ହୁଅନ୍ତା, ତାହାହେଲେ ଲୋକେ ଓ ସରକାର ଉଭୟେ ଲାଭାନ୍ୱିତ ହୁଅନ୍ତେ । ଜଙ୍ଗଲ ବିଭାଗ ଓ ଠିକାଦାରମାନଙ୍କ ଦ୍ୱାରା ଧ୍ୱଂସ ପାଇଥିବା ଜଙ୍ଗଲମାନଙ୍କୁ ପୁଣିଥରେ ଉଜ୍ଜୀବିତ, ପଲ୍ଲବିତ କରାଯାଇ ପାରିବ । ଏଥିପାଇଁ ଆଦିବାସୀ ଓ ଅନ୍ୟାନ୍ୟ ସ୍ଥାନୀୟ ଅଧିବାସୀମାନଙ୍କର ପ୍ରକୃତିପ୍ରେମ ଉପରେ ବିଶ୍ୱାସ କରି ସଞ୍ଚାଳନର ମୁଖ୍ୟ ଦାୟିତ୍ୱ ସେମାନଙ୍କ ହାତରେ ଛାଡ଼ିବାକୁ ହେବ । ବଡ଼ ବଡ଼ ନଦୀବନ୍ଧର ବିକଳ୍ପ ରୂପେ କ୍ଷୁଦ୍ରବନ୍ଧ ଓ ଜଳ ସଂରକ୍ଷଣ ଯୋଜନାକୁ ଗ୍ରହଣ କରିବାକୁ ହେବ ।

ଓଡ଼ିଶାର ରାଜନୈତିକ ଓ ସାମାଜିକ କର୍ମୀମାନେ ତଥା ଲୋକାଭିମୁଖୀ ବୁଦ୍ଧିଜୀବୀମାନେ ଏହି ଦିଗରେ ଚିନ୍ତା କରନ୍ତୁ । ଓଡ଼ିଶାର ଜନସାଧାରଣଙ୍କ ପାଇଁ ବିଶେଷ କରି ଆଦିବାସୀମାନଙ୍କ ପାଇଁ ଖଣି ଏକ ସମ୍ପତ୍ତି ନା ଏକ ଅଭିଶାପ, ଏହା ଉପରେ ସେମାନେ ଏକ ସ୍ପଷ୍ଟ ମନ୍ତବ୍ୟ ଦିଅନ୍ତୁ । ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ବିଦେଶୀ କମ୍ପାନୀମାନଙ୍କୁ ଖଣି ଖୋଳିବା ପାଇଁ ସରକାର ଯେଉଁ ଅନୁମତି ଓ ଅନୁମୋଦନ ଦେଇଛନ୍ତି ତାହା ଦ୍ୱାରା ଓଡ଼ିଶା ରାଜ୍ୟର ଓ ଓଡ଼ିଶାର ଜନସାଧାରଣଙ୍କର ଧନ ବୃଦ୍ଧି ହେବ ବୋଲି ଯେପରି ଭାବରେ ପ୍ରଚାର କରାଯାଉଛି, ତାହା ସତ୍ୟ ବୋଲି ସେମାନେ ତଥ୍ୟଗତ ପ୍ରମାଣ ପାଇଛନ୍ତି କି ? ଯଦି ଏହି ପ୍ରଚାର ପଛରେ ତଥ୍ୟଗତ ପ୍ରମାଣ ନାହିଁ, ତାହାହେଲେ ଖଣି ଗୁଡ଼ିକର ବିରୋଧ କରାଯିବ ନାହିଁ କାହିଁକି ?

ପ୍ରଥମେ ଭୂପୃଷ୍ଠକୁ ଓ ତାହା ଉପରେ ବାସ କରୁଥିବା ଲୋକଙ୍କୁ ଉନ୍ନିତ କର । ସେମାନେ ଉନ୍ନତ ହେବା ପରେ ଓ ଜଙ୍ଗଲ ଓ ଜମି ଉପରେ ସେମାନଙ୍କର ଅଧିକାର ସ୍ଥାପିତ ହେବା ପରେ ସେମାନେ ନିଜେ ସ୍ଥିର କରିବେ ଯେ, ମାଟି ତଳେ ଥିବା ଖଣିଜ ପଦାର୍ଥର ଉପଯୋଗ ସେମାନେ କିପରି ଭାବରେ କରିବେ ।

୩୦ ଏପ୍ରିଲ, ୨୦୦୧

# ଜଳର ଭବିଷ୍ୟତ

୧

ଗତ ବର୍ଷ ଏପ୍ରିଲ୍-ମଇ ମାସରେ ବହୁଦିନ ଧରି ଗୁଜୁରାଟ୍, ରାଜସ୍ଥାନ୍ ଓ ଆନ୍ଧ୍ର ପ୍ରଦେଶ ସମେତ ମୋଟ୍ ପାଞ୍ଚଟି ରାଜ୍ୟରେ ସ୍ଥାନେ ସ୍ଥାନେ ଭୀଷଣ ଜଳ-ଦୁର୍ଭିକ୍ଷର ସମାଚାର ଗଣମାଧ୍ୟମମାନଙ୍କ ଦ୍ୱାରା ପ୍ରଚାରିତ ହେଲା । ଆନ୍ଧ୍ର ପ୍ରଦେଶରେ ଏହି ସଙ୍କଟର ସମ୍ମୁଖୀନ ହୋଇ ମୁଖ୍ୟମନ୍ତ୍ରୀ ଚନ୍ଦ୍ରବାବୁ ନାଇଡୁ କିଛିଦିନ ପାଇଁ କମ୍ପ୍ୟୁଟର ଓ ସୂଚନା-ପ୍ରଯୁକ୍ତିକୁ ଭୁଲିଗଲେ ଓ ଗ୍ରାମାଞ୍ଚଳରେ ଜଳ ଅମଳ ପ୍ରକଳ୍ପର ଜାଲ ବିଛାଇ ଦେବା ପାଇଁ ଅଭିଯାନ ଆରମ୍ଭ କଲେ ।

ସୂଚନା-ପ୍ରଯୁକ୍ତି ଏକ ଅତ୍ୟାଧୁନିକ ଯନ୍ତ୍ର ପ୍ରଣାଳୀ । କିନ୍ତୁ ଯାହାକୁ ଜଳ ଅମଳ ଯୋଜନା ବୋଲି କୁହାଯାଉ ଅଛି, ତାହା ହେଉଛି ଅତି ପୁରାତନ, ପରମ୍ପରାଗତ ପ୍ରଣାଳୀର ଗୋଟିଏ ସଂଶୋଧିତ ରୂପ । ଉକ୍ତ ଜଳାଭାବର ସମାଧାନ ପାଇଁ ସେ ଯଦି କମ୍ପ୍ୟୁଟରକୁ ଭୁଲିଗଲେ ଓ ବଡ଼ ବଡ଼ ନଦୀବନ୍ଧର ମଧ୍ୟ କଳ୍ପନା କଲେ ନାହିଁ; ଏଥିରୁ କିଛି ଶିଖିବାର ଅଛି । ଗରିବ ଦେଶମାନଙ୍କରେ ମୌଳିକ ଅଭାବଗୁଡ଼ିକ ମେଣ୍ଟାଇବା ଦିଗରେ ଅତ୍ୟାଧୁନିକ ପ୍ରଯୁକ୍ତି ବିଦ୍ୟା ସାହାଯ୍ୟକାରୀ ହୋଇପାରୁ ନାହିଁ । ଅଳ୍ପ ଖର୍ଚ୍ଚର କ୍ଷୁଦ୍ର ଯୋଜନାମାନଙ୍କ ଦ୍ୱାରା ହିଁ, ଯାହାକୁ ଲୋକେ ସାମୂହିକ ସହଯୋଗ ଦ୍ୱାରା ସମ୍ପନ୍ନ କରି ପାରିବେ, ଏହି ଅଭାବଗୁଡ଼ିକ ଦୂର ହୋଇ ପାରିବ ।

ଓଡ଼ିଶାରେ ଏବର୍ଷ ଯେଉଁ ବ୍ୟାପକ ମରୁଡ଼ି ଦେଖା ଦେଇଛି, ତାହା ଖରାଦିନିଆ ଜଳକଷ୍ଟ ନୁହେଁ, ସେଇଟା ତ ପଶ୍ଚିମାଞ୍ଚଳ ଓଡ଼ିଶାର ଦେହସୁହା ହୋଇ ଯାଇଛି । ବର୍ଷାଦିନରେ ଜଳାଭାବ ହୋଇଥିବା ଯୋଗୁଁ ରାଜ୍ୟର ତିନି ଚତୁର୍ଥାଂଶ ଅଞ୍ଚଳରେ ଘୋର ଫସଲହାନି ଘଟିଛି ଓ ତାହାର ଦୁଷ୍ପରିଣାମଗୁଡ଼ିକ ବାରମ୍ବାର ଦେଖା ଦେଉଛି । ହଜାର ହଜାର ଲୋକଙ୍କର ଓଡ଼ିଶା ବାହାରକୁ ପଳାୟନ ଓ ବିଭିନ୍ନ ଜିଲ୍ଲାରେ ଘଟୁଥିବା ଅନାହାର ମୃତ୍ୟୁ ପ୍ରତି ସର୍ବଭାରତୀୟ ଗଣମାଧ୍ୟମଗୁଡ଼ିକ ବିଶେଷ ଗୁରୁତ୍ୱ ଦେଇ ନାହାନ୍ତି । କାରଣ ଓଡ଼ିଶା ପାଇଁ ଏଥିରେ କିଛି ନୂତନତ୍ୱ ନାହିଁ ଓ ଏହି ମାଧ୍ୟମଗୁଡ଼ିକୁ ନୂତନତ୍ୱ ଦରକାର । ଓଡ଼ିଆ ଖବର କାଗଜମାନଙ୍କରେ ଯାହା ବାହାରୁଛି, ତାହା ରାଜ୍ୟର ଅମଲାତନ୍ତ୍ରକୁ ଓ ପ୍ରାୟ ସେହି ଚରିତ୍ରର ଜଣେ ମୁଖ୍ୟମନ୍ତ୍ରୀଙ୍କୁ ବିଚଳିତ କରୁନାହିଁ ।

ଚିର ମରୁଡ଼ି ପ୍ରପୀଡ଼ିତ ଏହି ରାଜ୍ୟରେ ଏପର୍ଯ୍ୟନ୍ତ ମରୁଡ଼ି ପ୍ରତିକାରର କୌଣସି ଦୀର୍ଘକାଳୀନ ଯୋଜନା ହୋଇପାରି ନାହିଁ କିମ୍ବା ମାନବୀୟ ବିପତ୍ତିମାନ ଘଟିଯାଉଥିବା ବେଳେ, ଅର୍ଥାତ୍ ଲୋକେ କାମଧନ୍ଦା ଖୋଜିବା ବେଳେ, ଶସ୍ତା ଖାଦ୍ୟଶସ୍ୟକୁ ଅପେକ୍ଷା କରିଥିବା ବେଳେ, ଅନାହାର ମୃତ୍ୟୁ ପୂର୍ବରୁ କିମ୍ବା ଆସନ୍ତା ଫସଲ ପାଇଁ ଋଣ, ବିହନ ଖୋଜିବା ବେଳେ କୌଣସି ବ୍ୟବସ୍ଥିତ, ସହଯୋଗମୂଳକ ନୀତି ସରକାରଙ୍କ ତରଫରୁ ଗ୍ରହଣ କରାଯାଏ ନାହିଁ । ଓଡ଼ିଶାରେ ଗୋଟିଏ ପଟେ ମହାବାତ୍ୟାର ଶିକାର ହୋଇ ଓ ଅନ୍ୟ ଏକ ପଟେ ମହାମରୁଡ଼ିର ଶିକାର ହୋଇ ରାଜ୍ୟର ଦୁଇ କୋଟିରୁ ଊର୍ଦ୍ଧ୍ୱ ଲୋକ ଛଟପଟ ହେଉଥିବା ସମୟରେ ମୁଖ୍ୟମନ୍ତ୍ରୀ ଓ ବିଧାୟକମାନେ ବିଧାନସଭା ସଦସ୍ୟମାନଙ୍କର ମାସିକ ଦରମା ଓ ଭତ୍ତା ୩୦ ହଜାର ଟଙ୍କା କରିବା ପାଇଁ ମସୁଧା ଚଳାଉଛନ୍ତି । ଯେଉଁ ରାଜ୍ୟର କୋଷାଗାରରେ ମରୁଡ଼ିଗ୍ରସ୍ତ ଅଞ୍ଚଳରେ ରୋଜଗାର ସୃଷ୍ଟି କରିବା ପାଇଁ ଯଥେଷ୍ଟ ପାଣ୍ଠି ନାହିଁ, ନିଅଣ୍ଟିଆ ପାଣ୍ଠି ଦର୍ଶାଇ ଶିକ୍ଷକ, ଡାକ୍ତର ଓ ନର୍ସ୍ ପ୍ରଭୃତି ଚାକିରିଗୁଡ଼ିକର ଉଚ୍ଛେଦ କରିବା ପାଇଁ ଯେଉଁ ରାଜ୍ୟ ସ୍ଥିର କରିଛି ଓ ସ୍କୁଲ୍ ଓ କଲେଜ୍‌ର ଦରମା ବୃଦ୍ଧି, ଜଳକର ବୃଦ୍ଧି ଆଦି ବୋଝ ସାଧାରଣ ଜନତା ଉପରେ ପକାଉଛି, ସେହି ରାଜ୍ୟର ପ୍ରତିନିଧିମାନେ ବାତ୍ୟା, ମରୁଡ଼ି ପ୍ରପୀଡ଼ିତ ଓଡ଼ିଶାବାସୀଙ୍କୁ ନିଷ୍ଠୁର ଭାବରେ ଉପହାସ କରୁଛନ୍ତି ନିଶ୍ଚୟ ।

ଏହି ତିରିଶ ହଜାରିଆ ବିଧାୟକମାନେ ବ୍ରିଟିଶ୍ କାଳରୁ ରାଜ୍ୟର ମରୁଡ଼ି ସାହାଯ୍ୟ ସଂହିତାକୁ ବଦଳାଇ ନାହାନ୍ତି । ତେଣୁ କ୍ରପ୍ କଟିଂ (ଶସ୍ୟ କଟା) ନହେବା ପର୍ଯ୍ୟନ୍ତ ମରୁଡ଼ିର ତୀବ୍ରତାକୁ ପ୍ରଶାସନ କାଗଜପତ୍ରରେ ସ୍ୱୀକାର କରେ ନାହିଁ ଓ ଅନାହାରରେ ମୃତ୍ୟୁବରଣ କରିଥିବା ଲୋକଙ୍କୁ ପେଟ ରୋଗରେ ମରିଗଲେ ବୋଲି ରିପୋର୍ଟ ତିଆରି କରେ । ଅନାହାର ଯେ ଉପବାସ ନୁହେଁ ଓ ଅନାହାର ଅବସ୍ଥାରେ ଲୋକ ନିଶ୍ଚୟ ଅଖାଦ୍ୟ ଖାଇ ରୋଗାକ୍ରାନ୍ତ ହେବ - ଏହି କଥା ଶିକ୍ଷାରେ ଶ୍ରେଷ୍ଠ ଯୋଗ୍ୟତା ହାସଲ କରିଛନ୍ତି ବୋଲି ଭଣ୍ଡାମି କରୁଥିବା ଆଇ.ଏ.ଏସ୍. ଓ ଓ.ଏ.ଏସ୍. ଅଫିସରମାନେ ଓ ଭୋଟ ଠିକାଦାରମାନଙ୍କୁ ଲାଞ୍ଚ ଦେଇ ନିର୍ବାଚିତ ହେଉଥିବା ମନ୍ତ୍ରୀମାନେ ନିର୍ଲ୍ଲଜ ଭାବରେ କହିଥାଆନ୍ତି । ମରୁଡ଼ି ସାହାଯ୍ୟ ସଂହିତାର ସଂଶୋଧନ ପ୍ରଥମ କର୍ତ୍ତବ୍ୟ ନା ଦରମା ବଢ଼ାଇବା ପ୍ରଥମ କାର୍ଯ୍ୟ ?

୨

ମରୁଡ଼ିର ତାତ୍ତ୍ୱିକ ଅର୍ଥ ହେଉଛି ଜଳର ନିଅଣ୍ଟିଆ ସ୍ଥିତି । ପୃଥିବୀରେ ଜଳର ନିଅଣ୍ଟକୁ ଆମେ ହୃଦୟଙ୍ଗମ କରିବା ଦରକାର । ତାହାହେଲେ ଜଳ ଅମଳ ଯୋଜନାଗୁଡ଼ିକର ଗୁରୁତ୍ୱକୁ ଆହୁରି ଗାମ୍ଭୀର୍ଯ୍ୟ ସହକାରେ ବୁଝିପାରିବା । ଉପରୋକ୍ତ ଚରିତ୍ରର ଶାସକମାନେ, ଲାଭସର୍ବସ୍ୱ ଶିଳ୍ପପତିମାନେ ଓ ଧନୀକ ମଧ୍ୟ ବର୍ଗର ଆତ୍ମକୈନ୍ଦ୍ରିକ ଶିକ୍ଷିତ ଶ୍ରେଣୀ ଯେପରି ଭାବରେ ପୃଥିବୀର ଦେଶମାନଙ୍କୁ ପରିଚାଳିତ କରୁଛନ୍ତି ଓ ବିକାଶ ତଥା ପ୍ରଗତିର ଆସ୍ଫାଳନ କରୁଛନ୍ତି, ସେମାନେ ଏହି ମାଟି-ଜଳ-ପବନର ପୃଥିବୀକୁ ଅଳ୍ପାୟୁ କରି ଦେଲେଣି । ପ୍ରତ୍ୟେକ ଭୂଖଣ୍ଡରେ ମରୁଡ଼ିର ଶୁଷ୍କତା ଅନୁଭୂତ ହେଉଛି ।

ଆଧୁନିକ ବିକାଶର ଦ୍ୱାହି ଦେଇ ଭାରତରେ ପାଞ୍ଚ ହଜାରରୁ ଊର୍ଦ୍ଧ୍ୱ ବଡ଼ ନଦୀ ବନ୍ଧ ତିଆରି ହୋଇଛି, କିନ୍ତୁ ଶୁଷ୍କତାର ବିସ୍ତାର ହୋଇ ଚାଲିଛି । ଦେଶର ଅଧିକାଂଶ ଚାଷ ଜମି ଏବେ ମଧ୍ୟ ଜଳସେଚିତ ନୁହେଁ ଓ ଯେଉଁ ଜମିଗୁଡ଼ିକରେ କୃତ୍ରିମ ଜଳସେଚନ ନ ଥାଇ ଚାଷ ହୋଇପାରୁ ଥିଲା, ସେଗୁଡ଼ିକର ଜଳଧାରଣ କ୍ଷମତା କମି ଯିବାରୁ ଉତ୍ପାଦିକା ଶକ୍ତି ମଧ୍ୟ କମି ଯାଉଛି । କେବଳ ଜଙ୍ଗଲ କଟା ନୁହେଁ, ଆଧୁନିକ ବିକାଶର ପ୍ରତ୍ୟେକ ପଦକ୍ଷେପ ଧରିତ୍ରୀର ଜଳୀୟତାକୁ ନଷ୍ଟ କରୁଛି । ସହରୀକରଣ, ରାସାୟନିକ ସାର ଓ କୀଟନାଶକର ବ୍ୟାପକ ପ୍ରୟୋଗ, କଳ ତିଆରି ଜିନିଷର ମାତ୍ରାଧିକ ବ୍ୟବହାର, କଳକାରଖାନାର ନିଷ୍କାସିତ ବର୍ଜ୍ୟ, ଏପରି ଅବସ୍ଥା ସୃଷ୍ଟି କରୁଛି ।

ଯେଉଁ ସମୟରେ (ଏପ୍ରିଲ୍-ମେ' ୨୦୦୦ରେ) ଭାରତର ପାଞ୍ଚଟି ରାଜ୍ୟର ଜଳାଭାବ ଗଣମାଧ୍ୟମ ଦ୍ୱାରା ପ୍ରଚାରିତ ହେଉଥିଲା, ଠିକ୍ ସେହି ସମୟରେ ଦକ୍ଷିଣ ଆମେରିକୀୟ ଦେଶ ବଲିଭିଆରେ ଜଳାଭାବକୁ ନେଇ ଏକ ତୁମୁଳ କାଣ୍ଡ ଘଟିଲା । ଏହି ଘଟଣାକୁ କିନ୍ତୁ ଆମ ଗଣମାଧ୍ୟମଗୁଡ଼ିକ ପ୍ରଚାର କଲେ ନାହିଁ । ବଲିଭିଆରେ ପାଣି ପାଇଁ ଜନସଙ୍ଘର୍ଷ ଫଳରେ ଜରୁରୀକାଳୀନ ପରିସ୍ଥିତି ଘୋଷଣା କରାଯାଇ ଥିଲା । ଦୈନନ୍ଦିନ ବ୍ୟବହାରରେ ପାଣି ଯୋଗାଇବା ପାଇଁ ସେଠାରେ ଗୋଟିଏ ବହୁରାଷ୍ଟ୍ରୀୟ କମ୍ପାନୀକୁ ଠିକା ଦିଆଯାଇ ଥିଲା । ପାଣିର ମୂଲ୍ୟକୁ ସେହି କମ୍ପାନୀ ବହୁତ ବଢ଼ାଇଦେଲା ଓ ବର୍ଦ୍ଧିତ ମୂଲ୍ୟ ଦେଇ ନ ପାରି ବହୁ ଲୋକ ବିକଳ ହେଲେ । ତେଣୁ ତାହା ଏକ ଗଣତାନ୍ତ୍ରିକ ଦେଶ ନ ହେଲେ ମଧ୍ୟ ଜନସଙ୍ଘର୍ଷ ଦେଖାଗଲା । ନିରଙ୍କୁଶ ଦମନଲୀଳା ଚଳାଇବା ଉଦ୍ଦେଶ୍ୟରେ ରାଷ୍ଟ୍ରପତି ଜରୁରୀକାଳୀନ ପରିସ୍ଥିତିର ଘୋଷଣା କଲେ । ଅନେକ ଲୋକ ପୋଲିସ୍ ଗୁଳିରେ ପ୍ରାଣ ହରାଇଲେ । ହଜାର ହଜାର ଲୋକଙ୍କୁ ଜେଲ୍ ଭିତରେ ଠୁସି ଦିଆଗଲା ।

ସାବଧାନ୍ । ଜଳର ଘରୋଇକରଣ ଆମ ଦେଶରେ ବି ହେବାକୁ ଯାଉଛି । ଜଳଯୋଗାଣ ଓ ଜଳସେଚନ ଏଣିକି କମ୍ପାନୀମାନେ କରିବେ ଓ ସେମାନେ ସବୁ ଜଳର ମାଲିକ ହୋଇଯିବେ । ଗୋଟିଏ ଦୃଷ୍ଟାନ୍ତ ବଲିଭିଆର, ଆଉ ଏକ ଦୃଷ୍ଟାନ୍ତ ଆମ ଦେଶର । ନର୍ମଦା ନଦୀ ଉପରେ ଆଉ ଏକ ମହାବନ୍ଧ ହେବାକୁ ଯାଉଛି, ମଧ୍ୟପ୍ରଦେଶର ମାହେଶ୍ୱର ଠାରେ । ଏହାର ମାଲିକ ହେବେ କପଡ଼ା ଶିଳ୍ପପତି ଏସ୍. କୁମାର୍ ଓ ତାଙ୍କର ଜର୍ମାନ୍ ସହଯୋଗୀ । ଏହି ବନ୍ଧ ତିଆରି ହେଲେ ତହିଁରୁ ଯେଉଁ ପାନୀୟ ଜଳ ବା କୃଷି ପାଇଁ ଜଳର ଯୋଗାଣ ହେବ କିମ୍ବା ବିଦ୍ୟୁତ୍ ଉତ୍ପାଦନ ହେବ, ତାହା ଉପରେ ବ୍ୟବସାୟିକ ଅଧିକାର ରହିବ ଏମାନଙ୍କର । ଅର୍ଥାତ୍ ପାଣି ଉପରେ କମ୍ପାନୀମାନଙ୍କର ମାଲିକାନା ହେବାର ଅଧ୍ୟାୟ ଭାରତରେ ଆରମ୍ଭ ହୋଇଛି । ନର୍ମଦା ବଞ୍ଚାଅ ଆନ୍ଦୋଳନ ଏହାର ବିରୋଧ କରୁଛି ଓ ଜନସଙ୍ଘର୍ଷ ମଧ୍ୟ ଚାଲିଛି ।

ଉପରୋକ୍ତ ଦୁଇଟି ଦୃଷ୍ଟାନ୍ତ ହୁଏତ ଆମକୁ ଭୟଭୀତ କରାଇବ ନାହିଁ । କିନ୍ତୁ ଏହା ଯଦି ଚାରିଆଡ଼େ ଚାଲେ, ତାହାହେଲେ କ'ଣ ହେବ ? ୟୁରୋପ୍‌ର ନେଦର୍‌ଲ୍ୟାଣ୍ଡ୍ ଦେଶର ହେଗ୍ ସହରରେ ଜଳ ଓ ତାହାର ଉପଯୋଗ ବିଷୟରେ ଗୋଟିଏ ଆନ୍ତର୍ଜାତିକ ସମ୍ମିଳନୀ ହୋଇଥିଲା ଓ ବିଭିନ୍ନ ଦେଶର ବଛା ବଛା ଲୋକ ସେଠାକୁ ଡକା

ହୋଇଥିଲେ । ସାହିତ୍ୟରେ ବୁକର୍ ପୁରସ୍କାର ପାଇ ପ୍ରସିଦ୍ଧ ହୋଇଥିବା ଭାରତର ଅରୁନ୍ଧତୀ ରାୟ ସେଠାକୁ ଯାଇଥିଲେ । ସେଠାରୁ ଫେରିବା ପରେ ଗୋଟିଏ ନିବନ୍ଧ ଲେଖି ସେ ଚେତାବନୀ ଦେଇଛନ୍ତି ଯେ, ଏହା ତାଙ୍କୁ ଏକ ଷଡ଼ଯନ୍ତ୍ର ପରି ମନେହେଲା । ବହୁରାଷ୍ଟ୍ରୀୟ କମ୍ପାନୀମାନେ ଗରିବ ଦେଶମାନଙ୍କୁ ଯାଇ ପାଣିର ବ୍ୟବସାୟ କରିବେ ଓ ପାଣି ଉପରେ ଅଧିକାର ପାଇଯିବେ । ଉକ୍ତ ସମ୍ମିଳନୀର କଥାବାର୍ତ୍ତା ଓ ଆଲୋଚନାରୁ ତାଙ୍କୁ ଏହି ଆଭାସ ମିଳିଲା ।

୩

ଆଗାମୀ କୋଡ଼ିଏରୁ ତିରିଶି ବର୍ଷ ମଧ୍ୟରେ ପୃଥିବୀରେ ଓ ଭାରତରେ ଖାଦ୍ୟର ଅଭାବ ଘଟିବ । ଭାରତରେ ଖାଦ୍ୟଶସ୍ୟର ଉତ୍ପାଦନ ଅତି ନିମ୍ନ ସ୍ତରରେ ରହୁଛି । ଏଥିପାଇଁ ମୁଖ୍ୟତଃ ସବୁଜ ବିପ୍ଳବ ଦାୟୀ । ବ୍ରିଟିଶ୍ ରାଜତ୍ୱ ପୂର୍ବରୁ ଭାରତର କୃଷି ଯେତେ ସମୃଦ୍ଧ ଥିଲା, ଆଜି ପର୍ଯ୍ୟନ୍ତ ଦେଶ ସେହି ସ୍ତରରେ ପହଞ୍ଚି ପାରି ନାହିଁ । ୧୯୦୫ରେ ଭାରତର ପ୍ରତ୍ୟେକ ଲୋକ ପାଇଁ ୫୪୯ ଗ୍ରାମ୍ ଖାଦ୍ୟଶସ୍ୟ ଉପଲବ୍ଧ ଥିଲା । ୧୯୯୫ରେ ୫୦୭ ଗ୍ରାମ୍ ହେଲା ଓ ୧୯୯୯-୨୦୦୦ରେ ୪୬୪ ଗ୍ରାମ୍ ହୋଇଛି । ଏହାର ବିସ୍ତୃତ ଆଲୋଚନା ନକରି ଏତିକି ଉଲ୍ଲେଖ କରିବା ଦରକାର ଯେ, ବ୍ରିଟିଶ୍ ଶାସନ ଭାରତର ଗ୍ରାମ୍ୟ ଅର୍ଥନୀତିକୁ ସମ୍ପୂର୍ଣ୍ଣ ନଷ୍ଟ କରିଦେଇ ସ୍ୱାଧୀନତା ବେଳକୁ (୧୯୪୭) ଏପରି ଅବସ୍ଥାରେ ପହଞ୍ଚାଇ ଦେଲା ଯେ, ପ୍ରାୟ ୧୫ ବର୍ଷ ପାଇଁ ଆମେରିକାରୁ ଖାଦ୍ୟ ଆମଦାନୀ କରିବାକୁ ହେଲା । କିନ୍ତୁ ଖାଦ୍ୟ ନିଅଣ୍ଟକୁ ପୂରା କରିବା ପାଇଁ ଭାରତ ବିଦେଶୀ ବୁଦ୍ଧିର ପାଲରେ ପଡ଼ିଲା ଓ ସବୁଜ ବିପ୍ଳବ ଆରମ୍ଭ କଲା । ଏହି ରଣନୀତି ଦ୍ୱାରା ସମଗ୍ର ଦେଶର ଜମିକୁ କୃଷି ଯୋଗ୍ୟ ନ କରି କେବଳ ଅଳ୍ପ କେତେକ ଅଞ୍ଚଳରେ କୃତ୍ରିମ ସାର, ବଡ଼ ବନ୍ଧର ଜଳସେଚନ ଓ କୀଟନାଶକ ଆଦି ଉପରେ ନିର୍ଭରଶୀଳ କୃଷି ଦ୍ୱାରା 'ଅଧିକ ଉପୁଜାଅ' ଅଭିଯାନ ଚଳା ହେଲା । ତେଣୁ ଖାଦ୍ୟ ଆମଦାନୀ ପରିବର୍ତ୍ତେ ସାର ଓ କୀଟନାଶକ ଆମଦାନୀ ଚାଲିଲା ଓ ବିଶ୍ୱବ୍ୟାଙ୍କ୍ ପାଖରେ ଋଣୀ ହୋଇ ବଡ଼ ବଡ଼ ବନ୍ଧ ନିର୍ମାଣର ଯୋଜନା ହେଲା ।

ଆରମ୍ଭରେ ପରିଣାମ ବହୁତ ଉତ୍ସାହଜନକ ମନେ ହେଉଥିଲା । କିନ୍ତୁ ୫୦ ବର୍ଷ ଭିତରେ ଭାରତର କୃଷି ଗୋଟିଏ ଦୁଷ୍ଟଚକ୍ରର ପରିକ୍ରମା କରିଛି । ଏକବିଂଶ ଶତାବ୍ଦୀ ଆରମ୍ଭ ହେବାବେଳକୁ କୃଷି ଉତ୍ପାଦନ କମି ଆସୁଛି । ଅଧିକାଂଶ କୃଷି ଜମି ମରୁଡ଼ି ଦ୍ୱାରା ଆକ୍ରାନ୍ତ ହୋଇଛନ୍ତି ଓ ଅତ୍ୟଧିକ ସାର ଓ କୀଟନାଶକ ପ୍ରୟୋଗ ଯୋଗୁଁ ପଞ୍ଜାବ୍‌ରେ ଜମିର ଉତ୍ପାଦିକା ଶକ୍ତି କମି ଚାଲିଛି । ଅର୍ଥାତ୍ ସାର ଓ କୀଟନାଶକର ପ୍ରୟୋଗ ଦ୍ୱାରା ଜମିର ଉର୍ବରତା ନଷ୍ଟ ହେଉଛି । ଏବେ ଏହା ବିଜ୍ଞାନ ସିଦ୍ଧ । ପୁଣି ଏକ ନୂତନ ବିଶ୍ୱ ବାଣିଜ୍ୟ ବ୍ୟବସ୍ଥାର ଦୁଷ୍ଟଚକ୍ରରେ ପଶି ଭାରତକୁ ଆବଶ୍ୟକ ନଥିଲେ ମଧ୍ୟ ଖାଦ୍ୟ ଆମଦାନୀ କରିବାକୁ ପଡୁଛି । ଏହା ଦ୍ୱାରା ଆମ ଦେଶର କୃଷକମାନେ ଅତି ଶସ୍ତାରେ ଖାଦ୍ୟଶସ୍ୟ ବିକ୍ରି କରି ଭାଳେଣିରେ ପଡ଼ିଛନ୍ତି । ଦେଶର ସଚେତ ନାଗରିକମାନେ ଏ ବିଷୟରେ ଚିନ୍ତା କରନ୍ତୁ ।

# ଜଗତୀକରଣ ଓ ଦାରିଦ୍ର୍ୟର ଉତ୍ପତ୍ତି

୧

ଉଣେଇଶି ଶହ ସତ୍‌ଚାଳିଶି ମସିହାର ଅଗଷ୍ଟ ପନ୍ଦର ଦିନ ଭାରତର ସ୍ୱାଧୀନତା ଦିବସରେ ମହାତ୍ମା ଗାନ୍ଧୀ ବିଷର୍ଣ୍ଣ ମନରେ ଥିଲେ । ବିଷାଦର ଅନେକ କାରଣ ଥିଲା । ଏହି ସ୍ୱାଧୀନତା ବିଷୟରେ ପଚରାଯିବାରୁ ତାଙ୍କର ମତ ଥିଲା, କେବଳ 'ରାଜନୈତିକ ସ୍ୱାଧୀନତା' ମିଳିଛି । ଅର୍ଥାତ୍, ଆଉ କେତେକ ପରାଧୀନତା ବାକି ରହିଛି । ତନ୍ମଧ୍ୟରେ ଆର୍ଥିକ ପରାଧୀନତା ଥିଲା ପ୍ରମୁଖ । ଆର୍ଥିକ ସ୍ୱାଧୀନତା କ'ଣ ? ଆର୍ଥିକ ଭାବରେ ସ୍ୱାଧୀନ ହେବା ପାଇଁ ଦୁଇଟି ଉପଲବ୍ଧି ଦରକାର । ପ୍ରଥମ, ରାଷ୍ଟ୍ରର ପ୍ରତ୍ୟେକ ଅଧିବାସୀଙ୍କୁ ମର୍ଯ୍ୟାଦା ସହ ଜୀବନଧାରଣ କରିବାର ଅର୍ଥନୈତିକ ସୁବିଧା ସୁଯୋଗ ମିଳିବ । ଦ୍ୱିତୀୟ, ରାଷ୍ଟ୍ରର ମୌଳିକ କାର୍ଯ୍ୟଗୁଡ଼ିକର ସମ୍ପାଦନ ପାଇଁ ଯେଉଁ ଆର୍ଥିକ ସମ୍ବଳ ଦରକାର ସେଥିପାଇଁ ଅନ୍ୟ ଦେଶ (ବିଦେଶ) ଉପରେ ଅବଲମ୍ବିତ ହେବାକୁ ପଡ଼ିବ ନାହିଁ ।

ରାଷ୍ଟ୍ରର ମୌଳିକ କାର୍ଯ୍ୟ ହେଉଛି ପ୍ରଶାସନିକ କାର୍ଯ୍ୟ ଓ ସମସ୍ତଙ୍କ ପାଇଁ ନ୍ୟୁନତମ ଭୋଜନ, ବସ୍ତ୍ର, ଆବାସ, ଶିକ୍ଷା ଓ ସ୍ୱାସ୍ଥ୍ୟର ଆୟୋଜନ । ନ୍ୟୁନତମ କହିଲେ ସଭ୍ୟ ବୋଲାଉଥିବା ମନୁଷ୍ୟ ସମାଜ ପାଇଁ ଯାହା ଅନ୍ତତଃ ପକ୍ଷେ ଦରକାର । ପ୍ରତିରକ୍ଷା ମଧ୍ୟ ରାଷ୍ଟ୍ରର ଏକ ମୌଳିକ କାର୍ଯ୍ୟ । କିନ୍ତୁ ଆଧୁନିକ ଯୁଗରେ କୌଣସି ରାଜ୍ୟ ଦୀର୍ଘକାଳ ଧରି ନିଜର ପ୍ରତିରକ୍ଷା କରିପାରିବ ନାହିଁ, ଯଦି ପଡ଼ୋଶୀ ଦେଶମାନଙ୍କର ସହଯୋଗ ନ ମିଳେ । ତେଣୁ ପ୍ରତିରକ୍ଷା ନିମନ୍ତେ ପ୍ରତ୍ୟେକ ରାଷ୍ଟ୍ରକୁ ନିଜର ପଡ଼ୋଶୀମାନଙ୍କୁ ପ୍ରବର୍ତ୍ତାଇ ଆଞ୍ଚଳିକ ପ୍ରତିରକ୍ଷାର ବ୍ୟବସ୍ଥା କରିବାକୁ ହେବ । ଉପରୋକ୍ତ ମୌଳିକ ଆବଶ୍ୟକତାଗୁଡ଼ିକୁ ଛାଡ଼ିଦେଲେ, ଅନ୍ୟ ଯେଉଁ ସବୁ ଆବଶ୍ୟକତା ରହିଲା, ସେ ସବୁ ପୂରଣ କରିବା ପାଇଁ ଅନ୍ୟ ଦେଶମାନଙ୍କ ସାଙ୍ଗରେ ପରସ୍ପରାବଲମ୍ବନର ସିଦ୍ଧାନ୍ତ ଗ୍ରହଣ କରିବାକୁ ହେବ । ସ୍ୱାବଲମ୍ବନ ଓ ପରସ୍ପରାବଲମ୍ବନ ଏହି ଦୁଇଟି ପରିଧିକୁ ନେଇ, ଗୋଟିଏ ଦେଶର ସ୍ୱାଭିମାନୀ ଅର୍ଥ ବ୍ୟବସ୍ଥା ଗଢ଼ାଯାଇପାରେ ।

ସ୍ୱାଧୀନତା ଆନ୍ଦୋଳନ ବେଳେ ଆର୍ଥିକ ସ୍ୱାଧୀନତାର ଉଭୟ ପାର୍ଶ୍ୱ ଉପରେ ଜୋର୍ ଦିଆଯାଉଥିଲା । ସ୍ୱାଧୀନତାର ପ୍ରାରମ୍ଭିକ ବର୍ଷମାନଙ୍କରେ ଭାରତ ଖାଦ୍ୟ ପଦାର୍ଥରେ ଆତ୍ମନିର୍ଭର ନଥିଲା । ଭାରତର ଖାଦ୍ୟଶସ୍ୟ ଅଭାବକୁ ପୂରଣ କରିବା ପାଇଁ ଆମେରିକା

ତାହାର ବଦାନ୍ୟତାର ଆଢୁଆଳରେ ଭାରତୀୟ ରାଜନୀତି ଓ ଅର୍ଥନୀତିରେ ଅନୁପ୍ରବେଶ କଲା ଓ ସର୍ବପ୍ରଥମେ ଗ୍ରାମାଞ୍ଚଳର ବିକାଶ ନୀତିକୁ ପ୍ରଭାବିତ କଲା । ଏହା ପୂର୍ବରୁ ଭାରତର ଅର୍ଥ ବ୍ୟବସ୍ଥାରେ ଆମେରିକାର ଅନୁପ୍ରବେଶ ନଗଣ୍ୟ ଥିଲା । ପଞ୍ଚବାର୍ଷିକ ଯୋଜନାଗୁଡ଼ିକର ପ୍ରାରମ୍ଭିକ ଉଦ୍ଦେଶ୍ୟ ଅନ୍ତତଃ ମୌଳିକ ବସ୍ତୁଗୁଡ଼ିକରେ ଆତ୍ମନିର୍ଭରଶୀଳତା ଥିଲା । ମୌଳିକ ବସ୍ତୁଗୁଡ଼ିକ କହିଲେ: ଖାଦ୍ୟଶସ୍ୟ, ଇସ୍ପାତ୍, ସିମେଣ୍ଟ୍ ଆଦି । ପରବର୍ତ୍ତୀ କାଳରେ ଭାରତର ଭବିଷ୍ୟତ ନିର୍ମାଣ ପାଇଁ ଦେଶର ଶାସକ ଶ୍ରେଣୀ ଅଧିକରୁ ଅଧିକ ମାତ୍ରାରେ ପାଶ୍ଚାତ୍ୟ ଦେଶମାନଙ୍କର ମାର୍ଗଦର୍ଶନ ଦ୍ୱାରା ପରିଚାଳିତ ହୋଇବସିଲା । ଆଧୁନିକୀକରଣ ଓ ଅତ୍ୟାଧୁନିକୀକରଣ ସେମାନଙ୍କର ପ୍ରଧାନ ଲକ୍ଷ୍ୟ ହୋଇଗଲା । ବ୍ୟକ୍ତିଗତ ଓ ସାମାଜିକ ଜୀବନର ବିଭିନ୍ନ କ୍ଷେତ୍ରରେ ଅତ୍ୟାଧୁନିକ ପ୍ରଯୁକ୍ତି ବିଦ୍ୟା (ଟେକ୍ନୋଲଜି)ର ପ୍ରୟୋଗ କରିବା ହେଉଛି ଆଧୁନିକୀକରଣ ।

ଗୋଟିଏ ଗରିବ ଓ ବିକାଶଶୀଳ ଦେଶର ଅର୍ଥ ବ୍ୟବସ୍ଥାରେ ଯଦି ଆଧୁନିକୀକରଣକୁ ପ୍ରଥମ ଗୁରୁତ୍ୱ ଦିଆଯିବ ଓ ଜୀବନଯାପନ ପ୍ରଣାଳୀକୁ ମଧ୍ୟ ଅତ୍ୟାଧୁନିକ କରିବାପାଇଁ ପ୍ରୋତ୍ସାହନ ଦିଆଯିବ, ତାହାହେଲେ ଏଇ ବାବଦରେ ରାଷ୍ଟ୍ର ଉପରେ ଏତେ ବେଶୀ ଆର୍ଥିକ ବୋଝ ପଡ଼ିବ ଯେ, ତାକୁ ତୁଲାଇବାକୁ ହେଲେ ଧନୀ ରାଷ୍ଟ୍ରମାନଙ୍କ ଠାରୁ ବାରମ୍ବାର ସାହାଯ୍ୟ ଲୋଡ଼ିବାକୁ ହେବ । ତାହା ସତ୍ତ୍ୱେ ରାଷ୍ଟ୍ରର ସନ୍ତୋଷଜନକ ଆଧୁନିକୀକରଣ ହୋଇପାରବ ନାହିଁ; ସବୁକିଛି ଅଧାପନ୍ତରିଆ ରହିବ ।

ତେଣୁ ଏହି ନିର୍ଭରତା ନିରବଚ୍ଛିନ୍ନ ଭାବରେ କିଛି ସମୟ ଚାଲିବା ପରେ ଚିରସ୍ଥାୟୀ ହୋଇଯିବ । ଧନୀ ଓ ବିକଶିତ ରାଷ୍ଟ୍ରମାନେ ଏହି ନିର୍ଭରତାକୁ ଚିରସ୍ଥାୟୀ ରୂପ ଦେବା ପାଇଁ ନାନା ପ୍ରକାରର ଚାପ ପକେଇ ସାହାଯ୍ୟ ମାଗୁଥିବା ଦେଶମାନଙ୍କର ଆର୍ଥିକ ନୀତିଗୁଡ଼ିକୁ ବଦଳାଇ ଦେବେ ଓ ନିର୍ଭରଶୀଳତାର ସୁଯୋଗ ନେଇ ମହାଶକ୍ତିମାନେ ଗରିବ ଦେଶମାନଙ୍କର ଅର୍ଥନୀତିକୁ ଏପରି ଅବ୍ୟବସ୍ଥିତ ଓ ପୋଲା କରିଦେବେ ଯେ, ଏହି ଦେଶମାନଙ୍କର ଅର୍ଥନୈତିକ ନିଜତ୍ୱ ବୋଲି କିଛି ରହିବ ନାହିଁ । ରାଜନୀତିକୁ ମଧ୍ୟ ଦୁର୍ନୀତିଗ୍ରସ୍ତ ଓ ଦୁର୍ବଳ କରିଦିଆଯିବ । କାରଣ, ଯେଉଁ ଶାସକ ଦଳ ମହାଶକ୍ତିମାନଙ୍କର ନିର୍ଦ୍ଦେଶ ନ ମାନିବ ତାହାକୁ ସାହାଯ୍ୟ ବା ଋଣ କିଛି ଦିଆଯିବ ନାହିଁ ବୋଲି ଧମକ୍ ଦିଆଯିବ । ଗାଦିଚ୍ୟୁତ କରିବାର ଉପାୟ ମଧ୍ୟ ସେମାନେ ଗ୍ରହଣ କରିବେ । ଭାରତରେ ବର୍ତ୍ତମାନ ଦୁଇଟି ମୁଖ୍ୟ ଶାସକ ଦଳ ଅଛନ୍ତି – କଂଗ୍ରେସ ଓ ଭାରତୀୟ ଜନତା ପାର୍ଟି । ଉଭୟ ଦଳ ମହାଶକ୍ତିମାନଙ୍କର ନିର୍ଦ୍ଦେଶ ମାନିବାକୁ ପ୍ରସ୍ତୁତ ଅଛନ୍ତି । ଏମାନଙ୍କ ଭିତରୁ ଯେ ମଧ୍ୟ ଭାରତର ଶୀର୍ଷ ଗାଦିରେ ବସୁ, ମହାଶକ୍ତିମାନେ ଭାରତ ବିଷୟରେ ନିଶ୍ଚିନ୍ତ ରହିବେ । ତେଣୁ ଭାରତର ଶିକ୍ଷା, ସ୍ୱାସ୍ଥ୍ୟ, ବିତ୍ତ, କୃଷି, ଶିଳ୍ପ ଓ ପ୍ରଶାସନ, ସବୁ କ୍ଷେତ୍ରରେ ବିଦେଶୀ ଶକ୍ତିମାନଙ୍କର ନିୟନ୍ତ୍ରଣ ସ୍ଥାପିତ ହୋଇସାରିଛି । ବିଶ୍ୱବ୍ୟାଙ୍କ୍ ଦ୍ୱାରା ଅନୁମୋଦିତ ବ୍ରିଟିଶ ସଂସ୍ଥା ଡି.ଏଫ୍.ଆଇ.ଡ଼ି., ଓଡ଼ିଶା ଓ ଆଉ କେତେକ ରାଜ୍ୟର ବିତ୍ତ ବ୍ୟବସ୍ଥାକୁ ବର୍ତ୍ତମାନ ପରିଚାଳିତ କରୁଛି ।

୨

ଆଞ୍ଚଳିକ ବିଷମତା ଆଧୁନିକ ସଭ୍ୟତାର ଏକ ବିଶିଷ୍ଟ ଲକ୍ଷଣ । ସର୍ବପ୍ରଥମ ଆଞ୍ଚଳିକ ବିଷମତା ହେଉଛି ବିଶ୍ୱସ୍ତରରେ – ସମୃଦ୍ଧ ଦେଶ ଓ ବିକାଶଶୀଳ ଦେଶମାନଙ୍କ ମଧ୍ୟରେ ଥିବା ବିଷମତା । ପୁଣି ପ୍ରତ୍ୟେକ ବିକାଶଶୀଳ ଦେଶରେ ଥିବା ଆଭ୍ୟନ୍ତରୀଣ ଆଞ୍ଚଳିକ ବିଷମତା । ଯଦି ବଡ଼ ଦେଶ ହୋଇଥିବ ଓ ସଙ୍ଘୀୟ ବ୍ୟବସ୍ଥା ହୋଇଥିବ, ତାହାହେଲେ ପ୍ରଥମେ ଦେଖାଯିବ ଯେ, କେତେକ ରାଜ୍ୟ ବା ପ୍ରଦେଶ ବେଶୀ ଅନୁନ୍ନତ ହୋଇଛନ୍ତି ଓ ଅନ୍ୟ କେତେକ ଅପେକ୍ଷାକୃତ ଉନ୍ନତ ବା ସମୃଦ୍ଧ ଭାବରେ ଜଣାପଡୁଛନ୍ତି । ପୁଣି ପ୍ରତ୍ୟେକ ରାଜ୍ୟ ଭିତରେ ସମୃଦ୍ଧ ଅଞ୍ଚଳ ଓ ଅନୁନ୍ନତ ଅଞ୍ଚଳ । ଜିଲ୍ଲାମାନଙ୍କୁ ମଧ୍ୟ ଏପରି ଭାବରେ ଦୁଇ ଭାଗ କରିହେବ । ଏହା ଛଡ଼ା ସର୍ବତ୍ର ଗ୍ରାମ ଓ ସହର ମଧ୍ୟରେ ବିଷମତା ତ ରହିଛି । ତାହାର ତଳକୁ ତଳକୁ ହୋଇ ଏହି ଯେ ବହୁସ୍ତରୀୟ ଆଞ୍ଚଳିକ ବିଷମତା ସୃଷ୍ଟି ହୋଇଛି, ତାହାର ମୁଖ୍ୟ କାରଣ ହେଲା, ଅତ୍ୟାଧୁନିକୀକରଣର ଖର୍ଚ୍ଚ ଏତେ ବେଶୀ ଯେ, ଗୋଟିଏ ବିକାଶଶୀଳ ଦେଶର ଅଳ୍ପ କେତେକ ନିର୍ଦ୍ଦିଷ୍ଟ ଅଞ୍ଚଳକୁ ହିଁ ଆଧୁନିକ ଉପକରଣ ଯୋଗାଇ ଦିଆଯାଇପାରୁଛି ।

ଯେତେବେଳେ ଜୀବନଯାପନର ପ୍ରଣାଳୀକୁ ମଧ୍ୟ ଆଧୁନିକ କରାଯାଉଛି, ସେତେବେଳେ ଏକ ମୁଷ୍ଟିମେୟ ଶ୍ରେଣୀ ପାଖରେ ହିଁ ଆଧୁନିକ ସୁଖସୁବିଧା ପହଞ୍ଚାଇବା ସମ୍ଭବ ହେଉଛି । ସେମାନଙ୍କର ବେତନ, ଭତ୍ତା ଓ ଆୟକୁ ବହୁତ ବଢ଼େଇ ଦିଆହେଉଛି । ଏତେ ବେଶୀ ବେତନ ବୃଦ୍ଧି ଆଗରୁ ହେଉନଥିଲା । ବେତନ ବୃଦ୍ଧି ନହେଲେ ଏମାନେ କମ୍ପ୍ୟୁଟର, ମୋଟରକାର୍, ସେଲ୍‌ଫୋନ୍ ଓ ବିଭିନ୍ନ ରକମର ବିଦେଶୀ ଉପଭୋକ୍ତା ସାମଗ୍ରୀର ବ୍ୟବହାର କରିବେ କିପରି ? ଯେହେତୁ ଅଳ୍ପ ଲୋକଙ୍କ ପାଇଁ ହେଉଥିବା ଖର୍ଚ୍ଚରୁ କାଟ କରିବାକୁ ପଡୁଛି; ତେଣୁ ବେଶୀଭାଗ ଲୋକଙ୍କ ପାଇଁ ନିର୍ଦ୍ଧାରିତ ବ୍ୟୟ ଅଟକଳରୁ କାଟି ଦେବାକୁ ପଡୁଛି । କୃଷକ, ଶ୍ରମିକ ଓ କାରିଗର ଶ୍ରେଣୀକୁ ମିଳୁଥିବା ଅନୁଦାନ ଓ ରିହାତିକୁ କମେଇ ଦେବା, ସେମାନଙ୍କ ଉପରେ ଅଧିକ ଟିକସ ବସାଇବା, ତୃତୀୟ ଓ ଚତୁର୍ଥ ଶ୍ରେଣୀ କର୍ମଚାରୀମାନଙ୍କର ନିଯୁକ୍ତି ବନ୍ଦ କରିଦେବା, ସ୍କୁଲ୍ ଓ କଲେଜ୍‌ର ଦରମା ଓ ସ୍ୱାସ୍ଥ୍ୟ ସେବାର ମୂଲ୍ୟକୁ ବଢ଼େଇଦେବା, ବି.ପି.ଏଲ୍. ଚାଉଳର ଦାମ୍ ବଢ଼ାଇବା, ଏହିସବୁ ଉପାୟରେ ତଳ ଶ୍ରେଣୀର ପ୍ରାପ୍ୟକୁ ଊଣା କରିବା ଦ୍ୱାରା ହିଁ ଅଳ୍ପ ଲୋକଙ୍କ ପାଇଁ ଆଧୁନିକ ଉପଭୋଗର ବ୍ୟବସ୍ଥା କରିହେଉଛି ।

ଅର୍ଥାତ୍ ଗୋଟିଏ ଆଡ଼େ ଆଞ୍ଚଳିକ ବିଷମତା ସୃଷ୍ଟି ହେଉଛି ଓ ଅନ୍ୟଆଡ଼େ ଶ୍ରେଣୀଗତ ବିଷମତାର ମଧ୍ୟ ବୃଦ୍ଧି ଘଟୁଛି । ଉଭୟ ପ୍ରକାରର ବିଷମତାର ସଂଯୋଗରେ ଏକ ବହୁସ୍ତରୀୟ ବିଷମତାର ମାନଚିତ୍ର ସୃଷ୍ଟି ହେଉଛି । ଧନୀମାନଙ୍କ ମଧ୍ୟରେ ଉଚ୍ଚ ମଧ୍ୟବିତ୍ତ, ନିମ୍ନ ମଧ୍ୟବିତ୍ତ, ଗରିବ ମଧ୍ୟବିତ୍ତ ତଥା ଦରିଦ୍ର ଶ୍ରେଣୀ ମଧ୍ୟରେ ଦରିଦ୍ର ଓ ଅତ୍ୟନ୍ତ ଦରିଦ୍ର – ଏହିପରି ଶହ ଶହ ଆର୍ଥିକ ଶ୍ରେଣୀ ଭାରତ ଭଳି ଦେଶମାନଙ୍କରେ ସୃଷ୍ଟି ହେଉଛନ୍ତି । ସାରା ପୃଥିବୀର ଏକ ଆର୍ଥିକ ମାନଚିତ୍ର ଆଙ୍କିଲେ ଜଣାପଡ଼ିବ ଯେ, ସହସ୍ର ପ୍ରକାରର ଆର୍ଥିକ ବିଷମତା ଉପୁଜୁଛି । ସମାଜବିଜ୍ଞାନୀ, ବିଶ୍ୱସ୍ତରୀୟ ସଙ୍ଗଠନ ତଥା ଅର୍ଥନୀତି

ବିଶାରଦମାନେ କହୁଛନ୍ତି ସମୁଦାୟ ବିଶ୍ୱର ସମ୍ପଳର ୮୦ ଭାଗ ଭୋଗ କରୁଛନ୍ତି ବିଶ୍ୱ ଜନସଂଖ୍ୟାର ୨୦ ଭାଗ ମଣିଷ, ଅର୍ଥାତ୍, ୧୨୦ କୋଟି ଲୋକ । ଅବଶିଷ୍ଟ ୨୦ ଭାଗ ସମ୍ପତ୍ତି ବଣ୍ଟାକୁଣ୍ଟା ହେଉଛି ଜନସଂଖ୍ୟାର ୮୦ ଭାଗ ବା ୪୮୦ କୋଟି ଲୋକଙ୍କ ଭିତରେ । ଏମାନଙ୍କ ଭିତରେ ତଳ-ଉପର ହୋଇ ଅନେକ ସ୍ତର ଓ ଶ୍ରେଣୀ । ମାନବ ଇତିହାସର କୌଣସି ଯୁଗରେ ଏତେ ବେଶୀ ବିଷମତା ଦେଖାଯାଇ ନ ଥିଲା ।

## ୩

ବିଷମତା ବୃଦ୍ଧିର ଏହି ତଥ୍ୟଗୁଡ଼ିକୁ କେହି ଖଣ୍ଡନ କରିପାରିବେ ନାହିଁ । କେହି କହିପାରିବେ ନାହିଁ ଯେ, ଜଗତୀକରଣର ତୀବ୍ର ପ୍ରସାର ଫଳରେ ପୃଥିବୀର ଦାରିଦ୍ର୍ୟ କମୁଛି ବା ବିଷମତା ହ୍ରାସ ପାଉଛି । ବରଂ ବର୍ଦ୍ଧିଷ୍ଣୁ ବିଷମତା ଫଳରେ ନାନା ପ୍ରକାରର ସାମାଜିକ ଅସନ୍ତୁଳନ ଦେଖାଯାଉଛି ଓ ଦୁର୍ନୀତି ତଥା ବିଶୃଙ୍ଖଳା ବଢ଼ିଚାଲିଛି । ଆଧୁନିକୀକରଣ ନାଁରେ ଗରିବ ଦେଶମାନେ ଧନୀ ଦେଶମାନଙ୍କ ଉପରେ ଅଧିକ ନିର୍ଭରଶୀଳ ହୋଇ ତାଙ୍କର ଅନୁଗତ ହୋଇପଡ଼ିଛନ୍ତି । ସାମ୍ରାଜ୍ୟବାଦର ଏକ ନୂଆ ଅଧ୍ୟାୟ ଖୋଲିଛି ଓ ଏଥିରେ ବିଷମତା, ଦୁର୍ନୀତି ଓ ବିଶୃଙ୍ଖଳା ତୀବ୍ର ଭାବରେ ବଢ଼ିଛି । ଜନସାଧାରଣଙ୍କର ଆର୍ଥିକ ଅସହାୟତା ଓ ଅସନ୍ତୁଷ୍ଟ ଗୋଷ୍ଠୀମାନଙ୍କ ଦ୍ୱାରା ଆତଙ୍କବାଦର ଧମକ୍ ଏହାର ଦୁଇଟି ଚରମ ପରିଣତି ।

ମିଳିତ ଜାତିସଙ୍ଘର ୟୁ.ଏନ୍.ଡ଼ି.ପି. ରିପୋର୍ଟ୍ ଅନୁଯାୟୀ ଦରିଦ୍ରତମ ଦେଶମାନଙ୍କର ସଂଖ୍ୟାରେ ବୃଦ୍ଧି ଘଟିଛି । ବିକାଶଶୀଳ ଦେଶମାନଙ୍କରେ ପ୍ରାଥମିକ-ମାଧ୍ୟମିକ ଶିକ୍ଷାର ବିସ୍ତାର ହେଉନାହିଁ, ବେକାରୀ ବୃଦ୍ଧି ଯୋଗୁଁ ମଧ୍ୟବିତ୍ତ ଶ୍ରେଣୀରେ ଆର୍ଥିକ ଅନିଶ୍ଚିତତା ବଢ଼ିଛି ଓ ଆତ୍ମହତ୍ୟାର ମଧ୍ୟ ପ୍ରାବଲ୍ୟ ଘଟିଛି । ଆଧୁନିକ ଯୁଗରେ ଦାରିଦ୍ର୍ୟର ଉତ୍ପତ୍ତିକୁ ଏହି ପରିପ୍ରେକ୍ଷୀରେ ଦେଖିବାକୁ ହେବ । ଦାରିଦ୍ର୍ୟର ମୁଖ୍ୟ ଉତ୍ପତ୍ତିସ୍ଥଳ ହେଉଛି ବିଷମତା । ଏହି ବିଷମତାକୁ ନିୟନ୍ତ୍ରଣାଧୀନ ନକଲେ ଦାରିଦ୍ର୍ୟର ଦୂରୀକରଣ ହୋଇପାରିବ ନାହିଁ । ବିକାଶର ବୃଦ୍ଧିରୁ ଦାରିଦ୍ର୍ୟର ହ୍ରାସ ଘଟିବ ନାହିଁ । କାରଣ ବିକାଶଶୀଳ ଦେଶମାନଙ୍କରେ ଯାହାକୁ ବିକାଶର ବୃଦ୍ଧି ବୋଲି କୁହାଯାଉଛି, ତାହା ପ୍ରକୃତରେ ଧନୀ ଶ୍ରେଣୀକୁ ଅଧିକ ଧନୀ କରିବାର ହିଁ ଗୋଟିଏ ପ୍ରକ୍ରିୟା । ଅତଏବ୍, ଯେଉଁମାନେ ଦାରିଦ୍ର୍ୟ ହଟିବ ବୋଲି କହୁଛନ୍ତି, ଅଥଚ ବିଷମତାକୁ ହଟେଇବା କଥା କହୁନାହାନ୍ତି, ସେମାନେ ପ୍ରତାରଣା କରୁଛନ୍ତି । ଯେଉଁ ପ୍ରଗତିଶୀଳ ଗୋଷ୍ଠୀ ବିଷମତାକୁ ହଟେଇବାର କୌଣସି କଡ଼ା ପଦକ୍ଷେପର ପ୍ରସ୍ତାବ ରଖୁନାହାନ୍ତି, ଅଥଚ ଦାରିଦ୍ର୍ୟ ଦୂର ହେଉ ବୋଲି କହୁଛନ୍ତି, ସେମାନେ ଆତ୍ମପ୍ରତାରଣା କରୁଛନ୍ତି । ପ୍ରଗତିଶୀଳ ବୁଦ୍ଧିଜୀବୀମାନେ ନିମ୍ନଲିଖିତ ଆତ୍ମପ୍ରତାରଣାଗୁଡ଼ିକର ଶିକାର ହେଉଛନ୍ତି ।

ଆତ୍ମପ୍ରତାରଣାର ପ୍ରଥମ ଉପାୟ ହେଉଛି ମନୁଷ୍ୟ ଜୀବନର ଆବଶ୍ୟକତାକୁ ନ୍ୟୂନତମ ଠାରୁ ମଧ୍ୟ କମ୍ କରି ଦେଖିବା । ବୁଦ୍ଧିଜୀବୀମାନେ ଗୋଟିଏ ଆଡ଼େ କହିବେ ଯେ, ଆବଶ୍ୟକତା ବଢ଼ାଇବା, ଉପଭୋଗ ବଢ଼ାଇବା ଓ ଯାନ୍ତ୍ରିକ ଉପକରଣ ବଢ଼ାଇବା ହେଉଛି ବିକାଶ ଓ ପ୍ରଗତିର ଲକ୍ଷଣ । ଅନ୍ୟ ଆଡ଼େ ସେମାନେ କହିବେ ଯେ, ପ୍ରତିଦିନ

ଦୁଇ ବା ଅଢ଼େଇ ହଜାର କେଲୋରିର ଖାଦ୍ୟ ମିଳିଗଲେ ଲୋକମାନଙ୍କର ଦାରିଦ୍ର୍ୟ ଦୂର ହୋଇଯିବ । ସ୍ୱାଧୀନତା ପୂର୍ବରୁ ସେମାନେ ଭାବୁଥିଲେ ଯେ, ଭାରତର ପ୍ରତ୍ୟେକ ନାଗରିକକୁ ୧୪ ବର୍ଷ ଯାଏଁ ମାଧ୍ୟମିକ ଶିକ୍ଷା ମିଳିଯିବ । ବର୍ତ୍ତମାନ କୁହାଯାଉଛି ଯେ, ସମସ୍ତେ 'ସାକ୍ଷର' ହୋଇଯିବା ଦରକାର । ଅର୍ଥାତ୍ ମାଧ୍ୟମିକ ଶିକ୍ଷା ତ ଦୂରର କଥା, ପ୍ରାଥମିକ ଶିକ୍ଷା ମଧ୍ୟ ସମସ୍ତଙ୍କର ଦରକାର ନାହିଁ, କେବଳ ଅକ୍ଷର ଜ୍ଞାନ (ସାକ୍ଷରତା) ଯଥେଷ୍ଟ । ସମସ୍ତଙ୍କ ପାଇଁ ସାକ୍ଷରତା ଓ ସମସ୍ତଙ୍କ ପାଇଁ ଦୁଇ ହଜାର କେଲୋରୀ ଖାଦ୍ୟକୁ ଯେଉଁମାନେ ନ୍ୟୂନତମ ଆବଶ୍ୟକତା ବୋଲି ଧାରଣା କରୁଛନ୍ତି, ସେମାନେ ପ୍ରକୃତରେ ଦାରିଦ୍ର୍ୟକୁ ଚିରସ୍ଥାୟୀ କରିବାକୁ ଚାହୁଁଛନ୍ତି ।

ଆତ୍ମ ପ୍ରତାରଣାର ଦ୍ୱିତୀୟ ଉପାୟ ହେଉଛି, ସଫଳତାର କେତେକ ନିର୍ଦ୍ଦିଷ୍ଟ ଉଦାହରଣକୁ ସଂଗ୍ରହ କରି ସେଗୁଡ଼ିକର ପ୍ରଚାର କରିବା । ଦଶବର୍ଷ ପୂର୍ବେ ପୂର୍ବ-ଏସିଆର କେତେକ ଦେଶ ଯଥା: ଦକ୍ଷିଣ କୋରିଆ, ଥାଇଲାଣ୍ଡ୍, ଇଣ୍ଡୋନେସିଆ, ମାଲେସିୟା ଆଦିକୁ ପୁଞ୍ଜିବାଦୀ ସଫଳତାର ଉତ୍କୃଷ୍ଟ ଉଦାହରଣ ବୋଲି ପ୍ରଚାରିତ କରାଯାଉଥିଲା । କିଛିବର୍ଷ ପୂର୍ବେ ଏହି ସବୁ ଉଦାହରଣର ପ୍ରଚାର ବନ୍ଦ ହୋଇଛି । କାରଣ ଏମାନେ ଏକ ଆର୍ଥିକ ସଙ୍କଟରେ ପଡ଼ିଗଲେ ଓ ସେଥିରୁ ଏଯାଏଁ ମୁକୁଳି ପାରି ନାହାନ୍ତି ।

ଏହି ସବୁ ସଫଳତା ପଛରେ ଗୋଟିଏ ବିଶେଷ କାରଣ ଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ସାମ୍ୟବାଦ ଅଧିକ ଶକ୍ତିଶାଳୀ ହେଲା । ସାମ୍ୟବାଦୀ ଋଷ୍ ଓ ସାମ୍ୟବାଦୀ ଚୀନ୍‌ର ପ୍ରଭାବରେ ସମଗ୍ର ପୂର୍ବ ଏସିଆ ସାମ୍ୟବାଦୀ ହୋଇଯିବାର ସମ୍ଭାବନା ଦେଖାଗଲା । ଏଥିରେ ପୁଞ୍ଜିବାଦୀ ମହାଶକ୍ତିମାନେ ଭୟଭୀତ ହୋଇ ପୂର୍ବ ଏସିଆର ଅଣସାମ୍ୟବାଦୀ ଦେଶମାନଙ୍କୁ ବିଶେଷ ଅର୍ଥନୈତିକ ସୁବିଧାସୁଯୋଗ ଯୋଗାଇ ଦେଇ ସେମାନଙ୍କର ଆର୍ଥିକ ଉନ୍ନତି ଘଟାଇଲେ ।

ସୋଭିଏତ୍ ଋଷ୍‌ର ପତନ ଘଟିବା ପରେ ଓ ଚୀନ୍ ସାମ୍ୟବାଦ ପରିହାର କରିବା ପରେ ଏଭଳି ସଂରକ୍ଷଣ ଦେବା ଆଉ ଦରକାର ହେଲାନାହିଁ । ତେଣୁ ଧନୀ ଦେଶମାନେ ତାଙ୍କର କୃତ୍ରିମ ସାହାଯ୍ୟଗୁଡ଼ିକ ପ୍ରତ୍ୟାହାର କରିନେବା ପରେ ଏହି ଦେଶମାନଙ୍କୁ ଆର୍ଥିକ ସଙ୍କଟ ଭିତର ଦେଇ ଗତିକରିବାକୁ ପଡୁଛି । ତେବେ ସଫଳତାର ପ୍ରଚାର ପାଇଁ ଆଜିକାଲି ବିଶେଷକରି ଚୀନ୍‌ର ଉଲ୍ଲେଖ କରାଯାଉଛି । ଚୀନ୍‌ର ସାମ୍ୟବାଦୀ ସରକାର ପୁଞ୍ଜିବାଦୀ ଅର୍ଥନୀତିକୁ ଗ୍ରହଣ କରିବା ପରେ ଶତକଡ଼ା ୧୨ ହାରରେ ନିଜର ଆର୍ଥିକ ବୃଦ୍ଧି କରିଚାଲିଛି । ପୁଞ୍ଜିବାଦୀ ସଫଳତାର ଏହିପରି କଥା ଶୁଣାଇ ବିକାଶଶୀଳ ଦେଶମାନଙ୍କର ବୁଦ୍ଧିଜୀବୀଙ୍କୁ ବଶୀଭୂତ କରାଯାଇଛି । ସେମାନେ ଭାବୁଛନ୍ତି ଯେ, ଆମ ଦେଶରେ ମଧ୍ୟ ପୁଞ୍ଜିବାଦକୁ ଠିକ୍ ଭାବରେ ଚଳାଇ ପାରିଲେ ଅମେ ଚୀନ୍ ପରି ବିକାଶ କରିଚାଲିବା ।

ଏହା ମଧ୍ୟ ଏକ ପ୍ରତାରଣା । କାରଣ ଚୀନ୍‌ରେ ସାମ୍ୟବାଦୀ ଅର୍ଥନୀତି ଦ୍ୱାରା ଅର୍ଥ ବ୍ୟବସ୍ଥାର ଏକ ମଜବୁତ୍ ଭିତ୍ତିଭୂମି ତିଆରି କରାଯାଇଥିଲା । ଆର୍ଥିକ ବିଷମତାକୁ

କଡ଼ାକଡ଼ି ଭାବରେ ନିୟନ୍ତ୍ରଣ କରାଯାଇଥିଲା । ପରବର୍ତ୍ତୀ କାଳରେ ପୁଞ୍ଜିବାଦ ତାହାର ଫାଇଦା ଉଠାଇଲା । କିନ୍ତୁ ଏହା କ୍ଷଣସ୍ଥାୟୀ, କାରଣ ଚୀନ୍‌ର ଅର୍ଦ୍ଧ-ପୁଞ୍ଜିବାଦୀ ନୀତି ନୂଆ ନୂଆ ବିଷମତା ସୃଷ୍ଟି କରିଚାଲିଛି । ବିଶେଷଜ୍ଞମାନେ ମାନୁଛନ୍ତି ଯେ, ଚୀନ୍‌ରେ ଆଞ୍ଚଳିକ ବିଷମତା ବଢୁଛି, ଅଳ୍ପ କେତେକ ନିର୍ଦ୍ଦିଷ୍ଟ ଅଞ୍ଚଳରେ ହିଁ ଆଧୁନିକୀକରଣ ହୋଇପାରୁଛି । ପୁଞ୍ଜିବାଦୀ ବିକାଶର ଏହି ଅଞ୍ଚଳରେ ଶ୍ରେଣୀଗତ ବୈଷମ୍ୟ ମଧ୍ୟ ବଢୁଛି । ଅଳ୍ପ-ବିକଶିତ ଅଞ୍ଚଳମାନଙ୍କରେ ବେକାରୀ ଓ ଅସହାୟତା ବଢୁଥିବାରୁ ସେଠାକାର ଲୋକମାନେ ସମୃଦ୍ଧ ଅଞ୍ଚଳ ଆଡ଼କୁ ପଳାୟନ କରୁଛନ୍ତି ।

ବାଣିଜ୍ୟ ନୀତିରେ ଆମେରିକା ଚୀନ୍‌କୁ 'ଆମର ଅତିପ୍ରିୟ ଦେଶ' ବୋଲି ଘୋଷଣା କରୁଛି । ଅର୍ଥାତ୍ ଯେଉଁଭଳି ଭାବରେ ଥାଇଲାଣ୍ଡ୍ ଓ ଇଣ୍ଡୋନେସିଆକୁ ପୁଞ୍ଜିବାଦୀ ନୀତି ଗ୍ରହଣ ପାଇଁ ଉତ୍ସାହିତ କରାଯାଉଥିଲା ଚୀନ୍‌କୁ ସେପରି କରାଯାଉଛି । ଚୀନ୍‌ର ଉଦାହରଣ ଦେବାବେଳେ ଦୁଇଟି କଥା ମନେ ରଖିବାକୁ ହେବ । ଚୀନ୍‌ର ଏହି ସମୃଦ୍ଧି କ୍ଷଣସ୍ଥାୟୀ । ଗତ ୧୫ ବର୍ଷର ପୁଞ୍ଜିବାଦୀ ବିକାଶ କାଳରେ ବିଷମତା ଓ ଦାରିଦ୍ର୍ୟର ଯେଉଁ ନୂଆ ପ୍ରବଣତା ସୃଷ୍ଟି ହୋଇଛି, ତାହାର ସମାଧାନର କୌଣସି ପନ୍ଥା ବାହାରି ପାରୁନାହିଁ । ପୁଞ୍ଜିବାଦୀ ନୀତିରେ ଏହାର ଏକମାତ୍ର ପନ୍ଥା ହେଉଛି ଆର୍ଥିକ ସାମ୍ରାଜ୍ୟବାଦ । ଅର୍ଥାତ୍ ଚୀନ୍ ଯଦି ତୃତୀୟ ବିଶ୍ୱର ଅନ୍ୟ ଦେଶମାନଙ୍କୁ ଆର୍ଥିକ ଭାବରେ ଶୋଷଣ କରିପାରିବ, ତାହାହେଲେ ଜାପାନ୍ ପରି ଚୀନ୍ ମଧ୍ୟ ସାମ୍ରାଜ୍ୟବାଦୀ ଉପାୟରେ ପୁଞ୍ଜିବାଦୀ ସଫଳତା ହାସଲ କରିପାରିବ । ବିଶ୍ୱ ବ୍ୟବସ୍ଥାରେ ଅହରହ ପରିବର୍ତ୍ତନ ଲାଗି ରହିଥିବାରୁ ଓ ଚୀନ୍‌ରେ ଏକ ଦୃଢ଼ ରାଷ୍ଟ୍ରବାଦୀ ଶାସକ ଗୋଷ୍ଠୀ ରହିଥିବାରୁ ଅନୁକୂଳ ପରିସ୍ଥିତି ରହିଛି ବୋଲି ଧରାଯାଇପାରେ । କିନ୍ତୁ ଚୀନ୍‌ର ନିଜସ୍ୱ ପୁଞ୍ଜି ଅଳ୍ପ ହୋଇଥିବାରୁ ସଫଳତାର ଆଶା ସନ୍ଦେହ ଘେରରେ ରହୁଛି । ଯେଉଁମାନେ ଚୀନ୍‌ର ପ୍ରଚାର କରୁଛନ୍ତି, ସେମାନେ ପ୍ରମାଣ ଦେଇପାରୁଛନ୍ତି ଯେ, ଭାରତ ଓ ପୂର୍ବ ଏସିଆର ଅନ୍ୟାନ୍ୟ ଦେଶମାନଙ୍କ ତୁଳନାରେ ଚୀନ୍‌ର ମାଲ୍ ରପ୍ତାନୀ କ୍ଷମତା ବୃଦ୍ଧି ପାଇବ । କିନ୍ତୁ ଏକ ସାମ୍ରାଜ୍ୟବାଦୀ ଶକ୍ତି ବା ଉପମହାଶକ୍ତି ଭାବରେ ଏହାର ଉତ୍‌ଥାନ ହେବ - ଏଥିପାଇଁ ତଥ୍ୟଗତ ଆଧାର ନାହିଁ । କୌଣସି କାରଣରୁ ଏହା ସତ୍ୟ ହେଲେ ମଧ୍ୟ ଚୀନ୍ ଯଦି ସାମ୍ରାଜ୍ୟବାଦୀ ଉପାୟରେ ଏକ ମହାଶକ୍ତି ହେବ, ତେବେ ପୃଥିବୀର ଅନୁନ୍ନତ ଦେଶମାନଙ୍କ ପାଇଁ ତାହା ଏକ ଉଦାହରଣ ହୋଇପାରିବ ନାହିଁ ।

ଆତ୍ମପ୍ରତାରଣାର ତୃତୀୟ ଉପାୟ ହେଉଛି ଅବତାରବାଦ । ଟେକ୍ନୋଲଜିର ଏପରି ଏକ ଅବତାର ବାହାରିବ, ଯାହା ଦାରିଦ୍ର୍ୟ ଦୂର କରିବା କାର୍ଯ୍ୟରେ ଯଥେଷ୍ଟ ସାହାଯ୍ୟ କରିପାରିବ । ଏ ବର୍ଷର ୟୁ.ଏନ୍.ଡ଼ି.ପି. ରିପୋର୍ଟ୍ ଏହିପରି ଏକ ଅବତାରଣା କରିସାରିଛି । ଏହି ରିପୋର୍ଟ୍‌ର ପରାମର୍ଶ ହେଉଛି ଯେ, ଦରିଦ୍ର ଦେଶମାନେ ଅଧିକରୁ ଅଧିକ ନୂଆ ଟେକ୍ନୋଲଜି ବ୍ୟବହାର କରନ୍ତୁ । କମ୍ପ୍ୟୁଟର ସେବା କେତେ ଶସ୍ତା ହୋଇଯାଇଛି, ତାହାର ଉଦାହରଣ ଏହି ରିପୋର୍ଟରେ ଦିଆଯାଇଛି । ଯେଉଁମାନେ ଦାରିଦ୍ର୍ୟ ସୀମାରେଖା ତଳେ ରହିଛନ୍ତି, ସେମାନଙ୍କୁ କମ୍ପ୍ୟୁଟର ସେବାରୁ କେଉଁ ସାହାଯ୍ୟ ମିଳିବ ? କମ୍ପ୍ୟୁଟର ସେବା ତୁଳନାରେ ବେଶୀ ପ୍ରାସଙ୍ଗିକ ହେଉଛି ବିଜୁଳି ଯୋଗାଣ, ସେଚ ପାଇଁ ଜଳ,

ସ୍ୱାସ୍ଥ୍ୟ ସେବା ଓ ସର୍ବୋପରି ରୋଜଗାର ସୃଷ୍ଟି । ଗରିବର କାମରେ ଲାଗୁଥିବା ଉପରୋକ୍ତ ଟେକ୍ନୋଲଜିଗୁଡ଼ିକ ଯଥା ବିଜୁଳି, ଜଳସେଚନ ଓ ଔଷଧ ଇତ୍ୟାଦି ଅଧିକ ଶସ୍ତା ହେଉଛି ନା ଅଧିକ ମହଙ୍ଗା ହେଉଛି ? ଏହି ପ୍ରଶ୍ନ ଓ ଏହାର ଉତ୍ତରକୁ ରିପୋର୍ଟ୍ ଲେଖାଳୀ ବିଶେଷଜ୍ଞମାନେ ପ୍ରକାଶିତ କରିନାହାନ୍ତି ।

ଏହାର ଓଲଟା ସିଦ୍ଧାନ୍ତ ଅଧିକ କଲ୍ୟାଣକାରୀ ହେବ । ଧନୀ ଓ କ୍ଷମତାସୀନ ଶ୍ରେଣୀର ଲୋକ ଯଦି ଅତ୍ୟାଧୁନିକ ଟେକ୍ନୋଲଜି ଓ ଯନ୍ତ୍ରମାନଙ୍କୁ ଆସନ୍ତା ପଚାଶ ବର୍ଷ ପାଇଁ ବହିଷ୍କୃତ କରିବାର ନୀତି ଗ୍ରହଣ କରନ୍ତି, ତାହାହେଲେ ସମାଜରେ ବହୁ ପ୍ରକାରର ବିଷମତା ଦୂର ହୋଇଯିବ ଓ ଦରିଦ୍ର ଶ୍ରେଣୀ ଅଳ୍ପ ଦରିଦ୍ର ଅନୁଭବ କରିବେ । ବିଶେଷ କରି କମ୍ପ୍ୟୁଟର, ମୋଟରଗାଡ଼ି ଓ ଉପଭୋଗ ସାମଗ୍ରୀର ବିଦେଶରୁ ଆମଦାନୀ ବନ୍ଦ କରିବା ଦ୍ୱାରା ଛଟେଇ ଓ ବିଷମତାର ତୀବ୍ରତା କମିଯିବ । ନବଧନୀକ ଶ୍ରେଣୀରେ ବଢ଼ିଚାଲିଥିବା ଉପଭୋଗ ହେଉଛି ଟେକ୍ନୋଲଜି-ଆଧାରିତ । ସେହି ଟେକ୍ନୋଲଜିଗୁଡ଼ିକୁ ସମ୍ପୂର୍ଣ୍ଣ ବନ୍ଦ କରିଦେବା କିମ୍ୱା କେତେକ ବିରଳ କ୍ଷେତ୍ରରେ ବ୍ୟବହାର ଦ୍ୱାରା ସେମାନଙ୍କର ଧନୀକତ୍ୱକୁ କମେଇ ଦିଆଯିବ ଓ ତଦ୍ଦ୍ୱାରା ସାମାଜିକ ବିଷମତା ମଧ୍ୟ କମିବ । ଅତଏବ୍, ଅତ୍ୟାଧୁନିକ ଟେକ୍ନୋଲଜିର ବୃଦ୍ଧି ଦ୍ୱାରା ନୁହେଁ, ତାହାର ବ୍ୟବହାର କମେଇବା ଦ୍ୱାରା ହିଁ ଦାରିଦ୍ର୍ୟ ମୋଚନର ପଥ ପରିଷ୍କାର ହେବ ।

ଆତ୍ମ ପ୍ରତାରଣାର ଆଉ ଏକ ବିଶିଷ୍ଟ ଉପାୟ ଜବାହରଲାଲ୍ ନେହେରୁ ବାହାର କରିଥିଲେ । ଦାରିଦ୍ର୍ୟର ବଣ୍ଟନ କରି ଗୋଟିଏ ଭଲ ସମାଜ ଗଠନ ହୋଇପାରିବ ନାହିଁ । ଏଥିରେ ଦରିଦ୍ରମାନଙ୍କୁ ମଧ୍ୟ ପରିଶେଷରେ କ୍ଷତିଗ୍ରସ୍ତ ହେବାକୁ ପଡ଼ିବ । ତେଣୁ, 'ବିଷମତା ଥାଉ, ବିଷମତା ଭିତରେ ଦେଶରେ ସମୃଦ୍ଧି ସୃଷ୍ଟି ହେବ । ସମୃଦ୍ଧି ସୃଷ୍ଟି ହୋଇଗଲା ବୋଲି ଯେତେବେଳେ ପ୍ରମାଣପତ୍ର ମିଳିଯିବ, ସେତେବେଳେ ଧନର ବଣ୍ଟନ ହେବ । ତାହାହେଲେ ସମସ୍ତଙ୍କୁ ବଡ଼ ବଡ଼ ଭାଗ ମିଳିବ । ଦରିଦ୍ରମାନଙ୍କୁ ମଧ୍ୟ ବଡ଼ ବଡ଼ ଭାଗ ମିଳିବ । ଦରିଦ୍ର ଶ୍ରେଣୀ ସେଥିପାଇଁ ଅପେକ୍ଷା କରି ରହନ୍ତୁ ଓ ସାମୂହିକ ସମୃଦ୍ଧିର ବିକାଶ ପାଇଁ ତ୍ୟାଗ କଷ୍ଟକୁ ସ୍ୱୀକାର କରନ୍ତୁ ।' ଏହି ପ୍ରଲୋଭନରେ ଯେଉଁ ସର୍ତ୍ତ ରଖା ହୋଇଛି, ତାହା କ'ଣ କେବେ ପୂରଣ ହୋଇପାରିବ ? ଦରିଦ୍ର ଶ୍ରେଣୀର ଭାଗ ଯଦି ଆଜିଠାରୁ ନ ବଢ଼ିବ, ତାହାହେଲେ ସେମାନେ ସମୃଦ୍ଧି ନିର୍ମାଣରେ ଯୋଗଦାନ କରିବେ କିପରି ଓ ସେମାନଙ୍କର ଯୋଗଦାନ ବିହୁନେ ସମୃଦ୍ଧିର ନିର୍ମାଣ ହେବ କିପରି ? ଦରିଦ୍ର ଶ୍ରେଣୀକୁ ଭାଗ ନ ଦେଇ ଯେଉଁ ସମୃଦ୍ଧିର ବିକାଶ ହେବ, ତାହା ପରବର୍ତ୍ତୀ କାଳରେ ବଣ୍ଟନଯୋଗ୍ୟ ହେବ ନାହିଁ । ଉଦାହରଣ ସ୍ୱରୂପ ଧରାଯାଉ ଯେ, ଧନୀ ଶ୍ରେଣୀ ପାଖରେ ମୋଟରଗାଡ଼ି, କମ୍ପ୍ୟୁଟର, ଶୀତତାପ ଆଣ୍ଟିବା ଯନ୍ତ୍ର, କେମେରା, ଉଡ଼ାଜାହାଜ, ବହୁତ ସୁସ୍ୱାଦୁ ଖାଦ୍ୟ ଓ ଅଳଙ୍କାର ଇତ୍ୟାଦି ବଢ଼ିଗଲା । ତାହାହେଲେ ତ ନିଶ୍ଚୟ ଆର୍ଥିକ ଅଭିବୃଦ୍ଧିର ଗ୍ରାଫ୍ ଉର୍ଦ୍ଧ୍ୱମୁଖୀ ହେବ । କିନ୍ତୁ ଏଗୁଡ଼ିକ ବଣ୍ଟନ ଯୋଗ୍ୟ ସମୃଦ୍ଧି ନୁହନ୍ତି । କାରଣ ଏଭଳି ଜିନିଷକୁ ସମସ୍ତଙ୍କ ଭିତରେ ବାଣ୍ଟିହେବ ନାହିଁ । ମୋଟରଗାଡ଼ିର ସଂଖ୍ୟା ଦୁଇଗୁଣ ହେଲେ ମଧ୍ୟ ୧୦୦ କୋଟି ଲୋକଙ୍କ ଭିତରେ ବାଣ୍ଟିହେବ ନାହିଁ । ଶୀତତାପ ଯନ୍ତ୍ରମାନଙ୍କର ସଂଖ୍ୟା ବଢ଼ିଲେ ମଧ୍ୟ ସେଗୁଡ଼ିକୁ

ବାଣ୍ଟିହେବ ନାହିଁ । ଯେତେବେଳେ ଭାରତ, ଜାପାନ୍ ବା ଆମେରିକା ପରି ସମୃଦ୍ଧ ହୋଇଯିବ, ଏହି ସମୃଦ୍ଧିକୁ ବାଣ୍ଟିଲେ ସମସ୍ତ ପରିବାରକୁ ମୋଟରଗାଡ଼ି ମିଳିପାରିବ ।

କିନ୍ତୁ ସେତିକି ସମୃଦ୍ଧି କେବେ ସୁଦ୍ଧା ହେବ ନାହିଁ, ତେଣୁ ବଣ୍ଟନର ପ୍ରଶ୍ନ ହିଁ ଉଠିବ ନାହିଁ । ଇତିହାସର ଯୁଗ ବଦଳିଯାଇଛି । ତୃତୀୟ ବିଶ୍ୱର ଦେଶମାନଙ୍କ ପାଇଁ ଏପରି ସମୃଦ୍ଧି ଲାଭର ଆଶା ଏବେ କଳ୍ପନାର ବହିର୍ଭୂତ । ତେଣୁ ଯେଉଁ ପ୍ରଗତିଶୀଳ ବୁଦ୍ଧିଜୀବୀମାନେ ଦାରିଦ୍ର୍ୟର ବଣ୍ଟନ କରିବାକୁ ଚାହାନ୍ତି ନାହିଁ, ସେମାନେ ସ୍ପଷ୍ଟ କରିବା ଦରକାର ଯେ, କେତେ ପରିମାଣରେ ସମୃଦ୍ଧି ଆସିଲେ ସେମାନେ ବଣ୍ଟନ ନୀତିକୁ ଆରମ୍ଭ କରିବେ ? ସେହି ସମୃଦ୍ଧି ଆସିବ କିପରି ? ଅର୍ଥ ବ୍ୟବସ୍ଥାରେ ଦରିଦ୍ର ଶ୍ରେଣୀର ଭାଗ ନ ବଢ଼ିଲେ ସେମାନେ ଏହି ସମୃଦ୍ଧି ନିର୍ମାଣରେ ସହାୟକ ହୋଇପାରିବେ କି ? ଚୀନ୍‌ର ଶାସକ ଅର୍ଥଶାସ୍ତ୍ରୀମାନେ ଉପରୋକ୍ତ ପ୍ରଶ୍ନଗୁଡ଼ିକର ବିଶ୍ୱାସଯୋଗ୍ୟ ଉତ୍ତର ଦେଉଛନ୍ତି କି ?

ସମ୍ପତ୍ତି ବଣ୍ଟନର ପ୍ରଥମ ପଦକ୍ଷେପ ହେଉଛି ଧନୀ ଶ୍ରେଣୀର ଧନ ବୃଦ୍ଧିକୁ ରୋକିବା । ତାହା ନ ହେଲେ ଏକ ଅଣସାମ୍ରାଜ୍ୟବାଦୀ ରାଷ୍ଟ୍ରର ଜନସାଧାରଣଙ୍କୁ କେବେହେଲେ ସମୃଦ୍ଧି ମିଳିବ ନାହିଁ । ଜନସାଧାରଣଙ୍କର ଭାଗିଦାରୀ ନଥାଇ ମଧ୍ୟ ରାଷ୍ଟ୍ରୀୟ ଆୟର ଅଭିବୃଦ୍ଧି ଘଟିଥାଏ । ଏପରି ଅଭିବୃଦ୍ଧିର ଫଳ କେବଳ ଧନୀକ ଶ୍ରେଣୀ ଓ ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀକୁ ମିଳିଥାଏ । ଗତ ଦଶବର୍ଷ ଭିତରେ ଭାରତର ଯେଉଁ ଆର୍ଥିକ ଅଭିବୃଦ୍ଧି ହୋଇଛି, ତାହା ଏହି ବାଟରେ ହୋଇଛି । ମୋଟରଗାଡ଼ି, ଶୀତତାପଯନ୍ତ୍ର, ଘରୋଇ କମ୍ପ୍ୟୁଟର ଓ ସେଲ୍‌ଫୋନ୍‌ର ବ୍ୟବହାର ବଢ଼ିଛି । ନିମ୍ନ ମଧ୍ୟବିତ୍ତ ଓ ଦରିଦ୍ର ଶ୍ରେଣୀର ଅବସ୍ଥା ବିପନ୍ନ ହୋଇଛି । ନିମ୍ନ ମଧ୍ୟବିତ୍ତର ମୁଖ୍ୟ ଅଂଶ ହେଉଛନ୍ତି ଭାରତର କୃଷକ ଶ୍ରେଣୀ । ଦରିଦ୍ର ଶ୍ରେଣୀର ଏକ ମୁଖ୍ୟ ଅଂଶ ହେଉଛନ୍ତି ଆଦିବାସୀ ଦଳିତମାନେ । ଏହିମାନଙ୍କୁ ଦେଖିଲେ ଜାଣିହେବ ଯେ, ନିମ୍ନ ମଧ୍ୟବିତ୍ତ ଓ ଦରିଦ୍ର ଶ୍ରେଣୀ ଦରିଦ୍ରତର ହେଉଛନ୍ତି ।

ରାଷ୍ଟ୍ରୀୟ ସମ୍ପତ୍ତିର ପୁର୍ନବଣ୍ଟନ କହିଲେ ବୁଝାଏ ନାହିଁ ଯେ, ଏକା ସାଙ୍ଗରେ ସବୁ ସମ୍ପତ୍ତିକୁ ଠୁଳ କରି ଗଣିତ କଷି ସମାନ ଭାଗରେ ବାଣ୍ଟିଦେବା । ଏହାର ପ୍ରଥମ ପଦକ୍ଷେପ ହେଉଛି ଧନୀ ଶ୍ରେଣୀମାନଙ୍କର ଆୟ ବୃଦ୍ଧିକୁ ଓ ଉପଭୋଗ କ୍ଷମତାକୁ ସୀମିତ, ସଙ୍କୁଚିତ କରିଦେବା ଓ ନିମ୍ନ ମଧ୍ୟବିତ୍ତ ତଥା ଦରିଦ୍ର ଶ୍ରେଣୀର ସାମାଜିକ, ଆର୍ଥିକ ସୁବିଧାଗୁଡ଼ିକୁ ବଢ଼ାଇବା, ଯଦ୍ୱାରା ସେମାନଙ୍କର ଉତ୍ପାଦନ କ୍ଷମତା ବୃଦ୍ଧି ପାଇବ । ଉପରୋକ୍ତ ପ୍ରଥମ ପଦକ୍ଷେପ ଦ୍ୱାରା ଦେଶରେ ଏପରି ବିକାଶ ହେବ, ଯାହାର ଲାଭ କୌଣସି ଶ୍ରେଣୀ ବିଶେଷକୁ ଅଲଗା ଭାବରେ ମିଳିବ ନାହିଁ, ସମଗ୍ର ସମାଜକୁ ମିଳିବ । ଯଦି ନୂଆ ନୂଆ ମୋଟରଗାଡ଼ି ଓ ଘରୋଇ କମ୍ପ୍ୟୁଟର ସଂଖ୍ୟା ବଢ଼ିବ, ତାହାହେଲେ ସେଗୁଡ଼ିକ ଧନୀ ଓ ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀକୁ ଯିବ । ଯଦି ବସ୍ ଓ ଟାକ୍ସିଗାଡ଼ି ତିଆରି ହେବ, ତାହା ସର୍ବସାଧାରଣର ବ୍ୟବହାରରେ ଆସିବ । କମ୍ପ୍ୟୁଟରର ବ୍ୟବହାର ସୀମିତ କରିବାକୁ ହେବ । କେବଳ ଯୁଦ୍ଧ ଓ ଅନୁସନ୍ଧାନ କାର୍ଯ୍ୟରେ ତାହାର ଉପଯୋଗ ହେବ । ଘରୋଇ କମ୍ପ୍ୟୁଟର ଓ ବ୍ୟକ୍ତିଗତ ସେଲ୍‌ଫୋନ୍‌ର ବ୍ୟବହାର ରୋକିବାକୁ

ହେବ । ଆଧୁନିକ ଯନ୍ତ୍ରୀକରଣକୁ ସୀମାବଦ୍ଧ କରିବା କେତେ ଜରୁରୀ ତାହା ଗୋଟିଏ ଉଦାହରଣରୁ ସ୍ପଷ୍ଟ ହୋଇଯିବ । ଭାରତର କୃଷିରେ ଅତ୍ୟାଧୁନିକ ଯାନ୍ତ୍ରିକ ପ୍ରଣାଳୀର ବ୍ୟବହାର କଲେ କୋଟି କୋଟି ଲୋକ ତାଙ୍କର ରୋଜଗାର ହରାଇ ବସିବେ । କୃଷକର ଆତ୍ମହତ୍ୟା ରାଷ୍ଟ୍ରର ଆତ୍ମହତ୍ୟାରେ ପରିଣତ ହେବ । ଚୀନ୍ ମଧ୍ୟ କୃଷିର ଯାନ୍ତ୍ରିକରଣ କାର୍ଯ୍ୟକ୍ରମକୁ ବ୍ୟାପକ କରିନାହିଁ ।

ଯେଉଁ ପ୍ରଗତିଶୀଳ ବୁଦ୍ଧିଜୀବୀମାନେ ଦାରିଦ୍ର୍ୟ ବଣ୍ଟନକୁ ନାପସନ୍ଦ କରୁଛନ୍ତି, ସେମାନେ ସ୍ପଷ୍ଟ କରନ୍ତୁ ଯେ, ଧନୀ ଶ୍ରେଣୀ ଓ ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀର ଧନବୃଦ୍ଧିକୁ ସେମାନେ ରୋକିବାକୁ ଚାହାନ୍ତି କି ? ତାହାକୁ ନରୋକି ଜନସାଧାରଣଙ୍କ ପାଇଁ ଶିକ୍ଷା, ସ୍ୱାସ୍ଥ୍ୟ ଓ ରୋଜଗାର ସୁଲଭ କରାଯିବ କିପରି ? ଏହି ଲେଖକର ଦୃଢ଼ ମତ ଏହା ଯେ, ଦେଶ ଦରିଦ୍ର ଅବସ୍ଥାରେ ଥାଉ ବା ସମୃଦ୍ଧ ଅବସ୍ଥାରେ ଥାଉ, ଆମକୁ ଏହି ମୁହୂର୍ତ୍ତରୁ ସମବଣ୍ଟନ ଆଡ଼କୁ ସୁଚିନ୍ତିତ ଭାବରେ ଅଗ୍ରସର ହେବାକୁ ପଡ଼ିବ । ବିକାଶର ପ୍ରତ୍ୟେକ ପଦକ୍ଷେପରେ ପ୍ରଶ୍ନ କରିବାକୁ ହେବ ଯେ, ଏହାଦ୍ୱାରା ଜନସାଧାରଣଙ୍କର କାର୍ଯ୍ୟଶକ୍ତି ବା ଉତ୍ପାଦନ କ୍ଷମତା ବଢ଼ୁଛି ନା କମୁଛି । ଟେକ୍ନୋଲଜିର ପରୀକ୍ଷା ମଧ୍ୟ ଏହି କଷଟି ପଥରରେ ହେବା ଦରକାର ।

୩୦, ନଭେମ୍ବର, ୨୦୦୧

# ଭାରତୀୟ ରାଷ୍ଟ୍ରର ଦୁର୍ଗତି

ଯେଉଁମାନେ ଭାରତୀୟ ଜନତା ପାର୍ଟି ଓ ରାଷ୍ଟ୍ରୀୟ ସ୍ୱୟଂସେବକ ସଙ୍ଘର ବିରୋଧୀ, ସେମାନଙ୍କୁ ଦେଶ ପ୍ରତି କେବଳ ଗୋଟିଏ ବିପଦ ବଡ଼ହୋଇ ଦେଖାଦିଏ । ତାହା ହେଉଛି ସାରା ଭାରତରେ ସଙ୍ଘ ପରିବାରର ଏକଛତ୍ରବାଦୀ ରାଜତ୍ୱ । ଏହାର କଳ୍ପନା କରି ସେମାନେ ଖୁବ୍ ବେଶୀ ଚିନ୍ତିତ ହୁଅନ୍ତି । ଆମେ ବାରମ୍ବାର କହିବାକୁ ଚାହୁଁ ଯେ, ଏହା କେବେ ହେଲେ ଘଟିବ ନାହିଁ । ଯାହା ହେବାକୁ ଯାଉଛି, ତାହା ଏହାଠାରୁ ଅଧିକ ଭୟଙ୍କର ଓ ଏଥିପାଇଁ କେବଳ ଭାରତୀୟ ଜନତା ପାର୍ଟି ବା ଗୈରିକଧାରୀମାନଙ୍କୁ ଦାୟୀ କରାଯିବ ନାହିଁ । ଏହି ଅଶୁଭ ଭବିଷ୍ୟତର କଳ୍ପନା କିଛି ଲୋକ ବେଳେ ବେଳେ କରନ୍ତି, କିନ୍ତୁ ତାହାର ବିଧିବଦ୍ଧ ଆଲୋଚନା ହୋଇପାରେ ନାହିଁ । କାରଣ କୌଣସି ପ୍ରଚଳିତ ବିଚାରଧାରାର ସୂତ୍ର ସାହାଯ୍ୟରେ ଏହି ସଙ୍କଟର ବିଶ୍ଳେଷଣ କରିହେବ ନାହିଁ କିମ୍ବା ତାହାର ସମାଧାନର ବାଟ ବାହାରିବ ନାହିଁ ।

ଆଫ୍ରିକାର କେତେକ ହତଭାଗ୍ୟ ଦେଶଗୁଡ଼ିକର ସମାଚାର ପଢ଼ି ଯେଉଁଭଳି ଛବି ଆମ ଆଗରେ ଆଙ୍କି ହୋଇଯାଏ, ଭାରତର ଭବିଷ୍ୟତ ମାନଚିତ୍ର ତାହା ହୋଇପାରେ । ବହୁକୋଣୀୟ ଗୃହଯୁଦ୍ଧ, ଅନେକ କ୍ଷେତ୍ରରେ ରାଷ୍ଟ୍ରର ନିୟନ୍ତ୍ରଣ ନ ରହିବା, ଦୁର୍ଭିକ୍ଷ, ଦଙ୍ଗା, ମହାମାରୀ ଓ ସଙ୍ଘର୍ଷର କବଳରେ ପଡ଼ିଥିବା ବହୁସଂଖ୍ୟକ ଜନତାର ଛଟପଟ ଜୀବନ ବିଷୟରେ ପ୍ରଶାସନ ସମ୍ପୂର୍ଣ୍ଣ ଉଦାସୀନ ରହିବା-ଏଭଳି ପରିସ୍ଥିତି ମାନ ଏବେ ମଧ୍ୟ ବରାବର ଦୃଷ୍ଟିକୁ ଆସୁଛି । ଏଗୁଡ଼ିକର ଅନୁପାତ ଯେପରି ବଢ଼ିଚାଲିଛି, ଯଦି ସବୁ ଘଟଣାକୁ ମିଶାଇ ଗୋଟିଏ ମାନଚିତ୍ର ତିଆରି କରାଯାଏ, ତାକୁ କ'ଣ ଆମେ 'ସ୍ଥାନୀୟ ସମସ୍ୟା', 'ଅନଗ୍ରସର ଅଞ୍ଚଳ', 'ଆଇନ୍ ଶୃଙ୍ଖଳାର ଅଭାବ' ଆଦି କହି ସନ୍ତୋଷ ଲାଭ କରିପାରିବା ? କୌଣସି ଜିଲ୍ଲା କଲେକ୍ଟର ଚାହିଁଲେ ନିଜ କ୍ଷମତା ବ୍ୟବହାର କରି ଏହି ସମସ୍ୟା ଦୂର କରିପାରିବ ନାହିଁ । ରାଜ୍ୟସ୍ତରୀୟ ଓ ରାଷ୍ଟ୍ରସ୍ତରୀୟ ସଙ୍କଳ୍ପ ଦ୍ୱାରା ହିଁ ପରିସ୍ଥିତି ବଦଳି ପାରିବ । ଯଦି ଶୀଘ୍ର ଏପରି କରାନଯାଏ, ତେବେ ଦଶ-କୋଡ଼ିଏ ବର୍ଷ ପରେ ଆମେ କହିବା ଯେ ଅବସ୍ଥା ଅତ୍ୟନ୍ତ ଜଟିଳ ହୋଇଗଲାଣି । ଗଣତାନ୍ତ୍ରିକ ଉପାୟରେ ତାହାର ସମାଧାନ ହେବ, ତାହା ମଧ୍ୟ କହିପାରିବା ନାହିଁ ।

ପୁରୁଲିଆ ଅସ୍ତ୍ର ପକା କାଣ୍ଡ ଓ କାନ୍ଦାହାର ବିମାନ ଅପହରଣ ଘଟଣାରେ ଯାହା ହେଲା, ତାହାକୁ କ'ଣ 'ସ୍ଥାନୀୟ ସମସ୍ୟା' ବୋଲି କହିବା ? ବୀରାପ୍ପାନ୍ ଘଟଣା ଓ

ଶିବସେନା ପ୍ରମୁଖ ବାଲ୍ ଠାକ୍‌ରେଙ୍କୁ ଯେ ଜେଲ୍‌କୁ ପଠାଗଲା ନାହିଁ, ଏହାକୁ କ'ଣ 'ଆଇନ ଶୃଙ୍ଖଳା ଭଙ୍ଗ' ବୋଲି କହିହେବ? ମୁଫତି୍ ମହମ୍ମଦ୍ ସଇଦ୍‌ଙ୍କ ଝିଅର ଅପହରଣ ଆଗରେ କେନ୍ଦ୍ର ସରକାର ଯେପରି ମୁଣ୍ଡ ନୁଆଁଇଲା, କାନ୍ଦାହାରରେ ଭାରତୀୟ ବିମାନଯାତ୍ରୀମାନଙ୍କୁ ପଣବନ୍ଦୀ ରଖି ଆତଙ୍କବାଦୀମାନେ ଯେ ଦ୍ୱିତୀୟଥର ପାଇଁ ଯେପରି ଭାବରେ ରାଷ୍ଟ୍ର-ଶକ୍ତିକୁ ଉପହାସ କଲେ, ବୀରପ୍ପାନ୍ ଘଟଣା, ବାଲ୍ ଠାକ୍‌ରେ ପ୍ରସଙ୍ଗ, ଭାରତର ଉତ୍ତର-ପୂର୍ବାଞ୍ଚଳରେ ଯେପରି ସମାନ୍ତରାଳ ସରକାରମାନ ଗଠିତ ହେଉଛି, ବିହାରର କେତେକ ଜିଲ୍ଲାରେ ଅପରାଧି ଓ ଆତଙ୍କବାଦୀମାନଙ୍କ ଆଧିପତ୍ୟ ସ୍ଥାପିତ ହୋଇଯାଇଛି - ଏସବୁ ଆଇନ ଶୃଙ୍ଖଳା ଭଙ୍ଗର ସମସ୍ୟା ନୁହେଁ - ରାଜ୍ୟ ଓ ରାଷ୍ଟ୍ର ଶକ୍ତିହୀନ ହୋଇପଡ଼ିବାର ଲକ୍ଷଣ । ଶାସକ ଶ୍ରେଣୀର ବିଚାର-ଶୂନ୍ୟତା, ଶାସକ ଓ ପ୍ରଶାସକମାନଙ୍କ ଚରିତ୍ରହୀନତା ଓ ଅଯୋଗ୍ୟତା କାରଣରୁ ଏକ ଅରାଜକତାର ସ୍ଥିତି ବଢ଼ି ଚାଲିଛି । ବିକାଶ ହେଉଛି କି ନାହିଁ? - ଏକ ଅବାନ୍ତର ପ୍ରଶ୍ନ ପରି ମନେ ହେଉଛି । ଦେଶ ରହିବ କି ନାହିଁ, ଏହି ପ୍ରଶ୍ନ ଉଠୁଛି ।

କାନ୍ଦାହାର ଓ ବୀରାପ୍ପାନ୍ ଘଟଣାକୁ ସ୍ମରଣ କରାଇ କେହି ଆମକୁ ପ୍ରଶ୍ନ କରିପାରେ, ଏହି ରାଷ୍ଟ୍ର କ'ଣ ଚୀନ୍ ଦ୍ୱାରା ଆକ୍ରମଣର ସମ୍ମୁଖୀନ ହୋଇପାରିବ? ଏହି ପ୍ରଶ୍ନର ଉତ୍ତର ଦେବାବେଳେ ମନ ଟିକିଏ ବିଚଳିତ ହୋଇପାରେ । ୧୯୬୨ ରେ ଯେବେ ଚୀନ୍ ଆକ୍ରମଣ କରିଥିଲା, ଭାରତ ପଛଘୁଞ୍ଚା ଦେଇଥିଲା । ଆଜିର ତୁଳନାରେ ସେତେବେଳର ଭାରତ ଆଭ୍ୟନ୍ତରୀଣ ଦୃଷ୍ଟିରୁ ଦୃଢ଼ ଥିଲା, ଅର୍ଥାତ୍ ବୀରପ୍ପାନ୍, କାନ୍ଦାହାର୍ କିମ୍ବା ବାଲ୍ ଠାକ୍‌ରେ ଭଳି ଘଟଣା ହେଲେ ରାଜ୍ୟ ତାହା ଆଗରେ ମୁଣ୍ଡ ନୁଆଁଇ ନଥାନ୍ତା । ରାଜ୍‌କୁମାର୍‌ଙ୍କୁ ମୁକ୍ତି ମିଳିସାରିଲା ପରେ କ'ଣ ବୀରପ୍ପାନ୍‌କୁ ଧରି ତାହାର ସମସ୍ତ ଅପରାଧ ପାଇଁ ତାକୁ ଦଣ୍ଡିତ କରାଯିବ? ଭାରତ କ'ଣ ଚୀନ୍ ସାଙ୍ଗରେ ତାହାର ଉତ୍ତର ସୀମାକୁ ସ୍ପଷ୍ଟ ଭାବରେ ନିର୍ଦ୍ଧାରିତ କରିଦେଇପାରିବ?

ଉପରୋକ୍ତ ପ୍ରଶ୍ନଗୁଡ଼ିକର ଉତ୍ତରରୁ ଭାରତୀୟ ରାଷ୍ଟ୍ର ଦୁର୍ବଳ ହେବାର ଗୋଟିଏ ଆଭାସ ମିଳେ । ଆଉ ଗୋଟିଏ ଆଭାସ ମିଳେ, ରାଜକୋଷର ଅବସ୍ଥାକୁ ଦେଖି । ଭାରତରେ କୌଣସି ଏକ ରାଜ୍ୟ ସରକାର ନାହିଁ ଯିଏ ନିଜର ରାଜ୍ୟର ରାଜସ୍ୱରୁ କର୍ମଚାରୀମାନଙ୍କର ବେତନ ଓ ଭତ୍ତା ପୁରା ଭାବରେ ଦେଇପାରୁଛି । ହୁଏତ ବେତନ, ଭତ୍ତା, ଆଡ଼ମ୍ବର ଜନିତ ଖର୍ଚ୍ଚ ବହୁତ ବେଶୀ କିମ୍ବା ଆଦାୟ ହେଉଥିବା ରାଜସ୍ୱର ମାତ୍ରା ଅତି କମ୍ ।

ଯେଉଁଆଡୁ ଦେଖିଲେ ବି ଦେବାଳିଆ ଅବସ୍ଥା । କେନ୍ଦ୍ର ସରକାରଙ୍କର ଯେତିକି ରାଜସ୍ୱ, ବାର୍ଷିକ ସୁଧ ଓ ସମୂଳ ଧନର ଆଂଶିକ ପରିଶୋଧର ପରିଣାମକୁ ମିଶାଇ ହେଉଥିବା ଋଣ-ସେବା, ତାହାଠାରୁ ଅଧିକ । ଏହାର ଅର୍ଥ ହେଲା ଯେ, ଆମ ଦେଶ ଋଣ ଶୁଝିବା ପାଇଁ ଋଣ କରୁଛି ଓ ପ୍ରଶାସନ ଚଳାଇବାକୁ ମଧ୍ୟ ଋଣ ଉପରେ ଆଶ୍ରିତ ହେଉଛି । ଅତଏବ୍ ବିକାଶକୁ ପଚାରେ କିଏ? ଏହା ମଧ୍ୟ ନୁହେଁ ଯେ, ଆସନ୍ତା ଦୁଇ ତିନି ବର୍ଷ ମଧ୍ୟରେ ଏହି ଅବସ୍ଥା ସୁଧୁରି ଯିବ । ବରଂ ଆହୁରି ଖରାପ ଅବସ୍ଥା ହେବାର ଆଶଙ୍କା ଅଛି ।

ଅଷ୍ଟାଦଶ ଶତାବ୍ଦୀର ଭାରତ ଇତିହାସ ପଢ଼ିଲେ ଏହା ସାଙ୍ଗରେ ସାମଞ୍ଜସ୍ୟ ଥିଲାଭଳି ଜଣାପଡ଼ିବ । ସେତେବେଳେ ରାଜା, ମହାରାଜା ଓ ନବାବ୍‌ମାନଙ୍କ ଠାରୁ ଇଷ୍ଟ୍ ଇଣ୍ଡିଆ କମ୍ପାନୀର ପାଉଣା ବହୁତ ହୋଇ ଯାଉଥିଲା ଓ କମ୍ପାନୀ ସେମାନଙ୍କୁ ବାରମ୍ବାର ଧମକ୍ ଦେଉଥିଲା । ଶେଷରେ ରାଜା ଓ ନବାବ୍‌ମାନେ କମ୍ପାନୀକୁ ତାଙ୍କର ରାଜ୍ୟ ସମର୍ପଣ କରିଦେଉଥିଲେ । ଏବେ ଆନ୍ଧ୍ରପ୍ରଦେଶରେ ବିଜୁଳି ଦର ବହୁତ ବଢ଼ାଇ ଦିଆଯାଇଛି । ସାରା ରାଜ୍ୟରେ ଏଥିପାଇଁ ବିକ୍ଷୋଭ ଦେଖାଗଲେ ମଧ୍ୟ ରାଜ୍ୟ ସରକାର ତାକୁ କମେଇ ପାରୁନାହାନ୍ତି । କାରଣ, ବିଶ୍ୱବ୍ୟାଙ୍କ୍ ସାଙ୍ଗରେ ଏ ବିଷୟରେ ଚୁକ୍ତି ହୋଇଯାଇଛି । ବିଧାନସଭା ସେ ଚୁକ୍ତି ବିଷୟରେ କିଛି ଜାଣେ ନାହିଁ । ତେଣୁ ବାରମ୍ବାର ଦାବୀ ହେଉଛି ଯେ ଚୁକ୍ତିର ସବୁକଥା ପ୍ରକାଶ କରିବା ପାଇଁ । ଚନ୍ଦ୍ରବାବୁ ନାଇଡୁ କହୁଛନ୍ତି, ଏତେ ଅଳ୍ପ ସୁଧରେ ଏତେ ବେଶୀ ଟଙ୍କା ବିଶ୍ୱବ୍ୟାଙ୍କ୍ ଋଣ ଆକାରରେ ଦେଇଛି ।

ଓଡ଼ିଶାରେ ଯାହା ହେଇଛି, ତାହା ଆହୁରି ଲଜ୍ଜାର କଥା । ତା୧୪.୯.୨୦୦୦ର 'ସମାଜ'ର ପ୍ରଥମ ପୃଷ୍ଠାର ଶିରୋନାମା ଅଛି – "ଓଡ଼ିଶାକୁ ଆର୍ଥିକ ସହାୟତା ବନ୍ଦ ପାଇଁ ବିଶ୍ୱବ୍ୟାଙ୍କ୍‌ର ଧମକ ।" ଖବରର ଗୋଟିଏ ଅଂଶ ଏପରି – 'ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଓ ଶକ୍ତିମନ୍ତ୍ରୀ ଅନଙ୍ଗ ଉଦୟ ସିଂଦେଓଙ୍କର ଉପସ୍ଥିତିରେ ବିଶ୍ୱବ୍ୟାଙ୍କ୍‌ର ପ୍ରତିନିଧି ଗତକାଲି ଏହି ଚେତାବନୀ ସ୍ପଷ୍ଟ ଭାବରେ ଶୁଣାଇଥିବା ଜଣାପଡ଼ିଛି । ବିଶ୍ୱବ୍ୟାଙ୍କ୍ ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ ରାଜ୍ୟ ସରକାରଙ୍କୁ ଟଙ୍କା ଦେଉଥିବା ବେଳେ ଅର୍ଥବିଭାଗ ଏହି ଟଙ୍କା 'ଗ୍ରୀଡ୍‌କୋ' କମ୍ପାନୀକୁ ଯୋଗାଇ ନଦେଇ ମାସ ମାସ ଧରି ବିଦ୍ୟୁତ ସଂସ୍କାର କାର୍ଯ୍ୟକ୍ରମକୁ ଅଚଳ କରିଦେଉଥିବା ବୈଠକରେ ଅଭିଯୋଗ ହୋଇଥିଲା । ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ପରିସ୍ଥିତିକୁ ହୃଦୟଙ୍ଗମ କରି ଏହି ଟଙ୍କା ପ୍ରଦାନ କରିବା ପାଇଁ ନିର୍ଦ୍ଦେଶ ଦେଇଥିବା ଜଣାଯାଉଛି ।'

ଧିକ୍ ଏମାନଙ୍କୁ । ଯେଉଁ ମୁଖ୍ୟମନ୍ତ୍ରୀ ପଦ ଏତେ ଗାରିମାପୂର୍ଣ୍ଣ ଯେ, ଦେଶର ରାଷ୍ଟ୍ରପତି କିମ୍ବା ପ୍ରଧାନମନ୍ତ୍ରୀ ତାଙ୍କୁ କଡ଼ା କଥା ଶୁଣାଇ ପାରିବେ ନାହିଁ, ତାଙ୍କୁ ଏକ ସାହୁକାର ସଂସ୍ଥାର କର୍ମଚାରୀ ଆସି ଚେତାବନୀ ଦେଉଛି । ଗତ ଫେବୃୟାରୀ ମାସରେ ବ୍ରିଟେନ୍‌ର ଏକ ସରକାରୀ ବିଭାଗ ଡ଼ି.ଏଫ୍.ଆଇ.ଡ଼ି. ଓଡ଼ିଶା ସରକାର ସାଙ୍ଗରେ ଗୋଟିଏ ଚୁକ୍ତି କରିନେଇଛି । ଓଡ଼ିଶା ସରକାର ତାଙ୍କର ବିତ୍ତ ବ୍ୟବସ୍ଥାକୁ କିପରି ଚଳେଇବେ, କେତେ ଚାକିରି କାଟ ହେବ, ବିଭାଗୀୟ ଖର୍ଚ୍ଚ କେତେ କମିବ, ଏହିଭଳି ସର୍ତ୍ତଗୁଡ଼ିକୁ ବିଧାନସଭାରେ କିମ୍ବା ଖବର କାଗଜରେ ପ୍ରକାଶ କରିନାହାନ୍ତି । ଜନପ୍ରତିନିଧିମାନେ ତାଙ୍କ ଅଧିକାରର ମର୍ଯ୍ୟାଦା ବୁଝୁନାହାନ୍ତି । ବାଟମାରଣାରେ ଭାଗ ପାଇଲେ ସେମାନେ ଖୁସି ହୋଇପଡୁଛନ୍ତି ।

ମନ୍ତ୍ରୀମଣ୍ଡଳ, ବିଧାୟକ ଓ ବିପକ୍ଷ (ବିରୋଧିଦଳ), ସମସ୍ତେ ତାଙ୍କର ସାମ୍ବିଧାନିକ ଅଧିକାରଗୁଡ଼ିକୁ ତ୍ୟାଗ କରିବାକୁ ପ୍ରସ୍ତୁତ ଅଛନ୍ତି । ରାଷ୍ଟ୍ର ବା ରାଜ୍ୟର ମର୍ଯ୍ୟାଦା ପାଇଁ ନିଜ ଜୀବନକୁ କେହି ବିପନ୍ନ କରିବାକୁ ଚାହାନ୍ତି ନାହିଁ । ଚଳଚିତ୍ର ଅଭିନେତା ରାଜ୍‌କୁମାର୍ ପଦ୍ମଭୂଷଣ ଅଟନ୍ତି । ସେ କହିପାରୁ ନାହାନ୍ତି ଯେ, ମୋ ଜୀବନ ପଛେ ବିପଦରେ ପଡୁ, କିନ୍ତୁ ମୋ ରାଜ୍ୟ ଦସ୍ୟୁ ବୀରାପ୍ପାନ୍ ଆଗରେ ମୁଣ୍ଡ ନ ନୁଆଁଉ । କାନ୍ଦାହାରରେ ଅପହୃତ

ଏ ଦେଶର ଧନୀ ନାଗରିକମାନେ କହିପାରୁନାହାନ୍ତି ଯେ, ଆମକୁ ଆମ ଭାଗ୍ୟ ଉପରେ ଛାଡ଼ିଦିଅ, ଆତଙ୍କବାଦ ପାଖରେ ରାଷ୍ଟ୍ର ଆତ୍ମସମର୍ପଣ ନ କରୁ ।

ଆମ ସମୟର ପ୍ରଗତିଶୀଳ ବିଚାରଧାରାର କାର୍ଯ୍ୟକ୍ରମଗୁଡ଼ିକ ରାଷ୍ଟ୍ର ପାଖରୁ ଭାଗ ମାଗିବା ଓ ଭାଗ ନେବା ପର୍ଯ୍ୟନ୍ତ ସୀମିତ ରହୁଛି । ରାଷ୍ଟ୍ରକୁ ଦୃଢ଼ ଓ ବିଶ୍ୱାସଯୋଗ୍ୟ କରିବା, ଶାସକମାନଙ୍କୁ ଯୋଗ୍ୟ ଓ ଚରିତ୍ରବାନ କରିବାର ସୂତ୍ର ବା କର୍ମସୂଚୀ ତାହା ଭିତରେ ନାହିଁ । ଅଥଚ ଦୁନିଆର ସବୁଆଡ଼େ ବିକାଶଶୀଳ ଦେଶର ରାଷ୍ଟ୍ରମାନେ ଦୁର୍ବଳ ହୋଇପଡୁଛନ୍ତି । ରାଷ୍ଟ୍ରମାନେ ଦୁର୍ବଳ ହେବା ସଙ୍ଗେ ସଙ୍ଗେ ଅତ୍ୟାଚାରୀ ହେଉଛନ୍ତି । ଶାସକମାନେ ଅଯୋଗ୍ୟ ଓ ଦେବାଳିଆ ହେବା ସଙ୍ଗେ ସଙ୍ଗେ ବିଳାସୀ, ଧନଲୋଭୀ ଓ ଚରିତ୍ରହୀନ ହେଉଛନ୍ତି ।

ପ୍ରଗତିଶୀଳ ବିଚାରଧାରାଗୁଡ଼ିକରେ ରାଜ୍ୟର ଦୃଢ଼ତା ଓ ଶାସକର ଚରିତ୍ର ବିଷୟକ ସିଦ୍ଧାନ୍ତ ଓ କାର୍ଯ୍ୟପ୍ରଣାଳୀ ଯୋଡ଼ିବାକୁ ହେବ । କାରଣ ପ୍ରଚଳିତ ବ୍ୟବସ୍ଥାରେ ଯେଉଁ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ ଅଛନ୍ତି, ସେମାନେ ତ ରାଷ୍ଟ୍ର ଓ ସମାଜର ଚରିତ୍ରକୁ ଦୁର୍ବଳ କରିଚାଲିବେ । ରାଜବଂଶରେ ଜନ୍ମହେଲେ କେହି ଯୋଗ୍ୟ ଶାସକ ହୋଇଯିବ ନାହିଁ । ଯୁଗର ଅବସ୍ଥାକୁ ଦେଖି ରାଜ୍ୟର ଦୃଢ଼ତା ଓ ଶାସକର ଯୋଗ୍ୟତା ପାଇଁ ମାପକାଠି ଅର୍ଥାତ୍ ସିଦ୍ଧାନ୍ତ କରିବା ଦରକାର । ସେଇ ମାପକାଠି ସାହାଯ୍ୟରେ ଜନସାଧାରଣ ଶାସକମାନଙ୍କର ଯୋଗ୍ୟତା ନିରୂପଣ କରିପାରିବେ ଓ ଏହି ସକ୍ରାନ୍ତରେ ସମ୍ବେଦନଶୀଳ ହେବେ । କୌଟିଲ୍ୟ, କନ୍‌ଫୁସିଅସ୍ ଓ ମାକିଆଭେଲି ଭଳି ଦାର୍ଶନିକମାନେ ତାଙ୍କ ଯୁଗର ପରିସ୍ଥିତିରେ ରାଷ୍ଟ୍ର ଓ ସମାଜକୁ ବ୍ୟବସ୍ଥିତ ଓ ଦୃଢ଼ କରିବା ଉଦ୍ଦେଶ୍ୟରେ ଶାସ୍ତ୍ର ରଚନା କରିଥିଲେ ।

ଆଜିର ବିକାଶଶୀଳ ଦେଶମାନଙ୍କର ରାଜନୈତିକ ଦୁର୍ବଳତାକୁ ଏଡ଼ାଇବା ପାଇଁ ନୂଆ ଶାସ୍ତ୍ର ରଚନାର ଆବଶ୍ୟକତା ହେଉଛି । ଶାସ୍ତ୍ର କେବଳ ତାଳପତ୍ର କିମ୍ବା କମ୍ପ୍ୟୁଟରରେ ଲେଖିଲେ ହୁଏ ନାହିଁ । ଲୋକଙ୍କ ମନ ଭିତରେ ରହିଲା ଭଳି ସିଦ୍ଧାନ୍ତର ପ୍ରଚାର ହେବା ଆବଶ୍ୟକ । କେତୋଟି ପ୍ରାରମ୍ଭିକ ସିଦ୍ଧାନ୍ତର ଆମେ ଏଠାରେ ଉଦାହରଣ ଭାବରେ ଦେଉଛୁ ।

ଶାସକର ବିଚାରଧାରା ଯାହା ହେଉନା କାହିଁକି, ତାହା ପାଇଁ ରାଜ୍ୟ ଓ ଜନତାର ସ୍ୱାର୍ଥ ହେଉଛି ସର୍ବୋପରି ବା ସର୍ବପ୍ରଧାନ । ଯଦି ରାଜ୍ୟ ପତନ ଆଡ଼କୁ ଯାଉଛି, ଜନତାର ଅସୁରକ୍ଷା ବଢୁଛି ଓ ଶାସକମାନଙ୍କର ପରିବାରର ସମୃଦ୍ଧି ଘଟୁଛି, ତାହାହେଲେ ସେ ରାଜ୍ୟର ପତନ ଘଟୁଛି ବୋଲି ଜାଣିବାକୁ ହେବ । ହିଂସାର ନିୟନ୍ତ୍ରଣ ରାଜ୍ୟର ପ୍ରଥମ ମୌଳିକ କାର୍ଯ୍ୟ । ତେଣୁ ଅପରାଧିମାନଙ୍କୁ ନିୟନ୍ତ୍ରଣ କରିପାରୁନଥିବା ଶାସକମାନଙ୍କୁ ଅଯୋଗ୍ୟ ବୋଲି ଘୋଷଣା କରିବା ଦରକାର । କୌଣସି ବ୍ୟକ୍ତି ବା ସଙ୍ଗଠନର ଧନଶକ୍ତି ରାଜ୍ୟର ଅନୁପାତରେ ଅଧିକ ହେବା ଅନୁଚିତ୍ । ଦେଶର ଯାହା ହାରାହାରି ମୁଣ୍ଡପିଛା ଆୟ, ତାହାର ଦଶଗୁଣରୁ ଅଧିକ ଆୟ ସେହି ଦେଶର କୌଣସି ନାଗରିକର ହେବା ଉଚିତ୍ ନୁହେଁ । ବ୍ୟବସାୟିକ ସଙ୍ଗଠନମାନଙ୍କର ଧନଶକ୍ତି ମଧ

ରାଜ୍ୟର ଧନଶକ୍ତି ତୁଳନାରେ ଯଥେଷ୍ଟ କମ୍ ହେବା ଦରକାର । ବିକାଶଶୀଳ ଦେଶମାନଙ୍କରେ ବହୁରାଷ୍ଟ୍ରୀୟ କମ୍ପାନୀମାନେ ପ୍ରବେଶ କରିବା ଦ୍ୱାରା ଏହି ସନ୍ତୁଳନ ବିଗିଡ଼ି ଯାଉଛି । ଦରମା, ଭତ୍ତା, ଘରୋଇ ଲାଭ ଓ ଆଡ଼ମ୍ବର ଖର୍ଚ୍ଚ ରାଜ୍ୟର ରାଜସ୍ୱ ଅନୁପାତରେ ହେବା ଦରକାର । କର୍ମଚାରୀମାନଙ୍କର ମୋଟ ଦରମା, ଭତ୍ତା ଓ ପ୍ରଶାସନିକ ଖର୍ଚ୍ଚ ସେହି ରାଜ୍ୟର ନିଜର ରାଜସ୍ୱର ଅଧାରୁ ବେଶୀ ହେବା ଉଚିତ ନୁହେଁ । ଦେଶଭକ୍ତିର ପରୀକ୍ଷା କେବଳ ଯୁଦ୍ଧକ୍ଷେତ୍ରରେ ହୁଏନାହିଁ । ଯେକୌଣସି ସମୟରେ ରାଷ୍ଟ୍ରର ସୁରକ୍ଷା ଓ ପ୍ରତିଷ୍ଠା ଓ ବ୍ୟକ୍ତିର ସୁରକ୍ଷା ଓ ପ୍ରତିଷ୍ଠା ମଧ୍ୟରେ ଦ୍ୱନ୍ଦ ଉପୁଜି ପାରେ । ସେତେବେଳେ ରାଷ୍ଟ୍ରକୁ ପ୍ରାଧାନ୍ୟ ଦେବା ହେଉଛି ଦେଶଭକ୍ତି ।

୧୫ ସେପ୍ଟେମ୍ବର, ୨୦୦୦

# ହିନ୍ଦୁ ଧର୍ମ ଓ ଭାରତୀୟ ରାଷ୍ଟ୍ର

୧

ନିଜକୁ ହିନ୍ଦୁ ବୋଲାଉଥିବା ଲକ୍ଷାଧିକ ଲୋକ 'ସଙ୍ଘ ପରିବାର' ଦ୍ୱାରା ସଙ୍ଗଠିତ ଓ ସଞ୍ଚାଳିତ ହୋଇ ଛଅ ଡିସେମ୍ବର ୧୯୯୨ ତାରିଖରେ ଅଯୋଧ୍ୟା ସ୍ଥିତ ପାଞ୍ଚଶହ ବର୍ଷ ପୁରୁଣା ବାବ୍ରୀ ମସ୍‌ଜିଦ୍‌କୁ ଭାଙ୍ଗି ଧୂଳିସାତ୍ କଲେ । ଏହି ଖବର ଚାରିଆଡ଼କୁ ବ୍ୟାପିଗଲା ପରେ ସାରା ରାଷ୍ଟ୍ର କିଛି ସମୟ ପାଇଁ ସ୍ତମ୍ଭୀଭୂତ ହେଲା । ହିନ୍ଦୁ, ମୁସଲ୍‌ମାନ୍, ଖ୍ରୀଷ୍ଟାନ୍ ଓ ଶିଖ୍ – ସବୁ ଧର୍ମର ଭାରତୀୟଙ୍କର ମନକୁ ଆଶ୍ଚର୍ଯ୍ୟ, ଗ୍ଲାନି ଓ ଉଦ୍‌ବେଗ ଆଚ୍ଛନ୍ନ କରି ରଖିଲା ।

ଏଭଳି ସାମୂହିକ ପ୍ରତିକ୍ରିୟା ବେଶୀ ସମୟ ପର୍ଯ୍ୟନ୍ତ ସ୍ଥିର ରହେ ନାହିଁ । କିନ୍ତୁ ସେହି ଅଳ୍ପ ସମୟ ଭିତରେ ଭାରତୀୟ ରାଷ୍ଟ୍ରର ବିବେକ ଦଂଶନ ଜଣାପଡ଼ିଲା । ଭାରତୀୟ ଜନତା ପାର୍ଟିର ନେତାମାନଙ୍କ ମନ ଉପରେ ମଧ୍ୟ ଏହାର ଚାପ ପଡ଼ିଥିଲା । ନିଜ ଉପରୁ ଦୋଷ ଛଡ଼ାଇବା ପାଇଁ ଆଡ଼୍‌ଭାନୀ ଲୋକସଭାରେ ବିରୋଧୀ ଦଳର ନେତା ପଦରୁ ଇସ୍ତଫା ଦେଲେ ଓ ଅଟଳ ବିହାରୀ ବାଜ୍‌ପେୟୀ "ଲଜ୍ଜାରେ ମୁଣ୍ଡ ନଇଁଯାଉଛି" ବୋଲି ମନ୍ତବ୍ୟ ଦେଲେ ।

ପରବର୍ତ୍ତୀ ଏକ ସପ୍ତାହ ମଧ୍ୟରେ ସଙ୍ଘ ପରିବାରର ନେତାମାନେ ଅନୁଭବ କଲେ ଯେ, ଲୋକଙ୍କର ପ୍ରତିକୂଳ ମନୋଭାବ ଆଉ ନାହିଁ । ତେଣୁ ସେମାନେ କହିବାକୁ ଆରମ୍ଭ କରିଦେଲେ ଯେ ଯାହା ହେଲା, ଉଚିତ୍ ହେଲା ।

ପ୍ରଥମ ଦଶ-ବାର ଘଣ୍ଟା ମଧ୍ୟରେ ସାରା ଦେଶର ଯେଉଁ ମାନସିକ ବେଦନା ହେଲା, ତାହା ହିଁ ଭାରତର ରାଷ୍ଟ୍ରୀୟ ବିବେକ; ତାହାହିଁ ହିନ୍ଦୁମାନଙ୍କର ଧାର୍ମିକ ସମ୍ବେଦନଶୀଳତା । କିଛିକ୍ଷଣ ପାଇଁ ସମସ୍ତଙ୍କୁ ମନେହେଲା ଯେ, ଭାରତର ଧର୍ମ ଓ ଭାରତୀୟ ରାଷ୍ଟ୍ରକୁ ରାହୁ ଗ୍ରାସ କରିଛି ।

ଗୋଟିଏ ଐତିହାସିକ ମୂହୂର୍ତ୍ତରେ ଯେଉଁ ବୋଧ ସୃଷ୍ଟି ହେଲା, ତାହାର ଅନୁଶୀଳନ କରିବାକୁ ହେବ । ଦେଶ କାହିଁକି ସ୍ତମ୍ଭୀଭୂତ ହେଲା ? ଧର୍ମ ଓ ରାଷ୍ଟ୍ରକୁ କେଉଁ ଧକ୍‌କା ଲାଗିଲା ?

ବିଂଶ ଶତାବ୍ଦୀର ଆରମ୍ଭରୁ ଆଜିପର୍ଯ୍ୟନ୍ତ ବିଭିନ୍ନ ପିଢ଼ିର ଯେଉଁ ଲୋକମାନେ ହିନ୍ଦୁ ଘରେ ଜନ୍ମ ହୋଇ ହିନ୍ଦୁ ଧର୍ମକୁ ଜାଣିବା ପାଇଁ ଚେଷ୍ଟା କରିଛନ୍ତି ଓ ଜାଣିବା ପରେ ନିଜ ଧର୍ମ ବିଷୟରେ ଗର୍ବ ଅନୁଭବ କରିଛନ୍ତି, ସେମାନେ ନିଜର ଧର୍ମବୋଧକୁ ପରିଷ୍କୃତ କରିବା ନିମନ୍ତେ ମହର୍ଷି ଦୟାନନ୍ଦ, ରାମକୃଷ୍ଣ ପରମହଂସ, ବିବେକାନନ୍ଦ, ଶ୍ରୀ ଅରବିନ୍ଦଙ୍କ ଠାରୁ ସର୍ବପଲ୍ଲୀ ରାଧାକୃଷ୍ଣନ୍, ରାଜଗୋପାଳଚାରୀ ଅବା ସ୍ୱାମୀ ଶିବାନନ୍ଦଙ୍କୁ ଅଧ୍ୟୟନ କରିବାକୁ ଚେଷ୍ଟା କରିଛନ୍ତି । ଗୀତା ଓ ଉପନିଷଦ୍ ମଧ୍ୟ ପଢ଼ିଛନ୍ତି । କିମ୍ବା ଏସବୁ ଉପରେ ଟେଗୋର୍, ତିଲକ୍, ଗାନ୍ଧୀ ବା ରଙ୍ଗନାଥାନନ୍ଦଙ୍କର ଟୀକା ପଢ଼ିଛନ୍ତି । ଏହିସବୁ ଶାସ୍ତ୍ର ମନ୍ଥନରୁ ହିନ୍ଦୁ ଧର୍ମ ସମ୍ପର୍କରେ ବିଂଶ ଶତାବ୍ଦୀର ଚେତନା ଜନ୍ମିଛି । ଏହିସବୁ ଗ୍ରନ୍ଥ ସାଙ୍ଗରେ ଯେଉଁ ପାଠକମାନଙ୍କର ପ୍ରତ୍ୟକ୍ଷ ହେଉ ବା ପରୋକ୍ଷ ହେଉ, ଆତ୍ମିକ ସମ୍ପର୍କ ରହିଛି, ସେମାନଙ୍କୁ ନିମ୍ନଲିଖିତ ପ୍ରଶ୍ନର ଉତ୍ତର ଦେବାକୁ ହେବ । ବାବ୍ରୀ ମସ୍‌ଜିଦ୍‌କୁ ଧୂଳିସାତ୍ କରିଦେବା ଓ ସେହି ସ୍ଥାନରେ ରାମମନ୍ଦିର ନିର୍ମାଣ ପାଇଁ ଜିଦ୍ କରିବା – ଏହା କ'ଣ ସେହି ହିନ୍ଦୁ ସଂସ୍କୃତି ସାଙ୍ଗରେ ମେଳ ଖାଉଛି ? ହିନ୍ଦୁ ଧର୍ମକୁ ଏପରି ଏକ ବିଧ୍ୱଂସକ କାର୍ଯ୍ୟରେ ଲଗାଇବା ଫଳରେ କ'ଣ ଭାରତୀୟ ରାଷ୍ଟ୍ର ଶକ୍ତିଶାଳୀ ହେବ ? ଏହା କ'ଣ ଭାରତର ସାମାଜିକ ଏକତାକୁ ପୁଷ୍ଟ କରିବ ?

ଓଡ଼ିଆ ଭାଷାର ପାଠକମାନଙ୍କ ପାଇଁ ରାମକୃଷ୍ଣ ପରମହଂସ ହିନ୍ଦୁ ଧର୍ମର ଏକ ଅନୁପମ ପ୍ରତୀକ । ତାଙ୍କର ଜୀବନ ଥିଲା ଧର୍ମ । ହିନ୍ଦୁ ଧର୍ମର ସେ ଥିଲେ ଜୀବନ୍ତ ଅବତାର । ସେ କାଳୀ ମୂର୍ତ୍ତିର ପୂଜକ ଥିଲେ । କିନ୍ତୁ ତୋତାପୁରୀଙ୍କ ଠାରୁ ବେଦାନ୍ତର ଦୀକ୍ଷା ଗ୍ରହଣ କରିବା ସମୟରେ ସେ ତାଙ୍କ କାଳୀ ମୂର୍ତ୍ତିକୁ ମଧ୍ୟ ଜଳାଞ୍ଜଳି ଦେଲେ ଓ ଏକ ନିର୍ଗୁଣ, ନିର୍ବିକାର ଆତ୍ମା ଭିତରେ ଲୀନ ହୋଇଗଲେ । ସେହି ରାମକୃଷ୍ଣ ପୁଣି ଲୁଙ୍ଗି ଓ ଟୋପି ପିନ୍ଧି ମସ୍‌ଜିଦ୍‌ରେ ଏକ ନୈଷ୍ଠିକ ମୁସଲ୍‌ମାନ୍‌ର ହୃଦୟ ନେଇ ନମାଜ୍ ପଢ଼ିବାର ସାଧନା କଲେ । ଏହା ନୁହେଁ ଯେ, ସେ କାଳୀଙ୍କୁ ଛାଡ଼ିଲେ, ଅଥବା ବେଦାନ୍ତକୁ ତ୍ୟାଗ କଲେ । ସେ ବେଦାନ୍ତକୁ ବୁଝି ପାରିଥିଲେ ବୋଲି କାଳୀ ଭକ୍ତ ହୋଇ ସୁଦ୍ଧା ମସ୍‌ଜିଦ୍‌ରେ ନମାଜ୍ ପଢ଼ିଲେ ।

ଏହି ରାମକୃଷ୍ଣଙ୍କର ପ୍ରତି ଯାହାର କାଣିଚାଏ ମଧ୍ୟ ଶ୍ରଦ୍ଧା ଅଛି, ସେ କେବେ ମସ୍‌ଜିଦ୍ ଭଙ୍ଗା ଦଳର କରସେବକ ହୋଇପାରିବ ?

"ଧର୍ମ ଏକ ବିଶାଳ ପୁଷ୍କରିଣୀ । ତାହାର ଅନେକ ତୁଠ ଅଛି । କେହି ଏ ତୁଠରେ ତ, ଅନ୍ୟ କେହି ସେ ତୁଠରୁ ପାଣି ନେଉଛି ।" ସର୍ବ ଧର୍ମ ସମଭାବର ଏହି ସରଳତମ ବ୍ୟାଖ୍ୟା ସେହି ରାମକୃଷ୍ଣଙ୍କର । ଗାମୁଛା ଖଣ୍ଡେ ପିନ୍ଧି, ଧର୍ମର ଅତଳ ସମୁଦ୍ରରେ ଦିନରାତି ବୁଡ଼ ପକାଉଥିବା ସେହି ଅଧାଲଙ୍ଗଳା ନିରକ୍ଷର ସନ୍ନ୍ୟାସୀ ଭାରତୀୟ ଧର୍ମ ନିରପେକ୍ଷ ସିଦ୍ଧାନ୍ତର ପ୍ରଥମ ପ୍ରବକ୍ତା ଥିଲେ । ଗାନ୍ଧିଜୀ ଏହାକୁ ଏକ ରାଜନୈତିକ କାର୍ଯ୍ୟକ୍ରମରେ ପରିଣତ କଲେ ।

ଏହିପରି ଭାବରେ ସ୍ୱାଧୀନ ଭାରତର ନିର୍ମାଣ ହୋଇଥିଲା । ହିନ୍ଦୁ ଧର୍ମର ଶ୍ରେଷ୍ଠ ଉଦ୍‌ଘୋଷକମାନେ ହିଁ ଭାରତୀୟ ସମ୍ବିଧାନର କେତେକ ମୂଳମନ୍ତ୍ରକୁ ଭାରତୀୟ

ସମାଜରେ ସ୍ୱୀକୃତି ଦିଆଇଥିଲେ । ସର୍ବଧର୍ମ ସମଭାବ, ଜାତିବିହୀନତା, ଶୂଦ୍ରଉତ୍‌ଥାନ- ଏସବୁର ନିର୍ଗମ ସ୍ଥଳ ରାଜନୀତି ବା ରାଜନୈତିକ ଦଳ ନୁହନ୍ତି । ରାଜନୀତିର ବିଷୟବସ୍ତୁ ହେବାର ବହୁ ପୂର୍ବରୁ ଧାର୍ମିକ ମହାପୁରୁଷମାନେ ଏଗୁଡ଼ିକର ପ୍ରତିପାଦନ କରିଥିଲେ । ଆଧୁନିକ ଭାରତୀୟ ରାଷ୍ଟ୍ରର ଅସଲ ନିର୍ମାତା ହେଉଛନ୍ତି ସେଇମାନେ । ଭାରତୀୟ ରାଷ୍ଟ୍ରର ନିର୍ମାଣ ହୋଇସାରିଛି । 'ହିନ୍ଦୁ ରାଷ୍ଟ୍ର'ର ସ୍ଲୋଗାନ ଦେଇ ଆଡ୍‌ଭାନୀ, ଅଶୋକ ସିଙ୍ଘଲ୍ ବା ଦେଓରସ୍ ଯଦି ରାଷ୍ଟ୍ରର ଏହି ଅବଧାରଣାକୁ ବଦଳାଇବା ପାଇଁ ଯଦି ଚାହୁଁଛନ୍ତି, ତାହା ସେମାନଙ୍କର ଅକ୍ଷମଣୀୟ ଦାମ୍ଭିକତା । ଏମାନେ କିଏ ? ଏମାନେ ରାଜନୈତିକ ନେତା ହୋଇପାରନ୍ତି, କିନ୍ତୁ ହିନ୍ଦୁ ଧର୍ମର ମର୍ମଜ୍ଞ ନୁହନ୍ତି । ଏମାନଙ୍କର କୌଣସି ଆଧ୍ୟାତ୍ମିକ ବ୍ୟକ୍ତିତ୍ୱ ନାହିଁ । ଆଇନ୍ ଅନୁସାରେ ଭୋଟ୍ ଲଢ଼ିବାର ଅଧିକାର ସେମାନଙ୍କର ଅଛି । କିନ୍ତୁ ରାଷ୍ଟ୍ର ଓ ଧର୍ମର ସିଦ୍ଧାନ୍ତକୁ ବଦଳାଇବାର ଯୋଗ୍ୟତା ସେମାନଙ୍କର ନାହିଁ ।

୨

ଧର୍ମନିରପେକ୍ଷତା ଆଧୁନିକ ଭାରତର ମୁନିଋଷିମାନଙ୍କ ଦ୍ୱାରା ପ୍ରଦତ୍ତ ଏକ ରାଷ୍ଟ୍ରନୀତି । ଏହାର ଗୋଟିଏ ଦିଗ ହେଉଛି 'ସର୍ବଧର୍ମ ସମଭାବ' । ଅନ୍ୟ ଦିଗଟି ହେଉଛି ରାଷ୍ଟ୍ର ଓ ଧର୍ମର କ୍ଷମତାରେ ଭିନ୍ନତା । ଭାରତ ନିଶ୍ଚିତ ଭାବରେ ଏକ ବହୁ ଧର୍ମ, ବହୁ ଭାଷା, ବହୁ ସମ୍ପ୍ରଦାୟର ଦେଶ । ଏହି ବିବିଧତାକୁ ଯେତେ ସମ୍ମାନ ଦିଆଯିବ ଆମର ରାଷ୍ଟ୍ରୀୟ ଏକତା ସେତିକି ବେଶୀ ଶକ୍ତିଶାଳୀ ହେବ । ଏହା ନିଶ୍ଚିତ ଯେ ବିଭିନ୍ନ ଭାରତୀୟ ଧର୍ମମାନଙ୍କ ଭିତରେ ହିନ୍ଦୁ ଧର୍ମ ବେଶୀ ବ୍ୟାପକ ଓ ଅତି ପ୍ରାଚୀନ । ତେଣୁ ଭାରତର ସଂସ୍କୃତିକୁ ଏହା ନିଶ୍ଚିତ ଭାବରେ ପ୍ରଭାବିତ କରିବ ।

ଯେଉଁଠି ବାଧ୍ୟବାଧକତା ନଥାଏ, ସେହି ପ୍ରଭାବ ସ୍ୱତଃସ୍ଫୂର୍ତ୍ତ ଭାବରେ ଓ ଗଭୀର ଭାବରେ ହୋଇଥାଏ । ଯେଉଁଠି ଲଦିଦେବାକୁ ଚେଷ୍ଟା ହୁଏ, ସେଠି ଅନାବଶ୍ୟକ ବିରୋଧ ମୁଣ୍ଡ ଟେକିଥାଏ । ଏହା ହେଉଛି ସାଂସ୍କୃତିକ ମିଳନର ନିୟମ । ଭାରତୀୟ ଇତିହାସର ଯେଉଁ ଯେଉଁ ଯୁଗରେ ମିଳନର ସ୍ୱଚ୍ଛନ୍ଦତା ଥିଲା, ସେହି ସବୁ ସମୟରେ ଭାରତ ଭିତରେ ପ୍ରଚୁର ସାଂସ୍କୃତିକ ମିଶ୍ରଣ ହୋଇଛି ଓ ହିନ୍ଦୁ ଧର୍ମ ଅନ୍ୟ ସବୁ ଧର୍ମ ଓ ସଂସ୍କୃତିକୁ ପ୍ରଭାବିତ କରିଛି । ଭଲ ହେଉ ବା ଭୁଲ୍ ହେଉ ଭାରତୀୟ ମୁସଲ୍‌ମାନ୍ ସମାଜରେ ଏବେ ବି ଜାତିପ୍ରଥା ରହିଛି, ଯାହା ଦୁନିଆର ଅନ୍ୟ କୌଣସି ମୁସଲ୍‌ମାନ୍ ସମାଜରେ ନାହିଁ । ତେଣୁ ଭାରତୀୟ ମୁସଲ୍‌ମାନ୍ ଓ ଭାରତୀୟ ଖ୍ରୀଷ୍ଟିଆନ୍ ଦୁନିଆର ଅନ୍ୟ ମୁସଲ୍‌ମାନ୍ ଓ ଖ୍ରୀଷ୍ଟାନ୍‌ମାନଙ୍କ ଠାରୁ ଭିନ୍ନ ।

ଉଗ୍ର ହିନ୍ଦୁବାଦୀମାନେ ଜାଣି ରଖିବା ଉଚିତ ଯେ, ଶିଖ୍‌ମାନେ, ବୌଦ୍ଧମାନେ ଓ ଆଦିବାସୀମାନେ ସଙ୍ଗଠିତ ହିନ୍ଦୁ ଧର୍ମର ଅଙ୍ଗ ନୁହନ୍ତି । କିନ୍ତୁ ବ୍ୟାପକ ହିନ୍ଦୁ ଧର୍ମ ସାଙ୍ଗରେ ନିଜକୁ ଚିହ୍ନିତ କରାଇବାରେ ସେମାନଙ୍କର ସଙ୍କୋଚ ନାହିଁ । ଶିଖ୍ ଓ ହିନ୍ଦୁମାନଙ୍କର ଆନ୍ତର୍ବିବାହକୁ ଅନ୍ତର୍ଜାତୀୟ କିମ୍ବା ଅର୍ନ୍ତଧର୍ମୀୟ ବିବାହ ବୋଲି ଧରାଯାଉ ନଥିଲା । ତାହା ସ୍ୱାଭାବିକ ଥିଲା । ୧୯୮୪ର ଶିଖ୍-ବିରୋଧୀ ଅଭିଯାନ ପରେ ଏହି ସମ୍ପର୍କ

ସଙ୍କୁଚିତ ହୋଇଯାଉଛି । ହିନ୍ଦୁ ଧର୍ମାନ୍ଧତା ଯୋଗୁଁ କିପରି ହିନ୍ଦୁ ସମାଜ ଖଣ୍ଡିତ ହେଉଛି ଏହା ତାହାର ଏକ ତାଜା ଉଦାହରଣ ।

ହିନ୍ଦୁ ସମାଜ ନିଜେ ବିବିଧତାରେ ପରିପୂର୍ଣ୍ଣ । ଏହାର ବିଭିନ୍ନ ସମୂହ ବିଭିନ୍ନ ଦେବଦେବୀଙ୍କୁ ଆରାଧନାର କେନ୍ଦ୍ରରେ ରଖିଥାନ୍ତି । ପୂର୍ବ ଭାରତରେ ଦେବୀଙ୍କର ପୂଜା ଅଧିକ । ଉତ୍ତରରେ ରାମ ଓ ଦକ୍ଷିଣରେ ଶିବ ଅଧିକ ପୂଜ୍ୟ । ହିନ୍ଦୁ ଧର୍ମକୁ ରାମ-କେନ୍ଦ୍ରିତ କରିବା ପାଇଁ ସଙ୍ଘ ପରିବାରର ଯେଉଁ ଅପଚେଷ୍ଟା ଚାଲିଛି ତାହାର ପ୍ରତିକ୍ରିୟାରେ ସଚେତ ହରିଜନ (ଦଳିତ) ଶ୍ରେଣୀ ରାମ ବିରୋଧୀ ହେଉଛନ୍ତି । କାରଣ ବଶିଷ୍ଠଙ୍କ ନିର୍ଦ୍ଦେଶରେ ରାଜା ରାମଚନ୍ଦ୍ର ଶୂଦ୍ର ତପସ୍ୱୀ ଶମ୍ବୁକଙ୍କୁ ହତ୍ୟା କରିଥିଲେ । ସଙ୍ଘ ପରିବାର ଯଦି ଅନାବଶ୍ୟକ ଭାବରେ ରାମ-କେନ୍ଦ୍ରିତ ହିନ୍ଦୁ ଧର୍ମର ପ୍ରଚାର କରି ନ ଥାଆନ୍ତେ, ତାହାହେଲେ ଏହିପରି ଭାବରେ ରାମଙ୍କର ବିରୋଧର ସୂତ୍ରପାତ ହୋଇ ନ ଥାଆନ୍ତା ।

ଦଳିତ ଓ ଶୂଦ୍ର ଆନ୍ଦୋଳନକାରୀମାନେ ଏକଲବ୍ୟଙ୍କୁ ପ୍ରତୀକ ରୂପେ ଗ୍ରହଣ କଲେଣି । ଏକଲବ୍ୟ ନିଶ୍ଚୟ ଶବର ଜାତିର, ଅର୍ଥାତ୍ ଆଦିବାସୀ, ଯୁବକ ଥିଲା । ଦ୍ରୋଣ ତାଙ୍କ ପ୍ରତି ଯେଉଁ ଅମାନବୀୟ ଆଚରଣ କରିଥିଲେ, ତାହା ସ୍ମରଣ କରାଇ ଶୂଦ୍ର ଓ ଆଦିବାସୀମାନଙ୍କୁ ବ୍ରାହ୍ମଣବାଦୀ ହିନ୍ଦୁ ଧର୍ମ ବିରୁଦ୍ଧରେ ସଙ୍ଗଠିତ କରିବା ପାଇଁ ଏହି ଆନ୍ଦୋଳନକାରୀମାନେ ଚାହାନ୍ତି । ଉଗ୍ର ହିନ୍ଦୁବାଦୀମାନେ ଏଥିରୁ ଚେତାବନୀ ଗ୍ରହଣ କରିବା ଉଚିତ୍ ଯେ ସେମାନେ ଯେଉଁ ହିନ୍ଦୁବାଦର ପ୍ରଚାର କରୁଛନ୍ତି, ଦଳିତ-ଆଦିବାସୀମାନେ ତାହାକୁ ଏକ ବ୍ରାହ୍ମଣବାଦୀ ଧର୍ମ ରୂପେ ଦେଖୁଛନ୍ତି । ରାମ-କେନ୍ଦ୍ରିତ ହିନ୍ଦୁ ସଙ୍ଗଠନଗୁଡ଼ିକ ଏଥିପାଇଁ ଦାୟୀ । ଦ୍ୱିତୀୟରେ, ହିନ୍ଦୁ ଧର୍ମ ଓ ଭାରତୀୟ ସଂସ୍କୃତିର ବିବିଧତାକୁ ନଷ୍ଟ କରିବାର ଯେଉଁ ପ୍ରବୃତ୍ତି ସଙ୍ଘ ପରିବାରରେ ଜାତ ହୋଇଛି, ତାହା ଫଳରେ ଯେ, କେବଳ ମୁସଲ୍‌ମାନ୍ ଓ ଖ୍ରୀଷ୍ଟିଆନ୍ ଧର୍ମର ଭାରତୀୟମାନେ ବହିଷ୍କୃତ ଅନୁଭବ କରୁଛନ୍ତି, ତାହା ନୁହେଁ; ଆଦିବାସୀ ଓ ଦଳିତ ଗୋଷ୍ଠୀମାନେ ମଧ୍ୟ ହିନ୍ଦୁ ଧର୍ମର ମୁଖ୍ୟଧାରାରୁ ବହିଷ୍କୃତ ହୋଇ ରହିବାର ଆଶଙ୍କା କରୁଛନ୍ତି ।

ଭାରତକୁ ଏକ ଧର୍ମୀୟ ରାଷ୍ଟ୍ରରେ ପରିଣତ କରିବା ଓ ହିନ୍ଦୁ ଧର୍ମକୁ ଏକ କେନ୍ଦ୍ରୀୟ ନେତୃତ୍ୱ ଦ୍ୱାରା ସଙ୍ଗଠିତ କରିବା-ଏହି ଉଭୟ ନୀତି ଭାରତୀୟ ରାଷ୍ଟ୍ରର ସ୍ୱଭାବ ଓ ହିନ୍ଦୁ ଧର୍ମର ଚରିତ୍ର ଉପରେ ଆଘାତ କରୁଛି । ଭାରତୀୟ ରାଷ୍ଟ୍ର ଓ ହିନ୍ଦୁ ଧର୍ମ ଉଭୟଙ୍କର ସ୍ୱାଭାବିକ ଗଠନ ବିକେନ୍ଦ୍ରୀକୃତ । ନାନାବିଧ ସ୍ୱାୟତ୍ତ ଧାରାକୁ ସମାବିଷ୍ଟ କରି ହିନ୍ଦୁ ଧର୍ମ ଓ ଭାରତୀୟ ରାଷ୍ଟ୍ର ଫୁଟି ଉଠିଛି । ଦିଲ୍ଲୀ-କେନ୍ଦ୍ରିତ ଭାରତୀୟ ଶାସନ, ହିନ୍ଦୁ-କେନ୍ଦ୍ରିତ ଭାରତୀୟ ସମାଜ, ରାମ-କେନ୍ଦ୍ରିତ ହିନ୍ଦୁ ଧର୍ମ - ଏସବୁ ହେଉଛନ୍ତି ବିପରୀତ ଧର୍ମୀ ।

### ୩

ସର୍ବଧର୍ମ ସମଭାବର ଅନ୍ୟ ପାଖଟି ହେଲା ରାଷ୍ଟ୍ର ଓ ଧର୍ମର ଭିନ୍ନତା । 'ସେକ୍ୟୁଲାର୍‌ବାଦୀ'ମାନେ ଧର୍ମ-ବିରୋଧୀ ଓ ଭୌତିକତାବାଦୀ ପ୍ରଚାର ଦ୍ୱାରା ଧର୍ମ ନିରପେକ୍ଷତାର ଅର୍ଥକୁ ଅନର୍ଥ କରିଦେଲେ । ସାଧାରଣ ଲୋକେ ହୁଏତ ଏହାର ଅର୍ଥକୁ ମୋଟେ ବୁଝିପାରିଲେ ନାହିଁ । କିମ୍ବା, ଜୀବନ ଓ ସମାଜରୁ ଧର୍ମକୁ ବହିଷ୍କାର କରିବାକୁ

ପଡ଼ିବ ଭାବି, ଏହାକୁ ସନ୍ଦେହ ଚକ୍ଷୁରେ ଦେଖିଲେ । ପ୍ରକୃତରେ ଧର୍ମନିରପେକ୍ଷତାର ଅର୍ଥ ଭୌତିକତାବାଦ ନୁହେଁ କିମ୍ବା ଅନୀଶ୍ୱରବାଦ ନୁହେଁ । ଜୀବନରେ, ସମାଜରେ ଓ ସଂସ୍କୃତିରେ ଧର୍ମ ରହିବ, ଅବଶ୍ୟ ରହିବ । କିନ୍ତୁ ରାଷ୍ଟ୍ରର କୌଣସି ସମ୍ପର୍କ ଧର୍ମ ସାଙ୍ଗରେ ରହିବ ନାହିଁ ।

ବ୍ୟକ୍ତି ଓ ସମାଜ ଉପରେ ଧର୍ମର ପ୍ରଭାବ ଚାରିଟି ସ୍ତରରେ ହୋଇଥାଏ: ପୂଜା ପଦ୍ଧତି; ବିଶ୍ୱବ୍ରହ୍ମାଣ୍ଡ ସମ୍ପର୍କରେ ଧାରଣା ଓ ବିଶ୍ୱାସ; ବିବାହ, ସମ୍ପତ୍ତି, ଅପରାଧ ବିଷୟରେ ଦଣ୍ଡବିଧି; ନୈତିକ ମୂଲ୍ୟ ।

କେବଳ ଶେଷୋକ୍ତ ବିଷୟଟିକୁ ଛାଡ଼ିଦେଲେ ରାଜନୀତିରେ ଧର୍ମ ସାଙ୍ଗରେ କୌଣସି ସମ୍ପର୍କ ରହିବା ଉଚିତ ନୁହେଁ । ଏହି ସ୍ତରରେ ମଧ୍ୟ କୌଣସି ପ୍ରତ୍ୟକ୍ଷ ସମ୍ପର୍କ ରହିବା ଅନୁଚିତ । ପ୍ରକୃତ ଧର୍ମ ସମାଜର ଓ ବ୍ୟକ୍ତିମାନଙ୍କର ନୈତିକ ସ୍ତରକୁ ଉଚ୍ଚ କରିଥାଏ । ତେଣୁ, ପ୍ରକୃତ ଅର୍ଥରେ ଧାର୍ମିକ ନେତାମାନେ ଉଚ୍ଚମନା ନାଗରିକ ହୁଅନ୍ତି । ଏହି ଅର୍ଥରେ ଗାନ୍ଧୀ କହୁଥିଲେ ଯେ, ଧର୍ମ ବିନା ରାଜନୀତି ଅନୈତିକ ହୋଇଯିବ । ତାଙ୍କର ଧର୍ମ ଥିଲା ସତ୍ୟ ଓ ଅହିଂସାର କଠୋର ପ୍ରୟୋଗ । ଏହି ଦୃଷ୍ଟିକୋଣକୁ ଗ୍ରହଣ କଲେ ଧର୍ମକୁ ମଧ୍ୟ ପରୀକ୍ଷା କରିହେବ । ଯେଉଁ ଧର୍ମ ସମାଜ ଓ ବ୍ୟକ୍ତିର ନୈତିକ ମାନଦଣ୍ଡକୁ ଉଚ୍ଚତର ଦିଗ ବା ପର୍ଯ୍ୟାୟକୁ ନେଇଯାଇଛି ତାହା ସମାଜ-ଉପଯୋଗୀ ଧର୍ମ । ଯେଉଁଠି ଧର୍ମ ମଣିଷକୁ ନୈତିକତାର ଦୀକ୍ଷା ଦେଇପାରୁ ନାହିଁ ଓ କେବଳ ଦେବୀ ଦେବତା, ମନ୍ତ୍ର-ତନ୍ତ୍ରରେ ବୁଡ଼ାଇ ରଖୁଛି ସେଠାରେ ଧର୍ମ ପତନୋନ୍ମୁଖୀ ବୋଲି ଧରିବାକୁ ହେବ ।

ଲୋକଙ୍କର ପୂଜାପଦ୍ଧତି କିପରି ହେବ, ମନ୍ଦିର ହେବ କି ମସ୍‌ଜିଦ୍ ହେବ, ଗୀତାର କେଉଁ କେଉଁ ଭାଷ୍ୟକୁ ଗ୍ରହଣ କରିବାକୁ ହେବ – ଏସବୁ ବିଷୟରେ ରାଷ୍ଟ୍ର ଓ ରାଷ୍ଟ୍ରନୀତିକୁ କିଛି କହିବାର ନାହିଁ । ଲୋକେ ନିଜେ ନିଜେ ଏହାର ନିଷ୍ପତ୍ତି କରିବେ । ଏହାର ନିଷ୍ପତ୍ତି କଲାବେଳେ ସେମାନେ ଯଦି ଶାନ୍ତି ଭଙ୍ଗ କରିବେ ନାହିଁ, ତାହାହେଲେ ରାଷ୍ଟ୍ର ସମ୍ପୂର୍ଣ୍ଣ ଉଦାସୀନ ରହିବା ଉଚିତ । ଏସବୁର ନିଷ୍ପତ୍ତି ନେବା ପ୍ରକ୍ରିୟାରେ ଯଦି ହିଂସା ହୁଏ, ସମ୍ପତ୍ତିର ଲୁଟ୍ ହୁଏ ଓ ଶାନ୍ତି ଭଙ୍ଗ ହୁଏ, ତାହାହେଲେ ରାଷ୍ଟ୍ର ସେଥିରେ ହସ୍ତକ୍ଷେପ କରିବ । କାରଣ ଧର୍ମ ବିଶ୍ୱାସ ପ୍ରଚାର କରିବା ଧର୍ମର ଅଧିକାର କ୍ଷେତ୍ର ହେଲେ ମଧ୍ୟ ଶାନ୍ତି ବ୍ୟବସ୍ଥାର ରକ୍ଷା କରିବା ହେଉଛି ରାଷ୍ଟ୍ରର ଅଧିକାର କ୍ଷେତ୍ର ।

ବିବାହ, ସମ୍ପତ୍ତି ଆଦି ବିଷୟକ ନିୟମ ତିଆରି କରିବା ପ୍ରାଚୀନ କାଳରେ ଧର୍ମର ଅଧିକାର କ୍ଷେତ୍ର ଥିଲା । ଆଦିମ ଅଧିବାସୀଙ୍କ ସମାଜରେ ଏବେ ମଧ୍ୟ ଏପରି ଆଇନ୍‌କାନୁନ୍‌ର ପ୍ରଚଳନ ଅଛି । କିନ୍ତୁ ଆଧୁନିକ ଯୁଗରେ ଏପରି ଆଇନ୍‌କାନୁନ୍ ପ୍ରଣୟନର ଅଧିକାର କେବଳ ରାଷ୍ଟ୍ର ହାତରେ ରହିବ । ଯେଉଁ ଧର୍ମାନ୍ଧ ସରକାରମାନେ ନିଜ ରାଷ୍ଟ୍ର 'ଧାର୍ମିକ ରାଷ୍ଟ୍ର' ବୋଲି ଘୋଷଣା କରୁଛନ୍ତି, ସେମାନେ ରାଷ୍ଟ୍ରଦ୍ୱାରା ଏହିସବୁ ବିଷୟରେ ଆଇନ୍ କରିବାକୁ ବାଧ୍ୟ ହେଉଛନ୍ତି । ତେଣୁ ଏହି ବିଷୟଟି ସମ୍ପୂର୍ଣ୍ଣ ଭାବରେ ରାଷ୍ଟ୍ରର ଅଧିକାରରେ ରହିବା ବିଧେୟ ।

ବିଶ୍ୱ ବ୍ରହ୍ମାଣ୍ଡର ସ୍ୱରୂପ କ'ଣ – ଏହି ବିଷୟରେ ଧର୍ମ ଓ ବିଜ୍ଞାନ ଉଭୟଙ୍କର ଅଧିକାର ରହିଛି, ରାଷ୍ଟ୍ରର ଏଥିରେ କୌଣସି ଅଧିକାର ନାହିଁ । ଯେଉଁସବୁ ବିଷୟରେ ବିଜ୍ଞାନ ଚୂଡ଼ାନ୍ତ ଓ ସନ୍ତୋଷପ୍ରଦ ଉତ୍ତର ଦେଇସାରିଛି, ସେ ବିଷୟରେ ଆଉ ଧାର୍ମିକ ବିଶ୍ୱାସର ଦରକାର ନାହିଁ । କିନ୍ତୁ ଯେଉଁସବୁ ବିଷୟରେ ବିଜ୍ଞାନ ମଧ୍ୟ ନିରୁତ୍ତର କିମ୍ବା ଦ୍ୱିଧାଗ୍ରସ୍ତ, ସେସବୁ ବିଷୟରେ ଧାର୍ମିକ ବିଶ୍ୱାସ ଦ୍ୱାରା ପରିଚାଳିତ ହେବା ଦୋଷାବହ ନୁହେଁ । ମୋଟ୍ ଉପରେ ଧର୍ମ ଓ ରାଷ୍ଟ୍ରର ଅଧିକାର କ୍ଷେତ୍ର ଅଲଗା ଅଲଗା । ଏହି ଭିନ୍ନତାଗୁଡ଼ିକୁ ଜାଣିବା ଓ ସମ୍ମାନ ଦେବା ହେଉଛି ଧର୍ମ ନିରପେକ୍ଷତା । ବହୁସଂଖ୍ୟକ ଧର୍ମ ହେଉ ବା ଅଳ୍ପସଂଖ୍ୟକ ଧର୍ମ ହେଉ, ରାଷ୍ଟ୍ରକୁ ସଞ୍ଚାଳିତ କରିବା ତାହାର ଅଧିକାର ବହିର୍ଭୂତ । ତେଣୁ ଇସ୍‌ଲାମୀୟ ରାଷ୍ଟ୍ର, ଖ୍ରୀଷ୍ଟାନ୍ ରାଷ୍ଟ୍ର, ହିନ୍ଦୁ ରାଷ୍ଟ୍ର – ଏସବୁ ହେଉଛି ସଭ୍ୟତା ବିରୋଧୀ ।

## ୪

ଭାରତୀୟ ରାଷ୍ଟ୍ର ଏତେ ଦୁର୍ବଳ ଯେ ଏଠି ପ୍ରବାସୀ ଭାରତୀୟମାନଙ୍କର ପୂଜା ହେଉଛି । ସେମାନଙ୍କୁ ନାନା ଭାବରେ ସନ୍ତୁଷ୍ଟ କରିବା ପାଇଁ କେନ୍ଦ୍ର ଓ ରାଜ୍ୟ ସରକାରମାନେ ଲାଗି ପଡ଼ିଛନ୍ତି । ଏହା କଦାପି ଏକ ସୁସ୍ଥ ଲକ୍ଷଣ ନୁହେଁ । ସେମାନେ ଭାରତରୁ ଚାଲିଯାଇ, ଧନୀଦେଶମାନଙ୍କର ନାଗରିକ ହୋଇ, ମଉଜ୍‌ମଜଲିସ୍‌ରେ ରହିବାକୁ ସ୍ଥିର କରିଛନ୍ତି । ବିଦେଶରେ ଯେତେବେଳେ ତାଙ୍କ ଉପରେ ଅତ୍ୟାଚାର ହେବ, ସେତେବେଳେ ସେମାନେ ଭାରତ ସରକାରକୁ କହିବେ, 'ଆମକୁ ନେଇଯାଅ, ଆମେ ନିଜ ଦେଶକୁ ଫେରିଯିବୁ ।' ସେମାନେ ପୁଣି ସର୍ତ୍ତ ରଖୁଛନ୍ତି ଯେ, ଆମକୁ ବିଶେଷ ଓ ଅତି ବିଶେଷ ସୁବିଧାମାନ ପ୍ରଦାନ ନକଲେ ଆମେ ଆମର ପୁଞ୍ଜି ଭାରତରେ ଖଟାଇବୁ ନାହିଁ । ଏମାନେ ପୁଣି ଭାରତରେ ହିନ୍ଦୁ ସାମ୍ପ୍ରଦାୟିକତା ଓ ହିନ୍ଦୁଧର୍ମର ରୁଢ଼ିବାଦକୁ ବଢ଼େଇବାରେ ଯଥେଷ୍ଟ ସାହାଯ୍ୟ କରୁଛନ୍ତି । ଭାରତର କେତେ ଦୁର୍ଭାଗ୍ୟ ?

ବିଦେଶରେ ରହୁଥିବା ଭାରତୀୟମାନେ ଅଶିକ୍ଷିତ ଶ୍ରେଣୀର ଲୋକ ନୁହନ୍ତି । ସେମାନେ ଉଚ୍ଚ ଶିକ୍ଷିତ ଓ ହିନ୍ଦୁ ଉଚ୍ଚ ଜାତିର ସନ୍ତାନ । ଏ ଦେଶର ସ୍ୱାର୍ଥ ପ୍ରତି ସେମାନେ କାହିଁକି ଏତେ ଉଦାସୀନ ? କ୍ରିକେଟ୍ ଖେଳରେ ପାକିସ୍ଥାନ୍‌ର ବିଜୟରେ ତାଳି ବଜାଇବା ଯଦି ଭାରତ-ବିରୋଧୀ କାର୍ଯ୍ୟ, ତାହାହେଲେ ପ୍ରବାସୀ ଭାରତୀୟମାନଙ୍କର ପୁଞ୍ଜି ବିଷୟକ ସର୍ତ୍ତକୁ ଆମେ କ'ଣ କହିବା ? ଭାରତୀୟ ପ୍ରଶାସନର ସର୍ବୋଚ୍ଚ ସଚୀବ ପଦମାନଙ୍କରେ ବସିଥିବା ବ୍ୟକ୍ତିମାନଙ୍କ ଭିତରୁ ଅନେକଙ୍କର ପୁଅଝିଅମାନେ ଆମେରିକାରେ ରହିଲେଣି । ଚାକିରିରୁ ଅବସର ଗ୍ରହଣ କଲାପରେ ଏମାନେ ମଧ୍ୟ ଆମେରିକା ଚାଲିଯିବେ । ଭାରତୀୟ ରାଷ୍ଟ୍ର ଏମାନଙ୍କ ହାତରେ ଅସୁରକ୍ଷିତ ।

ହିନ୍ଦୁ ସମାଜର ଗଠନ ଏପରି ଭାବରେ ହୋଇଛି ଯେ, ଯେଉଁ ଗୋଷ୍ଠୀମାନଙ୍କ ହାତରେ ରାଜକ୍ଷମତା, ଅର୍ଥ କ୍ଷମତା ଓ ଜ୍ଞାନବିଜ୍ଞାନ ରହିଛି – ସେମାନଙ୍କର ମାଟି ସାଙ୍ଗରେ କୌଣସି ସମ୍ପର୍କ ନାହିଁ । ଶାରୀରିକ ଶ୍ରମରୁ ମୁକ୍ତ ହୋଇଥିବାରୁ ସେମାନେ ମାଟିକୁ ଘୃଣା-ଚକ୍ଷୁରେ ଦେଖନ୍ତି । ଅନ୍ୟ ଦିଗରେ ଯେଉଁ ଗୋଷ୍ଠୀମାନେ ସବୁବେଳେ

ମାଟି ପଥର ସାଙ୍ଗରେ ଲାଗିକରି ରହିଛନ୍ତି, ସେମାନଙ୍କ ହାତରେ ରାଜକ୍ଷମତା ଓ ଜ୍ଞାନ ନଥାଇ ସୁଦ୍ଧା ସେମାନେ ଦେଶଭକ୍ତ ହୋଇପାରୁନାହାନ୍ତି । ଦ୍ୱିତୀୟ ଗୋଷ୍ଠୀର ମାଟିମୋହ ଅଧିକ ହେଲେ ସୁଦ୍ଧା, ସେମାନଙ୍କ ପାଖରେ କ୍ଷମତା ଓ ଜ୍ଞାନର ସୁଯୋଗ ନଥିବାରୁ ସେମାନଙ୍କର ଦେଶଭକ୍ତିକୁ ପ୍ରମାଣିତ କରାଯାଇପାରିବ ନାହିଁ । ଅତଏବ୍, ଏହି ରାଷ୍ଟ୍ରର ଦୁର୍ଭାଗ୍ୟ ଯେ, ଏହି ରାଷ୍ଟ୍ରର ସଞ୍ଚାଳନ କରିବା ପାଇଁ ଏକ ଯୋଗ୍ୟ ଓ ଦେଶଭକ୍ତ ଗୋଷ୍ଠୀ ନାହାନ୍ତି, ଯିଏ ଆଗେଇ ଆସି କହିବ ଆମେ ସର୍ବପ୍ରଥମେ ଭାରତୀୟ ।

'ଆମେ ହିନ୍ଦୁ' ବୋଲି କହିଦେଲେ ଭାରତୀୟ ରାଷ୍ଟ୍ରର ଆବଶ୍ୟକତା ପୂରଣ ହୋଇପାରିବ ନାହିଁ । ଭାରତର ଆର୍ଥିକ ସଙ୍କଟ ସାଙ୍ଗରେ ଭାରତର ସ୍ୱାଧୀନତାର ସଙ୍କଟ ଆସିଯାଇଛି । ୟୁରୋପ୍, ଜାପାନ୍ ଓ ଆମେରିକାର ଆର୍ଥିକ ସାମ୍ରାଜ୍ୟବାଦ ଆମର ଶିଳ୍ପବାଣିଜ୍ୟ ଓ ପ୍ରାକୃତିକ ସମ୍ପଦ ଉପରେ କର୍ତ୍ତୃତ୍ୱ ବିସ୍ତାର କରିସାରିଲେଣି । ହିନ୍ଦୁ ଅସ୍ମିତାର ଆଶ୍ରୟ ନେଇ ଆମେ ଏହି ରାଷ୍ଟ୍ରୀୟ ସଙ୍କଟର ସମ୍ମୁଖୀନ ହୋଇପାରିବା ନାହିଁ । ଏକ ଦୃଢ଼ ଭାରତୀୟ ଅସ୍ମିତା ହିଁ ଏହି ସମୟର ଅସଲ ଆବଶ୍ୟକତା । 'ଆମେ ହିନ୍ଦୁ' ବୋଲି ଗର୍ଜନ କଲେ ମୁସଲ୍‌ମାନ୍ ଓ ଅଳ୍ପସଂଖ୍ୟକ ସମ୍ପ୍ରଦାୟମାନେ ଭୀତତ୍ରସ୍ତ ହେବେ । ସେଥିରୁ ଆମକୁ କେଉଁ ସନ୍ତୋଷ ଓ ଗୌରବ ମିଳିବ ? ହିନ୍ଦୁ ସ୍ଲୋଗାନ୍‌ର କୌଣସି ଚାପ ୟୁରୋପ୍ ବା ଆମେରିକା ଉପରେ ପଡ଼ିବାର ନାହିଁ । 'ଆମେ ଭାରତୀୟ, ଭାରତୀୟ ରାଷ୍ଟ୍ରକୁ ଆମେ ଶକ୍ତିଶାଳୀ କରିବୁ'- ଏହା କହିଲେ ବିଶ୍ୱ ଉପରେ ପ୍ରଭାବ ପଡ଼ିବ । ଭାରତର ଅସ୍ମିତା ରହିଲେ ହିନ୍ଦୁ ଅସ୍ମିତା ମଧ୍ୟ ରହିବ । ଭାରତୀୟ ଅସ୍ମିତା ନ ରହିଲେ ହିନ୍ଦୁ ଅସ୍ମିତାର କୌଣସି ଅର୍ଥ ନାହିଁ । ଠିକ୍ ଯେତେବେଳେ ଏକ ଦୃଢ଼ ଭାରତୀୟ ଅସ୍ମିତାର ଆବଶ୍ୟକତା ଥିଲା, ସେହି ସମୟରେ ହିନ୍ଦୁ ଅସ୍ମିତାର ଧ୍ୱନି ଦେଇ ସଙ୍ଘ ପରିବାର ଭାରତର ରାଷ୍ଟ୍ରୀୟତାକୁ ଦୁର୍ବଳ କରିଦେଉଛି ।

୧୨ ମଇ, ୧୯୯୩

# ସାମାଜିକ ବୈଷମ୍ୟ

ଗତ ୧୬ ନଭେମ୍ବର ୧୯୯୨ ଦିନ ଭାରତର ସର୍ବୋଚ୍ଚ ନ୍ୟାୟାଳୟ (ସୁପ୍ରିମ୍ କୋର୍ଟ) ମଣ୍ଡଳ କମିଶନ୍ ସଙ୍କ୍ରାନ୍ତୀୟ ବିବାଦ ଉପରେ ତାଙ୍କର ୯୧୧ ପୃଷ୍ଠାର ରାୟ ଶୁଣାଇଲେ । ଏହା ଏକ ଐତିହାସିକ ରାୟ । କାରଣ ଏହି ରାୟ ଫଳରେ ପ୍ରଥମ ଥର ପାଇଁ 'ଅନ୍ୟ ପଛୁଆ ଜାତିମାନେ' କେନ୍ଦ୍ର ସରକାରର ଚାକିରିମାନଙ୍କରେ ସ୍ଥାନ ସଂରକ୍ଷଣର ହକ୍‌ଦାର୍ ହେବେ । କିଛିବର୍ଷ ପୂର୍ବେ ମଣ୍ଡଳ କମିଶନ୍ ସପକ୍ଷରେ ଓ ବିପକ୍ଷରେ ଯେଉଁ ତୁମୁଳ ବାଦବିବାଦ ଆରମ୍ଭ ହୋଇଥିଲା, ସୁପ୍ରିମ୍ କୋର୍ଟ୍‌ର ରାୟ ପ୍ରକାଶିତ ହେବାପରେ ତାହାର ଅବସାନ ଘଟିବା ଉଚିତ୍ ।

ସୁପ୍ରିମ୍ କୋର୍ଟ୍‌ର ଏହି ରାୟ ହେଉଛି ଏକ ସନ୍ଧିପତ୍ର । ତାହାକୁ ପଢ଼ିଲେ କହିହେବ ନାହିଁ ଯେ, ଏହି ପଟର ବିଜୟ ହୋଇଛି ନା ସେ ପଟର ବିଜୟ ହୋଇଛି । ଉଭୟେ କିଛି ପରିମାଣରେ ସନ୍ତୁଷ୍ଟ ହୋଇଛନ୍ତି ଓ କିଛିଟା ଅସନ୍ତୁଷ୍ଟ ହୋଇଛନ୍ତି । ଉଭୟଙ୍କର ଯାହା ଉପଲବ୍ଧି ହୋଇଛି, ତାକୁ ସ୍ଥାୟୀ କରାଇବାକୁ ହେଲେ ଅସନ୍ତୋଷକୁ କିଛିଦିନ ପାଇଁ ସଞ୍ଜମରେ ରଖିବାକୁ ପଡ଼ିବ ।

ବିଚାରପତିମାନଙ୍କର ରାୟକୁ ବିଶ୍ଳେଷଣ କଲେ ଜଣାପଡ଼େ ଯେ, ମଣ୍ଡଳ ବିରୋଧୀ ପ୍ରବକ୍ତାମାନଙ୍କର ଯେଉଁସବୁ ମୁଖ୍ୟ ଅଭିଯୋଗଗୁଡ଼ିକ ଥିଲା, ସେହି ସବୁକୁ ସୁପ୍ରିମ୍ କୋର୍ଟ୍ ମାନି ନେଇଛନ୍ତି । ମଣ୍ଡଳ ବିରୋଧୀ ସମାଲୋଚନାରେ ବାରମ୍ବାର ଓ ତୀବ୍ରତାର ସହ କୁହାଯାଉଥିଲା ଯେ, ପଛୁଆ ଜାତିର ଧନୀଲୋକମାନଙ୍କୁ ସଂରକ୍ଷଣର ଲାଭ ମିଳୁଛି ଓ ଏହା ଅନୁଚିତ୍ । ଏହା ମଧ୍ୟ କୁହାଯାଉ ଥିଲା ଯେ, ପଦୋନ୍ନତି ସମୟରେ ସଂରକ୍ଷଣ ଦେବା ଏକ ଅବିବେକୀ କାର୍ଯ୍ୟ ଓ ଏହା ଦ୍ୱାରା ଶାସନରେ ବିଶୃଙ୍ଖଳା ଘଟୁଛି । ଯେଉଁସବୁ ଚାକିରିରେ ଅତ୍ୟଧିକ ନୈପୁଣ୍ୟ ଓ ପାଣ୍ଡିତ୍ୟ ଆବଶ୍ୟକ, ସେଗୁଡ଼ିକରେ ସ୍ଥାନ ସଂରକ୍ଷଣ ହେବା ବିଷୟରେ ମଧ୍ୟ ସମାଲୋଚନା ହେଉଥିଲା ।

ଏହି ତିନୋଟିଯାକ କଥା ସୁପ୍ରିମ୍ କୋର୍ଟ୍ ମାନି ନେଇଛନ୍ତି । ପ୍ରତିରକ୍ଷା ବିଭାଗ, ପ୍ରଫେସର ପଦ ଓ ଡାକ୍ତରୀ ବା ଇଞ୍ଜିନିୟରିଂର ଉଚ୍ଚତମ ସ୍ତରମାନଙ୍କରେ ସଂରକ୍ଷଣ ନୀତି ଲାଗୁ ହେବ ନାହିଁ ବୋଲି ବିଚାରପତିମାନେ ଫଇସଲା ଦେଇଛନ୍ତି । ସେମାନେ ଗୋଟିଏ ଶବ୍ଦ ଗଢ଼ିଛନ୍ତି 'କ୍ରିମୀ ଲେୟର୍' । କ୍ରିମ୍ ଅର୍ଥ ଦୁଧର ସର । ଯେଉଁ

ସମୁଦାୟମାନଙ୍କୁ ସଂରକ୍ଷଣ ମିଳୁଛି, ତାହାର ସବୁ ସର ଖାଇଯାଉଛନ୍ତି ଉକ୍ତ ସମୁଦାୟର ଧନୀ ଓ ପ୍ରତିଷ୍ଠିତ ଲୋକମାନେ । ସଂରକ୍ଷଣ ବିରୋଧୀମାନଙ୍କର ଏହା ଏକ ତୀବ୍ର ବିରୋଧ । ତେଣୁ ଏହି ଧନୀଲୋକମାନଙ୍କୁ ସଂରକ୍ଷଣ ପରିଧିରୁ ହଟେଇ ଦିଆଯିବ ବୋଲି ସୁପ୍ରିମ୍ କୋର୍ଟ୍ ଆଦେଶ ଦେଇଛନ୍ତି । ପଦୋନ୍ନତି ସମୟରେ ଅନ୍ୟ ପଛୁଆ ଜାତିମାନଙ୍କୁ ସଂରକ୍ଷଣ ମିଳିବ ନାହିଁ । ଅର୍ଥାତ୍, ଅଭିଜ୍ଞତା ଓ ଯୋଗ୍ୟତା ଅନୁସାରେ ପଦୋନ୍ନତି ହେବ ।

ଏକଥା ସତ ଯେ, ସଂରକ୍ଷଣ ରହିଲା । ମଣ୍ଡଳ ସମର୍ଥକମାନେ କହିବେ ଯେ ସର ସବୁ କାଢ଼ି ନିଆଗଲା । ସର, ଦହି, ଲହୁଣି ଓ ଛେନା – ଏସବୁର ଭାଗବଣ୍ଟା ଉପରେ ଦେବତା ଓ ରାକ୍ଷସ, ଦ୍ୱିଜ ଓ ଶୂଦ୍ର – ସମସ୍ତଙ୍କ ବକ ଧ୍ୟାନ ରହିଛି । କିଛି ପରିମାଣରେ ଏହା ସ୍ୱାଭାବିକ ଯେ, ଗଣତାନ୍ତ୍ରିକ ସମାଜରେ ପ୍ରତ୍ୟେକ ବ୍ୟକ୍ତି ଓ ସମୁଦାୟ ନିଜର ଅଧିକାର ବିଷୟରେ ସଚେତ ରହିବେ । ଅଧିକାର ଚେତନା ଓ କର୍ତ୍ତବ୍ୟ ଚେତନା, ଏ ଦୁଇଟି ଚେତନା ଗଣତନ୍ତ୍ରର ଦୁଇ ବାହୁ । କିନ୍ତୁ ଯଦି ସମାଜର ପ୍ରତ୍ୟେକ ଖଣ୍ଡ କେବଳ ନିଜର ଅଧିକାରରେ ସୀମାବଦ୍ଧ ହୋଇଯିବ, ତାହାହେଲେ ରାଷ୍ଟ୍ର ଦୁର୍ବଳ ହେବାର ଆଶଙ୍କା ରହିଛି । ଦୁଧ ରହିବ ନାହିଁ ତ ସର ମଧ ପଡ଼ିବ ନାହିଁ ।

ସଂରକ୍ଷଣର ପ୍ରଶ୍ନ ଭାରତୀୟ ରାଜନୀତିର ଏକ ମହାନ୍ ଓ ଜଟିଳ ପ୍ରଶ୍ନ । ଉପରୁ ଦେଖିଲେ ଏହା ଚାକିରି ଭାଗବଣ୍ଟାର ପ୍ରଶ୍ନ । ଦୁଇବର୍ଷ ଧରି ମଣ୍ଡଳର ସମର୍ଥକ ଓ ବିରୋଧୀ ଗୋଷ୍ଠୀମାନେ ଏହିପରି ଭାବରେ ହିଁ ସମସ୍ୟାକୁ ଦେଖିଛନ୍ତି । ମୌଳିକ ଭାବରେ ଦେଖିଲେ ଏହା ହେଉଛି ସାମାଜିକ ବୈଷମ୍ୟର ପ୍ରଶ୍ନ । ଭାରତରେ ସାମାଜିକ ବୈଷମ୍ୟ ବିଷୟରେ ବୌଦ୍ଧିକ ଚର୍ଚ୍ଚା ବହୁତ କମ୍ । ଓଡ଼ିଶାରେ ପ୍ରାୟ ନାହିଁ । ସେଥିପାଇଁ ଶିକ୍ଷିତ ଲୋକମାନେ 'ଗରିବ' ଓ 'ପଛୁଆ' ଭିତରେ ଫରକ୍ ଜାଣିପାରନ୍ତି ନାହିଁ । ଆମ ଦେଶର ବୁଦ୍ଧିଜୀବୀମାନେ ସେଇ ସବୁ ବିଷୟ ଚର୍ଚ୍ଚା କରନ୍ତି, ଯାହା ୟୁରୋପ୍ ଓ ଆମେରିକାର ବୁଦ୍ଧିଜୀବୀମାନେ ଚର୍ଚ୍ଚା କରିଥାଆନ୍ତି । ସେମାନଙ୍କ ଦେଶରେ ସାମାଜିକ ବୈଷମ୍ୟ ନାହିଁ କହିଲେ ଚଳେ । ଭାରତୀୟ ସମାଜରେ ସାମାଜିକ ବୈଷମ୍ୟ ଭରି ରହିଛି । ଜଣେ ବିଶ୍ୱବିଖ୍ୟାତ ଲେଖକ ଆଲବେୟାର୍ କାମୁ କହିଛନ୍ତି, ଯେଉଁ ଦେଶରେ ସାମାଜିକ ସମତା ନାହିଁ, ସେ ଦେଶରେ ଆର୍ଥିକ ସମାନତାର କଳ୍ପନା କରିହେବ ନାହିଁ । ଏହା ନିରାଟ ସତ୍ୟ । କାରଣ ସାମାଜିକ ବିଷମତା ଜନ୍ମଗତ ବିଷମତା । ଜନ୍ମଗତ ବିଷମତାର ଅର୍ଥ ହେଉଛି ଯେ ମନୁଷ୍ୟ ଜନ୍ମରୁ ଅସମାନ ।

ଅନେକ କୁହନ୍ତି ଯେ, ଋଷ୍ ଦେଶର ଲୋକେ ଗୋର୍ଭାଚୋଭ୍‌ଙ୍କର ପୂର୍ବରୁ ଜାଣି ନ ଥିଲେ ଯେ, ଗଣତାନ୍ତ୍ରିକ ଅଧିକାର କ'ଣ । କାରଣ ଋଷ୍‌ର ଇତିହାସରେ କେବେ ଗଣତାନ୍ତ୍ରିକ ଶାସନ ନଥିଲା । ଠିକ୍ ସେହିପରି ଭାରତୀୟମାନଙ୍କ ବିଷୟରେ କୁହାଯାଇପାରେ ଯେ, ସେମାନେ ସାମାଜିକ ସମାନତାର ଧାରଣାକୁ ବୁଝିପାରନ୍ତି ନାହିଁ । କାରଣ ଦୁଇ ହଜାର ବର୍ଷ ଧରି ଭାରତୀୟ ହିନ୍ଦୁ ସମାଜରେ ତାହା କେବେ ରହିନାହିଁ । ଜଣେ ଲୋକ ସାମାଜିକ ପ୍ରତିଷ୍ଠା ଓ ଉଚ୍ଚ ପଦବୀ ପାଇଁ ଯୋଗ୍ୟ କି ନୁହେଁ, ତାହାର ନିର୍ଦ୍ଧାରଣ ଗର୍ଭାବସ୍ଥାରେ ହିଁ ହୋଇଯିବ । ଯେଉଁମାନେ ବ୍ରାହ୍ମଣ ଓ ଦ୍ୱିଜ କୁଳରେ

ଜନ୍ମିବାର ସୌଭାଗ୍ୟ ପ୍ରାପ୍ତ କରିଛନ୍ତି, ସେମାନେ ସହଜରେ ବୁଝିପାରିବେ ନାହିଁ ଯେ, ଜନ୍ମରୁ ଅଯୋଗ୍ୟ ଘୋଷିତ ହେବାର ଚେତନା କେତେ ଅପମାନପୂର୍ଣ୍ଣ ।

ଶୁଦ୍ର ଓ ଅସବର୍ଣ୍ଣମାନଙ୍କ କଥା ଛାଡ଼ିଦିଅନ୍ତୁ । ବ୍ରାହ୍ମଣ-କରଣ ବା ବ୍ରାହ୍ମଣ-କ୍ଷତ୍ରିୟ ଫରକ୍ ମଧ୍ୟ କମ୍ ନୁହେଁ । ବ୍ରାହ୍ମଣ ଘରେ କରଣମାନେ ଖାଇପାରିବେ; କିନ୍ତୁ ବ୍ରାହ୍ମଣମାନେ କରଣ ବା କ୍ଷତ୍ରିୟ ଖଣ୍ଡାୟତ ଘରେ ଭୋଜନ ଗ୍ରହଣ କରିବେ ନାହିଁ । ଏହି ଗୋଟିଏ କଥା କରଣ ଓ ଖଣ୍ଡାୟତମାନଙ୍କର ମନରେ ହୀନମନ୍ୟତା ସୃଷ୍ଟି କରିବ କିମ୍ବା ଦ୍ୱେଷ ଜାତ କରାଇବ । କିନ୍ତୁ କ୍ଷତ୍ରିୟ ଓ କରଣମାନେ ଏହି ଅପମାନକୁ ଢ଼ୋକିନେଇ ସହିଯାଆନ୍ତି, କାରଣ ସେମାନେ ଭାବନ୍ତି ଯେ, ବ୍ରାହ୍ମଣ ଜାତିକୁ ଛାଡ଼ିଦେଲେ ବାକି ସବୁ ଜାତି ଆମ ପାଦ ତଳେ ରହିବେ ।

ଚଷା ଓ ତେଲି ମଧ୍ୟ ତାଙ୍କର ଅପମାନବୋଧକୁ ଚପେଇ ଦିଅନ୍ତି, କାରଣ ସେମାନେ ଭାବନ୍ତି ଯେ, ହରିଜନମାନଙ୍କର ସେବା ଓ ଦାସତ୍ୱ ସେମାନଙ୍କ ପାଇଁ ସୁରକ୍ଷିତ । ଏହି ହୀନମନ୍ୟତାର ତର୍କଶାସ୍ତ୍ର ଏତେ ସଂକ୍ରାମକ ଯେ, ଅସବର୍ଣ୍ଣ ଜାତିମାନେ ମଧ୍ୟ ତାଙ୍କ ଭିତରେ ତଳ ଉପର ହୋଇ ରହୁଛନ୍ତି । ଏହିପରି ଭାବରେ ଦେଶର ସମସ୍ତ ଲୋକ ଓ ସମସ୍ତ ଶ୍ରେଣୀ ହୀନମନ୍ୟତାରେ ଗ୍ରସ୍ତ ହୋଇଥିବାରୁ ସବଳ ବିଦେଶୀ ଆକ୍ରମଣର ସମ୍ମୁଖୀନ ହେବାର କ୍ଷମତା ସେମାନଙ୍କର ନାହିଁ । ଯେଉଁ ଦିନଠାରୁ ଭାରତର ଜାତି ବ୍ୟବସ୍ଥା କଠୋର ହୋଇଛି, ସେଇ ଦିନଠାରୁ ଭାରତୀୟମାନେ ଆକ୍ରମଣକାରୀମାନଙ୍କର ସମ୍ମୁଖରେ ମଥାନତ କରି ଚାଲିଛନ୍ତି ।

ପ୍ରାଚୀନ ଭାରତର ଜ୍ଞାନବିଜ୍ଞାନ, ଦର୍ଶନ ଓ ସମୃଦ୍ଧି ଏତେ ଉଚ୍ଚକୋଟୀର ହୋଇଥିବା ବେଳେ ଏହି ଦେଶ କିପରି ଆକ୍ରମଣକାରୀମାନଙ୍କର ସହଜ ଶିକାର ହୋଇଛି, ଏହି ପ୍ରଶ୍ନର ଉତ୍ତର ଦେବାକୁ ଏ ପର୍ଯ୍ୟନ୍ତ ଐତିହାସିକମାନେ ହାସ୍ୟାସ୍ପଦ କଥାମାନ କହିଛନ୍ତି । ରାଜାମାନଙ୍କର ପରସ୍ପର ଈର୍ଷା ଓ ବିଶ୍ୱାସଘାତକତା ଏହି ପରାଜୟର କାରଣ ବୋଲି ଯେଉଁମାନେ ଦର୍ଶାଉଛନ୍ତି, ସେମାନେ କ'ଣ କହିବାକୁ ଚାହାନ୍ତି ଯେ, ଏକ ବିଶାଳ ଜନ ସମୁଦାୟର ଦେଶ ଷଡ଼ଯନ୍ତ୍ର ଦ୍ୱାରା ପରିଚାଳିତ ହେଉଥିଲା ? ଯେତେବେଳେ ଦେଶ ଉପରେ ବାହ୍ୟ ଆକ୍ରମଣ ହେଉଛି, ସେତେବେଳେ ସେମାନେ କାହିଁକି ତାଙ୍କର ଈର୍ଷାଦ୍ୱେଷକୁ ଛାଡ଼ି ଏକାଠି ହୋଇପାରିନାହାନ୍ତି ? ଏହା କହିବା କେତେ ହାସ୍ୟାସ୍ପଦ ଯେ, ଭାରତ ହାରିଲା, କାରଣ ଭାରତର ରାଷ୍ଟ୍ରୀୟ ଏକତା ଦୁର୍ବଳ ହୋଇଗଲା । ଅସଲ ପ୍ରଶ୍ନ ହେଉଛି, 'ରାଷ୍ଟ୍ରୀୟ ଏକତା ଦୁର୍ବଳ ହେଲା କାହିଁକି ?' ଏହାର ଉତ୍ତର ସାମାଜିକ ବୈଷମ୍ୟ ।

ରାଷ୍ଟ୍ରୀୟ ଭାବନା ଏକ ସ୍ୱାଭିମାନର ପରିପ୍ରକାଶ ଓ ରାଷ୍ଟ୍ରୀୟ ଏକତା ଏହି ସ୍ୱାଭିମାନର ସାମୂହିକ ପରିପ୍ରକାଶ । ଯେଉଁ ଦେଶର ଜନସାଧାରଣଙ୍କ ଭିତରେ ସାମାଜିକ ଏକାତ୍ମତା ନାହିଁ, ଯେଉଁଠି ନବେଭାଗ ଲୋକ ହୀନମନ୍ୟତାର ଶିକାର ଓ କାହାରି ନା କାହାରି ପାଖରେ ନିଜକୁ ନୀଚ ବୋଲି ମାନିନେଇଛନ୍ତି, ସେଠାରେ ରାଷ୍ଟ୍ରୀୟ ସ୍ୱାଭିମାନ ଆସିବ କେଉଁଠୁ ? ତେବେ ପ୍ରଶ୍ନ ଉଠେ, ଭାରତ ବଞ୍ଚିଲା କିପରି ? ଏଥିପାଇଁ ଜାତିପ୍ରଥା ଅନ୍ୟ

ଭାବରେ କାମକଲା । ପ୍ରତ୍ୟେକ ପରାଜୟ ପରେ ସମାଜର ଶ୍ରେଷ୍ଠ ଜାତିମାନେ, ଅର୍ଥାତ୍ ଦ୍ୱିଜ ଜାତିମାନେ ନୂତନ ଶାସକର ମୁଖ୍ୟ କର୍ମଚାରୀ ହେଲେ ଓ ଜନସାଧାରଣଙ୍କୁ ଆକ୍ରମଣକାରୀର ବଶ୍ୟତା ସ୍ୱୀକାର କରିବାକୁ ନିର୍ଦ୍ଦେଶ ଦେଲେ । ଶୂଦ୍ରମାନେ ସେମାନଙ୍କର ନିର୍ଦ୍ଦେଶ ମାନିବାରେ ଅଭ୍ୟସ୍ତ ଥିଲେ ।

ଏହିପରି ଭାବରେ ଭାରତର ଦ୍ୱିଜମାନେ ଦ୍ୱିତୀୟ ଶ୍ରେଣୀର ଶାସକ ହେବାର ଅଭ୍ୟାସ କରିନେଇଛନ୍ତି । ବାବର୍ ବା ଚେଙ୍ଗିଜ୍ ଖାନ୍ ଆସନ୍ତୁ, ଅବା ଇଷ୍ଟ୍ ଇଣ୍ଡିଆ କମ୍ପାନୀ ଆସୁ ଅଥବା ବହୁରାଷ୍ଟ୍ରୀୟ କମ୍ପାନୀର ରାଜତ୍ୱ ଆସୁ । ପ୍ରଥମ ଶ୍ରେଣୀର ଶାସକ ହେବେ ବିଦେଶୀମାନେ ଓ ଦ୍ୱିତୀୟ ଶ୍ରେଣୀର ଶାସକ ହେବେ ଦ୍ୱିଜମାନେ । ଉଭୟଙ୍କ ଶାସନ ତଳେ ସମାଜ ରହିବ । ଏହି ବ୍ୟବସ୍ଥାରେ ଆକ୍ରମଣକାରୀ ସନ୍ତୁଷ୍ଟ ଓ ଦ୍ୱିଜମାନେ ମଧ୍ୟ ସୁରକ୍ଷିତ । ପ୍ରାୟ ଏକ ହଜାର ବର୍ଷ ଧରି ଦ୍ୱିତୀୟ ଶ୍ରେଣୀ ଶାସକ ହେବାର ମଜା ଦ୍ୱିଜମାନେ ପାଇଛନ୍ତି । ପ୍ରଥମ ଶ୍ରେଣୀର ଶାସକ ହେବାର ଆକାଂକ୍ଷା ସେମାନଙ୍କର ନାହିଁ । ପ୍ରଥମ ଶ୍ରେଣୀର ଶାସକ ହେବାପାଇଁ ଯେଉଁ ଶୌର୍ଯ୍ୟ ଓ ଦୁଃସାହସିକତା ଦରକାର, ଏ ଦୁଇଟି ଗୁଣ ସେମାନଙ୍କ ଠାରୁ ବିଲୁପ୍ତ ହୋଇଯାଇଛି ।

ଊନବିଂଶ ଶତାବ୍ଦୀର ମଧ୍ୟଭାଗରୁ ବିଂଶ ଶତାବ୍ଦୀର ପ୍ରଥମ ଭାଗ ପର୍ଯ୍ୟନ୍ତ ଘଟଣାଗୁଡ଼ିକୁ ଦେଖିଲେ ଜଣାପଡ଼େ ଯେ, ଭାରତବର୍ଷର ହୃତଗୌରବ ପୁଣିଥରେ ଫେରିଆସୁଛି । ଭାରତୀୟମାନଙ୍କ ଭିତରେ ଦୁଃସାହାସିକତାର ଆଭାସ ଓ ଅନ୍ତଃରାଷ୍ଟ୍ରୀୟ ନେତୃତ୍ୱ କରିବା ଭଳି ଆକାଂକ୍ଷା ଦେଖାଗଲା । ଏହା ପଛରେ ଥିଲା ଜାତିପ୍ରଥା ବିରୋଧୀ ଆନ୍ଦୋଳନ । ଦୟାନନ୍ଦ, ବ୍ରାହ୍ମସମାଜ, ଜ୍ୟୋତିବା ଫୁଲେ, ରାମକୃଷ୍ଣ, ବିବେକାନନ୍ଦ – ଏ ସମସ୍ତେ ଭାରତର ରାଷ୍ଟ୍ରୀୟ ଜାଗରଣ ପାଇଁ ରାଜନୀତିକୁ ପ୍ରାଥମିକତା ନଦେଇ ସମାଜର ସଂସ୍କାର ଉପରେ ଜୋର୍ ଦେଲେ । ସାମାଜିକ ବୈଷମ୍ୟକୁ ଦୂର କରିବା ସମସ୍ତଙ୍କର ଲକ୍ଷ୍ୟ ଥିଲା ।

ଗାନ୍ଧୀ ଓ ଆମ୍ବେଦ୍କର୍‌ଙ୍କ ବେଳକୁ ରାଜନୀତି ପାଇଁ ଆଧାର ସୃଷ୍ଟି ହୋଇସାରିଥିଲା । ସେମାନେ ସାମାଜିକ ଏକାତ୍ମତାର ଆନ୍ଦୋଳନକୁ ନିଜ ନିଜ ବାଟରେ ତୀବ୍ର କଲେ । ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକରୁ ଚତୁର୍ଥ ଦଶକ ପର୍ଯ୍ୟନ୍ତ ରାଷ୍ଟ୍ରୀୟ ଏକତାର ଯେଉଁ ଶକ୍ତିଶାଳୀ ରୂପ ଦେଖାଗଲା, ତାହାରି ଭିତ୍ତି ଥିଲା ଏହି ସାମାଜିକ ଏକାତ୍ମତାର ସମ୍ଭାବନା । ଏହି ସମ୍ଭାବନା ଏତେ ସ୍ୱଷ୍ଟ ଭାବରେ ଦେଖାଯାଉଥିଲା ଯେ, ଜବାହର୍‌ଲାଲ୍ ନେହେରୁଙ୍କ ଭଳି ପଣ୍ଡିତ ଲୋକ ଭାବିଲେ ଯେ, ଜାତିପ୍ରଥା ଭୁଶୁଡ଼ି ପଡ଼ିବାର ସମୟ ଆସିଗଲା । "ଭାରତର ଆବିଷ୍କାର" ନାମକ ପୁସ୍ତକରେ ନେହେରୁ ଅତି ଅପରିପକ୍ୱ ଭାବରେ ଏହିକଥା ଲେଖିଛନ୍ତି । ଅସଲ କଥାକୁ ସେ ବୁଝିପାରିନଥିଲେ । ପାଶ୍ଚାତ୍ୟ ଶିକ୍ଷା ଓ କମ୍ୟୁନିଷ୍ଟ୍ ପ୍ରଚାରର ପ୍ରଭାବରେ ସେ ଭାବିଲେ ଯେ, ଇଂରେଜ୍ ଅମଳରେ ଯେଉଁ ନୂଆ ଆର୍ଥିକ ଢାଞ୍ଚା ତିଆରି ହୋଇଛି, ଆଧୁନିକତାର ସଂସ୍ପର୍ଶରେ ଯେଉଁ ନୂଆ ବିଚାର ଆସୁଛି, ତାହାର ଧକ୍‌କାରେ ଜାତିପ୍ରଥା ଚୁର୍‌ମାର୍ ହୋଇଯିବ । କେହି ଚାହିଁଲେ ମଧ୍ୟ ଏହାକୁ ବଞ୍ଚାଇ ପାରିବେ ନାହିଁ । ତେଣୁ ନେହେରୁ ଭାବିଲେ ଜାତିପ୍ରଥା ବିଷୟରେ ଆମକୁ କିଛି କରିବାକୁ ପଡ଼ିବ ନାହିଁ ।

ଏହା ଥିଲା ଏକ ମାରାତ୍ମକ ଭୁଲ୍ । ଗାନ୍ଧୀ ଓ ଆମ୍ବେଦ୍କର୍, ନେହେରୁଙ୍କ ପରି କଳ୍ପନା ବିଳାସୀ ନଥିଲେ । ଜାତିପ୍ରଥାର ଶକ୍ତିକୁ ସେମାନେ ଚିହ୍ନିଥିଲେ । ଗାନ୍ଧୀ ହଜାର ହଜାର ବର୍ଷର ବଂଶଗତ ଅଭ୍ୟାସ ଓ ସଂସ୍କାରଗୁଡ଼ିକୁ ବଦଳାଇବାର କାର୍ଯ୍ୟକ୍ରମ ଓ ଶିକ୍ଷାପଦ୍ଧତି ଚଳାଇବାକୁ ଚାହୁଁଥିଲେ । ଦ୍ୱିଜମାନଙ୍କ ଦ୍ୱାରା ପାଇଖାନା ସଫା କରାଇବା ଓ ଲୋକଙ୍କ ଭିତରେ ଏକ ଜାତିବିହୀନ ହିନ୍ଦୁ ଧର୍ମର ଧାରଣା ଜନ୍ମାଇବା ଇତ୍ୟାଦି ଉପାୟମାନ ସେ ଗ୍ରହଣ କରିଥିଲେ । ଆମ୍ବେଦ୍କର୍ ସାମାଜିକ ସଂଘର୍ଷ କରି ଦ୍ୱିଜମାନଙ୍କୁ ପରିବର୍ତ୍ତିତ କରିବା ନିମନ୍ତେ ବାଧ କରିବା ପାଇଁ ଚାହିଁଲେ ।

ବିଡ଼ମ୍ବନା ଏହି ଯେ, ସ୍ୱାଧୀନ ଭାରତର ରାଷ୍ଟ୍ରୀୟ ନେତାମାନେ ଏହି ବିଷୟରେ ନେହେରୁଙ୍କ ଅନୁଗାମୀ ଥିଲେ । ବଡ଼ ବଡ଼ କଳକାରଖାନା ଆସିବ ଓ ଜାତିକୁ ଭୁଷୁଡ଼ାଇ ଦେବ; କଲେଜ/ ବିଶ୍ୱବିଦ୍ୟାଳୟ ଖୋଲିବ ଓ ଜାତିପ୍ରଥାକୁ ନିର୍ମୂଳ କରିଦେବ । ନେହେରୁଙ୍କର ଏହି ଧାରଣା ସମ୍ପୂର୍ଣ୍ଣ ଭୁଲ୍ ବୋଲି ପ୍ରମାଣିତ ହୋଇଛି । ସମାଜ ଓ ସଂସ୍କୃତିର ପରିବର୍ତ୍ତନ ପାଇଁ ଯେଉଁଠି ପ୍ରତ୍ୟକ୍ଷ ଆନ୍ଦୋଳନ ରହିବ ନାହିଁ, ସେଠାରେ ବାହ୍ୟ ପ୍ରଭାବର ଫଳ ନକାରାତ୍ମକ ରହିବ । ବାହ୍ୟ ପ୍ରଭାବର ଧକ୍କାରେ ମଧ୍ୟ ପରିବର୍ତ୍ତନ ହୁଏ; କିନ୍ତୁ ତାହା ଉର୍ଦ୍ଧ୍ୱଗାମୀ ହୁଏ ନାହିଁ । ଉଚ୍ଚସ୍ତରକୁ ଉଠିବାର ପରିବର୍ତ୍ତନ ନିମନ୍ତେ ଆନ୍ତରିକ ବିସ୍ଫୋରଣ ଦରକାର । ଆଭ୍ୟନ୍ତରୀଣ ବିସ୍ଫୋରଣର ଏକ ନମୂନା ବିବେକାନନ୍ଦଙ୍କ ବାଣୀରେ ମିଳେ– "ହେ ଦ୍ୱିଜମାନେ...ହେ ସମ୍ଭ୍ରାନ୍ତ ଓ କୁଳୀନ ବୋଲାଉଥିବା ଉଚ୍ଚଜାତିର ଶିକ୍ଷିତ ଲୋକମାନେ... ଆମର ପୂର୍ବପୁରୁଷମାନେ ଯେଉଁ ଭାବରେ ସାଧାରଣ ଲୋକଙ୍କୁ ପଦଦଳିତ କରି ରଖିଥିଲେ, ତାହାର ପରିଣାମ ସ୍ୱରୂପ ଭାରତର ଜନସାଧାରଣ ଅଯୋଗ୍ୟ ଓ ଅସହାୟ ହୋଇଯାଇଛନ୍ତି ।...ବଂଶଗତ ଯୋଗ୍ୟତା ଏକ ଭାଣ୍ଡାମୀ । ପରମ୍ପରାଗତ ଆଧିପତ୍ୟକୁ ଚଳେଇ ରଖିବା ନିମନ୍ତେ ଏହି ସିଦ୍ଧାନ୍ତ ଏକ ବାହାନା ମାତ୍ର ।"

ଅର୍ଥାତ୍ ଆଜିଠୁ ପ୍ରାୟ ଶହେବର୍ଷ ତଳେ 'ମେରିଟ୍' ବା ଯୋଗ୍ୟତାର ବିତର୍କକୁ ବିବେକାନନ୍ଦ ବିଦ୍ରୂପ କରିଥିଲେ । ଏହିସବୁ ଚେତାବନୀକୁ ଭାରତର ଦ୍ୱିଜମାନେ ଅଳ୍ପ ସମୟ ପାଇଁ କର୍ଣ୍ଣପାତ କଲେ । ତାଙ୍କର ଦୃଷ୍ଟି ବିସ୍ଫୋରିତ ହେଲା, ଦୃଷ୍ଟି ଉଦାର ହେଲା ଓ ମସ୍ତିଷ୍କ ଉର୍ଦ୍ଧ୍ୱକୁ ଉଠିଲା । ସ୍ୱାଧୀନତା ପରେ ଭାରତୀୟ ମନ ଓ ମସ୍ତିଷ୍କ ପୁଣି ସଙ୍କୁଚିତ ହେବାକୁ ବସିଲା । ୧୯୪୫ରୁ ନେହେରୁ ଯୁଗର ଆରମ୍ଭ ହୋଇଯାଇଥିଲା । ଧର୍ମ ସଂସ୍କାର ଓ ସାଂସ୍କୃତିକ ଆନ୍ଦୋଳନରେ ଆଉ କାହାର ବିଶ୍ୱାସ କିମ୍ବା ଦୃଢ଼ତା ରହିଲା ନାହିଁ । ନବେ ଦଶନ୍ଧି ଆସୁ ଆସୁ ଜାତିପ୍ରଥା ପୁଣି ମଜବୁତ୍ ହୋଇଯାଇଛି । ଶିକ୍ଷିତ ଓ ଅଶିକ୍ଷିତ, ରାଜନୀତି ଓ ପ୍ରଶାସନ, ଶିକ୍ଷା ଓ ଶିଳ୍ପ ସବୁ ସ୍ତରରେ ଜାତି ଭାବନା ଓ ଜାତି ସଙ୍ଗଠନର ଦୌରାତ୍ମ୍ୟ ଦେଖିବାକୁ ମିଳୁଛି । କେବଳ ଜାତି କ୍ଷେତ୍ରରେ ନୁହେଁ, ଶିକ୍ଷାର ମଧ୍ୟ ସମ୍ପୂର୍ଣ୍ଣ ଦୁର୍ଗତି ଘଟିସାରିଛି ଓ ଅର୍ଥ ବ୍ୟବସ୍ଥା ବିଦେଶୀ ଋଣ ଜାଲରେ ଛନ୍ଦି ହୋଇଯାଇଛି । ଏହି ସମଗ୍ର କାଳରେ ଭାରତର ସବୁ କ୍ଷେତ୍ରରେ, ରାଜନୀତି, ସାହିତ୍ୟ, ପ୍ରଶାସନ, ବିଜ୍ଞାନ ଓ ଶିକ୍ଷା ବିଭାଗରେ ଦ୍ୱିଜମାନେ ହିଁ ଅଖଣ୍ଡ ରାଜତ୍ୱ କରୁଛନ୍ତି । ସେହିମାନଙ୍କ ଅଖଣ୍ଡ ରାଜତ୍ୱ କାଳରେ ଏକ ଉର୍ଦ୍ଧ୍ୱକୁ ଉଠୁଥିବା ଭାରତୀୟ ସମାଜର ଯେଉଁ ଶୋଚନୀୟ ଅଧୋଗତି ହେଲା, ତାହା କ'ଣ ଦ୍ୱିଜମାନଙ୍କର ଚରମ

ଅଯୋଗ୍ୟତାର ଅକାଟ୍ୟ ପ୍ରମାଣ ନୁହେଁ ? ଏହାପରେ ଯଦି ଶୂଦ୍ର ନେତା, ଶୂଦ୍ର ପ୍ରଶାସକ ଓ ଶୂଦ୍ର ପ୍ରଧାନମନ୍ତ୍ରୀ ଆସିବେ, ସେମାନଙ୍କର ବିଫଳତାକୁ ଏତେ ବେଶୀ ଦୋଷ ଦେଇହେବ ନାହିଁ, କାରଣ ସେମାନଙ୍କର 'ବଂଶଗତ ଯୋଗ୍ୟତା' ନାହିଁ ।

କିନ୍ତୁ ଏହା କହି ସେମାନେ ପଳାୟନ କରିପାରିବେ ନାହିଁ । ସେମାନଙ୍କୁ ଧରିବାକୁ ହେବ । ସେମାନଙ୍କୁ ଯୋଗ୍ୟ ହେବାକୁ ପଡ଼ିବ । କାରଣ କେବଳ ଦ୍ୱିଜ ନେତୃତ୍ୱରେ ଦେଶ ଆଉ ଚାଲିବ ନାହିଁ । ଦ୍ୱିଜ ନେତୃତ୍ୱର ଶେଷ ସୁଯୋଗ ଥିଲା ସଙ୍ଘ ପରିବାର ରୂପରେ । ବିଶୁଦ୍ଧ ଦ୍ୱିଜ ନେତୃତ୍ୱ ଏବେ ମଧ୍ୟ ସଙ୍ଘ ପରିବାରରେ ରହିଛି । ଭାରତୀୟ ଜନତା ପାର୍ଟିର ନେତୃତ୍ୱ ସମ୍ପୂର୍ଣ୍ଣରୂପେ ଦ୍ୱିଜ ହୋଇଥିବାରୁ ଦ୍ୱିଜ ବୁଦ୍ଧିଜୀବୀମାନଙ୍କର ଏକ ସ୍ୱାଭାବିକ ଆକର୍ଷଣ ସେଆଡ଼କୁ ହେଉଛି । ରାଷ୍ଟ୍ରୀୟ ସ୍ୱୟଂସେବକ ସଙ୍ଘ ଆହୁରି ବେଶୀ ଶୁଦ୍ଧ । କୁଳୀନ ବ୍ରାହ୍ମଣ ଛଡ଼ା ଅନ୍ୟ କେହି ଏହାର ଶୀର୍ଷ ସଞ୍ଚାଳକ ହୋଇପାରିବ ନାହିଁ । ସେମାନେ କ'ଣ ବିବେକାନନ୍ଦଙ୍କର ଡାକ ଶୁଣିଛନ୍ତି ?

ଇତିମଧ୍ୟରେ ସଙ୍ଘ ପରିବାର ଯଥେଷ୍ଟ ବିସ୍ତାର ଲାଭ କରିଛି । ସନ୍ଥ, ସନ୍ନ୍ୟାସୀ, ମହନ୍ତ ଓ ଶଙ୍କରାଚାର୍ଯ୍ୟମାନଙ୍କର ସଙ୍ଗଠନ ଓ ସକ୍ରିୟତା ବଢ଼ିଛି । ସେମାନେ ଯଦି ସଙ୍କଳ୍ପ କରିଥାନ୍ତେ ଯେ ଦୁଇ ହଜାର ବର୍ଷର ଏହି ଜାତିରୂପୀ କୁଷ୍ଠ ବ୍ୟାଧିରୁ ଭାରତୀୟ ସମାଜକୁ ମୁକ୍ତ କରିବା ପାଇଁ – ସେମାନେ ସଫଳ ହୋଇଥାନ୍ତେ । ଗ୍ରାମେ ଗ୍ରାମେ, ସହରେ ସହରେ, ବୃନ୍ଦାବନ ଓ ମଥୁରାରେ, ପ୍ରୟାଗ ଓ ବାରାଣାସୀରେ ବା ରାମେଶ୍ୱରରେ ଏକତ୍ରିତ ହୋଇ ସେମାନେ ଉଦ୍‌ଘୋଷଣା କରିଥାନ୍ତେ, "ହିନ୍ଦୁ ସମାଜରେ ଆଉ ସାମାଜିକ ବୈଷମ୍ୟ ରହିବ ନାହିଁ । ମନୁଷ୍ୟ ମାତ୍ରକେ ସମସ୍ତେ ମନ୍ଦିରରେ ପୂଜା କରିପାରିବେ, ଏକାଠି ଭୋଜନ କରିପାରିବେ ଓ ପରସ୍ପର ମଧ୍ୟରେ ବିବାହ କରିପାରିବେ ।" ଏହାର ଚମତ୍କାରୀ ପ୍ରଭାବ ପଡ଼ିଥାଆନ୍ତା । ଛଅ ଡିସେମ୍ବରରେ ବାବ୍‌ରୀ ମସ୍‌ଜିଦ୍‌କୁ ଧୂଳିସାତ୍ କରିବା ପାଇଁ ଯେଉଁ ଶକ୍ତିର ପ୍ରୟୋଗ ହୋଇଥିଲା, ତାହାର ଅର୍ଦ୍ଧାଂଶ ମଧ୍ୟ ଯଦି ଜାତିପ୍ରଥାକୁ ଅସ୍ୱୀକାର କରିବା ପାଇଁ ଲଗାଯାଇଥାଆନ୍ତା, ତାହାହେଲେ ଜନସାଧାରଣଙ୍କ ଭିତରେ ଏକ ସୃଜନାତ୍ମକ ଉଦ୍‌ବେଳନ ଆସିଥାଆନ୍ତା ।

ସାମ୍ପ୍ରଦାୟିକତାକୁ ମଜବୁତ୍ କରି ସଙ୍ଘ ପରିବାର ପୁନର୍ବାର ଭାରତରେ ବର୍ଣ୍ଣ-ଜାତି ବ୍ୟବସ୍ଥାକୁ ଦୃଢ଼ କରିବା ପାଇଁ କାର୍ଯ୍ୟ କରିବ, ଏହି ଆଶଙ୍କା ଜାତ ହେଉଛି । ତେଣୁ ଶୂଦ୍ରମାନଙ୍କୁ ମଧ୍ୟ ସାବଧାନ ହେବାକୁ ପଡ଼ିବ । ଶୂଦ୍ର ନେତାମାନଙ୍କର ସଙ୍କୀର୍ଣ୍ଣତା ମଧ୍ୟ କମ୍ ନୁହେଁ । ଅଯୋଗ୍ୟତାକୁ କବଚ କରି ସେମାନେ ସଂରକ୍ଷଣକୁ ସ୍ଥାୟୀ କରିବାକୁ ଚାହାନ୍ତି । ସଂରକ୍ଷଣ ଏକ ଐତିହାସିକ ଅନିର୍ବାର୍ଯ୍ୟତା । କିନ୍ତୁ ଏହାର ସ୍ଥାୟିତ୍ୱ ଦେଶକୁ ପଙ୍ଗୁ କରିଦେବ । ଏହା ଏକ ଚିରସ୍ଥାୟୀ ବନ୍ଦୋବସ୍ତ ହୋଇ ନ ପାରେ ।

ସଂରକ୍ଷଣ ନୀତି ଜାତିର ଡାଞ୍ଚାକୁ ନିଶ୍ଚୟ ପ୍ରବଳ ଧକ୍‌କା ଦେଉଛି । ସେଥିପାଇଁ ଦ୍ୱିଜ ନେତୃତ୍ୱ ଆତଙ୍କିତ ହୋଇ ପରୋକ୍ଷ ଭାବରେ ବର୍ଣ୍ଣ ଜାତି ବ୍ୟବସ୍ଥାର ପୁନଃରୁଦ୍ଧାର ପାଇଁ ଚେଷ୍ଟା କରୁଛନ୍ତି । ଶୂଦ୍ର ନେତା ମନେରଖନ୍ତୁ ଯେ, କେବଳ ସଂରକ୍ଷଣ ଦ୍ୱାରା ଜାତିପ୍ରଥା ଧ୍ୱଂସ ହେବନାହିଁ । ସେମାନେ ଯଦି ଆତ୍ମସନ୍ତୋଷରେ ରହିଯିବେ,

ତାହାହେଲେ ବର୍ଣ୍ଣ-ଜାତି ବ୍ୟବସ୍ଥା ସତକୁସତ ଆଉଥରେ ମଜବୁତ୍ ହୋଇ ସଂରକ୍ଷଣର ପ୍ରଭାବକୁ ନଷ୍ଟ କରିଦେବ । ଜାତିପ୍ରଥାର ଅନେକ ସ୍ତମ୍ଭ ରହିଛି । ସାମାଜିକ ରୀତିନୀତି ଓ ଧର୍ମର ଭୁଲ୍ ବ୍ୟାଖ୍ୟା ଏହାର ଗୋଟିଏ ସ୍ତମ୍ଭ; ଚାକିରି ଓ ପଦପଦବୀରେ ସାମାଜିକ ବୈଷମ୍ୟ ଆଉ ଏକ ସ୍ତମ୍ଭ; ଆର୍ଥିକ ବିଷମତା ଓ ଅର୍ଥନୀତିର କେନ୍ଦ୍ରୀକରଣ ଏହାର ତୃତୀୟ ସ୍ତମ୍ଭ; ଶିକ୍ଷାର ବିଷମତା ଏହାର ଚତୁର୍ଥ ସ୍ତମ୍ଭ । କୌଣସି ଗୋଟିଏ ଗୋଡ଼କୁ ଭାଙ୍ଗିଲେ ବାକି ତିନୋଟି ଗୋଡ଼ରେ ସେ ଠିଆ ହୋଇଯିବ ଓ ଭାଙ୍ଗିବା ଗୋଡ଼କୁ ମଧ୍ୟ ମରାମତି କରିଦେବ । ଜତିପ୍ରଥାର ମରାମତି ବାରମ୍ବାର ହୋଇଛି ।

ଅତଏବ୍, ସଂରକ୍ଷଣର ସାମ୍ବିଧାନିକ ବୈଧତା ଯାହା ହେଉନା କାହିଁକି, ତାହାର ସାମାଜିକ ବୈଧତା ଏହି ସର୍ତ୍ତ ଉପରେ ନିର୍ଭର କରୁଛି । ଏହାର ମୂଳ ଉଦ୍ଦେଶ୍ୟ ଚାକିରିର ଭାଗବଣ୍ଟା ନୁହେଁ । ଏହାର ମୂଳ ଉଦ୍ଦେଶ୍ୟ ସାମାଜିକ ବୈଷମ୍ୟକୁ ଦୂର କରିବା । ଏହା କେବଳ ପଛୁଆ ଜାତିମାନଙ୍କର ଲକ୍ଷ୍ୟ ହୋଇ ନ ପାରେ । ଏହା ସମଗ୍ର ବୁଦ୍ଧିଜୀବୀ ଶ୍ରେଣୀର ଲକ୍ଷ୍ୟ ହେବା ବିଧେୟ ।

୨୩ ଫେବୃୟାରୀ, ୧୯୯୩

# ଦଳିତ ରାଜନୀତି ଓ ଶୂଦ୍ର ସଂସ୍କୃତି

୧

ହରିଜନ ବା ଅସ୍ପୃଶ୍ୟ ଅର୍ଥରେ ଦଳିତ ଶବ୍ଦର ପ୍ରୟୋଗ ନୂଆ ହେଉଛି । ହରିଜନମାନେ ନିଜର ଅଧିକାର ପାଇଁ ଉଚ୍ଚଜାତି ସମାଜ ସଂସ୍କାରକମାନଙ୍କୁ ଅପେକ୍ଷା ନ କରି ନିଜର ଲଢ଼େଇ ନିଜେ ଲଢ଼ିବେ, ଏହାହିଁ  ଦଳିତ ଆନ୍ଦୋଳନ । ଏହାର ପ୍ରସାର ମହାରାଷ୍ଟ୍ରରୁ ଆରମ୍ଭ ହୋଇ କେତେକ ରାଜ୍ୟରେ ଏତେ ବ୍ୟାପକ ହେଲାଣି ଯେ 'ହରିଜନ' ଶବ୍ଦର ଚଳଣି ବହୁତ କମିଯାଉଛି । ପ୍ରାରମ୍ଭରେ ଆଦିବାସୀମାନଙ୍କୁ ଦଳିତ ଶ୍ରେଣୀର ଅନ୍ତର୍ଭୁକ୍ତ କରିବା ପାଇଁ ଏକ ଚେଷ୍ଟା ହୋଇଥିଲା । କିନ୍ତୁ ଏବେ ଏହା 'ଅନୁସୂଚିତ ଜାତି' ପାଇଁ ହିଁ ସୀମାବଦ୍ଧ ହୋଇଯାଇଛି ।

ଓଡ଼ିଶାରେ ଦଳିତ /ହରିଜନମାନଙ୍କ ମଧ୍ୟରେ ଶିକ୍ଷାର ପ୍ରସାର ଅଳ୍ପ ହୋଇଥିବାରୁ କବି, ଲେଖକ, ଦାର୍ଶନିକ, ବୈଜ୍ଞାନିକ ଆଦି ଏହି ଶ୍ରେଣୀରୁ ସୃଷ୍ଟି ହୋଇନାହାନ୍ତି । ସଂରକ୍ଷଣ ନୀତି ଓ ଗଣତନ୍ତ୍ରରେ ସଂଖ୍ୟାବହୁଳ ଗୋଷ୍ଠୀର ଗୁରୁତ୍ୱ କାରଣରୁ ହରିଜନ ପରିବାରର ଯୁବକମାନେ ମୁଣ୍ଡ ଟେକିବାକୁ ଓ ମୁଖର ହେବାକୁ ଆରମ୍ଭ କରିଛନ୍ତି ମାତ୍ର । ଅର୍ଥାତ୍ ଅସ୍ପୃଶ୍ୟମାନେ ହରିଜନ ଅବସ୍ଥାକୁ ପାର କରି ଦଳିତ ଅବସ୍ଥାକୁ ଉଠୁଛନ୍ତି । ଶିକ୍ଷିତ ହରିଜନମାନେ ଆଉ କଂଗ୍ରେସ୍ ଦଳର ଗୋଡ଼ାଣିଆ ହୋଇ ରହିବାକୁ ଚାହୁଁନାହାନ୍ତି: ସେମାନେ ଏକ ନୂଆ ରାଜନୀତି ଖୋଜୁଛନ୍ତି । ଦଳିତ ସାହିତ୍ୟର ଉଦ୍ଭବ ହେବା ସଙ୍ଗେ ସଙ୍ଗେ ଏକ ଦଳିତ ରାଜନୀତିର ଉଦ୍ଭବ ହୋଇଛି ।

ଦଳିତକୁ ଆଉ କେହି ରୋକି ପାରିବେ ନାହିଁ । 'ହରିଜନ' ଧିରେ ଧିରେ ହ୍ରାସ ପାଇଯିବ । ସଙ୍କ୍ରମଣ କାଳରେ ଏହି ଶବ୍ଦ ଦୁଇଟି ପ୍ରତିଦ୍ୱନ୍ଦ୍ୱୀ ବୋଲି ମନେ ହେଉଛନ୍ତି । କାଳ ଚକ୍ଷୁରେ ଦେଖିଲେ ଏମାନେ ଏକ କ୍ରମବିକାଶର ଦୁଇଟି ପର୍ଯ୍ୟାୟ ମାତ୍ର । ଯଦି କ୍ରମବିକାଶ ଠିକ୍ ଭାବରେ ଚାଲେ, ତାହାହେଲେ ଗୋଟିଏ ଅବଧି ପରେ ଦଳିତ ମଧ୍ୟ ରହିବ ନାହିଁ । ତାହା ହିଁ ଆମର କାମ୍ୟ ।

ଯେତେବେଳେ ଅସ୍ପୃଶ୍ୟମାନେ ନିଜେ ଜାତିପ୍ରଥା ବିରୁଦ୍ଧରେ ଠିଆ ହୋଇ ପାରୁ ନଥିଲେ, ଆମ୍ବେଦ୍କର୍ଙ୍କର ପ୍ରଭାବ ଅଳ୍ପ କେତେକ ଅଞ୍ଚଳରେ ସୀମିତ ଥିଲା । ସେତେବେଳେ ହିନ୍ଦୁ ସମାଜ ଉପରୁ ଅସ୍ପୃଶ୍ୟତାର କଳଙ୍କ ପୋଛିବା ପାଇଁ ଗାନ୍ଧୀ

ସେମାନଙ୍କୁ ହରିଜନ କହିଲେ । ସେମାନେ ନିଜେ ଏହି ନାମକରଣ କରି ନଥିଲେ । ଆଜି ଯଦି ସେମାନେ ନିଜେ ଜାତିପ୍ରଥା ବିରୁଦ୍ଧରେ ଠିଆ ହେବାକୁ ସକ୍ଷମ ମଣୁଛନ୍ତି ଓ ନିଜେ ନିଜର ନାମକରଣ କରୁଛନ୍ତି, ସେଥିରେ ସମାଜ-ସୁଧାରକମାନେ ଅସହିଷ୍ଣୁ ହେବା ପରିବର୍ତ୍ତେ ପ୍ରସନ୍ନ ହେବା ଉଚିତ ଥିଲା । ସେମାନେ ବାହାଦୁରୀ ନେବା ପାଇଁ କହି ପାରିଥାନ୍ତେ, 'ଦେଖ, ଯେତେବେଳେ ଅସ୍ପୃଶ୍ୟମାନଙ୍କୁ ସମସ୍ତେ ଘୃଣା କରୁଥିଲେ, ମନୁଷ୍ୟ ବୋଲି ମଣୁ ନଥିଲେ, ସେତେବେଳେ ଆମେ ହରିଜନ-ସେବକ ସଙ୍ଘ ଗଢ଼ି ସମାଜ-ସଂସ୍କାରର ଆନ୍ଦୋଳନ କଲୁ ଓ ସେଥିପାଇଁ ବ୍ରାହ୍ମଣବାଦୀମାନଙ୍କ ଦ୍ୱାରା ତିରସ୍କୃତ ହେଲୁ । ସାରା ଭାରତରେ ହରିଜନ ନାମକ ଏକ ଶ୍ରେଣୀ ସୃଷ୍ଟି ହେଲା । ଡାଃ ଆମ୍ବେଦ୍କର୍ଙ୍କର ଆନ୍ଦୋଳନ ମହାରାଷ୍ଟ୍ରର କେତେକାଂଶରେ ସୀମିତ ଥିଲା । କଂଗ୍ରେସ୍ ଆନ୍ଦୋଳନ ମାଧ୍ୟମରେ ସାରା ଦେଶରେ ଏକ ହରିଜନ ଚେତନା ପ୍ରସାରିତ ହେଲା । ଆଜିର ପିଢ଼ିରେ ସେଇ ଚେତନା ବିଦ୍ରୋହୀ ଚେତନାରେ ପରିଣତ ହୋଇଛି । ତାହାକୁ ଆମେ ସ୍ୱାଗତ କରୁଛୁ ।''

'ହରିଜନ' ପ୍ରେମୀମାନଙ୍କର ଯଦି ପ୍ରକୃତ ଆନ୍ତରିକତା ଥାଆନ୍ତା ସେମାନେ ଏହିପରି ଭାବରେ ଦଳିତ ଆନ୍ଦୋଳନକୁ ଦେଖିଥାନ୍ତେ । ଯେକୌଣସି ସାମାଜିକ ଅନ୍ୟାୟର ଅନ୍ତ କରିବାକୁ ହେଲେ ଏହି ଦୁଇ ପ୍ରକାରର ଆନ୍ଦୋଳନ ଚାଲେ । ଯେଉଁ ପକ୍ଷ ଅନ୍ୟାୟ କରୁଛି, ତାହାର ଗୋଟିଏ ଗୋଷ୍ଠୀ ଯୁଗ ଚେତନା ଓ ନୈତିକ ତାଡ଼ନାର ବଶବର୍ତ୍ତୀ ହୋଇ ସମାଜ ସଂସ୍କାର କରିବାକୁ ପ୍ରଣୋଦିତ ହୁଏ । ଅନ୍ୟ ପକ୍ଷରେ ଅନ୍ୟାୟର ଶିକାର ହେଉଥିବା ଲୋକମାନେ ନିଜେ ନିଜର ସଂଘର୍ଷ କରିଥାନ୍ତି । ଏହି ଦୁଇଟି ଶକ୍ତିର ସଂଯୋଗରେ ସାମାଜିକ ପରିବର୍ତ୍ତନ ଗତିଶୀଳ ହୁଏ । ନାରୀ ମୁକ୍ତି ଆନ୍ଦୋଳନରେ ମଧ୍ୟ ଏହା ପରିଲକ୍ଷିତ ହୁଏ । ଉଭୟ ପକ୍ଷର ଲକ୍ଷ୍ୟରେ ସାମଞ୍ଜସ୍ୟ ଥିଲେ ମଧ୍ୟ ସେମାନେ ପ୍ରତିଦ୍ୱନ୍ଦ୍ୱୀ । କିଏ ଏହି କାମକୁ ବେଶୀ ଭଲ ଭାବରେ କରୁଛି, ଏ ବିଷୟରେ କଳହ ଚାଲିଥାଏ, ସେତେବେଳ ତିକ୍ତତା ସୃଷ୍ଟି ହୁଏ । କିନ୍ତୁ ପରବର୍ତ୍ତୀ ଇତିହାସରେ ଉଭୟେ ସମାଜ ପରିବର୍ତ୍ତନର ବାହକ ବୋଲି ପରିଚିତ ହୁଅନ୍ତି ।

ଗାନ୍ଧୀ ଓ ଆମ୍ବେଦ୍କର୍ଙ୍କର ବିବାଦ ଏହି ପ୍ରକାରର । ଉଭୟଙ୍କର ଜୀବନୀ ଅଧ୍ୟୟନ କଲେ ଜଣାପଡ଼େ ଯେ ଅସ୍ପୃଶ୍ୟମାନଙ୍କର ଉଦ୍ଧାର ଓ ଉତ୍ଥାପନ ପାଇଁ ଦୁହେଁ ସଂକଳ୍ପବଦ୍ଧ ଥିଲେ । କିନ୍ତୁ, ଉଭୟଙ୍କର ଦୃଷ୍ଟିକୋଣ ଅଲଗା ଥିଲା । ଗାନ୍ଧୀଙ୍କ ନିକଟରେ ଅସ୍ପୃଶ୍ୟତା ନିବାରଣ ଏକମାତ୍ର ଜରୁରୀ କାମ ହୋଇ ନଥିଲା । ତାଙ୍କର ସର୍ବାଧିକ ସମୟ ଓ ଶକ୍ତି ବ୍ରିଟିଶ୍ ସାମ୍ରାଜ୍ୟବାଦ ବିରୁଦ୍ଧରେ ସଙ୍ଘର୍ଷ କାର୍ଯ୍ୟରେ ଲାଗିଥିଲା । ଅନ୍ୟ ପକ୍ଷରେ ଡାଃ ଆମ୍ବେଦ୍କର୍ କେବଳ ଅସ୍ପୃଶ୍ୟତା ନିବାରଣ ପାଇଁ ଆଗ୍ରହୀ ନଥିଲେ । ସେ ସମ୍ପୂର୍ଣ୍ଣ ଜାତିପ୍ରଥାର ବିନାଶ ଚାହୁଁଥିଲେ । ଏପରି ସ୍ଥଳେ ଉଭୟ ଆନ୍ଦୋଳନର ଗତି ଓ ରଣନୀତିରେ ପ୍ରଭେଦ ଯୁକ୍ତିସଙ୍ଗତ । ତେଣୁ ତିକ୍ତତା ଓ କଳହ । ଏହି ତିକ୍ତତା ଓ କଳହ ଇତିହାସ ପୃଷ୍ଠାରେ ଶୋଭାପାଏ । ବର୍ତ୍ତମାନ ତାହା ଅବାନ୍ତର । ୧୯୫୪ (୬-୯-୫୪)ରେ ପାର୍ଲିଆମେଣ୍ଟ୍ର ଏକ ଭାଷଣରେ ଡା: ଆମ୍ବେଦ୍କର୍ କହିଥିଲେ : 'ମୁଁ ଗାନ୍ଧୀଙ୍କୁ ସମ୍ମାନ କରେ । ଆମେ ସମସ୍ତେ ଜାଣୁ ଯେ ଅସ୍ପୃଶ୍ୟମାନେ ତାଙ୍କର ସବୁଠାରୁ

ପ୍ରିୟ ଥିଲେ ।' ହୁଏତ ଏଇ କଥାକୁ ସ୍ମରଣ କରି ମାୟାବତୀ ତାଙ୍କର କଟୁ ଉଦ୍‌ଗାର ବିଷୟରେ ସ୍ପଷ୍ଟୀକରଣ ଦେଇ କହିଛନ୍ତି ଯେ ତାଙ୍କ ସମାଲୋଚନାର ଶରବ୍ୟ ଗାନ୍ଧୀ ନୁହଁନ୍ତି, ଗାନ୍ଧୀବାଦ ।

୧୯୩୧ରେ ହିଁ ଗାନ୍ଧୀ କହିଥିଲେ, "ଡାଃ ଆମ୍ବେଦ୍‌କରଙ୍କୁ ମୁଁ ସର୍ବୋଚ୍ଚ ସମ୍ମାନ ଦେଇଥାଏ । ତାଙ୍କର ତିକ୍ତତାର ଯଥେଷ୍ଟ କାରଣ ଅଛି । ସେ ଯେ ଟେକା ଫିଙ୍ଗି ଆମମାନଙ୍କର (ଉଚ୍ଚ ଜାତି ଲୋକଙ୍କର) ମୁଣ୍ଡ ଫଟାଇ ଦେଉ ନାହାନ୍ତି, ତାହା ତାଙ୍କର ସଞ୍ଜତ କାର୍ଯ୍ୟ ପ୍ରଣାଳୀର ପ୍ରମାଣ ଅଟେ ।" ଏହି ବାକ୍ୟରେ ଦଳିତ ଚେତନାର ମର୍ମକୁ ଜାଣିବାରେ ଗାନ୍ଧୀ ସଫଳ ହୋଇଛନ୍ତି (ସେମାନେ ଯେ ଆମର ମୁଣ୍ଡ ଫଟାଇ ହେଉ ନାହାନ୍ତି !) । ଉପରୋକ୍ତ ଦୁଇଟି ଯାକ ଉଦ୍ଧୃତି କୁରୁକ୍ଷେତ୍ର ବିଶ୍ୱବିଦ୍ୟାଳୟର 'ଆମ୍ବେଦ୍‌କର୍ ଅଧ୍ୟୟନ ବିଭାଗ'ର ପ୍ରଫେସର କେ.ସି. ଯାଦବଙ୍କ ଲେଖାରୁ ନିଆଯାଇଛି । (୧୪-୪-୯୪ର ଟାଇମ୍‌ସ୍ ଅଫ୍ ଇଣ୍ଡିଆ) ।

ଆମ୍ବେଦ୍‌କରଙ୍କ ସଙ୍ଗେ ବିବାଦ ଫଳରେ ଗାନ୍ଧୀଙ୍କର ହରିଜନ ଚେତନା ନିଶ୍ଚିତ ଭାବରେ ଶାଣିତ ହୋଇଥିଲା ଓ ପରବର୍ତ୍ତୀ କାଳରେ ସେ ଜାତିପ୍ରଥାକୁ ସମାପ୍ତ କରିବାର ଲକ୍ଷ୍ୟ ମଧ୍ୟ ଗ୍ରହଣ କଲେ । ପ୍ରାରମ୍ଭିକ କାଳରେ ଯେଉଁ ଗାନ୍ଧୀ ଜାତି ଭିତରେ ହେଉଥିବା ବିବାହ ପ୍ରଥାକୁ ଆଦର୍ଶ ବୋଲି ଯୁକ୍ତି ବାଢୁଥିଲେ, ସେ ପୁଣି ସଙ୍କଳ୍ପ କଲେ ଯେ ଅନ୍ତର୍ଜାତୀୟ ବିବାହ କହିଲେ ଦୁଇଟି ଉଚ୍ଚ ଜାତି ମଧ୍ୟରେ ବିବାହ ନୁହେଁ, ଗୋଟିଏ ପକ୍ଷ 'ତଳ' ଜାତିର ହେବା ଦରକାର ।

ମାୟାବତୀଙ୍କ ବିରୁଦ୍ଧରେ ଖଡ୍‌ଗହସ୍ତ ହୋଇ ଯେଉଁ ଗାନ୍ଧୀ-ପ୍ରେମୀମାନେ ମାୟାବତୀଙ୍କର ଜିଭ କାଟିବାକୁ ଉଦ୍ୟତ ହେଉଛନ୍ତି, ସେମାନେ ଯେଉଁ ପ୍ରକାରର ଗାନ୍ଧୀବାଦୀ ହୁଅନ୍ତୁ ନା କାହିଁକି, ସେମାନେ ହରିଜନ ସେବକ ବା ହରିଜନ ବନ୍ଧୁ ନୁହଁନ୍ତି । ଗାନ୍ଧୀଙ୍କର ମୃତ୍ୟୁ ପରେ ଓ ୧୯୫୦ରେ ସମ୍ବିଧାନ ପ୍ରଣୟନ ହୋଇଯିବା ପରେ ସେମାନେ କେବେ ଜାତି ପ୍ରଥାର ଦୂରୀକରଣ ପାଇଁ ଓ ହରିଜନମାନଙ୍କର ସମ୍ପୂର୍ଣ୍ଣ ଉତ୍‌ଥାନ ପାଇଁ ଆନ୍ଦୋଳନ କରି ନାହାଁନ୍ତି କିମ୍ବା ଉଦ୍‌ବେଗ ପ୍ରକାଶ କରି ନାହାଁନ୍ତି । ମାୟାବତୀଙ୍କ ଆକ୍ରମଣରୁ ଗାନ୍ଧୀଙ୍କୁ ରକ୍ଷା କରିବା, ଆତ୍ମରକ୍ଷା ପାଇଁ ଛଳନା ମାତ୍ର । ଗାନ୍ଧୀଙ୍କର ଅନ୍ତର୍ଜାତୀୟ ବିବାହ କାର୍ଯ୍ୟକ୍ରମକୁ ମଧ୍ୟ ସେମାନେ ଏକ ଆନ୍ଦୋଳନରେ ପରିଣତ କରିବା ପାଇଁ ଚେଷ୍ଟା କରି ନାହାଁନ୍ତି । ସଂରକ୍ଷିତ ନିର୍ବାଚନ ମଣ୍ଡଳୀମାନଙ୍କରୁ କେତେକ ହରିଜନ ପ୍ରାର୍ଥୀଙ୍କୁ ନିର୍ବାଚିତ କରାଇ ଦେବା ଦ୍ୱାରା ହରିଜନ ସମାଜ କେତେ ଉପକୃତ ହୋଇଛି, ଏହାର ସମୀକ୍ଷା ମଧ୍ୟ ସେମାନେ କରିନାହାନ୍ତି ।

ଗାନ୍ଧୀ ସମର୍ଥକମାନେ ଗାନ୍ଧୀଙ୍କର ପୁରା କଥା ଲୋକଙ୍କ ପାଖରେ ପହଞ୍ଚେଇ ନାହାନ୍ତି । ସେମାନେ କହନ୍ତି, ଗାନ୍ଧୀ ହରିଜନ ଉଦ୍ଧାର ଚାହୁଁଥିଲେ । ଏହା ତ ଏକ ଦୟା କାର୍ଯ୍ୟ । ଗାନ୍ଧୀ କ'ଣ ଏକ ଦୟାର ଆନ୍ଦୋଳନ ଚଳାଇଥିଲେ ? ଗାନ୍ଧୀ ସମାଜକୁ ଦୁଇ ଭାଗରେ ବିଭକ୍ତ କରିଥିଲେ, ହରିଜନ ଓ ଦୁର୍ଜନ । ଯେଉଁମାନେ ହରିଜନ ଠାରୁ ଦୂରେଇ ରହନ୍ତି ଓ ସେମାନଙ୍କର ପରିଶ୍ରମର ଫଳ ଭୋଗ କରନ୍ତି, ସେମାନେ ହେଉଛନ୍ତି ଦୁର୍ଜନ ଓ

ଦୁର୍ଜନମାନଙ୍କୁ ପ୍ରାୟଶ୍ଚିତ କରିବାକୁ ପଡ଼ିବ । ଗାନ୍ଧୀ ସମର୍ଥକମାନେ ହରିଜନ ଆନ୍ଦୋଳନକୁ ଏକ ପ୍ରାୟଶ୍ଚିତ ଆନ୍ଦୋଳନ ରୂପେ ଚଳାଇ ନାହାଁନ୍ତି । ସେଥିପାଇଁ ହରିଜନ ଶବ୍ଦ ସନ୍ଦେହ ସୃଷ୍ଟି କରିଛି । ହରିଜନମାନେ ପଚାରୁଛନ୍ତି, ଆମକୁ କାହିଁକି ସ୍ୱତନ୍ତ୍ର ଭାବରେ ହରିଜନ ବୋଲି କୁହାଯାଉଛି ? ଏହା କ'ଣ ଆମକୁ ଅଲଗା କରିବାର ଆଉ ଏକ ବାଟ ? ଉଚ୍ଚ ଜାତିର ସମାଜ ସୁଧାରକମାନେ ଯଦି ନିଜର ଜାତିକୁ ଦୁର୍ଜନ ଜାତି ବୋଲି ସର୍ବସାଧାରଣରେ ପ୍ରଚାରିତ କରିନାହାନ୍ତି, ତାହାହେଲେ ଅସ୍ପୃଶ୍ୟଙ୍କୁ ହରିଜନ କରିବାର ଯଥାର୍ଥତା ନାହିଁ ।

ଗାନ୍ଧୀ ସମର୍ଥକମାନଙ୍କର ନିଷ୍କ୍ରିୟତା ଫଳରେ ସମ୍ବିଧାନର ଅସ୍ପୃଶ୍ୟତା ନିବାରଣ ଧାରା ମଧ୍ୟ ଏପର୍ଯ୍ୟନ୍ତ କାର୍ଯ୍ୟକାରୀ ହୋଇପାରିନାହିଁ । ଦେହକୁ ଛୁଇଁବା କଥା ଛାଡ଼ିଦେଲେ ବାକି ସବୁ ରକମର ଅସ୍ପୃଶ୍ୟତା ରହିଛି – ପାଣି ଓ ଭୋଜନର ଅସ୍ପୃଶ୍ୟତା ରହିଛି । ବାଳକଟା ସେଲୁନ୍‌ରେ, ଚାହା ଦୋକାନର କପ୍‌ରେ ଅସ୍ପୃଶ୍ୟତା ରହିଛି । ଏସବୁର ପ୍ରତିରୋଧ ଯେଉଁମାନେ କରିବେ ନାହିଁ, ସେମାନେ ହରିଜନମାନଙ୍କର ପ୍ରିୟ ହୋଇପାରିବେ ନାହିଁ । ରାଜନୈତିକ ଦଳମାନଙ୍କର ନେତୃତ୍ୱ ଯଦି ଉଚ୍ଚଜାତିର ହାତମୁଠା ଭିତରେ ରହି ଚାଲିଥିବ, ଦଳିତ ରାଜନୀତି ନିଶ୍ଚୟ ଉଗ୍ରରୁ ଉଗ୍ରତର ହେବ । ଜାତିପ୍ରଥାର ବିନାଶ ପାଇଁ ଡାଃ ଆମ୍ବେଦ୍‌କର୍‌ଙ୍କର ପ୍ରାସଙ୍ଗିକତା ବଢ଼ି ଚାଲିବ । ଗଣତନ୍ତ୍ରକୁ ପଦଦଳିତ କରି ହିଁ ଦଳିତ ଆନ୍ଦୋଳନକୁ ଦବେଇ ଦିଆଯାଇପାରିବ । ଅନ୍ୟଥା, ଦଳିତ ଜୟଯାତ୍ରା ଅବ୍ୟାହତ ରହି ଆଗୁସାର ହୋଇଚାଲିବ । ବେଳେ ବେଳେ ଏହା ଉତ୍କଟ ରୂପ ଧାରଣ କରିବ ଓ ତାହାର ନକାରାତ୍ମକ ଫଳ ମଧ୍ୟ ବାହାରିପାରେ । କିନ୍ତୁ ଏଥିପାଇଁ ଦଳିତମାନେ ଦାୟୀ ହେବେ କି ?

୨

ମହାତ୍ମା ଫୁଲେ, ଡାଃ ଆମ୍ବେଦ୍‌କର୍ ଓ କାଂଶୀରାମ ଏହି ତିନିଜଣଙ୍କର କାର୍ଯ୍ୟ ଓ ବିଚାର ଭାରତର ଦଳିତ ଆନ୍ଦୋଳନକୁ ପ୍ରଭାବିତ କରିଛି । ଫୁଲେ କିମ୍ବା ଆମ୍ବେଦ୍‌କର୍‌ଙ୍କର ସଙ୍ଗେ କାଂଶୀରାମ ତୁଳନୀୟ ନୁହଁନ୍ତି । କିନ୍ତୁ ବର୍ତ୍ତମାନ ଭାରତର ଦଳିତ ରାଜନୀତିର ସେ ହେଉଛନ୍ତି ସବୁଠାରୁ ଉଗ୍ର ପ୍ରବକ୍ତା । ତାଙ୍କ ଦଳ ବହୁଜନ ସମାଜ ପାର୍ଟିର ନିର୍ବାଚନମାନଙ୍କରେ ଅଗ୍ରଗତି ହୋଇ ଚାଲିଛି । ଏଣୁ ଏହି ବ୍ୟକ୍ତିତ୍ୱ ଓ ତାଙ୍କ ଦଳର ଚରିତ୍ର ବିଷୟରେ ଧାରଣା କରିବା ସମସ୍ତଙ୍କ ପାଇଁ ପ୍ରୟୋଜନୀୟ ।

କାଂଶୀରାମଙ୍କର କାର୍ଯ୍ୟ ଓ ବିଚାରରେ ଦୋଷ-ଦୁର୍ବଳତା ଅଛି, ମାତ୍ର ତାଙ୍କର ଉପଲବ୍ଧିକୁ ମଧ୍ୟ ମନେ ରଖିବାକୁ ହେବ । ଆଗରୁ ନିର୍ବାଚନମାନଙ୍କରେ ମତଦାତାମାନେ ସବର୍ଣ୍ଣ ଓ ହରିଜନ ଏହି ଭାବରେ ବିଭାଜିତ ହେଉଥିଲେ । କଂଗ୍ରେସ୍‌କୁ ଛାଡ଼ି ହରିଜନମାନେ ଅନ୍ୟ କୌଣସି ଦଳର ସବର୍ଣ୍ଣ ପ୍ରାର୍ଥୀକୁ ଭୋଟ୍ ଦେଉ ନଥିଲେ । ଅନ୍ୟ ଦଳର ସବର୍ଣ୍ଣ ପ୍ରାର୍ଥୀମାନେ ଧରି ନେଉଥିଲେ ଯେ ହରିଜନ ଭୋଟ୍ ତାଙ୍କୁ ମିଳିବ ନାହିଁ । ତେଣୁ ଅନେକ ସ୍ଥାନରେ ହରିଜନମାନଙ୍କୁ ବଳ ପ୍ରୟୋଗ ଦ୍ୱାରା ଭୋଟ୍ ଦାନରୁ ବଞ୍ଚିତ କରୁଥିଲେ । କାଂଶୀରାମଙ୍କର ଲଗାତାର ଚେଷ୍ଟାରେ ଏହି ପରିସ୍ଥିତି

ବଦଳିଛି । ଶୂଦ୍ର-ହରିଜନ ମିଳିତ ହୋଇ ବ୍ରାହ୍ମଣବାଦୀ ପ୍ରାର୍ଥୀମାନଙ୍କୁ ପରାସ୍ତ କରନ୍ତୁ, ଏହି ଆହ୍ୱାନ କାଂଶୀରାମ ଆରମ୍ଭରୁ ଦେଇ ଆସୁଥିଲେ । ଗତ ନଭେମ୍ବରରେ ହୋଇଥିବା ଉତ୍ତର ପ୍ରଦେଶ ବିଧାନ ସଭା ନିର୍ବାଚନରେ ମୁଲାୟମ ସିଂହ ଯାଦବ୍‌ଙ୍କ ସଙ୍ଗେ ସଂଯୁକ୍ତ ମୋର୍ଚ୍ଚା କରି ସେ ଏହାର ଚମତ୍କାରୀ ପରିଣାମ ଦେଖାଇ ଦେଇପାରିଲେ ।

ଏହା ଏକ ନୂଆ ରଣନୀତି । 'ସବର୍ଣ୍ଣ ବନାମ ହରିଜନ' ଅପେକ୍ଷା 'ଶୂଦ୍ର ବନାମ ଉଚ୍ଚଜାତି' ନିଶ୍ଚିତ ଭାବରେ ଅଧିକ ପ୍ରଗତିଶୀଳ । ଶୂଦ୍ର ଓ ଅତିଶୂଦ୍ରର ମିଳନ ରାଜନୀତି ଭିତରେ ସୀମାବଦ୍ଧ ନହୋଇ ଯଦି ସାମାଜିକ ସ୍ତରରେ ମଧ୍ୟ କାର୍ଯ୍ୟକାରୀ ହୁଅନ୍ତା, ତାହାହେଲେ ଏକ ବୈପ୍ଳବିକ କାର୍ଯ୍ୟ ବୋଲି ଧରାଯାଆନ୍ତା । ଦୁଃଖର କଥା ଯେ କାଂଶୀରାମ କିମ୍ବା ମୁଲାୟମ୍ ସିଂହ ଯାଦବ୍ କେହି ସେଥିପାଇଁ ତତ୍ପର ନୁହନ୍ତି ।

ଦଳିତ ଓ ଶୂଦ୍ର ନେତାମାନଙ୍କର ସବୁଠାରୁ ବଡ଼ ଦୁର୍ବଳତା ହେଉଛି ଯେ, ସେମାନଙ୍କର ରାଜନୀତି କ୍ଷୁଦ୍ର ଗୋଷ୍ଠୀ ସ୍ୱାର୍ଥର ଉପରକୁ ଉଠିପାରୁ ନାହିଁ । ଯେଉଁମାନେ କହୁଛନ୍ତି ଯେ, ଦେଶର ବଡ଼ ଭାଗ ସେଇମାନେ, ତେଣୁ ଦେଶ ଉପରେ ତାଙ୍କର ରାଜତ୍ୱ ହେବା ଦରକାର, ସେମାନଙ୍କର ଦାୟିତ୍ୱ ମଧ୍ୟ ସେଇ ଅନୁପାତରେ ବ୍ୟାପକ ହେବ ନିଶ୍ଚୟ । ଦେଶର ଅସଲ ରାଜା ହିସାବରେ ସମଗ୍ର ରାଷ୍ଟ୍ର ପାଇଁ, ରାଷ୍ଟ୍ରର ସବୁ ମୁଖ୍ୟ ସମସ୍ୟା ବିଷୟରେ ଚିନ୍ତା କରି ସ୍ପଷ୍ଟ ନୀତି ଗ୍ରହଣ କରିବାକୁ ହେବ ।

ପଛୁଆ ନାମରେ ବା ଦଳିତ ନାମରେ ନେତା ରୂପେ ପ୍ରତିଷ୍ଠିତ ହୋଇଯିବା ପରେ ରାଜନୈତିକ କ୍ଷମତାକୁ ଛାଡ଼ି ଅନ୍ୟ କୌଣସି ବିଷୟକୁ ଗୁରୁତ୍ୱ ଦେଉନାହାନ୍ତି । ଭାରତ ସରକାରଙ୍କ ନୂଆ ଅର୍ଥନୀତି ଓ ଗାଟ୍ ଚୁକ୍ତି ଫଳରେ ସମାଜର ନିମ୍ନ ଶ୍ରେଣୀମାନଙ୍କର ସର୍ବାଧିକ କ୍ଷତି ହେବ ଜାଣି ସୁଦ୍ଧା ଏହାରି ପ୍ରତିରୋଧ ପାଇଁ ସେମାନେ ଆଗ୍ରହ ଦେଖାଉନାହାନ୍ତି । ସତେଯେପରି ସେମାନେ ଚାହାନ୍ତି, 'ଶୂଦ୍ର ରାଜା ହେବ; କିନ୍ତୁ ଦେଶ ବିଦେଶ ବିଷୟରେ ଚିନ୍ତା କରିବେ ସେଇ ବ୍ରାହ୍ମଣମାନେ ।'

ଦଳିତ ନେତୃତ୍ୱରେ କ୍ଷମତା ମୋହକୁ ବାବାସାହେବ୍ ଆମ୍ବେଦ୍‌କର୍ ତାଙ୍କର ଜୀବନକାଳ ମଧ୍ୟରେ ଲକ୍ଷ୍ୟ କରିପାରିଥିଲେ ଓ ଏଥିପାଇଁ ଚିନ୍ତିତ ହୋଇଥିଲେ । 'ଭଏସ୍ ଅଫ୍ ଦି ଉଇକ୍' ନାମକ ଦଳିତ ପତ୍ରିକା ଆମ୍ବେଦ୍‌କର୍‌ଙ୍କର ଶେଷ ବାଣୀ ରୂପେ ଯାହା ପ୍ରକାଶ କରିଛନ୍ତି, ତାହା ମୃତ୍ୟୁ ପୂର୍ବରୁ ରୋଗ ଶଯ୍ୟାରେ ଥାଇ ସେ କହିଥିଲେ; "ମୁଁ ଦେଖିବାକୁ ଚାହେଁ ଯେ, ମୋର ଶ୍ରେଣୀର ଲୋକମାନେ ଅନ୍ୟମାନଙ୍କ ସାଙ୍ଗରେ କାନ୍ଧକୁ କାନ୍ଧ ମିଳାଇ ଏ ଦେଶର ଶାସନ କରନ୍ତୁ । ମୁଁ ଯେତିକି ଆନ୍ଦୋଳନ କରିଛି, ତାହାର ସବୁ ଭଲ ଫଳ କେବଳ ଶିକ୍ଷିତ ଗୋଷ୍ଠୀ ନେଇ ଯାଉଛନ୍ତି । ସେମାନେ ଏକ ଅପଦାର୍ଥ ଓ ସ୍ୱାର୍ଥପର ଗୋଷ୍ଠୀ ରୂପେ ଆଚରଣ କରୁଛନ୍ତି । ସବା ତଳେ ପଡ଼ିରହିଥିବା ନିଷ୍ପେଷିତ ଭାଇ-ଭଉଣୀଙ୍କ ପାଇଁ ସେମାନଙ୍କର ସହାନୁଭୂତି ଥିବା ପରି ମନେ ହେଉନାହିଁ । ସେମାନେ ଏତେ ସ୍ୱାର୍ଥ-କେନ୍ଦ୍ରିତ ହେବେ ବୋଲି ମୁଁ କଳ୍ପନା କରି ନଥିଲି । ...ମୋର ଜୀବନ ସରି ଆସୁଛି; ନଚେତ ଗ୍ରାମମାନଙ୍କରେ ପଡ଼ି ରହିଥିବା ଅଶିକ୍ଷିତ ଓ ଦରିଦ୍ର ଜନସାଧାରଣଙ୍କର ଉନ୍ନତି ପାଇଁ ମୁଁ ଶେଷ ଜୀବନକୁ ଲଗାଇଥାନ୍ତି ।...ମୁଁ

ଯେଉଁମାନଙ୍କୁ ନେତାରୂପେ ଗଢ଼ିବାକୁ ଚାହିଁଥିଲି, ସେମାନଙ୍କ ମଧ୍ୟରୁ ଜଣେ ମଧ୍ୟ ଏହି ଗୁରୁଦାୟିତ୍ୱ ବହନ କରିବାକୁ ଯୋଗ୍ୟ ବୋଲି ମୁଁ ଦେଖୁନାହିଁ।"

ବାବାସାହେବ୍ ଆମ୍ବେଦ୍‌କର୍ କେବଳ ଯେ ଅସ୍ପୃଶ୍ୟମାନଙ୍କ ସମସ୍ୟାକୁ ନିଃସ୍ୱାର୍ଥପର ଭାବରେ ଉଠାଇଥିଲେ, ତାହା ନୁହେଁ। ରାଷ୍ଟ୍ରୀୟ ସମାଜର ଯେତେଗୁଡ଼ିଏ ବ୍ୟାପକ ସମସ୍ୟା ଅଛି - ଆର୍ଥିକ, ସାମାଜିକ, ଧର୍ମ ସମ୍ବନ୍ଧୀୟ, ଶାସନ ସମ୍ବନ୍ଧୀୟ, ଇତିହାସ ସମ୍ବନ୍ଧୀୟ, ସେହି ସବୁ ବିଷୟରେ ସେ ଗଭୀର ଚିନ୍ତା କରୁଥିଲେ ଓ ସମାଧାନ ଖୋଜୁଥିଲେ। ଏଭଳି ଉଚ୍ଚକୋଟୀର ଏକ ନେତୃତ୍ୱ ଶୂଦ୍ର-ଦଳିତ ଆନ୍ଦୋଳନ ପାଇଁ ଦରକାର। ତାହା ହେଲେ ଶୂଦ୍ର-ଦଳିତମାନଙ୍କ ହାତରେ ଯେତିକି କ୍ଷମତା ବଢ଼ି ବଢ଼ି ଚାଲିବ, ଦେଶର ମଧ୍ୟ ସେତିକି ପରିବର୍ତ୍ତନ ହୋଇ ଚାଲିବ। ଶୂଦ୍ର-ଦଳିତ ନେତାମାନଙ୍କର ଅଗଣତାନ୍ତ୍ରିକ କାର୍ଯ୍ୟ, କ୍ଷମତା ମୋହ ଓ ଦୁର୍ନୀତି ପରାୟଣତାକୁ କଟୁ ଭାବରେ ସମାଲୋଚନା କରିବା ସମୟରେ ଗୋଟିଏ ସହାନୁଭୂତିପୂର୍ଣ୍ଣ ପ୍ରଶ୍ନ ମନରେ ଉଠିଥାଏ। ଯଦି କୁଳୀନ ନେତାଗଣଙ୍କର ଓ ସମ୍ଭ୍ରାନ୍ତ ବୁଦ୍ଧିଜୀବୀମାନଙ୍କର ଆଚରଣରେ ଏତେ ପତନ ଘଟିଛି, ସେତେବେଳେ ଦୁର୍ବଳ ଶ୍ରେଣୀର ନେତାମାନଙ୍କ ଆଚରଣକୁ ଏତେ କଡ଼ା ଭାବରେ ପରୀକ୍ଷା କରିବା ସେମାନଙ୍କ ପ୍ରତି ଅନ୍ୟାୟ ନୁହେଁ କି?

ଏହି ପ୍ରଶ୍ନର ଉତ୍ତର ଆମେ ନକାରାତ୍ମକ ଭାବରେ ଦେବାପାଇଁ ବାଧ୍ୟ। ପୁରୁଣା ଶାସକ ବର୍ଗ ଏକ ପତନଶୀଳ ଗୋଷ୍ଠୀ। ସେମାନେ ଅଯୋଗ୍ୟ ଓ ପ୍ରତିକ୍ରିୟାଶୀଳ ବୋଲି ପ୍ରମାଣିତ ହୋଇ ସାରିଛନ୍ତି। ସେମାନେ ଏକ ପତନଶୀଳ ମୂଲ୍ୟବୋଧକୁ ପ୍ରଚଳିତ କରାଉଛନ୍ତି। ଯେଉଁମାନେ ନୂଆ ଓ ଉଦୀୟମାନ ଶକ୍ତି ସେମାନେ ପୁରୁଣା ଶାସକ ବର୍ଗ ଦ୍ୱାରା ପ୍ରଚଳିତ ମୂଲ୍ୟବୋଧର ଉତ୍ତରାଧିକାରୀ ହେବେ କିପରି? କାର୍ଲ୍ ମାର୍କ୍ସଙ୍କର ସିଦ୍ଧାନ୍ତ ଅନୁସାରେ ବିପ୍ଳବରେ ଏକ ପୁରୁଣା ଶାସକ ବର୍ଗର ଅବସାନ ହୁଏ। ଗୋଟିଏ ନୂତନ ଶାସକ ଗୋଷ୍ଠୀ ଏକ ନୂତନ ପ୍ରକାରର ଦର୍ଶନ ଓ ମୂଲ୍ୟବୋଧ ନେଇ ସମାଜକୁ ପରିବର୍ତ୍ତିତ କରେ। ଶୂଦ୍ର-ଦଳିତ ନେତୃତ୍ୱକୁ ଏହି ଦାୟିତ୍ୱ ବିଷୟରେ ସଚେତନ ହେବାକୁ ପଡ଼ିବ। ଏହା ନିଶ୍ଚିତ ଯେ, ବ୍ରାହ୍ମଣବାଦୀ ନେତୃତ୍ୱ ଆଉ ଦେଶକୁ ଉନ୍ନତି ପଥରେ ନେଇପାରିବ ନାହିଁ। ଯେଉଁମାନେ ଶହ ଶହ ବର୍ଷ ଧରି ଦେଶର ଶାସନ ଚଳାଇ ନାହାନ୍ତି, ସେଇ ଶ୍ରେଣୀ ଭିତରୁ ନୂଆ ନେତୃତ୍ୱ ଆସିବ ଓ ଦେଶ ଓ ଜାତି ଜୀବନରେ ସଂସ୍କାର ଆଣିବ। ସ୍ୱାର୍ଥସାଧନ ପାଇଁ କ୍ଷମତା ନୁହେଁ, ଦେଶ ଚଳାଇବା ପାଇଁ, ଦେଶକୁ ନୂଆ ଭାବରେ ନେତୃତ୍ୱ ଦେବାପାଇଁ ନୂଆ ଶ୍ରେଣୀ ହାତରେ କ୍ଷମତା ପ୍ରଦାନ କରାହେଉଛି। ଦୟାକରି କେହି କ୍ଷମତା ପ୍ରଦାନ କରୁନାହିଁ; ଇତିହାସ କ୍ଷମତା ପ୍ରଦାନ କରୁନାହିଁ; ଇତିହାସ କ୍ଷମତା ପ୍ରଦାନ କରୁଛି ଯୁଗ ପରିବର୍ତ୍ତନ ଉଦ୍ଦେଶ୍ୟରେ।

ବ୍ରାହ୍ମଣବାଦୀ ଯୁଗରେ ଶାରୀରିକ ଶ୍ରମର ଅବମୂଲ୍ୟାୟନ ହେଲା। ଶୂଦ୍ର ରାଜତ୍ୱରେ ଯଦି ତାହାହିଁ ଚାଲିବ, ତାହାହେଲେ ଏହା ଏକ ନବବ୍ରାହ୍ମଣବାଦ ଛଡ଼ା ଆଉ କିଛି ହୋଇ ନ ପାରେ। ଦେଶକୁ ନବବ୍ରାହ୍ମଣବାଦ ଦରକାର ନାହିଁ - ଏହି ଅବଧାରଣା ଏକ ଉଦ୍ଦାତ୍ତ ଶୂଦ୍ର ସଂସ୍କୃତିର ପ୍ରୟୋଜନ ଅଟେ। ତେଣୁ ଦଳିତ ରାଜନୀତି ଓ ଦଳିତ ସାହିତ୍ୟ ଦୁହିଁଙ୍କ ଉପରେ ଏହି ମନୁବାଦୀ ସଂସ୍କୃତିକୁ ସବୁଆଡ଼ୁ ଆକ୍ରମଣ କରନ୍ତୁ - ଏକ

ବିକଳ୍ପ ସଂସ୍କୃତି ଦିଅନ୍ତୁ । ଏଥିପାଇଁ ବୈପ୍ଳବିକ ବିଚାରମାନଙ୍କୁ ନୂଆମୋଡ଼ ଦେବାକୁ ହେବ; ନୂଆ ରଙ୍ଗରେ ରଙ୍ଗାଇବାକୁ ହେବ । ଗାନ୍ଧୀ, ମାର୍କ୍ସ ବା ଆମ୍ବେଦ୍କରଙ୍କର କଥାଗୁଡ଼ିକୁ ବାରମ୍ବାର ପୁନରାବୃତ୍ତି କଲେ ଚଳିବ ନାହିଁ । ସେଗୁଡ଼ିକର ଉପାଦାନ ନେଇ ସାମ୍ପ୍ରତିକ ପରିପ୍ରେକ୍ଷୀରେ ଏକ ଯୁଗଦର୍ଶନ ଗଢ଼ି ତୋଳିବାକୁ ହେବ । ଭୀମଭୋଇ ଓ ସାରଳା ଦାସଙ୍କ ମାଟିରେ ବିଶ୍ୱାସ ହରେଇବାର ପ୍ରଶ୍ନ ନାହିଁ । ବାବାସାହେବ୍ ଆମ୍ବେଦ୍କରଙ୍କ ଠାରୁ ଧୈର୍ଯ୍ୟ, ପରିଶ୍ରମ ଓ ଅଧ୍ୟୟନର ପ୍ରେରଣା ନେଇପାରିଲେ ନୂଆ ଭୀମ ଭୋଇ ଓ ନୂଆ ସାରଳା ଦାସ ନିଶ୍ଚୟ ଆବିର୍ଭୂତ ହେବେ ।

୩

ଭାରତୀୟ ଇତିହାସ ଲେଖନର ତତ୍ତ୍ୱଗୁଡ଼ିକ କ'ଣ ହେବ, ତାହା ବିଦେଶୀ ଇତିହାସକାରମାନେ ସ୍ଥିର କରି ଯାଇଛନ୍ତି । ଚାରି ଦଶନ୍ଧି ପରେ ମଧ୍ୟ ବିଶେଷ ପରିବର୍ତ୍ତନ ହୋଇନାହିଁ । କେତେକ ଗୁରୁତ୍ୱପୂର୍ଣ୍ଣ ଦିଗର ଅଧ୍ୟୟନ ଏ ପର୍ଯ୍ୟନ୍ତ ହୋଇନାହିଁ । ଭାରତର ସାମାଜିକ ଇତିହାସ ଏଯାବତ୍ ଲେଖା ହୋଇନାହିଁ କହିଲେ ଚଳେ । ରାଜନୈତିକ ଇତିହାସର ମଝି ମଝିରେ କେତେକ କାଳ ବିଶେଷର ସାମାଜିକ-ଆର୍ଥିକ ଅବସ୍ଥାର ବର୍ଣ୍ଣନା ଦେଖିବାକୁ ମିଳେ । କିନ୍ତୁ ଗୋଟିଏ ଯୁଗର ସାମାଜିକ ସ୍ଥିତିରୁ ଅନ୍ୟ ଏକ ଯୁଗର ସାମାଜିକ ସ୍ଥିତିକୁ ସଙ୍କ୍ରମଣ କିପରି ଭାବରେ ହେଲା, ତାହାର ବିଧିବଦ୍ଧ ଅଧ୍ୟୟନ ଏ ପର୍ଯ୍ୟନ୍ତ ହୋଇନାହିଁ । ରାଧାକାନ୍ତ ବାରିକ ତାଙ୍କର ଗୋଟିଏ ଲେଖାରେ କହିଛନ୍ତି ଯେ, ମାତ୍ର କେତେ ଶହ ବର୍ଷ ପୂର୍ବ ପର୍ଯ୍ୟନ୍ତ ଓଡ଼ିଶା ଏକ ବିଶୁଦ୍ଧ ଶୂଦ୍ର ଅଞ୍ଚଳ ଥିଲା । ଏହାର ସାମାଜିକ-ସାଂସ୍କୃତିକ ବ୍ୟବସ୍ଥା ଭିନ୍ନ ରକମର ଥିଲା । ଶାସକମାନେ ବାହାରୁ ଉଚ୍ଚ ଜାତିମାନଙ୍କୁ ଆଣି ଏକ ନୂଆ ବ୍ରାହ୍ମଣବାଦୀ ବ୍ୟବସ୍ଥା ଉପରୁ ଲଦିଦେଲେ ଓ ଓଡ଼ିଶାର ସାମାଜିକ ଢାଞ୍ଚାକୁ କୃତ୍ରିମ ଭାବରେ ବଦଳେଇ ଦେଲେ । ଅର୍ଥାତ୍, ଏହି ବ୍ୟବସ୍ଥାର କ୍ରମବିକାଶ ଓଡ଼ିଆ ମାଟିରେ ହୋଇ ନାହିଁ । ଆଜି ଆମେ ଯାହାକୁ ଅଛୁଆଁ, ଆଦିବାସୀ, ଶୂଦ୍ର ବୋଲି କହୁଛୁ, ସେମାନେ ଓଡ଼ିଶାର ମୁଖ୍ୟ ଓ ମୂଳ ଅଧିବାସୀ ଥିଲେ । ଇତିହାସ ପୁନର୍ଲେଖନର ଏକ ଯୁଗାନ୍ତକାରୀ ତତ୍ତ୍ୱ ଏଥିରେ ନିହିତ ଅଛି ।

ଇତିହାସର ବିସ୍ମୃତ ଅଧ୍ୟାୟମାନଙ୍କରେ, ଅତି ପୁରୁଣା ଅତୀତରେ କ'ଣ ସବୁ ଘଟିଗଲା, କିଏ ଆସିଲା, କିଏ ଗଲା – ସେସବୁ କଥା ଅସ୍ପଷ୍ଟ ଓ ବିବାଦୀୟ ହୋଇ ରହିବା ସ୍ୱାଭାବିକ । କିନ୍ତୁ ନିକଟ ଅତୀତ, ଗତ ତିନିଶହ ବର୍ଷର ଇତିହାସ, ଆମର ଜୀବନ୍ତ ସନ୍ଦର୍ଭ ଅଟେ । ବ୍ରିଟିଶ୍ ଶାସନର ପୂର୍ବ ପର୍ଯ୍ୟନ୍ତ ଯେଉଁ ଭାରତ ଥିଲା, ତାହାର ସାମାଜିକ ଭୂଗୋଳ ତିଆରି ହୋଇନାହିଁ । 'ସାମାଜିକ ଭୂଗୋଳ' ଅର୍ଥ କେଉଁ ଅଞ୍ଚଳରେ କିପରି ଲୋକମାନେ ବାସ କରୁଥିଲେ, ସେମାନଙ୍କର ଧର୍ମ, ଜାତି, ରୀତି-ନୀତି କ'ଣ ଥିଲା । ଅସଙ୍ଗଠିତ ତଥ୍ୟ ଗୁଡ଼ିକର ସାହାଯ୍ୟ ନେଇ ଚିନ୍ତା କଲେ ଦେଖାଯିବ ଯେ, ଆସାମ୍ କିମ୍ବା ପଶ୍ଚିମବଙ୍ଗର ମେଦିନୀପୁର ଅଞ୍ଚଳରୁ ଆରମ୍ଭ କରି ଦକ୍ଷିଣ ବିହାର, ଓଡ଼ିଶା, ମଧ୍ୟପ୍ରଦେଶ ଓ ରାଜସ୍ଥାନ୍-ଗୁଜୁରାଟ୍ର ଭୀଲ୍ ଅଞ୍ଚଳ ପର୍ଯ୍ୟନ୍ତ-ଏ ସମଗ୍ର ଅଞ୍ଚଳ ବ୍ରାହ୍ମଣବାଦୀ ବ୍ୟବସ୍ଥାର ବାହାରେ ଥିଲା । ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳକୁ ନେଇ ପଚରା ଉଚରା କଲେ ଆଜି ମଧ୍ୟ ଜଣାପଡ଼ିବ ଯେ, ହୁଏତ ତିନିଶହ ବର୍ଷ ପୂର୍ବେ

ସେଠାରେ ଜଣେ ମଧ୍ୟ ବ୍ରାହ୍ମଣ, କରଣ କିମ୍ବା ବଣିଆ ନଥିଲେ । ଦେବୀ-ଦେବତା ଦୃଷ୍ଟିରୁ ସେମାନଙ୍କୁ ହିନ୍ଦୁ କହିଲେ ବିବାଦର କାରଣ ନାହିଁ । କିନ୍ତୁ ତାହାହେଲେ ହିନ୍ଦୁ ସମାଜର ଦୁଇଟି ଧାରା ଥିଲା- ଗୋଟିଏ ବ୍ରାହ୍ମଣବାଦୀ, ଅନ୍ୟଟି ଅଣବ୍ରାହ୍ମଣବାଦୀ । ପର୍ଯ୍ୟାପ୍ତ ଅଧ୍ୟୟନ ପରେ ହୁଏତ ନିଷ୍କର୍ଷ ବାହାରିବ ଯେ, ପ୍ରାକ୍-ବ୍ରିଟିଶ୍ କାଳରେ ଅର୍ଦ୍ଧେକ ଭାରତ କିମ୍ବା ତତୋଧିକ ଅଞ୍ଚଳର ହିନ୍ଦୁ ସମାଜରେ ବ୍ରାହ୍ମଣମାନଙ୍କର ପ୍ରାଧାନ୍ୟ ନଥିଲା । ସର୍ବଭାରତୀୟ ସ୍ତରରେ ଶାସନକୁ କେନ୍ଦ୍ରୀଭୂତ କରିବାର ପ୍ରଥମ ଚେଷ୍ଟା ମୋଗଲ୍ ସମ୍ରାଟ୍‌ମାନେ କରିଥିଲେ । ବ୍ରିଟିଶ୍ ଶାସକମାନେ ବିଧିବଦ୍ଧ ଭାବରେ ସମଗ୍ର ଭାରତର ଶାସକ ଓ ଅର୍ଥ ବ୍ୟବସ୍ଥାକୁ କେନ୍ଦ୍ରୀଭୂତ କରିବାକୁ ଚାହିଁଲେ ଓ ସେଥିରେ ସଫଳ ହେଲେ ।

ଏହାର ପରିଣାମସ୍ୱରୂପ ସାମାଜିକ ବ୍ୟବସ୍ଥାର ମଧ୍ୟ କେନ୍ଦ୍ରୀକରଣ ହୋଇଗଲା ଓ ସମଗ୍ର ଭାରତୀୟ ହିନ୍ଦୁ ସମାଜ ବ୍ରାହ୍ମଣବାଦର ନିୟନ୍ତ୍ରଣରେ ଆସିଗଲା । ଭାରତର କୌଣସି ଥାନା, ତାଲୁକା ବା ତହସିଲି ଇଲାକା ନାହିଁ, ଯେଉଁଠିକୁ ବ୍ରାହ୍ମଣ, କରଣ ଓ ବଣିଆମାନେ ସରକାର ବାହାଦୂର୍‌ଙ୍କର ପ୍ରତିନିଧି ହୋଇ ଓ ଆଧୁନିକୀକରଣର ବାର୍ତ୍ତାବହ ହୋଇ ଯାଇ ନାହାନ୍ତି । ସେମାନଙ୍କ ପଛରେ ବ୍ରିଟିଶ୍ ପରାକ୍ରମ ଥିଲା । ସେମାନେ ଯେକୌଣସି ଶୂଦ୍ର ଅଞ୍ଚଳକୁ ଯାଇ ସେଠାକାର ସ୍ଥାବର ଅସ୍ଥାବର ସମ୍ପତ୍ତିକୁ ନିଜ ପାଇଁ ବ୍ୟବହାର କରିପାରିଲେ; ତେଣୁ ନିଜ ଅଞ୍ଚଳକୁ ଫେରି ନ ଯାଇ ସେହି ଅଞ୍ଚଳଗୁଡ଼ିକର ଅଧୀଶ୍ୱର (ଦେଖଇ ନେତ୍ର ଯାହା ଚଉଦିଗର) ହୋଇ ନିଜର ବଂଶମାନଙ୍କୁ ସ୍ଥାପିତ କଲେ । ଏହି ବିରାଟ ଭୂଖଣ୍ଡମାନଙ୍କୁ ଭୋଗିବା ପାଇଁ ସେମାନେ ନିଜର ପରିଚିତ ଅନ୍ୟାନ୍ୟ ଉଚ୍ଚଜାତୀୟ କୁଟୁମ୍ବମାନଙ୍କୁ ଡାକି ଆଣିଲେ । ତେଣୁ ସମ୍ଭବତଃ ଏ ଦୁଇଟିଯାକ ପ୍ରକ୍ରିୟା ଏକା ସାଙ୍ଗରେ ଚାଲିଲା; ବ୍ରିଟିଶ ସାମ୍ରାଜ୍ୟ ଓ ବ୍ରାହ୍ମଣବାଦର ବିସ୍ତାର । ଏହା ସ୍ୱୀକାର କରିବାକୁ ହେବ ଯେ, ଏହି ଶୂଦ୍ର ଅଞ୍ଚଳର ଅଧିବାସୀମାନଙ୍କ ଭିତରେ ସାଂସ୍କୃତିକ ଓ ବୌଦ୍ଧିକ ଜଡ଼ତା ଆସି ସାରିଥିଲା । ତେଣୁ ବ୍ରିଟିଶ୍ ପୃଷ୍ଠପୋଷକତା ପାଇ ଯେତେବେଳେ ବ୍ରାହ୍ମଣବାଦ ତାହାର ଆଧିପତ୍ୟ ବିସ୍ତାର କଲା, ସେତେବେଳେ ଶୂଦ୍ର ଅଞ୍ଚଳର ଅଧିବାସୀମାନେ ତାହାର ପ୍ରତିରୋଧ କରିପାରିଲେ ନାହିଁ ।

ଇତିହାସର ଏଭଳି ଅଧ୍ୟୟନ ଏକ ନୂଆ ଆଲୋକ ଯୋଗାଇପାରେ । ପ୍ରଥମ, ବ୍ରାହ୍ମଣବାଦ ହିନ୍ଦୁ ସମାଜର ଏକମାତ୍ର ଓ ଅନିର୍ବାର୍ଯ୍ୟ ରୂପ ନୁହେଁ । ଦ୍ୱିତୀୟ, ଆଦିବାସୀ, ଅଛୁଆଁ, ତଳଜାତି - ଏସବୁ କିଛି ନୁହେଁ, ଏମାନେ ନିକଟ ଅତୀତରେ ତାଙ୍କର ସ୍ୱ ସ୍ୱ ଅଞ୍ଚଳର ଶାସକ ଥିଲେ । ସହସ୍ର ସହସ୍ର ବର୍ଷ ଧରି ସେମାନେ ନିଷ୍ପେଷିତ ବୋଲି ଯେଉଁ ଧାରଣା ଦିଆହୋଇଛି ତାହା ଅର୍ଦ୍ଧେକ ଭାରତ ପାଇଁ ସତ୍ୟ ନୁହେଁ । ମାତ୍ର କେତେ ଶହ ବର୍ଷ ଭିତରେ ସେମାନେ ତାଙ୍କର ସ୍ୱାୟତ୍ତତା ହରାଇଛନ୍ତି ଓ ଏକ କୃତ୍ରିମ ଆବରଣ ତଳେ ଦବି ଯାଇଛନ୍ତି । ସେମାନଙ୍କର ପୁନର୍ଜାଗରଣ କଠିନ କାମ ନୁହେଁ । ବ୍ରିଟିଶ୍ ସାମ୍ରାଜ୍ୟ ପରେ ପରେ ବ୍ରାହ୍ମଣବାଦ ଦୁର୍ବଳ ହୋଇଯିବା କଥା । ବିଦେଶୀ କମ୍ପାନୀମାନଙ୍କର ପୃଷ୍ଠପୋଷକତାରେ ତାହା ହୁଏତ ପୁଣି ଥରେ ସବଳ ହେବାକୁ ଚେଷ୍ଟା କରିବ । ତେଣୁ, ସାବଧାନ । (୨ ଅଗଷ୍ଟ, ୧୯୯୪)

# ବର୍ଣ୍ଣାଶ୍ରମରୁ ନବ-ବ୍ରାହ୍ମଣବାଦ

ଏହା ସନ୍ଦେହାତ୍ମକ ଯେ, ବର୍ଣ୍ଣ ବ୍ୟବସ୍ଥା ନାମରେ କୌଣସି ଏକ ସ୍ୱତନ୍ତ୍ର ବ୍ୟବସ୍ଥା ପ୍ରାଚୀନ ଭାରତରେ ଥିଲା । କୌଣସି ଗ୍ରନ୍ଥ ବା ଶାସ୍ତ୍ରରେ ଏହାର ତଥ୍ୟାତ୍ମକ ବର୍ଣ୍ଣନା ମିଳେନାହିଁ । ଜଣେ ବ୍ୟକ୍ତି ଚରିତ୍ର ଓ ପାଣ୍ଡିତ୍ୟ ବଳରେ ବ୍ରାହ୍ମଣ ହୋଇଗଲା ଓ ତାହାର ଜଣେ ଭାଇ ସେବାକାର୍ଯ୍ୟ କରି ଶୂଦ୍ର ବୋଲାଇଲା ଏଭଳି କୌଣସି ତଥ୍ୟ କେଉଁଠି ହେଲେ ମିଳେନାହିଁ । ଓଲଟା ରାମାୟଣ ଓ ମହାଭାରତର ଶମ୍ଭୁକ ତଥା ଏକଲବ୍ୟ ପ୍ରସଙ୍ଗରୁ ଜଣାପଡ଼େ ଯେ, ଏହି ତଥାକଥିତ ତ୍ରେତୟା ଓ ଦ୍ୱାପର ଯୁଗରେ ମଧ୍ୟ ଜଣେ ଶୂଦ୍ର ତପସ୍ୱୀଙ୍କୁ ପ୍ରାଣଦଣ୍ଡ ଭୋଗିବାକୁ ପଡ଼ିଥିଲା ଓ ରାଜପୁତ୍ର ନ ହୋଇ ସର୍ବଶ୍ରେଷ୍ଠ ଧନୁର୍ଦ୍ଧର ହେବାର ଦୋଷରେ ଜଣେ ଶବର ଯୁବକଙ୍କୁ ବିକଳାଙ୍ଗ କରିଦିଆ ଯାଇଥିଲା ।

ଅବଶ୍ୟ ରାମଚନ୍ଦ୍ରଙ୍କର ବହୁକାଳ ପରେ ରାମାୟଣ ରଚିତ ହୋଇଥିଲା । ମହାଭାରତ ମଧ୍ୟ କୁରୁକ୍ଷେତ୍ରର ବହୁକାଳ ପରେ ଲେଖା ହୋଇଥିଲା । ଏହିସବୁ ଗ୍ରନ୍ଥର ରଚନାକାଳ ସମୟରେ ଜାତିପ୍ରଥା ଦୃଢ଼ ହେବାକୁ ଆରମ୍ଭ କରିଥିଲା – ସେଥିପାଇଁ ରଚନାକାରମାନେ ଏହି ପ୍ରସଙ୍ଗଗୁଡ଼ିକୁ ତ୍ରେତୟା ଓ ଦ୍ୱାପର ଯୁଗର କାହାଣୀରେ ଯୋଡ଼ି ଦେଇଛନ୍ତି । ଗୋଟିଏ ସମୟ ଥିଲା ଯେତେବେଳେ ଜାତିପ୍ରଥା ନଥିଲା । କିନ୍ତୁ ସେତେବେଳେ ଜାତିପ୍ରଥା ବିହୀନ ଗୋଟିଏ ବର୍ଣ୍ଣ ବ୍ୟବସ୍ଥା ଥିଲା ବୋଲି କହିବା ବିଶ୍ୱାସଯୋଗ୍ୟ ହୁଏନାହିଁ । ବର୍ଣ୍ଣ ବ୍ୟବସ୍ଥାର କୌଣସି ଇତିହାସ ନାହିଁ । ସମାଜକୁ ଚାରି ଭାଗରେ ବିଭକ୍ତ କରିବାର କଳ୍ପନା ଋକ୍‌ବେଦ ସମୟରୁ ଥିଲା ।

କାଳକ୍ରମେ ତାହା ଏକ ଜାତି ବ୍ୟବସ୍ଥାରେ ପରିଣତ ହେଲା । ଏକ ଦୃଢ଼ ବ୍ୟବସ୍ଥାରେ ପରିଣତ ହେବା ପୂର୍ବରୁ ତାହା ଏକ ତରଳ ଅବସ୍ଥାରେ ଥିଲା । ସେଇ ତରଳ ଅବସ୍ଥାରେ ଯେଉଁସବୁ ଘଟଣା ହେଉଥିଲା ତାହାର କିଛି ଉଲ୍ଲେଖକରି ପଣ୍ଡିତମାନେ କହିପକାନ୍ତି ଯେ, ବର୍ଣ୍ଣ ବ୍ୟବସ୍ଥାର ଗୋଟିଏ ଯୁଗ ଥିଲା । ଜାତିପ୍ରଥା ପ୍ରଥମେ ତରଳ ଅବସ୍ଥାରେ ଥିଲା । ପ୍ରଥମେ ବ୍ରାହ୍ମଣ ଓ କ୍ଷତ୍ରିୟମାନେ ନିଜକୁ ଉଚ୍ଚ ବୋଲି କହିବା ଆରମ୍ଭ କଲେ ଓ ଅନ୍ୟମାନଙ୍କୁ ବୈଶ୍ୟ ଓ ଶୂଦ୍ର ବୋଲି ଆଖ୍ୟା ଦେଲେ । ବ୍ରାହ୍ମଣ ଓ କ୍ଷତ୍ରିୟମାନଙ୍କ ମଧ୍ୟରେ ଥିବା ଅନ୍ତର୍ବିରୋଧ ସତ୍ତ୍ୱେ ସେମାନଙ୍କର ମିଳିତ ଶକ୍ତି ପ୍ରଭାବ ବିସ୍ତାର କଲା ଓ ସେମାନଙ୍କ ଦ୍ୱାରା ପ୍ରଦତ୍ତ ସାମାଜିକ ବ୍ୟବସ୍ଥାକୁ ଅନ୍ୟମାନେ ପ୍ରତିରୋଧ କରିପାରିଲେ ନାହିଁ । ଏହି ବ୍ୟବସ୍ଥାର ମୂଳଦୁଆ ଦୃଢ଼ ହେବା

ଆଗରୁ ଅବାଧ ମିଳାମିଶା ଚାଲିଥିଲା । ବିଶେଷକରି ଶୂଦ୍ର ନାରୀମାନଙ୍କୁ ବିବାହ କରିବାରେ ବ୍ରାହ୍ମଣ ଓ କ୍ଷତ୍ରିୟମାନଙ୍କ ଭିତରେ ବାରଣ ନଥିଲା । ମହାଭାରତ ଯୁଗରେ ଏହାର ଅସଂଖ୍ୟ ଉଦାହରଣ ଦେଖିବାକୁ ମିଳେ । ଶୂଦ୍ର ନାରୀମାନଙ୍କ ଗର୍ଭରୁ ବହୁ ବୀର ତଥା ପଣ୍ଡିତ ଜନ୍ମଗ୍ରହଣ କରିଥିଲେ ।

ଜାତି ବ୍ୟବସ୍ଥାକୁ ପ୍ରଚଳିତ କରାଇବା ସମୟରେ ମଧ୍ୟ ଏହାର ବହୁତ ବିରୋଧ ହୋଇଥିଲା । ବିରୋଧର ଗୋଟିଏ ସ୍ୱର ଏହା ଥିଲା ଯେ, ଜନ୍ମ ଆଧାରରେ ବର୍ଣ୍ଣ ବିଭାଜନ ନ ହୋଇ ଗୁଣ କର୍ମ ଆଧାରରେ ହେବା ଉଚିତ୍ । ଏହା ଗୋଟିଏ ବିଚାର, ଅର୍ଥାତ୍ ମତ ଥିଲା । ଏହି ବିଚାର ବେଳେ ବେଳେ ପ୍ରାଚୀନ ଗ୍ରନ୍ଥମାନଙ୍କରେ ମିଳିଯାଏ । ତାକୁ ପଢ଼ି ବା ଶୁଣି କିଛି ଲୋକ କହନ୍ତି ଯେ, ଏପରି ଏକ ବର୍ଣ୍ଣ ବ୍ୟବସ୍ଥା ଥିଲା, ଯାହା ଗୁଣ ଓ କର୍ମ ଉପରେ ଆଧାରିତ ଥିଲା । ପ୍ରକୃତରେ ଏହା କେବଳ ଗୋଟିଏ ମତ ଥିଲା । ସେ ପର୍ଯ୍ୟନ୍ତ  କୌଣସି ବ୍ୟବସ୍ଥା ତିଆରି ହୋଇ ନ ଥିଲା ।

ଯେଉଁମାନେ ଜାତିପ୍ରଥାକୁ ନିନ୍ଦା କରନ୍ତି, କିନ୍ତୁ ଭାରତୀୟ ପରମ୍ପରାର ନିନ୍ଦା କରିବାକୁ ଚାହାନ୍ତି ନାହିଁ, ସେମାନେ କେତେକ ପ୍ରାଚୀନ ଶ୍ଳୋକର ଆଶ୍ରୟ ନେଇ କହନ୍ତି ଯେ, ଆମର ପୂର୍ବପୁରୁଷମାନେ ଗୁଣ ଓ କର୍ମ ଆଧାରିତ ଏକ ବର୍ଣ୍ଣ ବ୍ୟବସ୍ଥା କରିଥିଲେ ଓ ପରବର୍ତ୍ତୀ କାଳରେ ଏହା ବିକୃତ ହୋଇ ଜନ୍ମ ଆଧାରିତ ଜାତିପ୍ରଥାରେ ପରିଣତ ହେଲା । ଗାନ୍ଧିଜୀ ମଧ୍ୟ ବହୁକାଳ ପର୍ଯ୍ୟନ୍ତ ଏହି ଭ୍ରାନ୍ତ ଧାରଣା ପୋଷଣ କରିଥିଲେ । ପ୍ରକୃତରେ ବର୍ଣ୍ଣ ବ୍ୟବସ୍ଥା ଏକ ଉଦାରବାଦୀ କଳ୍ପନା ମାତ୍ର ।

ପ୍ରକୃତ ବ୍ରାହ୍ମଣ କିଏ ବୋଲି କେତେଗୁଡ଼ିଏ ମାପକାଠିରେ ଉଲ୍ଲେଖ କରାଯାଏ । ତାହା ଏକ ଆଦର୍ଶ ସ୍ଥିତିର ବର୍ଣ୍ଣନା ମାତ୍ର । ପ୍ରକୃତ ହିନ୍ଦୁ କିଏ ? ପ୍ରକୃତ ମନୁଷ୍ୟ ବୋଲି କାହାକୁ କହିବା ? ଏସବୁର ମଧ୍ୟ ମାପକାଠି ତିଆରି କରାଯାଏ । କିନ୍ତୁ ସାମାଜିକ ବ୍ୟବହାରରେ ହିନ୍ଦୁ ପରିବାରର ପାପୀ ମଧ୍ୟ ହିନ୍ଦୁ ବୋଲି ବିବେଚିତ ହୁଏ ଓ ଯେତେ ପାଶବିକ କାର୍ଯ୍ୟ କଲେ ସୁଦ୍ଧା ମଣିଷ ସନ୍ତାନକୁ ମଣିଷ ବୋଲି ଧରାଯାଏ । ତେଣୁ ବ୍ରାହ୍ମଣତ୍ୱର ମାପକାଠି ବିଷୟରେ ଗୋଟିଏ ପ୍ରାଚୀନ ଶ୍ଳୋକକୁ ଉଲ୍ଲେଖ କରି କେବଳ ଗୁଣବନ୍ତମାନେ ହିଁ ବ୍ରାହ୍ମଣ ହେଉଥିଲେ ବୋଲି କହିବା ତର୍କସଙ୍ଗତ ନୁହେଁ ।

ଜୈନ ଓ ବୌଦ୍ଧ ଧର୍ମର ଅଭ୍ୟୁଦୟର ସମୟ ଭାରତୀୟ ଇତିହାସର ଏକ ସନ୍ଧିକାଳ ଥିଲା । ଜାତିପ୍ରଥା ଦୃଢ଼ ହୋଇଆସୁଥିଲା ଓ ତାହାର ବିରୋଧ ମଧ୍ୟ ହେଉଥିଲା । ଗୌତମ ବୁଦ୍ଧଙ୍କର ପ୍ରଚାର ଏକ ପ୍ରବଳ ବିରୋଧ ସୃଷ୍ଟି କଲା । ଏହା ନୁହେଁ ଯେ, ବୌଦ୍ଧ ଧର୍ମର ପ୍ରଚାର ଫଳରେ ଜାତିପ୍ରଥା ସମ୍ପୂର୍ଣ୍ଣ ନଷ୍ଟ ହୋଇଗଲା । କିନ୍ତୁ ଏହା ଏକ ଐତିହାସିକ ତଥ୍ୟ ଯେ ବୌଦ୍ଧ ଧର୍ମର ପ୍ରଭାବ ଫଳରେ ପ୍ରାୟ ପାଞ୍ଚ ଶହ ବର୍ଷ ଧରି ଭାରତୀୟ ସମାଜରେ ଜାତିପ୍ରଥା ଦୁର୍ବଳ ହୋଇ ରହିଲା । ଜାତିପ୍ରଥାର କଠୋରତା ଏହି ସମୟରେ ନଥିଲା ଓ ବ୍ରାହ୍ମଣ-କ୍ଷତ୍ରିୟ ପ୍ରତିପତ୍ତି କମି ଯାଇଥିଲା । ଏହି ସମୟ ହିଁ ଭାରତ ଇତିହାସର ଏକ ମହାନ ଯୁଗ ଥିଲା । ମୌର୍ଯ୍ୟ ବଂଶ ଓ ଗୁପ୍ତ ବଂଶ କ୍ଷତ୍ରିୟ ନଥିଲେ, ସେମାନେ ଶୂଦ୍ର ଓ ବୈଶ୍ୟ ଥିଲେ । ପ୍ରାଚୀନ ଭାରତର ଅଧିକାଂଶ ମୌଳିକ

ଗ୍ରନ୍ଥ ଏହି ସମୟରେ ରଚିତ ହୋଇଥିଲା ଓ ଭାରତର ସାଂସ୍କୃତିକ ପ୍ରଭାବ ଏସିଆର ବହୁ ଅଞ୍ଚଳକୁ ବ୍ୟାପି ଯାଇଥିଲା । ଏହି ସମୟ ଭିତରେ ଅର୍ଥାତ୍ ହର୍ଷବର୍ଦ୍ଧନ କାଳ ପର୍ଯ୍ୟନ୍ତ ଭାରତକୁ ଯେତେ ରକମର ବିଦେଶୀ ପ୍ରବେଶ କଲେ, ସେ ସମସ୍ତେ ଗୋଟିଏ ସମାଜରେ ଅଙ୍ଗୀଭୂତ ହୋଇଗଲେ । ହୁଣ, ଶକ, କୁଷାଣ ଏହାର ବିଶେଷ ଉଦାହରଣ । ବିଧର୍ମୀ ବା ଅନ୍ୟ ଧର୍ମୀ ହିସାବରେ ସେମାନଙ୍କର କୌଣସି ଅସ୍ତିତ୍ୱ ରହିଲା ନାହିଁ ।

କିନ୍ତୁ ହର୍ଷବର୍ଦ୍ଧନଙ୍କ ପରବର୍ତ୍ତୀ କାଳରେ ଭାରତୀୟ ସମାଜ ଦୁର୍ବଳ ଓ ରଢ଼ିବାଦୀ ହେଇଗଲା । ଏକ ପକ୍ଷରେ ବୌଦ୍ଧ ଧର୍ମର ତେଜସ୍ୱିତା ସମାପ୍ତ ହୋଇଗଲା ଓ କୁସଂସ୍କାର ବିରୁଦ୍ଧରେ ଲଢୁଥିବା ବୌଦ୍ଧ ଧର୍ମ ନିଜେ ନାନା ରକମର କୁସଂସ୍କାରର ଶିକାର ହୋଇଗଲା । ବୌଦ୍ଧ ଧର୍ମର ପତନର ସୁବିଧା ନେଇ ବୈଦିକ ବ୍ରାହ୍ମଣବାଦ ମୁଣ୍ଡ ଟେକିଲା । ଏହାକୁ ଏକ ନୂତନ ତେଜସ୍ୱିତା ମିଳିଲା ଆଦି ଶଙ୍କରାଚାର୍ଯ୍ୟଙ୍କର ପ୍ରତିଭାଶାଳୀ ବ୍ୟକ୍ତିତ୍ୱରୁ । ଗୁପ୍ତ ଯୁଗରୁ ହିଁ ବୌଦ୍ଧ ଧର୍ମର ସମାନ୍ତରାଳ ଭାବରେ ବ୍ରାହ୍ମଣ ପ୍ରଭାବିତ ଏକ ହିନ୍ଦୁ ଧର୍ମର ପୁନରୁତ୍‌ଥାନ ଆରମ୍ଭ ହୋଇଯାଇଥିଲା । କିନ୍ତ ଅଷ୍ଟମ-ନବମ ଶତାବ୍ଦୀରେ ବୌଦ୍ଧ ଧର୍ମର ପତନଶୀଳ ଅବସ୍ଥାର ସୁଯୋଗ ନେଇ ବ୍ରାହ୍ମଣ୍ୟ ଧର୍ମ ପ୍ରବଳ ହେବାକୁ ଆରମ୍ଭ କଲା ।

ବେଦ, ଉପନିଷଦ, ଗୀତା ଇତ୍ୟାଦିର ଯେଉଁ ନୂଆ ଭାଷ୍ୟ ଶଙ୍କରାଚାର୍ଯ୍ୟ ରଚନା କଲେ, ତାହାକୁ ଅସ୍ତ୍ର କରି ବ୍ରାହ୍ମଣ୍ୟ ଧର୍ମର ଅଭିଯାନ ସାରା ଦେଶରେ ହେଲା । ଆଜି ଆମେ ଯାହାକୁ ହିନ୍ଦୁ ଧର୍ମ ବୋଲି କହୁଛୁ ତାହାର ଏକ ସ୍ପଷ୍ଟ ଚିତ୍ର ଏହି ସମୟରୁ ପ୍ରକଟ ହେଲା । ଚାରି ଧାମ ଏହି ସମୟରେ ନିର୍ମିତ ହେଲା । ଜାତିପ୍ରଥା ଅତ୍ୟନ୍ତ କଠୋର ହୋଇଗଲା । ଛୁଆଁ ଅଛୁଆଁର ନାନାପ୍ରକାର ଭେଦ ଧାର୍ମିକ ନିୟମ ହିସାବରେ ପରିଗଣିତ ହେଲା ।

ବୌଦ୍ଧ ଯୁଗରେ ସୁଦୂର ବିଦେଶକୁ ଯିବା ଏକ ଧାର୍ମିକ କାର୍ଯ୍ୟ ଥିଲା । କିନ୍ତୁ ଏହି ସମୟରୁ ବିଦେଶ ଯାତ୍ରା ଦ୍ୱାରା ହିନ୍ଦୁ ଅପବିତ୍ର ହୋଇଯିବେ ବୋଲି ନିୟମ ପ୍ରଚଳିତ ହେଲା । ବେଦ ଓ ପୁରାଣମାନଙ୍କର ପାଣ୍ଡିତ୍ୟପୂର୍ଣ୍ଣ ଅଧ୍ୟୟନ ହେଲା । କିନ୍ତୁ, ସମାଜରେ ଏକତା ଓ ଗତିଶୀଳତା ଆସିଲା ନାହିଁ । ବିଦେଶୀ ଆକ୍ରମଣକାରୀମାନେ ଆସି ପ୍ରଥମେ ଲୁଣ୍ଠନ କଲେ । ଲୁଣ୍ଠନରୁ ସେମାନେ ଜାଣିପାରିଲେ ଯେ, ଭାରତୀୟମାନଙ୍କର ପ୍ରତିରୋଧ ଶକ୍ତି ନାହିଁ । ତେଣୁ ସେମାନେ ଆଧିପତ୍ୟ ବିସ୍ତାର କରି ନିଜର ସାମ୍ରାଜ୍ୟ ପ୍ରତିଷ୍ଠା କଲେ ।

ଏହି ସମୟରେ ଭାରତୀୟ ସମାଜରେ ଯେ ମୋଟେ ପ୍ରତିରୋଧ ଶକ୍ତି ରହିଲା ନାହିଁ, ତାହା କ'ଣ ଏହି ବ୍ରାହ୍ମଣ୍ୟ ଧର୍ମ ଆଧାରିତ ଜାତିପ୍ରଥା ଯୋଗୁଁ ? ଏହାର ବିଶ୍ଳେଷଣ ଓ ଅନୁସନ୍ଧାନ ଭାରତର ଐତିହାସିକମାନେ ଏପର୍ଯ୍ୟନ୍ତ କରିନାହାନ୍ତି । ତେଣୁ ଏହି ନିଷ୍କର୍ଷକୁ ଏଡ଼ିଦେଇ ହେବ ନାହିଁ ଯେ, ହିନ୍ଦୁ ସମାଜର ଏହି ଜାତିଗତ କଠୋରତା ଓ ଛୁଆଁ ଅଛୁଆଁ ନିୟମ ଯୋଗୁଁ ଭାରତୀୟ ସମାଜର ଗତିଶୀଳତା ନଷ୍ଟ ହୋଇଗଲା । ତେଣୁ ଲୁଣ୍ଠନକାରୀ ଓ ଆକ୍ରମଣକାରୀମାନଙ୍କ ପାଇଁ ପଥ ପ୍ରଶସ୍ତ ହେଲା ।

ଭାରତୀୟ ଐତିହାସିକମାନେ ଭାରତର ସାମାଜିକ ଇତିହାସକୁ ଏପର୍ଯ୍ୟନ୍ତ ଲେଖି ନାହାନ୍ତି । କେଉଁ ସମୟରେ ଜାତିପ୍ରଥାର ଆରମ୍ଭ ହେଲା ? କେଉଁ କେଉଁ ଅଞ୍ଚଳରୁ ଆରମ୍ଭ ହେଲା ? ବିଭିନ୍ନ ଜାତିର ସୃଷ୍ଟି ହେଲା କିପରି ? କେଉଁ ସମୟରେ କଠୋରତା ଅଳ୍ପ ଥିଲା ଓ କେଉଁ ସମୟରେ ବେଶୀ ହେଲା ? କମ୍ ବେଶୀ ହେବାର ପରିଣାମ ଇତିହାସରେ କ'ଣ ହେଲା ? ଏସବୁ ପ୍ରଶ୍ନର ବିଧିବଦ୍ଧ ଓ ଅନୁସନ୍ଧାନମୂଳକ ଅଧ୍ୟୟନ ହୋଇ ନ ଥିବାରୁ ଜାତିପ୍ରଥାର ଇତିହାସ ବିଷୟରେ କେବଳ କେତେକ ଆନୁମାନିକ ଜ୍ଞାନ ପ୍ରଚଳିତ ଅଛି ।

ମନେହୁଏ ଯେ, ବ୍ରାହ୍ମଣ ଓ କ୍ଷତ୍ରିୟ ପ୍ରଥମେ ନିଜକୁ ଉଚ୍ଚଜାତି ବୋଲି ଅଭିହିତ କଲେ ଓ ଅନ୍ୟମାନଙ୍କୁ ନିମ୍ନରେ ପରିଗଣିତ କଲେ । ଆର୍ଥିକ ବିକାଶ କିମ୍ବା ଜଟିଳତା ବଢ଼ିବା ସଙ୍ଗେ ସଙ୍ଗେ ସମାଜରେ ଯେଉଁ ନୂଆ ନୂଆ ଧନ୍ଦାମୂଳକ ଗୋଷ୍ଠୀ ବାହାରିଲେ, ସେମାନଙ୍କୁ ଶୂଦ୍ର ବା ବୈଶ୍ୟ ଶ୍ରେଣୀରେ ରଖାଗଲା । ଯୁଦ୍ଧର ଜୟ ପରାଜୟ ଭିତରେ ଯେଉଁ ଗୋଷ୍ଠୀମାନେ ସମ୍ପୂର୍ଣ୍ଣ ପରାଜିତ ହେଲେ, ସେମାନଙ୍କର ଅଧିକାଂଶ ଲୋକଙ୍କୁ ନିମ୍ନ ଶ୍ରେଣୀରେ ରଖିବା ଏକ ସ୍ୱାଭାବିକ ପ୍ରକ୍ରିୟା ହୋଇଥିବ । ବିଶେଷକରି ଅନ୍ୟ ସଂସ୍କୃତି ଓ ଅନ୍ୟ ରଙ୍ଗର ଲୋକମାନଙ୍କୁ ସବାତଳ ଶ୍ରେଣୀରେ ରଖି ଅଧିକାଂଶ ଶାରୀରିକ ତଥା କଷ୍ଟକର କାମଗୁଡ଼ିକ ସେମାନଙ୍କ ଦ୍ୱାରା କରାଗଲା ଓ ସେମାନଙ୍କୁ ପୃଥକ୍ ଭାବରେ ରହିବାକୁ ମଧ୍ୟ ନିର୍ଦ୍ଦେଶ ଦିଆଗଲା । ଅସ୍ପୃଶ୍ୟତାର ଉପକ୍ରମ ଏହିପରି ଭାବରେ ଆରମ୍ଭ ହେଲା ।

ପ୍ରାଚୀନ ଗ୍ରନ୍ଥମାନଙ୍କରେ ଶୂଦ୍ରଠାରୁ ତଳିଆ କୌଣସି ଶ୍ରେଣୀ ଦେଖିବାକୁ ମିଳେନାହିଁ । ଚାଣ୍ଡାଳମାନଙ୍କର ବେଳେବେଳେ ଉଲ୍ଲେଖ ମିଳେ । କିନ୍ତୁ ବୈଶ୍ୟ ବା ଶୂଦ୍ର ପରି ଚାଣ୍ଡାଳ ଏକ ବର୍ଣ୍ଣ ବା ଜାତି ନଥିଲା । ହୀନ ସ୍ୱଭାବ ଓ ସମାଜରୁ ବହିଷ୍କୃତ ଲୋକଙ୍କୁ ଚାଣ୍ଡାଳ ବୋଲି ଅଭିହିତ କରାଯାଉଥିଲା । ସମ୍ଭବତଃ ଏହି ଚାଣ୍ଡାଳମାନଙ୍କୁ ଭିତ୍ତିକରି ପରବର୍ତ୍ତୀ କାଳକ୍ରମେ ଏକ ଅସ୍ପୃଶ୍ୟ ଶ୍ରେଣୀର ସୃଷ୍ଟି ହୋଇଥିଲା । ତେଣୁ ଅସ୍ପୃଶ୍ୟତାର ସୃଷ୍ଟି ଏକ ପରବର୍ତ୍ତୀ ଘଟଣା ବୋଲି ମନେହୁଏ । ଯେଉଁ ସମୟରେ ଭାରତୀୟ ଲୋକଙ୍କର ଶୌର୍ଯ୍ୟ ଓ ଜ୍ଞାନ ସ୍ତରରେ କୌଣସି ତେଜସ୍ୱିତା, ବୈଶିଷ୍ଟ୍ୟ ନ ଥିଲା, ସେହି ସମୟରେ ହିଁ ଅସ୍ପୃଶ୍ୟତା ବିଷୟରେ ନାନା ରକମର ଅମାନବୀୟ ନିୟମମାନ ପ୍ରଚଳିତ ହେଲା । ଏହି ବିଷୟରେ କୌଣସି ସନ୍ଦେହ ନାହିଁ ଯେ, ଅସ୍ପୃଶ୍ୟତାର କଡ଼ା ନିୟମଗୁଡ଼ିକ ସେହି ଅଞ୍ଚଳମାନଙ୍କରେ କାର୍ଯ୍ୟକାରୀ ହେଉଥିଲା, ଯେଉଁ ଅଞ୍ଚଳରେ ବ୍ରାହ୍ମଣମାନଙ୍କର ବିଶେଷ ପ୍ରତିପତ୍ତି ଥିଲା । ଯେଉଁଠି କ୍ଷତ୍ରିୟ ରାଜାମାନଙ୍କ ଉପରେ ବ୍ରାହ୍ମଣମାନଙ୍କର ବିଶେଷ ପ୍ରଭାବ ଥିଲା, ସେଠି ରାଜ୍ୟର ଆଇନ୍ ଭାବରେ ଏହିସବୁ ନିୟମକୁ ପ୍ରବର୍ତ୍ତିତ କରାହେଉଥିଲା ।

ଭାରତର ପରାଜିତ ଆତ୍ମା ଏକ କୃତ୍ରିମ ପବିତ୍ରତାର ଖୋଳ ଭିତରକୁ ପଶି, ଅନ୍ୟମାନଙ୍କୁ ଅପବିତ୍ର ବୋଲି କହି, ନିଜର ଶ୍ରେଷ୍ଠତା ଅନୁଭବ କରିବା ପାଇଁ ଏହିଭଳି ଏକ ମନୋବୈଜ୍ଞାନିକ କୌଶଳ ଉଦ୍ଭାବନ କଲା । ଏହି ପରାଜିତ ମନୋବିଜ୍ଞାନର ଯୁଗରେ ହିଁ ଭାରତରେ ସବୁଠାରୁ ଅଧିକ ନାରୀ-ବିରୋଧୀ ପ୍ରଥାଗୁଡ଼ିକର ପ୍ରଚଳନ

କରାଗଲା । ଅର୍ଥାତ୍, ପରାଜୟର ସବୁ କଷ୍ଟ ଓ ଅପମାନକୁ ଶୂଦ୍ର ଓ ନାରୀମାନଙ୍କ ଉପରେ ଲଦିଦେଇ ବ୍ରାହ୍ମଣ-କ୍ଷତ୍ରିୟ ପ୍ରଭୃତି ମୁଷ୍ଟିମେୟ ଉଚ୍ଚଜାତି ନିଜେ ଦୁଇ ନମ୍ବର୍‌ର ଶାସକ ହେଲେ । ଡକ୍ଟର୍ ରାମ୍‌ମନୋହର୍ ଲୋହିଆ ଦ୍ୱିଜମାନଙ୍କୁ ଦୁଇ ନମ୍ବର୍‌ର ଶାସକ ବୋଲି କହିଛନ୍ତି । ଆକ୍ରମଣ କରି ବିଜୟ ହାସଲ କରିଥିବା ଗୋଷ୍ଠୀ ଏକ ନମ୍ବର୍‌ର ଶାସକ ହେଲେ ଓ ତାଙ୍କର ଶାସନକୁ ଓ ଅତ୍ୟାଚାରକୁ ଜନସାଧାରଣଙ୍କ ଉପରେ ଚଲାଇବା ନିମନ୍ତେ ବ୍ରାହ୍ମଣ, କ୍ଷତ୍ରିୟ, କାୟସ୍ଥ ଆଦି ଉଚ୍ଚଜାତି ଜୁଟିଗଲେ । ଏହିମାନେ ମୋଗଲ୍ ସାମ୍ରାଜ୍ୟର 'ଦରବାରୀ' ହେଲେ ଓ ବ୍ରିଟିଶ୍ ରାଜତ୍ୱରେ 'କଳା-ସାହେବ' ହେଲେ ।

ଏକ ଉଲ୍ଲେଖନୀୟ ବିଷୟ ଏହିକି ଯେ, ଦୀର୍ଘକାଳ ପର୍ଯ୍ୟନ୍ତ ଏପରି କି ବ୍ରିଟିଶ୍ ଆଗମନ ପର୍ଯ୍ୟନ୍ତ ମଧ୍ୟ ବ୍ରାହ୍ମଣ୍ୟ ହିନ୍ଦୁ ବ୍ୟବସ୍ଥା ଭାରତର ସବୁଆଡ଼େ ବ୍ୟାପି ନଥିଲା । ବ୍ରିଟିଶ୍ ରାଜତ୍ୱ ଆରମ୍ଭର ଭାରତୀୟ ରାଜନୈତିକ ଭୂଗୋଳକୁ ସାମ୍ନାରେ ରଖି ଆଖି ପକେଇଲେ ଦେଖାଯିବ ଯେ, ପ୍ରାୟ ଅର୍ଦ୍ଧେକ ଭାରତରେ କ୍ଷତ୍ରିୟ ରାଜା ନଥିଲେ । ଏସବୁ ଅଞ୍ଚଳରେ ବ୍ରାହ୍ମଣ-କାୟସ୍ଥ-କ୍ଷତ୍ରିୟ ଇତ୍ୟାଦି ଜାତିମାନଙ୍କର ଅସ୍ତିତ୍ୱ ନଥିଲା । ଯେଉଁମାନଙ୍କୁ ଆଦିବାସୀ, ଅସ୍ପୃଶ୍ୟ ଓ ଶୂଦ୍ର ବୋଲି କୁହାଗଲା, ସେମାନଙ୍କର ରାଜ୍ୟ ଏସବୁ ଅଞ୍ଚଳରେ ଥିଲା । ଓଡ଼ିଶା ଓ ମଧ୍ୟପ୍ରଦେଶର ଅଧାରୁ ବେଶୀ ଅଞ୍ଚଳ ଏହିପରି ଥିଲା । ଏମାନଙ୍କୁ 'ହିନ୍ଦୁ' କୁହାଯିବ କି ନାହିଁ ? ଏମାନଙ୍କୁ ଯଦି 'ହିନ୍ଦୁ' କୁହାଯିବ, ତାହାହେଲେ ହିନ୍ଦୁ ସମାଜ ଦୁଇ ପ୍ରକାରର ଥିଲା: ଗୋଟିଏ ବ୍ରାହ୍ମଣବାଦୀ ହିନ୍ଦୁ ସମାଜ ଓ ଅନ୍ୟଟି ଅଣବ୍ରାହ୍ମଣବାଦୀ ହିନ୍ଦୁ ସମାଜ । ଏହି ଅଣ ବ୍ରାହ୍ମଣବାଦୀ ସମାଜରେ ବହୁ ସଂଖ୍ୟକ ରାଜା ଓ ରାଜ୍ୟ ଥିଲେ, କିନ୍ତୁ ଏମାନଙ୍କର ବିକାଶ ଅବରୁଦ୍ଧ ହୋଇଯାଇଥିଲା ।

ବୌଦ୍ଧ ଧର୍ମର ପତନ ଓ ବ୍ରାହ୍ମଣ୍ୟ ଧର୍ମର ଉତ୍‌ଥାନ ପରେ ଜ୍ଞାନ କ୍ଷେତ୍ରରେ କେବଳ ବ୍ରାହ୍ମଣମାନେ ଅଗ୍ରଣୀ ହୋଇ ରହିଲେ । ଅବ୍ରାହ୍ମଣ କ୍ଷେତ୍ରର ଲୋକମାନେ ପଛୁଆ ହୋଇ ରହିଗଲେ । ସଂସ୍କୃତ ହିଁ ଜ୍ଞାନର ବାହକ ବୋଲି ପ୍ରତିଷ୍ଠା ଲାଭ କଲା । ବ୍ରିଟିଶ୍ ରାଜତ୍ୱ ଯେତେବେଳେ ଦେଶର ସବୁ ଅଞ୍ଚଳର ଅନ୍ଦିସନ୍ଧିକୁ ବ୍ୟାପିଗଲା, ସେମାନେ ସମ୍ପୂର୍ଣ୍ଣ ଭାରତର ଶାସନ ଚଳାଇବା ପାଇଁ ସଂସ୍କୃତ-ଶିକ୍ଷିତ ଜାତିମାନଙ୍କୁ ନିଜ କାମରେ ଲଗାଇଲେ ଓ ଭାରତର ପ୍ରତ୍ୟେକ ଅଞ୍ଚଳକୁ ଏହି ଜାତିର ଲୋକମାନଙ୍କୁ ପଠେଇଲେ । କଲେକ୍ଟର, ପଟୁଆରୀ, ଶିକ୍ଷକ ଓ ଇନ୍‌ସପେକ୍ଟର୍ ଭାବରେ ଉଚ୍ଚଜାତିର ଲୋକମାନେ ଦେଶର ପ୍ରତ୍ୟେକ ଅଞ୍ଚଳକୁ ଗଲେ ଓ ନିଜ ନିଜର ପରିବାରକୁ ସେ ଅଞ୍ଚଳର ଶ୍ରେଷ୍ଠ ପରିବାର ରୂପେ ସ୍ଥାପିତ କଲେ ।

ଏହିପରି ଭାବରେ ବିଶ୍ଳେଷଣ କଲେ ଜଣାପଡ଼ିବ ଯେ, ବ୍ରିଟିଶ୍ ଶାସନର କେନ୍ଦ୍ରିତ ବ୍ୟବସ୍ଥା ଯୋଗୁଁ ଓ ଇଂରାଜୀ ଶିକ୍ଷା ଯୋଗୁଁ ଭାରତର ପ୍ରତ୍ୟେକ ଅଞ୍ଚଳରେ ବ୍ରାହ୍ମଣ୍ୟ ସମାଜର ସ୍ଥାପନ ହେଲା । ନଚେତ୍ ଅର୍ଦ୍ଧେକ ଭାରତ ବ୍ରାହ୍ମଣବାଦୀ ବ୍ୟବସ୍ଥାରୁ ମୁକ୍ତ ଥିଲା । ଏଥିରୁ ଗୋଟିଏ ଆଶା ଜନ୍ମୁଛି ଯେ, ହିନ୍ଦୁ ସମାଜ ବ୍ରାହ୍ମଣ୍ୟ ବ୍ୟବସ୍ଥା ବିନା ମଧ୍ୟ ରହିପାରେ । ମାତ୍ର, ବ୍ରାହ୍ମଣବାଦୀ ବ୍ୟବସ୍ଥା ହିନ୍ଦୁ ସମାଜ ପାଇଁ ଅପରିହାର୍ଯ୍ୟ ନୁହେଁ ।

ବିଶ୍ୱବିଦ୍ୟାଳୟର ଶିକ୍ଷିତମାନଙ୍କର ଗୋଟିଏ ଧାରଣା ଅଛି ଯେ, ପାଶ୍ଚାତ୍ୟ ଶିକ୍ଷାପ୍ରାପ୍ତ ଆଧୁନିକତାବାଦୀମାନେ ଭାରତରେ ସମାଜ ସଂସ୍କାରର କାର୍ଯ୍ୟ ଆରମ୍ଭ କରିଥିଲେ । ଏହା ଏକ ଭୁଲ୍ ଧାରଣା । ବ୍ରିଟିଶ୍ ଶାସନର ବହୁ ପୂର୍ବରୁ ବିଭିନ୍ନ ଯୁଗରେ ଭାରତର ସଂସ୍କାର ଆନ୍ଦୋଳନ ହେଇଛି । ବ୍ରିଟିଶ୍ ଶାସନରେ ମଧ୍ୟ ଯେଉଁ ସର୍ବପ୍ରଥମ ପ୍ରଭାବଶାଳୀ ଆନ୍ଦୋଳନ ଜାତିପ୍ରଥା ବିରୁଦ୍ଧରେ ହେଲା ତାହା ମହର୍ଷି ଦୟାନନ୍ଦଙ୍କର ଆନ୍ଦୋଳନ ଥିଲା । ଦୟାନନ୍ଦ ବା ରାମକୃଷ୍ଣ ପରମହଂସ ଭଳି ସଂସ୍କାରକମାନେ ଇଂରାଜୀ ଭାଷାରେ ଅଜ୍ଞାନୀ ଥିଲେ ଓ ସେମାନଙ୍କର ଉଦାରବାଦୀ ଦୃଷ୍ଟିକୋଣ ଭାରତୀୟ ସଂସ୍କୃତି ଭିତରୁ ଆସିଥିଲା । ଆଧୁନିକତା ହେତୁବାଦୀ ଦୃଷ୍ଟିକୋଣ ଉପରେ ଜୋର୍ ଦେଉଥିବାରୁ ଜାତିପ୍ରଥାର କୁସଂସ୍କାରକୁ ଆଧୁନିକତାଧର୍ମୀ ଲୋକେ ସମସ୍ତେ ସମାଲୋଚନା କରିଥାନ୍ତି ଓ ଏଥିରେ ପରିବର୍ତ୍ତନ ଦରକାର ବୋଲି କହିଥାନ୍ତି । କିନ୍ତୁ ଜାତିପ୍ରଥା ଯେତିକି ବ୍ୟାପକ ଭାବରେ ଅଶିକ୍ଷିତ ଲୋକଙ୍କ ଭିତରେ ଅଛି, ଶିକ୍ଷିତ ସମାଜରେ ମଧ୍ୟ ସେତିକି ରହିଛି । ଏହାର ଗୂଢ଼ ରହସ୍ୟ ବୁଝିବାକୁ ହେବ । ଏଠାରେ ଆମେ ତାହାର କେବଳ ଗୋଟିଏ ଦିଗ ବୁଝାଇବାକୁ ଚାହୁଁ ।

ମୋଟ ଉପରେ କହିବାକୁ ଗଲେ ଜାତିପ୍ରଥା ସାମାଜିକ ବୈଷମ୍ୟର ଗୋଟିଏ ବ୍ୟବସ୍ଥା । ସାମାଜିକ ବୈଷମ୍ୟର ଅବଧାରଣାଗୁଡ଼ିକ ଯଦି ବୁଦ୍ଧି ଓ ମନରେ ବସା ବାନ୍ଧି ରହିବ, ତାହାହେଲେ ଜାତିପ୍ରଥା ଲୋପ ପାଇବ କିପରି ? ଗୋଟିଏ ବାଟରେ ଯାଇ ଅନ୍ୟ ବାଟରେ ଫେରି ଆସିବ । ହେତୁବାଦୀ ଗୋଷ୍ଠୀଗୁଡ଼ିକର ଗୋଟିଏ ବଡ଼ ତ୍ରୁଟି ଏହି ଯେ, ସେଗୁଡ଼ିକ ପରମ୍ପରା ଓ ଧର୍ମଗତ କୁସଂସ୍କାରକୁ ତର୍କ ବିରୋଧୀ ଓ ମାନବିକତା ବିରୋଧୀ ବୋଲି ବାରମ୍ବାର ପ୍ରହାର କରନ୍ତି । ତାହାର କେତେକ ଭଲ ପରିଣାମ ମଧ୍ୟ ମିଳିଥାଏ । କିନ୍ତୁ, ଆଧୁନିକତାବାଦ ଓ ଭୌତିକତାବାଦର ଯେଉଁସବୁ କୁସଂସ୍କାର ଓ ଅନ୍ଧବିଶ୍ୱାସ ଅଛି, ସେଗୁଡ଼ିକୁ ସେମାନେ ପ୍ରଶ୍ନବିଦ୍ଧ କରନ୍ତି ନାହିଁ । ଆଧୁନିକତାବାଦରେ ଯେଉଁସବୁ ମାନବିକତା ବିରୋଧୀ ପ୍ରବୃତ୍ତି ଅଛି ଓ ସାମାଜିକ ବୈଷମ୍ୟ ସୃଷ୍ଟି କରିବାର ଉପାଦାନଗୁଡ଼ିକ ରହିଛି, ସେମାନେ ସେଗୁଡ଼ିକ ବିରୁଦ୍ଧରେ କୌଣସି ଅଭିଯାନ ଚଳାନ୍ତି ନାହିଁ । ଏହି କାରଣରୁ ଆଧୁନିକତା ଜାତିପ୍ରଥାର ବିଲୋପ ସାଧନ କରିବାରେ ସମର୍ଥ ହୋଇନାହିଁ ।

ଊନବିଂଶ ଶତାବ୍ଦୀର ବହୁ ପାଶ୍ଚାତ୍ୟ ପଣ୍ଡିତ (ବିଶେଷକରି ମାକ୍ସ୍ ୱେବର୍ ଓ କାର୍ଲ୍‌ମାର୍କ୍ସ) ଭବିଷ୍ୟବାଣୀ କରିଥିଲେ ଯେ, ଆଧୁନିକତାର ପ୍ରଭାବରେ ଭାରତର ଜାତିପ୍ରଥା ଉଭେଇଯିବ । ପାଶ୍ଚାତ୍ୟ ପଣ୍ଡିତଙ୍କ ଦ୍ୱାରା ପ୍ରଭାବିତ ହୋଇ ଜବାହାର୍‌ଲାଲ୍ ନେହେରୁଙ୍କ ଭଳି ଭାରତୀୟ ନେତା ମଧ୍ୟ ଏହି ଆଶା ପୋଷଣ କରିଥିଲେ । ଏଥିପାଇଁ ତାଙ୍କ ଲିଖିତ 'ଭାରତର ଆବିଷ୍କାର' ପୁସ୍ତକ ଦ୍ରଷ୍ଟବ୍ୟ ।

ଭବିଷ୍ୟବାଣୀ ନିରର୍ଥକ ହେବାର ସବୁଠାରୁ ବଡ଼ କାରଣ ଏହିକି ଯେ, ପାଶ୍ଚାତ୍ୟ ପ୍ରଭାବିତ ଆଧୁନିକତା ଜାତିପ୍ରଥାର ମୂଳତତ୍ତ୍ୱ ବା ଅବଧାରଣାଗୁଡ଼ିକର ଖଣ୍ଡନ କରିବା ପରିବର୍ତ୍ତେ ସେଗୁଡ଼ିକର ପରିପୋଷଣ କରେ । ଉଦାହରଣ ସ୍ୱରୂପ, ଜାତିପ୍ରଥାର ଗୋଟିଏ ତାତ୍ତ୍ୱିକ ଆଧାର ହେଉଛି ଶାରୀରିକ ଶ୍ରମକୁ ହୀନଜ୍ଞାନ କରିବା । ସେଥିପାଇଁ ଶାରୀରିକ

କାର୍ଯ୍ୟଗୁଡ଼ିକର ଦାୟିତ୍ୱ ଶୂଦ୍ରମାନଙ୍କୁ ଦିଆଯାଇଛି । ଦୈହିକ ଶ୍ରମକୁ ହୀନ ମନେ କରିବା ନିଶ୍ଚୟ ଏକ ଅନ୍ଧବିଶ୍ୱାସ ଓ ଏପରି ଧାରଣା ମାନବିକତା ବିରୋଧୀ ଅଟେ, କାରଣ ଶରୀର-ଶ୍ରମ ମାନବ ସମାଜର ଏକ ଅନିର୍ବାର୍ଯ୍ୟ କାମ ଓ ପ୍ରତ୍ୟେକ ବ୍ୟକ୍ତିର ସୁସ୍ଥ ବ୍ୟକ୍ତିତ୍ୱ ପାଇଁ ମଧ୍ୟ ଏହା ଦରକାର । କିନ୍ତୁ ଆଧୁନିକତା ଏହି ଅନ୍ଧବିଶ୍ୱାସକୁ ବଢ଼ାଇ ଚାଲିଛି । ଆଧୁନିକ ଯନ୍ତ୍ରବିଦ୍ୟାର ସ୍ତୁତି କରିବା ସମୟରେ କଥା କଥାକେ ଶିକ୍ଷିତମାନେ କହନ୍ତି ଯେ, ବୈଜ୍ଞାନିକ ଯନ୍ତ୍ରଗୁଡ଼ିକର ଉଦ୍ଭାବନ ଫଳରେ ମନୁଷ୍ୟ ଶାରୀରିକ କାର୍ଯ୍ୟରୁ ମୁକ୍ତି ପାଉଛି । ଯିଏ ଯେତେ ବେଶୀ ଆଧୁନିକ, ସିଏ ସେତେ ବେଶୀ ଯନ୍ତ୍ର ବ୍ୟବହାର କରେ ଓ କାୟିକ ଶ୍ରମରୁ 'ମୁକ୍ତି' ଲାଭ କରେ ।

ଜାତିପ୍ରଥାର ଆଉ ଏକ ମାନ୍ୟତା ଏହି ଯେ, ଛୋଟ ବଡ଼ ହେବା ଓ ସୁଖ ବା ଦୁଃଖ ଭୋଗ କରିବା ବିଧାତା ଲିଖନ । ଯାହାର ସଞ୍ଚିତ ପୁଣ୍ୟ ଅଛି ସିଏ ଧନୀ ସମ୍ଭ୍ରାନ୍ତ କୁଳରେ ଜନ୍ମହେବ; ଯାହାର ସଞ୍ଚିତ ପୁଣ୍ୟ ନାହିଁ ସିଏ ଛୋଟ କୁଳରେ ଜନ୍ମଲାଭ କରିବ । ଆଧୁନିକତା ମଧ୍ୟ ଛୋଟ-ବଡ଼, ଧନୀ-ଗରିବ, ଅତିଧନୀ-ଅତିଗରିବ ପ୍ରଭେଦଗୁଡ଼ିକୁ ସ୍ୱାଭାବିକ ଓ ଯୁକ୍ତିସଙ୍ଗତ ବୋଲି କହିଥାଏ । ତାହାର ଶବ୍ଦାବଳୀ ଅଲଗା, କିନ୍ତୁ ଉପସଂହାର ଏକା ଭଳି । ଆଧୁନିକ ଯୁଗର ସଫଳ ବ୍ୟକ୍ତିମାନେ କହନ୍ତି ଯେ, ଲୋକମାନେ ତାଙ୍କର ଯୋଗ୍ୟତା, ଅର୍ଥାତ୍, ପ୍ରତିଯୋଗିତାର କ୍ଷମତାନୁସାରେ ଧନୀ ବା ଗରିବ ହୁଅନ୍ତି । ତେଣୁ ସେମାନେ କୋଟିପତି ପରିବାର ଓ କ୍ଷୁଧାର୍ତ୍ତ ପରିବାର ଭିତରେ ଥିବା ବୈଷମ୍ୟକୁ ଆଧୁନିକତା ସାଙ୍ଗରେ ଚଳାଇ ନିଅନ୍ତି । ବ୍ରାହ୍ମଣବାଦର ପାପ-ପୁଣ୍ୟ ଓ ଆଧୁନିକତାବାଦର ଯୋଗ୍ୟତା-ପ୍ରତିଯୋଗିତା ଏକା କଥା ନୁହେଁ କି ?

ଯଦି ଆର୍ଥିକ ବିଷମତା ବହୁତ ବେଶୀ ହୁଏ ଓ ବହୁକାଳ ଧରି ବଳବତ୍ତର ରହେ, ତାହା ଜାତିପ୍ରଥାର ଲକ୍ଷଣମାନ ପ୍ରକାଶ କରେ, ଏକଥା ଡକ୍ଟର୍ ଲୋହିଆ କହିଥିଲେ । ତାଙ୍କର ପ୍ରସିଦ୍ଧ ଉକ୍ତି, "ଶ୍ରେଣୀଭେଦ ଜମାଟ ବାନ୍ଧି ରହିଲେ ଜାତିଭେଦ ହୁଏ ।" ମନୁଷ୍ୟର ଅନ୍ୟାନ୍ୟ ଯୋଗ୍ୟତା-ଅଯୋଗ୍ୟତା ଯାହା ହେଉନା କାହିଁକି, ଖାଇବା, ପିନ୍ଧିବା, ବାସକରିବା ଓ ଶିକ୍ଷାଲାଭ କରିବା ଇତ୍ୟାଦି ଆବଶ୍ୟକତା ସମାନ ଅଟେ । ଗୋଟିଏ ହେତୁବାଦୀ ସମାଜରେ ଏଗୁଡ଼ିକର ପ୍ରାପ୍ତି 'ଯୋଗ୍ୟତା' ଅନୁସାରେ ନୁହେଁ, 'ଆବଶ୍ୟକତା' ଅନୁସାରେ ହେବା ବିଧେୟ ।

ଜାତିପ୍ରଥାର ଆଉ ଏକ ମାନ୍ୟତା ହେଉଛି ଭାଷାଗତ ଭିନ୍ନତା । ବ୍ରାହ୍ମଣମାନଙ୍କର ଭାଷା ହେଉଛି ସଂସ୍କୃତ ଓ ଶୂଦ୍ରମାନଙ୍କର ଭାଷା ହେଉଛି ସ୍ଥାନୀୟ ବା କଥିତ ଭାଷା ବା ଅଶାସ୍ତ୍ରୀୟ ଭାଷା । ଗୋଟିଏ ସମାଜ ଭିତରେ ଯଦି ବିଶିଷ୍ଟ ବର୍ଗର ଏକ ବିଶିଷ୍ଟ ଭାଷା ହୁଏ ଓ ସାଧାରଣ ଲୋକଙ୍କର ଆଉ ଏକ ଭାଷା ହୁଏ, ତାହାହେଲେ ଜାତିପ୍ରଥା ଭଳି ଅବସ୍ଥା ନିଶ୍ଚୟ ଦେଖାଯିବ । ଯଦି ଜର୍ମାନୀ ବା ବ୍ରିଟେନ୍‌ରେ ଏପରି ହେବ, ତାହାହେଲେ ସେହି ଦେଶମାନଙ୍କରେ ମଧ୍ୟ ଜାତିପ୍ରଥା ଦେଖାଯିବ । କିନ୍ତୁ ଭାରତରେ ଏହି ଭାଷାଭେଦ ହିଁ ଆଧୁନିକତାର ଏକ ମୁଖ୍ୟ ଦ୍ୱାର । ଇଂରାଜୀ ଏବେ ସଂସ୍କୃତର ସ୍ଥାନ ନେଇଛି, ତାହା ହେଉଛି ଅଫିସର୍‌ମାନଙ୍କର ଓ ଜ୍ଞାନୀ ବର୍ଗର ଭାଷା ।

ଉପରୋକ୍ତ ତିନୋଟି ଉଦାହରଣରୁ ସ୍ପଷ୍ଟ ହୋଇଯିବ ଯେ ଆଧୁନିକତା ଉପରଠାଉରିଆ ଭାବରେ ଜାତିପ୍ରଥାର ସମାଲୋଚନା କରେ । ମାତ୍ର, ଯେଉଁସବୁ ତାତ୍ତ୍ୱିକ ଆଧାର ଉପରେ ଜାତିପ୍ରଥା ଠିଆହୋଇଛି, ତାହାକୁ ଭାଙ୍ଗିବା ଆଧୁନିକତାର ଉଦ୍ଦେଶ୍ୟ ନୁହେଁ । ପୁରୁଣା ବ୍ରାହ୍ମଣବାଦକୁ ଧ୍ୱଂସ କରିବା ପରିବର୍ତ୍ତେ ଏକ ପ୍ରକାରର ନବବ୍ରାହ୍ମଣବାଦକୁ ଏହା ଜନ୍ମ ଦେଇଛି । ତେଣୁ ଯଦିଓ ବେଳେବେଳେ ଜଣାପଡ଼େ ଯେ, ଜାତି ବ୍ୟବସ୍ଥା ଭାଙ୍ଗୁଛି, ତାହାର କେବଳ ବାହ୍ୟ ରୂପରେ ସାମାନ୍ୟ ପରିବର୍ତ୍ତନ ହେଉଛି ଓ ସେତିକିରେ ଅଟକି ଯାଉଛି ।

ନବବ୍ରାହ୍ମଣବାଦ ଏକ ନୂଆ ଜାତିପ୍ରଥା । ନୂଆ ଜାତିପ୍ରଥା ପୁରୁଣା ଜାତିପ୍ରଥାକୁ ଶକ୍ତି ଯୋଗାଉଛି । ବ୍ରାହ୍ମଣବାଦ ଓ ନବବ୍ରାହ୍ମଣବାଦ ଶବ୍ଦମାନଙ୍କ ବିଷୟରେ ଆମେ ସ୍ପଷ୍ଟ ହୋଇଯିବା ଦରକାର । ବ୍ରାହ୍ମଣବାଦ କହିଲେ ବ୍ରାହ୍ମଣମାନଙ୍କୁ ବୁଝାଏ ନାହିଁ । ଏହା  ବ୍ରାହ୍ମଣକୁ ଶ୍ରେଷ୍ଠ ଓ ଅନ୍ୟମାନଙ୍କୁ ନିକୃଷ୍ଟ ବୋଲି ଭେଦ କରୁଥିବା ମନୋଭାବ ଓ ବ୍ୟବସ୍ଥାକୁ ବୁଝାଏ । ବ୍ରାହ୍ମଣବାଦ ଓ ହିନ୍ଦୁ ସମାଜ ଏକା କଥା ନୁହେଁ । ସବୁ ସମୟରେ ଓ ସବୁ ଅଞ୍ଚଳରେ ହିନ୍ଦୁ ସମାଜର ରୂପ ବ୍ରାହ୍ମଣବାଦୀ ନ ଥିଲା । ଆଧୁନିକତାର ଖୋଳ ଭିତରେ ବ୍ରାହ୍ମଣବାଦୀ ପ୍ରବୃତ୍ତି ଗୁଡ଼ିକୁ ଅକ୍ଷୁର୍ଣ୍ଣ ରଖିବା ହେଉଛି ନବବ୍ରାହ୍ମଣବାଦ । ଭାରତର ଅମଲାତାନ୍ତ୍ରିକ ଢାଞ୍ଚାରେ ଏହି ପ୍ରବୃତ୍ତିଗୁଡ଼ିକ ସାମାଜିକ ବିଷମତାକୁ ବଢ଼ାଉଛନ୍ତି । ଭୋଟ୍ ରାଜନୀତି ଓ ସ୍ଥାନ ସଂରକ୍ଷଣ ବଳରେ ଯେଉଁ ଶୂଦ୍ର-ଦଳିତ ବ୍ୟକ୍ତିମାନେ ପ୍ରତିଷ୍ଠା ଓ କ୍ଷମତା ଅର୍ଜନ କରୁଛନ୍ତି, ସେମାନଙ୍କୁ ମଧ୍ୟ ନବବ୍ରାହ୍ମଣବାଦ ଗ୍ରାସ କରୁଛି । ଫଳରେ ସେମାନେ ସମାଜରୁ ଜାତିପ୍ରଥାକୁ ଲୋପ କରିବାର ଉଦ୍ଦେଶ୍ୟ ପ୍ରତି ଉଦାସୀନ ହେଉଛନ୍ତି । ଶୂଦ୍ର-ଦଳିତ ଶ୍ରେଣୀ ଭିତରେ ଯେଉଁସବୁ ସାମାଜିକ ବୈଷମ୍ୟ ରହିଛି, ସେଗୁଡ଼ିକୁ ଦୂର କରିବା ସେମାନଙ୍କର ଲକ୍ଷ୍ୟ ନୁହେଁ । ଭୋଟ୍ ରାଜନୀତି ଓ ସ୍ଥାନ ସଂରକ୍ଷଣ ଶୂଦ୍ର ଓ ଦଳିତମାନଙ୍କର ହାତରେ ଯେତିକି ସାମାଜିକ ପ୍ରଭାବ ଓ ରାଜନୈତିକ କ୍ଷମତା ଦେଇଛି, ସେତିକି କେବେ ମଧ୍ୟ ଆଗରୁ ସେମାନଙ୍କୁ ମିଳି ନ ଥିଲା । କିନ୍ତୁ ଏହି ଅସ୍ତ୍ରର ପ୍ରୟୋଗ ସେମାନେ ଜାତିପ୍ରଥାର ବିଲୋପ ପାଇଁ କରୁନାହାନ୍ତି । ଡକ୍ଟର୍ ଆମ୍ବେଦ୍କର୍ଙ୍କ ପରେ ଆଉ କୌଣସି ଶୂଦ୍ର-ଦଳିତ ନେତା ଜାତିପ୍ରଥା ବିଲୋପକୁ ନିଜର ଲକ୍ଷ୍ୟ କରିନାହାନ୍ତି ।

ଏକଦା 'ଉଚ୍ଚ' ଜାତିର ସମାଜ ସଂସ୍କାରକ ଓ ଧାର୍ମିକ ନେତାମାନେ ଜାତିପ୍ରଥା ବିଲୋପ ନିମନ୍ତେ ଗୁରୁତ୍ୱପୂର୍ଣ୍ଣ ଅଭିଯାନଟିମାନ ଚଳାଇଥିଲେ । ବିବେକାନନ୍ଦ, ଗାନ୍ଧୀ ଓ ଲୋହିଆଙ୍କ ପରେ ସେହି ଧାରା ମଧ୍ୟ ଶୁଷ୍କ ହୋଇଛି । ମନେ ରଖିବାକୁ ହେବ ଯେ, ଯେଉଁ ସମୟରେ ଭାରତୀୟ ସମାଜରେ ଜାତିପ୍ରଥାର ବିଲୋପ ନିମନ୍ତେ ତୀବ୍ର ଆନ୍ଦୋଳନ ନାହିଁ, ସେହି ସମୟ ହେଉଛି ଭାରତର ପତନ ଓ ଐକ୍ୟହୀନତାର ଯୁଗ । ଭାରତକୁ ବର୍ତ୍ତମାନର ଏହି ସ୍ଥାଣୁତ୍ୱ ଓ ପତନଶୀଳତାରୁ ଉଠାଇବାକୁ ହେଲେ ଉଭୟ ଉଚ୍ଚ ଜାତି ଓ ଶୂଦ୍ର-ଦଳିତଙ୍କୁ କେତେଗୁଡ଼ିଏ ନୂତନ ଦିଗ୍‌ବଳୟ ବିଷୟରେ ସଚେତନ ହେବାକୁ ପଡ଼ିବ । ଉଚ୍ଚ ଜାତିର ଲୋକମାନଙ୍କୁ ସର୍ବପ୍ରଥମେ ସ୍ଥାନ ସଂରକ୍ଷଣ ବାବଦରେ ସହିଷ୍ଣୁ ହେବାକୁ ପଡ଼ିବ । ଏହାର ଆବଶ୍ୟକତା ଓ ଅନିର୍ବାର୍ଯ୍ୟତାକୁ ଗ୍ରହଣ କଲାପରେ ହିଁ ସେମାନେ କହିପାରିବେ ଯେ, କେବଳ ସ୍ଥାନ ସଂରକ୍ଷଣ ଦ୍ୱାରା ଜାତିପ୍ରଥାର ବିନାଶ

ଘଟିବ ନାହିଁ । ଶୂଦ୍ର-ଦଳିତମାନଙ୍କୁ ନବବ୍ରାହ୍ମଣବାଦ ବିଷୟରେ ସତର୍କ ହେବାକୁ ପଡ଼ିବ ଓ ମନେ ରଖିବାକୁ ହେବ ଯେ, ଭାରତରେ ଆର୍ଥିକ ବୈଷମ୍ୟ ଯେତିକି ବଢ଼ିବ, ସାମାଜିକ ବୈଷମ୍ୟର ଚେର ସେତିକି ଗହୀରିଆ ଓ ମଜବୁତ୍ ହେବ । ଶ୍ରେଣୀ ବୈଷମ୍ୟକୁ ବଢ଼ାଉଥିବା ବ୍ୟବସ୍ଥା ସାମାଜିକ ବୈଷମ୍ୟକୁ ଦୂର କରିପାରିବ ନାହିଁ । ଭାରତୀୟ ପରିସ୍ଥିତିରେ ପୁଞ୍ଜିବାଦ ଓ ଜାତିପ୍ରଥା ପରସ୍ପରକୁ ସାହାଯ୍ୟ କରୁଛନ୍ତି । ତେଣୁ ଜାତିପ୍ରଥା ଓ ପୁଞ୍ଜିବାଦ, ଉଭୟଙ୍କ ବିରୁଦ୍ଧରେ ସଙ୍ଘର୍ଷ ଦ୍ୱାରା ହିଁ ଜାତିପ୍ରଥାର ବିଲୋପ ହେବ । ଏହା ଏକ ବୈପ୍ଳବିକ କାର୍ଯ୍ୟ । ଧର୍ମ, ରାଜନୀତି, ଅର୍ଥ ବ୍ୟବସ୍ଥା ଓ ଶିକ୍ଷା - ଚାରିଟି ଯାକ କ୍ଷେତ୍ରରେ ମୌଳିକ ପରିବର୍ତ୍ତନର ମିଳିତ କାର୍ଯ୍ୟକ୍ରମ ହିଁ ଜାତି ବିନାଶର କାର୍ଯ୍ୟକ୍ରମ ବୋଲି ବୁଝିବାକୁ ହେବ ।

୨୧ ଡିସେମ୍ବର, ୧୯୯୫

# ନାରୀର ଦାସତ୍ୱ ଓ ମୁକ୍ତି

ପ୍ରାଚ୍ୟ ସଭ୍ୟତା ହେଉ ବା ପାଶ୍ଚାତ୍ୟ ସଭ୍ୟତା ହେଉ, ଲିଖିତ ସାହିତ୍ୟ ଯେଉଁ ଦିନଠାରୁ ମିଳୁଛି, ସେତେ ଦିନଠାରୁ ଆଜିପର୍ଯ୍ୟନ୍ତ ନାରୀକୁ ଭଲ ପାଇବା ପାଇଁ ପୁରୁଷର ଅଧୀରତା ତାହାର ଅନ୍ୟାନ୍ୟ ସବୁ ଆଗ୍ରହ ଅପେକ୍ଷା ତୀବ୍ରତର ବୋଲି ମନେହୁଏ । ଯୁଦ୍ଧ ଓ ଈଶ୍ୱରଭକ୍ତି ଭଳି ନାରୀପ୍ରେମ ମନୁଷ୍ୟର ତୀବ୍ର ଆବେଗମାନଙ୍କ ମଧ୍ୟରୁ ଗୋଟିଏ । ନାରୀକୁ ହୃଦୟର ରାଣୀ ବା ଦେବୀ ରୂପେ ଅଧିଷ୍ଠିତ କରିବା ପାଇଁ ପୁରୁଷର ଭାବବିହ୍ୱଳତା ସବୁ ସୀମାକୁ ଲଘଂନ କରିଛି । ଏହିସବୁ ଅଭିବ୍ୟକ୍ତିକୁ ପଢ଼ି ବା ଶୁଣି ମନେ ହେବ ଯେ, ନାରୀକୁ ପୁରୁଷ ଏତେ ଉଚ୍ଚ ସ୍ଥାନ ଦେଇଛି, ମୁଣ୍ଡ ଉପରେ ବସେଇଛି, ତାହାଠାରୁ ବେଶୀ କ'ଣ ଦରକାର ? ତାହା ହିଁ ବିଡ଼ମ୍ବନା । ମୁଣ୍ଡ ଉପରେ ବସେଇବା ଏକ ସ୍ୱାଭାବିକ ସମ୍ପର୍କ ନୁହେଁ । ନାରୀ ଏକ ବିରଳ ବସ୍ତୁ ନୁହେଁ । ପୁରୁଷ ଯେତିକି, ନାରୀ ମଧ୍ୟ ସେତିକି । ପ୍ରତିଦିନ ପ୍ରାୟ ସବୁଠାରେ ତାହା ସଂସ୍ପର୍ଶରେ ଆସିବାକୁ ପଡୁଛି; ସବୁ ନାରୀଙ୍କୁ ରାଣୀ ବା ଦେବୀ କରିହେବ ନାହିଁ । ଜଣେ ସ୍ତ୍ରୀକୁ ମଧ୍ୟ ସବୁବେଳେ ରାଣୀ କରି ରଖିହେବ ନାହିଁ ।

ଦରକାର ଏକ ସ୍ୱାଭାବିକ ସମ୍ପର୍କ, ଏକ ସାଧାରଣ ସମ୍ମାନର ସମ୍ପର୍କ । ବଡ଼ଲୋକଙ୍କୁ ଯେଉଁ ସମ୍ମାନ ଦିଆଯାଏ, ତାହା ଅଲଗା । ଜଣେ ସାଧାରଣ ମନୁଷ୍ୟକୁ ଯେଉଁ ସମ୍ମାନ ଦେବା କଥା ତାହା ହିଁ ଗୁରୁତ୍ୱପୂର୍ଣ୍ଣ । ସାଧାରଣ ମଣିଷଟିକୁ ସମ୍ମାନ ଦେବା ଅର୍ଥ ତାକୁ ସମତୁଲ୍ୟ ମଣିବା । ମୁଁ ଯେପରି ମଣିଷଟିଏ, ସେ ମଧ୍ୟ ସେପରି ମଣିଷଟିଏ । ମୋର ଭଲ ଅଛି, ଭୁଲ୍ ମଧ୍ୟ ଅଛି, ଗୁଣ ଅଛି, ଦୁର୍ବଳତା ମଧ୍ୟ ଅଛି । ତାହାର ମଧ୍ୟ ସେହିପରି ଅଛି । ସେ ମୋର ପୂଜ୍ୟ ନୁହେଁ କିମ୍ବା ମୋ ଠାରୁ ନୀଚ ନୁହେଁ । ମାଲିକ ନୁହେଁ କିମ୍ବା ଅଧିନସ୍ଥ ନୁହେଁ । ଏହି ସ୍ୱାଭାବିକ ସମ୍ପର୍କଟି ପୁରୁଷ ଓ ନାରୀ ମଧ୍ୟରେ ଏ ପର୍ଯ୍ୟନ୍ତ ସ୍ଥାପିତ ହୋଇପାରି ନାହିଁ ।

ପୁରୁଷ-ପୁରୁଷ ମଧ୍ୟରେ ଏହି ସମ୍ପର୍କ ଅଛି କି ? କଡ଼ା ଭାବରେ ପରୀକ୍ଷା କଲେ ଜଣାପଡ଼ିବ ଯେ, ସେତକ ମଧ୍ୟ ମନୁଷ୍ୟ ସଭ୍ୟତାରେ ହୋଇପାରି ନାହିଁ । କିନ୍ତୁ ମୋଟାମୋଟି ଭାବରେ ଦେଖିଲେ ଜଣାପଡ଼ିବ ଯେ, ନିର୍ଦ୍ଦିଷ୍ଟ ସମାଜମାନଙ୍କରେ ଏହା ଅଛି । ଯେଉଁ ଧନୀ ଦେଶମାନଙ୍କରେ ବହୁଦିନରୁ ଗଣତନ୍ତ୍ର ବ୍ୟବସ୍ଥା କାର୍ଯ୍ୟକାରୀ ହେଉଛି, ସେଠାରେ ନାଗରିକମାନଙ୍କ ମଧ୍ୟରେ ଗୋଟିଏ ପ୍ରକାରର ସାମାଜିକ ସମାନତା

ଅଛି । ବିକାଶଶୀଳ ଦେଶମାନଙ୍କରେ ମଧ୍ୟ କେତେ ପ୍ରକାରର ଗୋଷ୍ଠୀର ପରିସର ଭିତରେ ସାମାଜିକ ବିଷମତା ନଥାଏ । କେତେକ 'ପଛୁଆ' ଜାତି ବା ଆଦିବାସୀ ଜାତି ଭିତରେ ସାନବଡ଼ ଭାବନା ନଥାଏ । କିନ୍ତୁ ପୁରୁଷ-ସ୍ତ୍ରୀ ଭେଦଭାବ ସବୁଠାରେ ପ୍ରତ୍ୟେକ ସମୂହ ଭିତରେ ଥାଏ ଓ ନାରୀ ଦ୍ୱିତୀୟ ଶ୍ରେଣୀର ନାଗରିକ ଭାବେ ଗଣାଯାଏ ।

ତେଣୁ ନାରୀ ପ୍ରତି ହେଉଥିବା ଅନ୍ୟାୟ ବିଶ୍ୱବ୍ୟାପୀ ବୋଲି ଜାଣିବାକୁ ହେବ । ଏହା ସବୁଠାରୁ ପୁରାତନ ମଧ୍ୟ । ସବୁଠାରେ ନାରୀ ପରାଧୀନ ଓ ସୀମାବଦ୍ଧ । ପରାଧୀନତା ଓ ସୀମାବଦ୍ଧତାର ଅନୁପାତ ଅଲଗା ଅଲଗା ହୋଇପାରେ । ପଶ୍ଚିମର ସମୃଦ୍ଧ ଦେଶମାନଙ୍କରେ ନାରୀ ଅପେକ୍ଷାକୃତ କମ୍ ନିର୍ଯାତିତ ଓ କମ୍ ପରାଧୀନ । ସର୍ବାପେକ୍ଷା ବେଶୀ ନିର୍ଯ୍ୟାତନା ଓ ଅସହାୟତାର ଶିକାର ବୋଧେହୁଏ ଭାରତୀୟ ନାରୀ । ଭାରତ ଖଣ୍ଡ ବୋଲି ମଧ୍ୟ କୁହାଯାଇପାରେ, କାରଣ ନେପାଳ, ବଙ୍ଗଳାଦେଶ ଓ ପାକିସ୍ଥାନ୍‌ର ଅବସ୍ଥା ଏହାଠାରୁ ଭଲ ନୁହେଁ ।

ଏହି ଅବସ୍ଥାକୁ ଅଧୋଃଗତି ବୋଲି କୁହାଯାଉଥିବାରୁ ନିଜର ହୀନ ସ୍ଥିତିର ବୋଧକୁ ଲାଘବ କରିବା ପାଇଁ ଦୁଇ ରକମର ପ୍ରତିକ୍ରିୟା ଦେଖାଯାଇଥାଏ । ପ୍ରାଚୀନ ଭାରତରେ ନାରୀର ସ୍ଥାନ ଅତି ଉଚ୍ଚରେ ବା ଆଦର୍ଶସ୍ତରର ଥିଲା ବୋଲି ପ୍ରାଚୀନ ସାହିତ୍ୟର ପ୍ରସଙ୍ଗ ଓ ପଂକ୍ତିମାନଙ୍କର ଉଦାହରଣ ଦିଆଯାଏ । ଦ୍ୱିତୀୟରେ, ପାଶ୍ଚାତ୍ୟକୁ ଅନୁସରଣ କରି ଆମ ସମାଜରେ ମଧ୍ୟ ନାରୀ-ସ୍ୱାଧୀନତା ଆସିଯିବ ବୋଲି ଆଶାର ପ୍ରଚାର କରାଯାଇଥାଏ । ଏହି ଦ୍ୱିତୀୟ ପ୍ରତିକ୍ରିୟାରୁ ସାମ୍ପ୍ରତିକ ନାରୀମୁକ୍ତି ଆନ୍ଦୋଳନ ଜାତ ହୋଇଛି । ପଶ୍ଚିମରେ ଏହି ଆନ୍ଦୋଳନର ପୂର୍ବନାମ ଥିଲା 'ଫେମିନିଷ୍ଟ୍ ବା ନାରୀବାଦୀ' ଆନ୍ଦୋଳନ । ଆଧୁନିକ ନାମ ହେଉଛି ଇଂରାଜୀରେ 'ଉଇମେନ୍‌ସ୍ ଲିବ୍' ବା ନାରୀ-ମୁକ୍ତି ।

ପ୍ରାଚୀନ ଭାରତକୁ ଗୌରବାନ୍ୱିତ କରିବାର ଯେଉଁ ଚେଷ୍ଟା ଆଗରୁ ଚାଲିଥିଲା, ତାହା ବାଧାପ୍ରାପ୍ତ ହୋଇଛି । ବୈଦିକ ସାହିତ୍ୟରେ ବା ରାମାୟଣ କିମ୍ବା ମହାଭାରତ ଯୁଗରେ ନାରୀର ସ୍ଥାନ ଉଚ୍ଚ ଥିଲା ବୋଲି ସମାଜ ସଂସ୍କାରକମାନେ ଯେତେବେଳେ କହୁଥିଲେ, କେହି ତାହାର ପ୍ରତିବାଦ କରୁନଥିଲେ । ଏବେ ନାରୀ ଆନ୍ଦୋଳନ ବହୁତ ମୁଖର ହୋଇଛି । ତେଣୁ ପ୍ରାଚୀନ ଭାରତରେ ନାରୀର ସ୍ଥାନ ଅତି ଉଚ୍ଚରେ ଥିଲା ବୋଲି କହିଲେ ନାରୀ-ପ୍ରତିନିଧିମାନେ ପ୍ରତିବାଦ କରୁଛନ୍ତି । ସେମାନେ ଗୀତା, ଭାଗବତ, ଋଗ୍‌ବେଦ ଓ ମହାଭାରତ ପ୍ରଭୃତିରୁ, ତଥା ମନୁସ୍ମୃତି ଭଳି ବିଧିଗ୍ରନ୍ଥରୁ, ନାରୀ ବିରୋଧୀ ଶ୍ଳୋକମାନ ବାହାର କରି ଏହି ଦାବୀକୁ ଖଣ୍ଡନ କରୁଛନ୍ତି । ବଙ୍ଗଳାଦେଶର ତସ୍‌ଲିମା ନାସ୍‌ରୀନ୍ କେବଳ ମୁସଲ୍‌ମାନ୍ ସମାଜରେ ନାରୀର ଦୂରବସ୍ଥାର ନିନ୍ଦା କରୁନାହାନ୍ତି, ସେ ତାଙ୍କର ବୈଦିକ ପୂର୍ବ-ପୁରୁଷମାନଙ୍କର ସଙ୍କୀର୍ଣ୍ଣ ମନୋଭାବକୁ ପଦାରେ ପକାଇବା ପାଇଁ ବୈଦିକ ସାହିତ୍ୟରେ ନାରୀର ଅସମ୍ମାନଜନକ ସ୍ଥିତି ସମ୍ବନ୍ଧରେ ଏକ ଲେଖା ପ୍ରକାଶିତ କରିଛନ୍ତି । ବୃହାଦାରଣ୍ୟକ ଉପନିଷଦ୍‌ରୁ ଏକ ଉଦ୍ଧୃତି ସେ ଦେଇଛନ୍ତି, 'ଯଦି କୌଣସି ସ୍ତ୍ରୀ ପତିର ସମ୍ଭୋଗ ପାଇଁ ଇଚ୍ଛାର ବିରୋଧ କରେ, ତାହାହେଲେ ପୁରୁଷ ପ୍ରଥମେ ତାକୁ ଉପହାର ଦେଇ ପ୍ରଲୋଭିତ କରିବ, ତାହାକୁ ପ୍ରତ୍ୟାଖ୍ୟାନ କଲେ ହାତ କିମ୍ବା ଲାଠିରେ ମାଡ଼ଦେଇ ତାକୁ ବଶବର୍ତ୍ତୀ କରିବ ।'

'ଯଜ୍ଞ କରିବା ସମୟରେ କୁକୁର, ଶୂଦ୍ର ଓ ନାରୀ ଆଡ଼କୁ ଚାହିଁବ ନାହିଁ' ବୋଲି କୁଆଡ଼େ ମୈତ୍ରେୟଣୀ ସଂହିତାରେ ଲିପିବଦ୍ଧ ଅଛି ।

ସମଗ୍ର ପ୍ରାଚୀନ ଭାରତକୁ ଏକକ ଭାବରେ ଧରାଯାଇପାରିବ ନାହିଁ । ଏପରିକି ସମଗ୍ର ବୈଦିକ ସାହିତ୍ୟର ରଚନା କାଳକୁ ଏକକ ବୋଲି ଧରାଯାଇପାରିବ ନାହିଁ । ମହାଭାରତର ରଚନା କାଳ ମଧ୍ୟ ଭିନ୍ନ । କେତେକ କାଳ ବିଶେଷରେ ନାରୀକୁ ଏକ ସମୁଚିତ ସ୍ଥାନ ଦେବାପାଇଁ ଓ ତାହାର ବ୍ୟକ୍ତିଗତ ଜୀବନରେ ସ୍ୱାଧୀନତା ଦେବାପାଇଁ ଚେଷ୍ଟା ହୋଇଛି । କିନ୍ତୁ ଦେଶର ସାଧାରଣ ପରିସ୍ଥିତିର ଅବନିତ ଘଟିବା ସଙ୍ଗେ ସଙ୍ଗେ ନାରୀକୁ ଅଧିନସ୍ଥ କରି ରଖିବାର ଓ ଭୋଗ୍ୟ ବସ୍ତୁରେ ପରିଣତ କରିବାର ପ୍ରବୃତ୍ତି ବଳବତ୍ତର ହୋଇଛି ।

ଯେଉଁ ଯେଉଁ କାଳଖଣ୍ଡରେ ନାରୀକୁ ଆପେକ୍ଷିକ ସ୍ୱାଧୀନତା ମିଳିଛି, ସେହି ସମୟର ପୁରୁଷ-ନାରୀ ସମ୍ପର୍କକୁ ସମାନତାର ସମ୍ପର୍କ ବୋଲି କୁହାଯାଇପାରିବ ନାହିଁ । ନାରୀକୁ ପୁରୁଷର ଅର୍ଦ୍ଧାଙ୍ଗିନୀ ବା ସହଧର୍ମିଣୀ ବୋଲି  ମାନ୍ୟତା ଦେବା ନିଶ୍ଚୟ ଏକ ଉଦାର ଦୃଷ୍ଟିର ପରିଣାମ; କିନ୍ତୁ ତାହା ଏକ ପୁରୁଷ କୈନ୍ଦ୍ରିକ ସମାଜର ଉଦାରତା । କାରଣ ନାରୀ ପୁରୁଷକୁ ନିଜର ଅର୍ଦ୍ଧାଙ୍ଗ ଅବା 'ସହଧର୍ମୀ' କହିବାର ଉପାଖ୍ୟାନ ନାହିଁ । ପାଶ୍ଚାତ୍ୟ ସମାଜରେ ଯେଉଁଭଳି ଆପେକ୍ଷିକ ସ୍ୱଚ୍ଛନ୍ଦତା ଦେଖିବାକୁ ମିଳେ, ପ୍ରାଚୀନ ଭାରତରେ କେତେ ସ୍ଥଳ ଓ କାଳ ବିଶେଷରେ ସେଇଭଳି ଆପେକ୍ଷିକ ସ୍ୱଚ୍ଛନ୍ଦତା ନାରୀର ଥିଲା ବୋଲି ବେଦ ଉପନିଷଦରୁ ପ୍ରମାଣ ଦିଆଯାଇପାରେ । କିନ୍ତୁ ମନେରଖିବାକୁ ହେବ ଯେ, ସମାନତାର ଆଦର୍ଶରୁ ଏସବୁ ବହୁତ ଦୂରରେ ।

ୟୁରୋପ୍, ଆମେରିକା ବା ଜାପାନ୍‌ରେ ନାରୀର ଚାକଚକ୍ୟ ଓ ସ୍ୱଚ୍ଛ ପରିଧାନକୁ ଦର୍ଶାଇ କୁହାଯାଇପାରିବ ନାହିଁ ଯେ, ଏହି ସବୁ ସମୃଦ୍ଧ ଦେଶମାନଙ୍କରେ ନାରୀ ଆଉ ଗୌଣ, ନିର୍ଭରଶୀଳ ବା ଅଧିନସ୍ଥ ନୁହେଁ । ତିରିଶି-ଚାଳିଶି ବର୍ଷ ପୂର୍ବେ ଭାରତର ଅଧିକାଂଶ ଶୂଦ୍ର ସମାଜ ଭିତରେ ପୁରୁଷ-ସ୍ତ୍ରୀ ସମାନତା ଯେତିକି ଥିଲା, ବିଚରଣ କରିବାର, ଛାଡ଼ପତ୍ର ଦେବାର ଓ ଆର୍ଥିକ ଭାବରେ ଆତ୍ମନିର୍ଭର ହେବାର ଯେତିକି ସୁଯୋଗ ଓ ସ୍ୱାଧୀନତା ଥିଲା, ଆଧୁନିକ ପଶ୍ଚିମ ସଭ୍ୟତାରେ ତାହାଠାରୁ ବେଶୀ ହୋଇଛି ବୋଲି କଦାପି କହିହେବ ନାହିଁ । ଇତି ମଧ୍ୟରେ ଆଧୁନିକତା ଅତ୍ୟାଧୁନିକତାର ପାହାଚକୁ ଆସିଗଲାଣି; ଏସିଆ-ଆଫ୍ରିକାର ସମାଜର ଖଣ୍ଡିଏ ଖଣ୍ଡିଏ ଅଂଶ ଏହାକୁ ଅନୁସରଣ କରି ଅତ୍ୟାଧୁନିକ ବୋଲାଇଲାଣି । କିନ୍ତୁ ନାରୀର ନିୟତି ବଦଳି ପାରୁନାହିଁ । କେତେକ କ୍ଷେତ୍ରରେ ସେ ଆହୁରି ବେଶୀ ନିର୍ଭରଶୀଳ ହୋଇଯାଉଛି ।

ତେଣୁ ବିଭିନ୍ନ ଯୁଗ ଓ ଦେଶ-ମହାଦେଶର ବ୍ୟବଧାନମାନଙ୍କୁ ଅତିକ୍ରମ କରି ଯେଉଁ ପ୍ରଶ୍ନ ବାରମ୍ବାର ଉଙ୍କିମାରେ, ତାହା ହେଉଛି-ନାରୀ-ପୁରୁଷର ବିଷମତା ସବୁବେଳେ ସବୁଠାରେ ଲାଗି ରହିଛି କାହିଁକି ? ଏହି ପ୍ରଶ୍ନର ଆଳରେ କେତେଜଣ କହିପକାଇବେ ଯେ, ଏହା ଶାଶ୍ୱତ ଓ ନୈସର୍ଗିକ । ପ୍ରକୃତି ହିଁ ନାରୀକୁ ଏପରି ଭାବରେ ଗଢ଼ିଛି ଯେ, ସମାଜର ଯେତେ ଉନ୍ନତି ଘଟିଲେ ମଧ୍ୟ ସ୍ତ୍ରୀର ଉନ୍ନତି ଗୋଟିଏ ସ୍ତରର

ଉପରକୁ ଉଠିପାରିବ ନାହିଁ । ସେ ପୁରୁଷ ଭଳି ସ୍ୱତନ୍ତ୍ର ଓ ପୁରୁଷର ସମାସ୍କନ୍ଦ ହୋଇପାରିବ ନାହିଁ । ଏହି ପ୍ରଶ୍ନର ଯେପରି ଭାବରେ ମୌଳିକ ଚର୍ଚ୍ଚା ହେବାକଥା, ତାହା ହୁଏନାହିଁ ।

ସ୍ତ୍ରୀର ଯେଉଁସବୁ ଅଯୋଗ୍ୟତା ବା ଅକ୍ଷମତାକୁ ଉଲ୍ଲେଖ କରି ସମାଜରେ ତାହାର ଗୌଣ ସ୍ଥିତିକୁ ଯଥାର୍ଥ ବୋଲି ପ୍ରତିପାଦିତ କରାଯାଇଥାଏ, ସେସବୁକୁ ତିନିଭାଗରେ ବିଭକ୍ତ କରାଯାଇପାରେ । କେତେକ ଅକ୍ଷମତା ଅଛି, ଯାହା ସ୍ପଷ୍ଟ ଭାବରେ ପ୍ରକୃତି ଦତ୍ତ । କିନ୍ତୁ ଅଧିକାଂଶ ଅକ୍ଷମତା ବା ଅଯୋଗ୍ୟତା ହେଉଛି ସମାଜ ପ୍ରଦତ୍ତ । ବହୁକାଳରୁ ଓ ସବୁ ଦେଶରେ ସ୍ତ୍ରୀମାନେ ଏହିସବୁ ଯୋଗ୍ୟତା ବା କ୍ଷମତା ହରାଇ ବସିଥିବାରୁ, ଗୁଡ଼ାଏ ଉଦାହରଣ ଦେଇ ତର୍କ କରିହେବ ଯେ, ଏହି ଦୁର୍ବଳତାଗୁଡ଼ିକ ନୈସର୍ଗିକ ଓ ସହଜାତ । ସାମାଜିକ ବ୍ୟବସ୍ଥା ଓ ସାଂସ୍କୃତିକ ଅବଧାରଣା ଗୁଡ଼ିକର ଚାପରେ ଏହି ଅକ୍ଷମତାଗୁଡ଼ିକ ନାରୀର ପ୍ରକୃତିର ସ୍ୱାଭାବିକ ଅଙ୍ଗ ବୋଲି ମନେହୁଏ । ଅଳ୍ପ କେତେକ କ୍ଷେତ୍ର ଅଛି, ଯାହା ବିଷୟରେ ସ୍ଥିର କରିହେବ ନାହିଁ ଯେ, ନାରୀକୁ ପୂର୍ଣ୍ଣ ସୁଯୋଗ ମିଳିଲେ, ସେ ଏସବୁ କାର୍ଯ୍ୟରେ ପୁରୁଷର ସମାସ୍କନ୍ଦ ସର୍ବୋଚ୍ଚ ସ୍ତରରେ ମଧ୍ୟ ହୋଇପାରିବ । ଏହି ତିନି ପ୍ରକାରର ଅକ୍ଷମତାକୁ ବିଚାରକୁ ନେବା ପୂର୍ବରୁ ସ୍ପଷ୍ଟ ହୋଇଯିବା ଦରକାର ଯେ, ଭିନ୍ନତାକୁ ଅକ୍ଷମତା ବୋଲି ଭାବିବା ଏକ ସାଧାରଣ ପ୍ରବୃତ୍ତି । ଏହା ଆମ ଶିକ୍ଷା ପଦ୍ଧତିରୁ ଆସିଛି । ଜଣେ ବିଦ୍ୟାର୍ଥୀ ଇଂରାଜୀ ସାହିତ୍ୟରେ ଧୁରନ୍ଧର, କିନ୍ତୁ ଓଡ଼ିଆ ଭଲ ଲେଖିପାରେ ନାହିଁ । ଅନ୍ୟ ଜଣେ ଇଂରାଜୀ ଭଲ ଲେଖେ ନାହିଁ, ଅଥଚ ଓଡ଼ିଆରେ ଉଚ୍ଚକୋଟିର କବିତା ଲେଖେ । ସ୍କୁଲ୍‌ରେ ଦ୍ୱିତୀୟ ବିଦ୍ୟାର୍ଥୀ ଜଣକ ମୂର୍ଖ ବା ପଛୁଆ ବୋଲି ଅଭିହିତ ହେବ । ନାରୀର ସ୍ୱଭାବରେ କେଉଁ କେଉଁ ଭିନ୍ନ ପ୍ରତିଭା ନିହିତ ରହିଛି, ଯାହା ଏକ ବିକଳ୍ପ ସମାଜ ବ୍ୟବସ୍ଥାରେ ପ୍ରତିଷ୍ଠା ଲାଭ କରିବ, ତାହା ଏକ ଅନ୍ୟ ଚର୍ଚ୍ଚାର ବିଷୟ । ଏ ପର୍ଯ୍ୟନ୍ତ ସେ ଦିଗରେ ବିସ୍ତୃତ ଅଧ୍ୟୟନ ହୋଇପାରି ନାହିଁ ।

ହିଂସାତ୍ମକ ଆକ୍ରମଣ ନିମନ୍ତେ ଯେଉଁ ମାଂସପେଶୀଗୁଡ଼ିକର ବଳ ଦରକାର ହୁଏ, ତାହା ନାରୀ ପାଖରେ ଅଳ୍ପ ପରିମାଣରେ ଅଛି । ସେ ଯେତେବେଳେ ମାତୃତ୍ୱର ଅବସ୍ଥାରେ ଥାଏ, ସେତେବେଳେ ଏହି ଅକ୍ଷମତା ଆହୁରି ଅଧିକ ହୁଏ । ଏହା ହେଉଛି ନାରୀର ମୂଳ ଅକ୍ଷମତା – ଏହା ହୁଏତ ତାହାର ଏକମାତ୍ର ଅକ୍ଷମତା । ଯେଉଁ ସଭ୍ୟତାରେ ହିଂସାତ୍ମକ ଆକ୍ରମଣର କ୍ଷମତାକୁ ମହନୀୟ ବୋଲି ଧରାଯାଏ ଓ କଳାତ୍ମକ ମାଧ୍ୟମରେ ଗୌରବାନ୍ୱିତ କରାଯାଏ, ସେହି ସଭ୍ୟତାରେ ନାରୀକୁ ଅକ୍ଷମ ବୋଲି କୁହାଯିବା ସ୍ୱାଭାବିକ । ବହୁତ ରକମର କାର୍ଯ୍ୟ ଅଛି, ଯାହା ଶାରୀରିକ-ଶକ୍ତି ଆଧାରିତ । କେତେକ କାର୍ଯ୍ୟକୁ ସ୍ଥୂଳ ଭାବରେ ଓ ଅନ୍ୟ କେତେକ କାର୍ଯ୍ୟକୁ ସୂକ୍ଷ୍ମ ଭାବରେ ହିଂସା ଶକ୍ତି ପ୍ରଭାବିତ କରିଥାଏ । ହୁଏତ ବଡ଼ ଆକାରର ବ୍ୟବସାୟିକ ସଙ୍ଗଠନରେ ସଫଳତା ପାଇଁ ମଧ୍ୟ ହିଂସାର ଏକ ନିର୍ଣ୍ଣାୟକ ଭୂମିକା ରହୁଛି ।

କିନ୍ତୁ ଅଧିକାଂଶ 'ନାରୀ-ସୁଲଭ ଅକ୍ଷମତା' ହେଉଛି ସମାଜ ପ୍ରଦତ୍ତ । ଅତ୍ୟଧିକ ଲଜ୍ଜାଶୀଳତା, କେତେକ ବିଶେଷ ପ୍ରକାରର ଈର୍ଷା ପରାୟଣତା, ଭୟ, ନିରାପତ୍ତା ପାଇଁ ଅତ୍ୟଧିକ ଆଗ୍ରହ, ବେଶଭୂଷା ଓ ରୂପସଜ୍ଜା ପାଇଁ ଅଧିକ ଆଗ୍ରହ, ଏଗୁଡ଼ିକ ହେଉଛି ସାମାଜିକ ପରିସ୍ଥିତି, ଦୀର୍ଘକାଳର ଅଭ୍ୟାସ ଓ ପ୍ରଚଳିତ ମୂଲ୍ୟବୋଧର ପରିଣତି ।

ଏଗୁଡ଼ିକ ଗୋଟିଏ ଦିନରେ ଉଭେଇଯିବ ନାହିଁ । ସାମାଜିକ ବ୍ୟବସ୍ଥା ଓ ସାଂସ୍କୃତିକ ଅବଧାରଣାଗୁଡ଼ିକର ପରିବର୍ତ୍ତନ ନହେବା ପର୍ଯ୍ୟନ୍ତ ଜଣେ ହାରାହାରି ସ୍ତ୍ରୀଲୋକ ଏହିସବୁ ଅକ୍ଷମତାରୁ ମୁକ୍ତ ହୋଇପାରିବ ନାହିଁ । କେବଳ ବ୍ୟକ୍ତ ବିଶେଷମାନେ ନିଜର ଇଚ୍ଛାଶକ୍ତି ଓ ସାଧନା ବଳରେ ବା କୌଣସି ଏକ ଗୁରୁଜନ ବା ପିତାମାତାଙ୍କ ଦ୍ୱାରା ପ୍ରୋତ୍ସାହିତ ହୋଇ ନିଜର ଚରିତ୍ରରୁ ଏହିସବୁ 'ନାରୀସୁଲଭ' ଗୁଣକୁ ଦୂର କରିପାରନ୍ତି । ତଥାପି ଅନେକ ସମୟରେ ସେମାନଙ୍କୁ ପ୍ରତିକୂଳ ପରିସ୍ଥିତିର ସାମନା କରିବାକୁ ପଡ଼ିପାରେ ।

କେତେକ ମନସ୍ତତ୍ତ୍ୱବିତ୍ କହନ୍ତି ଯେ, ଯୌନ ସମ୍ଭୋଗ ବେଳେ ନାରୀର ଏକ ନିଷ୍କ୍ରିୟ ଭୂମିକା ରହୁଥିବାରୁ ନାରୀ ଉପରେ ତାହାର ଏକ ଗଭୀର ମନସ୍ତାତ୍ତ୍ୱିକ ପ୍ରଭାବ ପଡ଼ିଥାଏ ଓ ସମାଜରେ ମଧ୍ୟ ଏହି ନିଷ୍କ୍ରିୟ ଭୂମିକା ହିଁ ତାହା ପାଇଁ ଉଦ୍ଦିଷ୍ଟ ବୋଲି ନିଜର ଅବଚେତନରେ ଗ୍ରହଣ କରିଥାଏ । ଏହା ଏକ ଭ୍ରାନ୍ତିପୂର୍ଣ୍ଣ ସିଦ୍ଧାନ୍ତ । କିଏ ଅଧିକ ସକ୍ରିୟ ଓ କିଏ ନିଷ୍କ୍ରିୟ-ଏ ବିଷୟରେ ଏକ ଭୁଲ ଧାରଣା ରହିଛି ଯେ, ଆକ୍ରମକ ବା ହିଂସାତ୍ମକ କାର୍ଯ୍ୟ ହିଁ ବେଶୀ ସକ୍ରିୟ । ଆକ୍ରାମକତା ସକ୍ରିୟତାର ଏକ ଆଦର୍ଶ ବା ନମୁନା (ମଡ଼େଲ୍) ହୋଇପଡ଼େ ଓ ଯୌନ ସମ୍ଭୋଗରେ ମଧ୍ୟ ଯେଉଁପଟେ ସେଭଳି ଭାବଭଙ୍ଗୀ ବେଶୀ ଥାଏ, ତାକୁ ସକ୍ରିୟ ଓ ଅନ୍ୟକୁ ନିଷ୍କ୍ରିୟ ବୋଲି କୁହାଯାଏ । ଅନେକ ପ୍ରକାରର ଉଦାହରଣରୁ ଜଣାପଡ଼ିବ ଯେ ଘଟଣାଟି ଏହାର ବିପରୀତ ମଧ୍ୟ ହୋଇପାରେ । ଯୌନ ଲୀଳାରେ ନାରୀର ଭାବଭଙ୍ଗୀ ଆକ୍ରାମକ ଢ଼ଙ୍ଗର ନହେଲେ ମଧ୍ୟ ସେ ନିଷ୍କ୍ରିୟ ନୁହେଁ, ହୁଏତ ତାହାର ସୂକ୍ଷ୍ମ ତନ୍ତୁଗୁଡ଼ିକ ବେଶୀ ସକ୍ରିୟ ଥାଏ । ଯେଉଁଠି ଭୟ, ଅନିଚ୍ଛା ଓ ଅହେତୁକ ଲଜ୍ଜାରେ ଗ୍ରସ୍ତ ହୋଇ କୌଣସି ନାରୀ ଯୌନକ୍ରିୟାରେ ଜଡ଼ିତ ହୁଏ, ସେଠାରେ ସେ ନିଷ୍କ୍ରିୟ ରହିବାକୁ ଚେଷ୍ଟା କରେ । ଏହା ଏକ ପ୍ରକାରର ଅସ୍ୱାଭାବିକ ଯୌନକ୍ରିୟା ।

ଗତ ତିନିଚାରି ହଜାର ବର୍ଷ ମଧ୍ୟରେ ସଭ୍ୟତା ଓ ସାମାଜିକ ବ୍ୟବସ୍ଥାର ଅନେକ ପରିବର୍ତ୍ତନ ହୋଇଛି, ସଂସ୍କୃତିମାନଙ୍କର ପରିବର୍ତ୍ତନ ଘଟୁଛି । କିନ୍ତୁ ପୁରୁଷ କୈନ୍ଦ୍ରିକ ସମାଜ ଓ ସଂସ୍କୃତିରେ ମୌଳିକ ପରିବର୍ତ୍ତନ ହୋଇନାହିଁ । ମହାଭାରତ ଯୁଗରୁ ଆଜିପର୍ଯ୍ୟନ୍ତ ପୁରୁଷ-କୈନ୍ଦ୍ରିକ ମୂଲ୍ୟବୋଧଗୁଡ଼ିକ ବଳବତ୍ତର ଓ ବ୍ୟାପକ ହୋଇଆସିଛି । ହିଂସାର ପ୍ରତିଷ୍ଠା ଅଧିକ ବଢ଼ିଛି; ଖେଳ ଓ କଳା କ୍ଷେତ୍ରରେ ତାହା ବ୍ୟାପ୍ତ ହେଉଛି ।

ଏଙ୍ଗେଲ୍ସ୍‌ଙ୍କର ଏହି ପ୍ରତିପାଦନ ସତ୍ୟ ବୋଲି ମନେହୁଏ ଯେ, ବ୍ୟକ୍ତିଗତ ସମ୍ପତ୍ତିକୁ ଭିତ୍ତିକରି ଯେଉଁ ପରିବାର ଓ ଆର୍ଥିକ ସମାଜର ଗଠନ ହେଲା, ତାହା ଫଳରେ ମାତୃ କୈନ୍ଦ୍ରିକ ସମାଜର ଲୋପ ହେଲା ଓ ନାରୀର ସ୍ୱାଧୀନତା ମଧ୍ୟ ତୀବ୍ର ଗତିରେ ହ୍ରାସ ପାଇଲା । ବ୍ୟକ୍ତିଗତ ସମ୍ପତ୍ତିକୁ ବଢ଼ାଇବା ପାଇଁ ଯେଉଁସବୁ କୌଶଳ ଓ ଆଚରଣ ଦରକାର, ତାହା ହିଂସାତ୍ମକ ଆଚରଣ ସଙ୍ଗେ ସମାନ । ତାହା ଛଡ଼ା ସମ୍ପତ୍ତିର ରକ୍ଷା ଓ ପରିବର୍ଦ୍ଧନ ନିମନ୍ତେ ପ୍ରତ୍ୟକ୍ଷ ହିଂସା ଦରକାର ହୁଏ । ଆଧୁନିକ ବ୍ୟବସାୟିକ କମ୍ପାନୀମାନଙ୍କର କାର୍ଯ୍ୟକଳାପକୁ ଅନୁଧ୍ୟାନ କଲେ ଏହା ସ୍ପଷ୍ଟ ହୋଇଯିବ । ପୁରୁଷ-କୈନ୍ଦ୍ରିକ ପରିବାର ବ୍ୟବସ୍ଥା ଅସ୍ୱାଭାବିକ ନୁହେଁ କି ? ଗୋଟିଏ ସ୍ତ୍ରୀର ଅନେକ ପତି ବା ପ୍ରେମିକ ହୋଇପାରନ୍ତି, କିନ୍ତୁ ସନ୍ତାନର କେବଳ ଗୋଟିଏ ମା' । ମା'ର ପରିଚୟ

ପାଇବା ସହଜ । ତେଣୁ ସ୍ୱାଭାବିକ ବିକାଶକ୍ରମେ ପରିବାର ମାତୃପ୍ରଧାନ ହୋଇଥାନ୍ତା । ତାହା ନହୋଇ ପିତୃ-କୈନ୍ଦ୍ରିକ ହେଲା କାହିଁକି ? ଏହାର ଏକମାତ୍ର କାରଣ ହେଉଛି ସମ୍ପତ୍ତି-ବ୍ୟବସ୍ଥା ଓ ତତ୍‌ସଙ୍ଗେ ଜଡ଼ିତ ହିଂସାର ପ୍ରାଧାନ୍ୟ । ଯେଉଁମାନେ ପୁରୁଷ-କୈନ୍ଦ୍ରିକ ସମାଜର ପରିସମାପ୍ତି ଚାହାନ୍ତି, ସେମାନଙ୍କୁ ଏ ବିଷୟରେ ଚିନ୍ତା କରିବାକୁ ହେବ ଯେ, ପ୍ରଚଳିତ ସମ୍ପତ୍ତି-ବ୍ୟବସ୍ଥାକୁ ନବଦଳେଇ ପୁରୁଷ ନାରୀ ସମ୍ପର୍କରେ ସମାନତା ଆସିବ କିପରି ? ଏହି ସମ୍ପତ୍ତି ବ୍ୟବସ୍ଥାକୁ ବଦଳାଇବା ପାଇଁ ସମାଜବାଦ ସ୍ୱପ୍ନ ରଖିଥିଲା । ଏହି ସ୍ୱପ୍ନ ଆଜି ଘଟଣାଚକ୍ରରେ ପଡ଼ି ଧୂମିଳ ହୋଇଯାଇଛି । ନାରୀ-ମୁକ୍ତି ଆନ୍ଦୋଳନକୁ ତାହାର ତାର୍କିକ ପରିଣାମ ପର୍ଯ୍ୟନ୍ତ ନେଇଯିବା ପାଇଁ ହୁଏତ ପୁଣି ଥରେ ଏକ ସମତାବାଦୀ ସଭ୍ୟତାର ସ୍ୱପ୍ନକୁ ପୁନର୍ଜୀବିତ କରିବାକୁ ପଡ଼ିବ । ଏକ ସମତାବାଦୀ ସଭ୍ୟତାରେ ହିଁ ହିଂସାପ୍ରବଣ ସଂସ୍କୃତିର ସମାପ୍ତି ଘଟିବ । ଶାରୀରିକ ଅସୁରକ୍ଷା ଓ ଆର୍ଥିକ ଅସୁରକ୍ଷାର ଅବସାନ ପରେ ନାରୀତ୍ୱ ଏକ ମୂଲ୍ୟ ରୂପେ ପ୍ରତିଷ୍ଠିତ ହେବ । ଆଜି ନାରୀତ୍ୱର ମୂଲ୍ୟ ଏପରି ଯେ, କାପୁରୁଷକୁ ହିଁ ମାଇଚିଆ କୁହାଯାଏ । ଆଧୁନିକ ସମ୍ପତ୍ତି ବ୍ୟବସ୍ଥା ଓ ହିଂସାର ସାମାଜିକ-ସାଂସ୍କୃତିକ ମୂଲ୍ୟକୁ ଅପରିବର୍ତ୍ତିତ ରଖି ନାରୀ-ପୁରୁଷର ସମାନତା କେବେ ମଧ୍ୟ ସମ୍ଭବ ନୁହେଁ ।

ଅତଏବ ଯେଉଁ ପାଶ୍ଚାତ୍ୟ ସମାଜକୁ ଅନୁସରଣ କରି ଆମେ ଆମ ସମାଜର ଆଧୁନିକୀକରଣ କରୁଛୁ, ତାହା ଏକ ଛଦ୍ମ ଓ ଭ୍ରାନ୍ତି । ଭାରତୀୟ ସମାଜରେ ନାରୀର ସମ୍ପୂର୍ଣ୍ଣ ଅସହାୟ ଅବସ୍ଥାକୁ ଦେଖିବା ପରେ ୟୁରୋପ୍, ଜାପାନ୍ ଓ ଆମେରିକାରେ ନାରୀମାନଙ୍କର ଚାକଚକ୍ୟ, ଶିକ୍ଷା, ଛାଡ଼ପତ୍ର ଓ ସ୍ୱଳ୍ପ ପରିଧାନକୁ ଦେଖି ଏହି ଭ୍ରମ ସୃଷ୍ଟି ହୋଇପାରେ ଯେ, ସେଠାରେ ନାରୀ ପୁରୁଷର ସମସ୍କନ୍ଦ ହୋଇଯାଇଛି ଓ ଆମ ସମାଜର ଆଧୁନିକୀକରଣ ଫଳରେ ଏଠାରେ ମଧ୍ୟ ତାହା ହେବ । ଏହାହିଁ ଏହି ଯୁଗର ମହାନ ଭ୍ରାନ୍ତି ଓ ତୃତୀୟ ବିଶ୍ୱର ଟ୍ରାଜେଡ଼ି । ସମୃଦ୍ଧ ଶିଳ୍ପ ପ୍ରଧାନ ଦେଶମାନଙ୍କରେ ପୁରୁଷ ଓ ନାରୀ ସମାନତା ଏପର୍ଯ୍ୟନ୍ତ ଆସିନାହିଁ । ଆସିବାର ସମ୍ଭାବନା ମଧ୍ୟ ନାହିଁ । ଯେଉଁ ସମୟରେ ରେଗାନ୍ ଆମେରିକାର ରାଷ୍ଟ୍ରପତି ଥିଲେ, ସେଇ ସମୟରୁ ବିଶ୍ୱରେ ଅତ୍ୟାଧୁନିକତାର ଯୁଗ ଆରମ୍ଭ ହୋଇଛି । ଏହି ନୂଆ ଯୁଗରେ ଅର୍ଥନୀତି ଅଧିକ ଦକ୍ଷିଣପନ୍ଥୀ ହେଉଛି ଓ ନାରୀର ସ୍ଥାନ ମଧ୍ୟ ତଳକୁ ଖସୁଛି । ରେଗାନ୍‌ଙ୍କ ରାଜତ୍ୱକାଳର ସମୀକ୍ଷାରୁ ନାରୀର ପ୍ରତିଷ୍ଠାରେ ହ୍ରାସ ହେବାକଥା ପ୍ରମାଣିତ ହୋଇଛି ।

ଗହଣା ପ୍ରିୟତାରେ ବୃଦ୍ଧି, ବଳାତ୍କାରରେ ବୃଦ୍ଧି, ବେଶ୍ୟାମାନଙ୍କର ସଂଖ୍ୟାରେ ବୃଦ୍ଧି ଓ ବେକାରୀ ସଂଖ୍ୟାରେ ବୃଦ୍ଧି ସାଙ୍ଗକୁ ମହତ୍ୱପୂର୍ଣ୍ଣ ପଦପଦବୀରେ ମହିଳାମାନଙ୍କ ଅନୁପାତରେ ସ୍ଥିରତା, ଏସବୁ ସୂଚକ କେବଳ ବିକାଶଶୀଳ ଦେଶମାନଙ୍କ ପାଇଁ ପ୍ରଯୁଜ୍ୟ, ତାହା ନୁହେଁ । ୟୁରୋପ୍, ଆମେରିକାରେ ମଧ୍ୟ ଏହା ପ୍ରଯୁଜ୍ୟ । ଆମେରିକା ଓ ଜାପାନ୍‌ରେ ମହିଳା ଇଞ୍ଜିନିୟର୍‌ମାନଙ୍କର ଅନୁପାତ ଭାରତଠାରୁ ମଧ୍ୟ କମ୍ । ଆମେରିକାରେ ଦାରିଦ୍ର୍ୟ ସୀମା ତଳେ ରହୁଥିବା ଲୋକଙ୍କ ମଧ୍ୟରେ ନାରୀମାନଙ୍କର ଅନୁପାତ ବେଶୀ । ତାହା ଛଡ଼ା ନାରୀମାନଙ୍କର ଯେଉଁ ଚଞ୍ଚଳତା ଓ ଚାକଚକ୍ୟ ପଶ୍ଚିମରେ ବୃଦ୍ଧି ପାଇଛି, ତାହାର

ମୂଳଦୁଆ ମୂଲ୍ୟବୋଧର ସ୍ୱତଃ ବିକାଶ ନୁହେଁ । ତାହା ସମୃଦ୍ଧି ଆଧାରିତ । ତେଣୁ କୌଣସି ଆର୍ଥିକ ସଙ୍କଟ ଆସିବା ମାତ୍ରେ ନାରୀ ସର୍ବାଗ୍ରେ ଶିକାର ହେଉଛି । ଭାରତର ମହାନଗରୀମାନଙ୍କର ଧନୀ ଇଲାକାଗୁଡ଼ିକରେ ଯେଉଁ ନାରୀ ସ୍ୱାଧୀନତାର ଦୃଶ୍ୟ ସବୁ ଦେଖାଯାଏ, ତାହା ମଧ୍ୟ ସମୃଦ୍ଧି ଆଧାରିତ । ୟୁରୋପ୍ ସଦୃଶ ଏକ କ୍ଷୁଦ୍ର ଆଧୁନିକ ଶ୍ରେଣୀ ତିଆରି କରିବା ଉଦ୍ଦେଶ୍ୟରେ ଭାରତର ନିମ୍ନ ମଧ୍ୟବିତ୍ତ ଓ ଦରିଦ୍ର ଶ୍ରେଣୀଗୁଡ଼ିକୁ ଆହୁରି ଅସହାୟ ଅବସ୍ଥାରେ ରଖିବାକୁ ହେବ ଓ ଦରିଦ୍ର ଶ୍ରେଣୀମାନଙ୍କରେ ସବୁଠାରୁ ଦୁର୍ଭାଗ୍ୟପୂର୍ଣ୍ଣ ଜୀବନ ନାରୀର ହିଁ ହେବ । ଅନ୍ୟ ପକ୍ଷରେ ସମୃଦ୍ଧ ହେଉଥିବା ଶ୍ରେଣୀମାନେ ନାରୀକୁ ଭୋଗ୍ୟବସ୍ତୁ ରୂପେ ଦେଖିବାର ପ୍ରବୃତ୍ତି ବଢ଼ି ଚାଲିଛି ।

ପ୍ରାୟ ପଚାଶବର୍ଷ ପୂର୍ବେ ବେଶ୍ୟାବୃତ୍ତି ଏକ ଘୃଣିତ ପ୍ରଥା ରୂପେ ନିନ୍ଦିତ ହେଉଥିଲା । ଆର୍ଥିକ ଓ ସାମାଜିକ ଅସୁରକ୍ଷା ଏଥିପାଇଁ ଦାୟୀ ବୋଲି କୁହାଯାଉଥିଲା । ଯଦି ଆର୍ଥିକ ଅସୁରକ୍ଷା ରହିବ ନାହିଁ ଓ 'ଅବୈଧ ମାତୃତ୍ୱ' ଭଳି କାର୍ଯ୍ୟ ଫଳରେ କେହି ସମାଜରୁ ବହିଷ୍କୃତ ହେବେ ନାହିଁ, ତାହାହେଲେ ସଭ୍ୟ ସମାଜରୁ ବେଶ୍ୟାବୃତ୍ତି ନିଶ୍ଚିହ୍ନ ହୋଇଯିବ ବୋଲି ଆଶା କରାଯାଉଥିଲା । କିନ୍ତୁ ପଶ୍ଚିମର ସମୃଦ୍ଧ ଦେଶମାନେ ଏହି ଆଶାକୁ ଧୂଳିସାତ୍ କରିଛନ୍ତି । ବିଶ୍ୱବ୍ୟାପୀ ଶୋଷଣ ଚଳାଇ ସେମାନେ ଏପରି ଏକ ଜୀବନ ପଦ୍ଧତିକୁ ପ୍ରୋତ୍ସାହିତ କରୁଛନ୍ତି, ଯାହାର ମୂଳମନ୍ତ୍ର ହେଉଛି ଭୋଗ ଓ ବିଳାସ । ବେଶ୍ୟାବୃତ୍ତିକୁ ନବଜୀବନ ପ୍ରଦାନ କରିବା ପାଇଁ ନୂଆ ନୂଆ ନାମରେ ବିଳାସ ଭବନ, ପଞ୍ଚତାରକା ହୋଟେଲ୍ ପ୍ରଭୃତି ତିଆରି କରୁଛନ୍ତି । ପର୍ଯ୍ୟଟନ ଶିଳ୍ପକୁ ଦରିଦ୍ର ଦେଶ ପାଇଁ ସମୃଦ୍ଧିର ବାଟ ବୋଲି ଗୌରବାନ୍ୱିତ କରାଯାଉଛି । ବେଶ୍ୟାବୃତ୍ତିରେ ଆଉ କିଛି ଅନୈତିକତା ଥାଉ ବା ନଥାଉ, ନାରୀଜାତି ପାଇଁ ଏହା ଦାସତ୍ୱର ଚିହ୍ନ । ନାରୀ ଦାସତ୍ୱର ଯେଉଁ ତିନୋଟି ମୁଖ୍ୟ ଜଞ୍ଜିର ଅଛି, ତାହା ହେଉଛି ଶାରୀରିକ ଅସୁରକ୍ଷା, ଆର୍ଥିକ ଅସୁରକ୍ଷା ଓ ଭୋଗବସ୍ତୁ ରୂପେ ନାରୀର ବ୍ୟବହାର ।

ଏକ ନିର୍ଦ୍ଦିଷ୍ଟ ବୟସକାଳରେ କିମ୍ବା ଏକ ନିର୍ଦ୍ଦିଷ୍ଟ ପ୍ରକାରର ପରିବେଶ ଓ ପରିସ୍ଥିତିରେ ପୁରୁଷ ଓ ସ୍ତ୍ରୀ ଏକାଠି ହେଲେ ଉଭୟଙ୍କ ମଧ୍ୟରେ ଏକ ଆନନ୍ଦାନୁଭୂତି ହୋଇଥାଏ, ଏହା ହେଉଛି ଲିଙ୍ଗ ଆଧାରିତ ସୁଖ । ଏହି ସୁଖକୁ ଭୋଗିବାର ଦୁଇଟି ଉପାୟ ଅଛି । ପ୍ରଥମ ଉପାୟ ହେଲା, ଦୁହେଁ ମିଶି, ସାଙ୍ଗ ହୋଇ ମିଳନର ସୁଖକୁ ତଥା ପରିପାର୍ଶ୍ୱକୁ ତଥା ଜୀବନକୁ ଉପଭୋଗ କରିବା । ଦ୍ୱିତୀୟ ଉପାୟ ହେଉଛି, ଜଣେ ଅନ୍ୟ ଜଣକୁ ଭୋଗ୍ୟ ମନେକରି ଯେଭଳି ଭାବରେ କୌଣସି ବସ୍ତୁର ଉପଭୋଗ କରାଯାଏ, ସେପରି ଭାବରେ ଅର୍ଥାତ୍ ସେଇ ମନୋବୃତ୍ତି ନେଇ ଉପଭୋଗ କରିବା । ଏହି ପ୍ରଣାଳୀରେ ପୁରୁଷ ଭୋଗକର୍ତ୍ତା ଓ ସ୍ତ୍ରୀ ଭୋଗ୍ୟ ସାମଗ୍ରୀ ହୁଏ । ସାମନ୍ତବାଦ ପରି ଆଧୁନିକ ସଭ୍ୟତା ମଧ୍ୟ ଏହି ଦ୍ୱିତୀୟ ପ୍ରକାରର ସୁଖଭୋଗକୁ ଏତେ ବେଶୀ ଉତ୍ସାହିତ କରୁଛି ଯେ, ସାମନ୍ତବାଦୀ ଭୋଗ ବ୍ୟବସ୍ଥା ଏହି ଆଧୁନିକ ବ୍ୟବସ୍ଥା ଆଗରେ ମଳିନ ଦିଶେ ।

ଆଧୁନିକୀକରଣର ଏହି ନାରୀ-ବିରୋଧୀ ଦିଗ ପ୍ରତି ନାରୀ-ଆନ୍ଦୋଳନ ସଚେତ ହେଉଥିବାର ଲକ୍ଷ୍ୟ କରାଯାଉଛି । ବିଜ୍ଞାପନରେ ସ୍ତ୍ରୀ ପ୍ରତୀକର ବ୍ୟବହାର ବିରୁଦ୍ଧରେ

ବାରମ୍ବାର ସ୍ୱର ଉତ୍ତୋଳନ ହେଉଛି । ବିଶ୍ୱବିଦ୍ୟାଳୟ ଶିକ୍ଷାର ପ୍ରସାର ଓ ଆଧୁନିକତା ଫଳରେ ଆପେ ଆପେ ସ୍ତ୍ରୀ ମୁକ୍ତି ଆସିଯିବ ବୋଲି ଶିକ୍ଷିତ ସମାଜର ଯେଉଁ ଧାରଣା ଅଛି, ତାହା ବିଶ୍ୱାସଯୋଗ୍ୟ ନୁହେଁ । ଭୋଗବାଦ ଓ ଉପଭୋକ୍ତା ସଂସ୍କୃତିର ବ୍ୟାପକ ଓ ମୌଳିକ ବିରୋଧର ଆଭିମୁଖ୍ୟ ଏପର୍ଯ୍ୟନ୍ତ ସ୍ପଷ୍ଟ ହେଉନାହିଁ । ଜୀବନର ସୁଖ କ'ଣ ? ଆନନ୍ଦ କହିଲେ କ'ଣ ବୁଝାଏ ? ସୌନ୍ଦର୍ଯ୍ୟ କାହାକୁ କହନ୍ତି ?

ଏସବୁର ପୁରୁଷ ଭାଷ୍ୟ ବହୁତ ହୋଇଛି । ଅଶ୍ଳୀଳ ଢଙ୍ଗରେ ମଧ୍ୟ ଓ ଆଧ୍ୟାତ୍ମିକ ଢଙ୍ଗରେ ମଧ୍ୟ । ଏଗୁଡ଼ିକର ନାରୀ ଭାଷ୍ୟ ଦରକାର । ସ୍ୱାସ୍ଥ୍ୟ, ଶାରୀରିକ ପରିଚ୍ଛନ୍ନତା, ସମ୍ୟକ ପରିଧାନ ଓ ଗତିଶୀଳତା, ଏକ ଯୁବତୀ ନାରୀର ସୌନ୍ଦର୍ଯ୍ୟ ପାଇଁ ଏହାଠାରୁ ଅତିରିକ୍ତ ପ୍ରସାଧନର ଦାବୀ କରିବା ମୟୂରପୁଚ୍ଛରେ ରଙ୍ଗ ବୋଳି ତାକୁ ଅଧିକ ସୁନ୍ଦର କରିବା ସଦୃଶ ହେବ । ଭୋଗ୍ୟବସ୍ତୁ ହେବା ବିରୁଦ୍ଧରେ ନାରୀର ଯଦି ପୂର୍ଣ୍ଣପ୍ରାଣ ବିଦ୍ରୋହ ହୁଏ, ଆଧୁନିକ ସଭ୍ୟତା ଦୋହଲି ଯିବ । ଏହି ଦୃଷ୍ଟିରୁ ନାରୀ-ମୁକ୍ତି ଆନ୍ଦୋଳନରେ ଏକ ବଡ଼ ଅଭାବ ରହିଯାଉଛି ।

ଦେଶର ସାମ୍ପ୍ରତିକ ଅବସ୍ଥାର ବିଡ଼ମ୍ବନା ଏହି ଯେ, ସମାଜ ଓ ରାଷ୍ଟ୍ରର ସାମଗ୍ରିକ ଉତ୍‌ଥାନ ଓ ପରିବର୍ତ୍ତନ ପାଇଁ କୌଣସି ବଳିଷ୍ଠ ଆନ୍ଦୋଳନ ହେଉ ନାହିଁ । କିନ୍ତୁ ଆଶାର ବିଷୟ ଏହି ଯେ, ଦଳିତ ଶ୍ରେଣୀମାନେ ଓ ତଥାକଥିତ ଅବିକଶିତ ଅଞ୍ଚଳମାନେ ସବୁଠାରେ ଅହରହ ଆନ୍ଦୋଳିତ ହେଉଛନ୍ତି । ନିଜର ଶ୍ରେଣୀଗତ ଓ ଆଞ୍ଚଳିକ ଉତ୍‌ଥାନ ପାଇଁ ଆନ୍ଦୋଳନ କରିବା ସମୟରେ ସେମାନେ ତାତ୍କାଳିକ ଉଦ୍ଦେଶ୍ୟରେ ଏପରି ସୀମାବଦ୍ଧ ହୋଇଯାଉଛନ୍ତି ଯେ ଦୀର୍ଘକାଳୀନ ଓ ସାମଗ୍ରିକ ଉନ୍ନତିକୁ ଲକ୍ଷ୍ୟ ରୂପେ ଗ୍ରହଣ କରୁନାହାନ୍ତି । ସତେ ଯେପରି ଦେଶଠାରୁ ସମସ୍ତେ ନିଜ ନିଜର ଭାଗ ନେବାକୁ ଚାହାନ୍ତି, କିନ୍ତୁ ଦେଶ ଗଢ଼ିବାର, ଦେଶକୁ ବିପଦରୁ ରକ୍ଷା କରିବାର ଦାୟିତ୍ୱ ନେବାକୁ ଚାହାନ୍ତି ନାହିଁ । ତେଣୁ ପଛୁଆ ଜାତିର ଆନ୍ଦୋଳନ ଜାତିବାଦୀ ହୋଇଯାଉଛି ତ ପଛୁଆ ଅଞ୍ଚଳର ଆନ୍ଦୋଳନ ବିଚ୍ଛିନ୍ନତାବାଦୀ ହେବାର ଆଶଙ୍କା ଉପୁଜୁଛି ।

ପ୍ରତ୍ୟେକ ଉତ୍‌ଥାନ-ମୁଖୀ ସମୂହରେ ଗୋଟିଏ ଗୋଟିଏ ବିଶିଷ୍ଟ ଶ୍ରେଣୀ ବା ସୁଖ ଭୋଗକାରୀ ଶ୍ରେଣୀ ଉଦ୍ଭୁତ ହେଉଛି, ଅଥଚ ଦାରିଦ୍ର୍ୟ, ବିଷମତା ଓ ଅନ୍ୟାୟର ଢାଞ୍ଚା ଟିକିଏ ବି ଟଳମଳ ହେଉନାହିଁ । ଦେଶର ଅର୍ଦ୍ଧେକ ଶକ୍ତି ନାରୀ ପାଖରେ । ସମାଜ ଓ ଅର୍ଥ ବ୍ୟବସ୍ଥାରେ ଯେଉଁସବୁ ମୌଳିକ ଅନ୍ୟାୟ ରହିଛି ଓ ଯାହାର ପରିଣାମସ୍ୱରୂପ ନାରୀ ଶ୍ରେଣୀ ନିର୍ଯାତିତ ହେଉଛି, ତନ୍ମଧ୍ୟରୁ କେତେକ ସଙ୍କଟ ପ୍ରତି ଯଦି ନାରୀ ଆନ୍ଦୋଳନ ଯୁଦ୍ଧର ଆହ୍ୱାନ ଦିଅନ୍ତା, ତାହାହେଲେ ନାରୀ ଆନ୍ଦୋଳନ ନାରୀକୁ ମୁକ୍ତ କରିବା ସଙ୍ଗେ ସଙ୍ଗେ ସମଗ୍ର ସମାଜର ଅଭିନବୀକରଣ ଓ ବିବର୍ତ୍ତନ କରନ୍ତା । ଏହା ଫଳରେ ଦୁର୍ଗାଙ୍କର କିମ୍ବଦନ୍ତୀ ସତ୍ୟ ହୁଅନ୍ତା; ଯାହା ଦେବମାନେ କରିପାରିଲେ ନାହିଁ, ଦେବୀ କରି ଦେଖାଇଦେଲେ । ଅତୀତର ମୁକ୍ତିକାମୀ ବୈପ୍ଲବିକ ଆନ୍ଦୋଳନମାନଙ୍କର ସବୁଠାରୁ ବଡ଼ ଦୁର୍ବଳତା ଏହା ଥିଲା ଯେ, ନାରୀର ଓ ନାରୀ ଆନ୍ଦୋଳନର ପ୍ରମୁଖ ଭୂମିକା ସେଥିରେ ନଥିଲା ।

ଯୌତୁକ-ନିର୍ଯାତନା ପାଇଁ ପିତୃ ସମ୍ପତ୍ତିରେ ଅଧିକାର ବିହୀନତାକୁ ଦାୟୀ କରିବା ଏକ ଆଂଶିକ ବା ପରୋକ୍ଷ ସତ୍ୟ ହୋଇପାରେ । ବହୁଦିନରୁ ଯୌତୁକ ଦାବୀ କରୁଥିବା ପକ୍ଷମାନେ ଯୌତୁକ ପ୍ରଥାର ସମର୍ଥନକୁ ଦୃଢ଼ କରିବା ପାଇଁ ଏହାର ଦଲିଲ୍ ଦେଇଆସିଛନ୍ତି । ତେଣୁ ପିତୃସମ୍ପତ୍ତି ଉପରେ ଅଧିକାର କାର୍ଯ୍ୟକାରୀ ହେଲେ ଯୌତୁକ ନିର୍ଯାତନାରୁ ମୁକ୍ତି ମିଳିବ ବୋଲି ଯେଉଁମାନେ କହୁଛନ୍ତି, ସେମାନେ ଏକ ଯୁକ୍ତିସଙ୍ଗତ ତଥ୍ୟକୁ ଉପସ୍ଥାପିତ କରୁଛନ୍ତି । କିନ୍ତୁ କେତେଗୁଡ଼ିଏ ପ୍ରଶ୍ନ ଅନୁତ୍ତରିତ ରହିଯାଉଛି । ନାରୀର ସମ୍ପତ୍ତିରେ ସମାନ ଅଧିକାର ଓ ଯୌତୁକର ପରିମାଣକୁ ମାପଦଣ୍ଡ କରି ପତ୍ନୀ-ଚୟନର ମନୋବୃତ୍ତି, ଏହି ଦୁଇଟି କଥାକୁ ଅଲଗା କରି ଦେଖିବା ଠିକ୍ ହେବନାହିଁ କି ? ଯେଉଁ ପରିବାରମାନଙ୍କରେ ଅଚଳ ସମ୍ପତ୍ତି କିମ୍ୱା ପୁଞ୍ଜି ଆକାରରେ ବିଶେଷ କିଛି ନାହିଁ ଓ ମାସିକ ବେତନ ଏକ ଦୁଇ ହଜାର ଟଙ୍କା ଛଡ଼ା ଯେଉଁମାନଙ୍କର ଅନ୍ୟ କୌଣସି ଆୟ, ସମ୍ପତ୍ତି କିମ୍ୱା ଉପାର୍ଜନର ମାଧ୍ୟମ ନାହିଁ, ସେହି ପରିବାରମାନଙ୍କର ସମସ୍ୟାର ଏହା ଦ୍ୱାରା ସମାଧାନ ହୋଇପାରିବ କି ?

ଏହା ମଧ୍ୟ ହୋଇପାରେ ଯେ, ଏହି ଯୁକ୍ତି ଫଳରେ ଯୌତୁକ ପ୍ରଥାର ସମାଲୋଚନା ଦୁର୍ବଳ ହୋଇଯିବ, ଅଥଚ ସମ୍ପତ୍ତିର ଅଧିକାର କଥାଟି କାର୍ଯ୍ୟତଃ ନହୋଇ କେବଳ ଯୌତୁକର ପରିମାଣକୁ ବଢ଼ାଇବା ସାର ହେବ । ଯଦି ସମ୍ପତ୍ତି ଅଧିକାର ଯୁକ୍ତି ଫଳରେ ଯୌତୁକ ପରିମାଣ ବଢ଼େ ଓ ବଢ଼ାଇବା ନିମନ୍ତେ ଚାପ ବଢ଼େ, ଆମେ ତାହାକୁ ଏକ ଉପଲବ୍ଧି ବୋଲି କହିବା କି ? ଯୌତୁକ ସମସ୍ୟାର ସମ୍ମୁଖିନ ହେଉଥିବା ସାମାଜିକ କର୍ମୀମାନେ ପିତାର ସମ୍ପତ୍ତି ଉପରେ ଅଧିକାର କଥା ଉଠାଇବା ବେଳେ ପରିତ୍ୟକ୍ତା ନାରୀମାନଙ୍କ ସମସ୍ୟା ନେଇ ଆନ୍ଦୋଳନ କରୁଥିବା କର୍ମୀମାନେ ପତିର ସମ୍ପତ୍ତି ଉପରେ ଅଧିକାର କଥା ଉଠାଉଛନ୍ତି । ସେମାନେ ଦାବୀ କରନ୍ତି ଯେ, ବିବାହ ସମୟରେ ହିଁ ପତିର ଅର୍ଦ୍ଧେକ ସମ୍ପତ୍ତି ଉପରେ ପତ୍ନୀର ଅଧିକାର ଆଇନ୍‌ଗତ ଭାବରେ ଲିପିବଦ୍ଧ ହୋଇଯିବା ଦରକାର । ଏହି ଦାବିକୁ ମଧ୍ୟ ଅଯୌକ୍ତିକ ବୋଲି କହିହେବ ନାହିଁ । କିନ୍ତୁ ସମଗ୍ର ସମାଜରେ ସମ୍ପତ୍ତିର ବ୍ୟବସ୍ଥା, ତାହାର ବଣ୍ଟନ ଓ ଅଧିକାର ବିଷୟରେ ଏକ ସମ୍ୟକ ଚର୍ଚ୍ଚା ଭିତରେ ହିଁ ଏଗୁଡ଼ିକର ସମାଧାନ ସୂତ୍ର ବାହାର କରିବାକୁ ହେବ ।

ଅନ୍ୟ କାହାର (ପିତାର ବା ସ୍ୱାମୀର) ସମ୍ପତ୍ତି ଉପରେ ସ୍ତ୍ରୀର କେତେ ଅଧିକାର ରହିବ, ଏହା ଏକ ମଧ୍ୟବିତ୍ତ ଶ୍ରେଣୀର ପ୍ରଶ୍ନ । ମଧ୍ୟବିତ୍ତ ଶ୍ରେଣୀର ବୋଲି କହିଲେ ପ୍ରଶ୍ନଟି ଅଶୁଦ୍ଧ ହୋଇଯାଏ ନାହିଁ, କେବଳ ତାହାର ସୀମିତ ପରିସରକୁ ହିଁ ସୂଚାଏ । ଆର୍ଥିକ ଅସୁରକ୍ଷାରୁ ନାରୀକୁ ମୁକ୍ତ କରିବା ପାଇଁ ଏପରି ପ୍ରତିକାରର ଉପାୟ ହେବା ଉଚିତ, ଯାହା ପ୍ରତ୍ୟେକ ନାରୀ ପାଇଁ କାର୍ଯ୍ୟକାରୀ ହୋଇପାରିବ ।

ଜନମଙ୍ଗଳ ରାଷ୍ଟ୍ରରେ ପ୍ରତ୍ୟେକ ନାଗରିକକୁ ବଞ୍ଚିବାର ଅଧିକାର ଅଛି । ତେଣୁ ପ୍ରତ୍ୟେକ ନାଗରିକ ପାଇଁ ରୋଜଗାରର ଗ୍ୟାରେଣ୍ଟି ରହିବା ଦରକାର ଓ ରୋଜଗାର ନ ମିଳିଲେ ଚଳିବା ପାଇଁ ଭତ୍ତା ମିଳିବା ଦରକାର । ଏହି ଆଇନ୍‌କୁ ସର୍ବପ୍ରଥମେ ନାରୀମାନଙ୍କ ପାଇଁ କାର୍ଯ୍ୟକାରୀ କରିବା ଆବଶ୍ୟକ ଓ ଅବିଳମ୍ୱେ ଏହାକୁ ଲାଗୁ କରିବା ପାଇଁ ସବୁଆଡ଼ୁ ଚାପ ପଡ଼ିବା ଉଚିତ୍ । ଏହା ହେଉଛି ଅସଲରେ ନାରୀର

ସମ୍ପତ୍ତି-ଅଧିକାର । ତାକୁ ରୋଜଗାର ଦେଇ କାର୍ଯ୍ୟକ୍ଷମ କରାହେଲେ ଯୌତୁକ, ପରିତ୍ୟାଗ, ବଳାତ୍କାର ଆଦିର ସେ ନିଜେ ସମ୍ମୁଖୀନ ହୋଇ ପାରିବ ।

(୩୦ ଅକ୍ଟୋବର, ୧୯୯୪)

# ବିକାଶ ଓ ଶିକ୍ଷା

୧

ସ୍ୱାଧୀନ ଭାରତରେ ଶିକ୍ଷା ବିଷୟକ ନ୍ୟୂନତମ ଲକ୍ଷ୍ୟ କ'ଣ ହେବ ଓ ରାଷ୍ଟ୍ର ଓ ସରକାରର ସେଥିପାଇଁ କ'ଣ ଦାୟିତ୍ୱ ରହିବା ଦରକାର, ସମ୍ବିଧାନ ନିର୍ମାଣର ବହୁ ପୂର୍ବରୁ ତାହା ଏକ ସର୍ବସାଧାରଣ ଆଲୋଚନାର ବିଷୟ ଥିଲା । ୧୯୪୦ ଦଶକରେ ଏଭଳି କୌଣସି ନେତା, ବୁଦ୍ଧିଜୀବୀ ବା ସମାଜ ସଂସ୍କାରକ ନଥିଲେ, ଯିଏ ଏ ବିଷୟରେ ମତପ୍ରକାଶ କରିନାହାନ୍ତି । ବହୁ ବର୍ଷ ଧରି ଭାରତର ରାଜନୈତିକ ଓ ବୌଦ୍ଧିକ ଚେତନାରେ ଶିକ୍ଷାକୁ ନେଇ ଯେଉଁ ପ୍ରଗାଢ଼ ଚିନ୍ତା ଜାତ ହୋଇଥିଲା, ୧୯୫୦ର ଭାରତୀୟ ସମ୍ବିଧାନରେ ତାହା '୪୫ ଧାରା' ରୂପେ ଏକ ସଙ୍କଳ୍ପର ରୂପ ନେଲା ।

ସମ୍ବିଧାନର ବୋଧହୁଏ ଏହା ଏକମାତ୍ର ଅଂଶ ଯାହାକୁ ଅବିବାଦୀୟ ବୋଲି ଧରାଯିବ । ବାମପନ୍ଥୀ, ଦକ୍ଷିଣପନ୍ଥୀ, ମଧ୍ୟପନ୍ଥୀ ଆଦି ଭେଦ ନିର୍ବିଶେଷରେ ସବୁପ୍ରକାରର ମତାବଲମ୍ବୀ ଶିକ୍ଷାର ଏହି ଲକ୍ଷ୍ୟକୁ ସମର୍ଥନ ଜଣାଇଥିଲେ । ପରବର୍ତ୍ତୀ କାଳରେ ଶିକ୍ଷା ଉପରେ ଯେତେ କମିଶନ୍ ବା ଅଧ୍ୟୟନ ଦଳ ନିଯୁକ୍ତ ହେଲେ କେହି ମଧ୍ୟ ଏହାକୁ ବାତିଲ୍ କରିବା କିମ୍ବା ବଦଳାଇବା ପାଇଁ ସୁପାରିଶ୍ କରିନାହାନ୍ତି । ବରଂ ଏହା ଏକ ହାସ୍ୟାସ୍ପଦ କଥା ଯେ, ସମ୍ବିଧାନ ପ୍ରଚଳିତ ହେବାର ଅର୍ଦ୍ଧଶତାବ୍ଦୀ ପ୍ରାୟ ବିତିଗଲେ ମଧ୍ୟ ସମ୍ବିଧାନ ଦ୍ୱାରା ନିର୍ଦ୍ଧାରିତ ପୁରୁଣା ତାରିଖ ଅପରିବର୍ତ୍ତିତ ରହିଛି ।

ସମ୍ବିଧାନ ଏବେ ବି କହୁଛି ଯେ, ୧୯୬୦ ମସିହା ସୁଦ୍ଧା ପ୍ରାଥମିକ ଶିକ୍ଷାକୁ ସାର୍ବଜନୀନ ଓ ବାଧ୍ୟତାମୂଳକ କରିବା ନିମନ୍ତେ ସରକାର ସଚେଷ୍ଟ ରହିବେ । (ଦି ଷ୍ଟେଟ୍ ଶାଲ୍ ଏଣ୍ଡେଭର୍ ଟୁ ପ୍ରୋଭାଇଡ୍, ଉଇଦିନ୍ ଏ ପିରିୟଡ୍ ଅଫ୍ ଟେନ୍ ଇୟରସ୍ ଫ୍ରମ୍ ଦି କମେନ୍ସମେଣ୍ଟ୍ ଅଫ୍ ଦିସ୍ କନ୍‌ଷ୍ଟିଚ୍ୟୁସନ୍, ଫ୍ରି ଆଣ୍ଡ୍ କମ୍ପଲ୍‌ସରି ଏଜୁକେସନ୍ ଫର୍ ଅଲ୍ ଚିଲ୍‌ଡ୍ରେନ୍ ଅଣ୍ଟିଲ୍ ଦେ କମ୍ପ୍ଲିଟ୍ ଦି ଏଜ୍ ଅଫ୍ ଫୋଟିନ୍ ଇୟରସ୍) (ଧାରା ୪୫) ।

ଶାସକମାନଙ୍କ ମଧ୍ୟରେ ହୁଏତ ଗ୍ଲାନିବୋଧ ସୃଷ୍ଟି କରିବା ଉଦ୍ଦେଶ୍ୟରେ ଏହି ବିସଙ୍ଗତିକୁ ଜାଣିଶୁଣି ଅପରିବର୍ତ୍ତିତ ରଖାଯାଇଛି । ଭୂତକାଳର କର୍ମ ପାଇଁ କ୍ରିୟାପଦର ଭବିଷ୍ୟତ କାଳ ବ୍ୟବହାର କରିବା କେବଳ ଗ୍ଲାନି ଅବା ବ୍ୟଙ୍ଗ ଦୃଷ୍ଟିରୁ ସଙ୍ଗତ

ହୋଇପାରେ । ନଚେତ୍ ବ୍ୟାକରଣ ପଣ୍ଡିତମାନେ ଏହି ସାମ୍ବିଧାନିକ ବାକ୍ୟର ମରାମତି ପାଇଁ ସ୍ୱର ଉତ୍ତୋଳନ କରିଥାନ୍ତେ ।

ଅଥବା, ରାଷ୍ଟ୍ରର ଏହି ପ୍ରତିଶ୍ରୁତି ଏତେ ପବିତ୍ର ଓ ଗଭୀର ଥିଲା ଯେ, କାଳର ବିସଙ୍ଗତି ହେଲେ ମଧ୍ୟ ତାହା ଉପରେ ହାତ ଲଗାଇବାର ସାହାସ କେହି କରିନାହାନ୍ତି । ଏବେର କଥା ଅଲଗା । ୧୯୯୧ ଜୁଲାଇରୁ ଯାହା କିଛି ଭାରତର ସାମାଜିକ, ଆର୍ଥିକ, ସାଂସ୍କୃତିକ ଦେହ ଉପରେ ଘଟିଯାଉଛି, ସେଥିରେ ପବିତ୍ରତା ଅପବିତ୍ରତାର ବୋଧ ରହିବ ନାହିଁ । ବିଦେଶୀ ସାହାଯ୍ୟପ୍ରାପ୍ତ ଯୋଜନାମାନ ଆମକୁ ସୂଚାଇ ଦେଇଛନ୍ତି ଯେ, ପିଲାଙ୍କ ଶିକ୍ଷାକୁ ସାର୍ବଜନୀନ ଓ ବାଧ୍ୟତାମୂଳକ କରିବା ଆଉ ରାଷ୍ଟ୍ରର ବଜେଟୀୟ ଦାୟିତ୍ୱ ହୋଇ ରହିବ ନାହିଁ ।

ଆଫ୍ରିକା ଓ ଲାଟିନ୍ ଆମେରିକାର ଦେଶମାନଙ୍କର ନିକଟ ଅତୀତକୁ ବିଶ୍ଳେଷଣ କରି ଗବେଷକମାନେ କହନ୍ତି ଯେ, ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଓ 'ଗାଟ୍' ଭଳି ସଂସ୍ଥାମାନଙ୍କର ନିର୍ଦ୍ଦେଶରେ ଯେଉଁ ଦେଶମାନେ ଆର୍ଥିକ ପରିବର୍ତ୍ତନର କାର୍ଯ୍ୟକ୍ରମଗୁଡ଼ିକ ଚଳାଉଛନ୍ତି. ପରିଶେଷରେ ସେମାନଙ୍କୁ ନିଜ ନିଜର ସମ୍ବିଧାନ ମଧ୍ୟ ବଦଳାଇବାକୁ ହେବ । ଭାରତ ଯେ ସେହି ବିନ୍ଦୁ ନିକଟରେ ପହଞ୍ଚିଯାଇଛି, ଆମେ ବିଶ୍ୱାସ କରିବାକୁ ଚାହୁଁନା । ଏହା ବିରୁଦ୍ଧରେ ସାକ୍ଷ୍ୟ ଦରକାର । ପାଠକ ବନ୍ଧୁ, ଆପଣ ଯଦି କାହାକୁ ଜାଣନ୍ତି, ଯିଏ ସାକ୍ଷ୍ୟ ଦେଇପାରିବେ, ତାଙ୍କୁ ବିକଳ୍ପ ବିଚାରର ଠିକଣା ଦେଇଦିଅନ୍ତୁ ।

୨

ବେଳେ ବେଳେ ପ୍ରଶ୍ନଟିଏ ଉଙ୍କିମାରେ । ଶିକ୍ଷାକୁ ଆମେ ଅତ୍ୟଧିକ ଗୁରୁତ୍ୱ ଦେଇ ଭୁଲ୍ କରୁନାହୁଁ ତ ? ଶିକ୍ଷା କ'ଣ ସମ୍ପତ୍ତିଠାରୁ ବେଶୀ ଦରକାରୀ, ବଜାର ଅପେକ୍ଷା ବେଶୀ ମହତ୍ତ୍ୱପୂର୍ଣ୍ଣ ?

ଧର୍ମ, ନୈତିକତା, ଅହିଂସା, ପ୍ରେମ, ସମାନତା, ଦେଶ ଓ ସମାଜ – ଏସବୁ ଦିନେ ଗଭୀର ବିଶ୍ୱାସର ବିଷୟ ଥିଲା । ବିଦ୍ୟା ବା ଶିକ୍ଷା ତାହା ସାଙ୍ଗରେ ଖାପ ଖାଉଥିଲା । ସଫଳତା, ସମୃଦ୍ଧି ବା ଅଗ୍ରଗତି ପାଇଁ ଏସବୁର ଆଉ ପ୍ରୟୋଜନ ନାହିଁ । ତାହାହେଲେ ଶିକ୍ଷାର ଗୁରୁତ୍ୱ ମଧ୍ୟ କମିନାହିଁ କାହିଁକି ?

ଭାରତ ସରକାର ଯେତେବେଳେ ତାଙ୍କର ଶିକ୍ଷା ମନ୍ତ୍ରଣାଳୟକୁ ଉଠାଇ ଦେଲେ ଓ ତାହା ସ୍ଥାନରେ ଏକ ମାନବ ସମ୍ବଳ ବିକାଶ ମନ୍ତ୍ରଣାଳୟ ସ୍ଥାପିତ କଲେ, ସେତେବେଳେ କାଁ ଭାଁ କେତେ ଲୋକ ଏହାର ପ୍ରତିବାଦ କରିଥିଲେ । ବାକି ସମସ୍ତେ ଓ ବିଶେଷ କରି ରାଜନୀତି ତଥା ସଂସ୍କୃତିର ଅଗ୍ରଣୀମାନେ ଏହାକୁ କେବଳ ନାମପଟର ପରିବର୍ତ୍ତନ ମନେକରି ନୀରବରେ ସ୍ୱୀକାର କରିନେଲେ । ଶିକ୍ଷା ଓ ମାନବ ସମ୍ବଳ ବିକାଶ କ'ଣ ଏକା କଥା ?

ମାନବ ସମ୍ବଳ ଓ ଶିକ୍ଷା ଭିତରେ ଯେଉଁ ଗୁଣାତ୍ମକ ଫରକ ଅଛି ତାହା ଉଦ୍ଦେଶ୍ୟକୁ ନେଇକରି । ଶିକ୍ଷାର ଉଦ୍ଦେଶ୍ୟ ହେଉଛି ମାନବ ନିଜେ । ମାନବ ହିଁ ବ୍ରହ୍ମ । ସ୍ଥୁଳ

ଭାବରେ କହିଲେ ବ୍ୟକ୍ତିର ବିକାଶ ହିଁ ଶିକ୍ଷାର ଉଦ୍ଦେଶ୍ୟ । ଅନ୍ୟ ପକ୍ଷେ "ମାନବ ସମ୍ବଳ"ର ଉଦ୍ଦେଶ୍ୟ ହେଉଛି ଆର୍ଥିକ ବିକାଶ ପାଇଁ ମାନବର ଯେଉଁ ଉପଯୋଗିତା ରହିଛି ତାକୁ ଚିହ୍ନିତ କରିବା । ଏଠାରେ ବିକାଶ ହିଁ ଲକ୍ଷ୍ୟ । ବିକାଶ ହିଁ ବ୍ରହ୍ମ ।

ପ୍ରାୟ ଏକ ଶତାବ୍ଦୀ ପୂର୍ବେ ଯେତେବେଳେ ବିଦେଶୀ ଶାସକମାନେ ଏ ଦେଶରେ ଆଧୁନିକ ଶିକ୍ଷାର ପ୍ରଚଳନ କରାଇଥିଲେ, ସେମାନେ ମଧ୍ୟ ଭାରତୀୟ ମନୁଷ୍ୟକୁ ଏକ ସମ୍ବଳ ରୂପେ ଦେଖିଥିଲେ । ବ୍ରିଟିଶ୍ ସାମ୍ରାଜ୍ୟର ସୁରୁଖୁରୁ ପରିଚାଳନା ଓ ରକ୍ଷଣାବେକ୍ଷଣ ପାଇଁ ଭାରତୀୟମାନଙ୍କୁ ୟୁରୋପୀୟ ଦର୍ଶନ, ବିଜ୍ଞାନ ଓ ସାହିତ୍ୟର ପ୍ରଶିକ୍ଷଣ ଦେବା ସେମାନଙ୍କର ଉଦ୍ଦେଶ୍ୟ ଥିଲା । ବିଂଶ ଶତାବ୍ଦୀର ଶେଷ ଭାଗରେ 'ସାମ୍ରାଜ୍ୟ'ର ସ୍ଥାନ 'ବିକାଶ' ଗ୍ରହଣ କରିଛି । ବିକାଶ ପାଇଁ ଲୁହା, କୋଇଲା, ପଥର ଓ ପେଟ୍ରୋଲ୍ ଯେପରି ଗୋଟିଏ ଗୋଟିଏ ସମ୍ବଳ; ମଣିଷ ମଧ୍ୟ ସେପରି ଏକ ସମ୍ବଳ । ବିକାଶର ପ୍ରାଧାନ୍ୟ ଏତେ ବେଶୀ ବଢ଼ି ଚାଲିଛି ଯେ, ମାନବକୁ ସମ୍ବଳ ରୂପେ ଗଣିବାର ଦୃଷ୍ଟିକୋଣ ଉପନିବେଶମାନଙ୍କରେ ସୀମିତ ହୋଇ ରହିନାହିଁ । ୟୁରୋପ୍‌ରେ ମଧ୍ୟ ଶିକ୍ଷା ଓ ସଂସ୍କୃତି କ୍ଷେତ୍ରରେ ତୀବ୍ର ପରିବର୍ତ୍ତନ ଅନୁଭୂତ ହେଉଛି । ଆଧୁନିକ ଶିଳ୍ପ ସଭ୍ୟତା ତାହାର ତାର୍କିକ ପରିଣତିର ଚରମ ବିନ୍ଦୁରେ ପହଞ୍ଚିଯାଇଛି । ଏଥି ପୂର୍ବେ ଶିଳ୍ପ ସଭ୍ୟତାର ଏକ ନିଜସ୍ୱ ମାନ୍ୟତାପ୍ରାପ୍ତ ସଂସ୍କୃତି ନଥିଲା । ଯାହା ଥିଲା ତାହା ମିଶ୍ରିତ ।  ତାହା ଉପରେ ରେନାସାଁ ଯୁଗର ମୂଲ୍ୟବୋଧଗୁଡ଼ିକର ଏକ ମସୃଣ ଆଚ୍ଛାଦନ ଥିଲା ।

ସ୍ୱାଧୀନତା ଆନ୍ଦୋଳନ ସମୟରେ ଭାରତର ରାଷ୍ଟ୍ରନାୟକମାନେ ମାକଲେ ସାହେବଙ୍କର ଶିକ୍ଷା ଦର୍ଶନର ଯେତେବେଳେ କଟୁ ସମାଲୋଚନା କରୁଥିଲେ, ସେତେବେଳେ ୟୁରୋପ୍‌ର ଶିକ୍ଷା ବିଷୟକ ଉଦାତ୍ତ ଧାରଣାମାନ ସେମାନଙ୍କର ଆଦର୍ଶ ଥିଲା । 'ବ୍ୟକ୍ତିର ନିଜସ୍ୱ ପ୍ରତିଭାର ପରିସ୍ଫୁଟନ ହିଁ ଶିକ୍ଷାର ଉଦ୍ଦେଶ୍ୟ' ରୂପକ ଆଜିର ପରିଭାଷା ପ୍ରକୃତରେ ତତ୍କାଳୀନ ୟୁରୋପୀୟ ଅବଧାରଣାମାନଙ୍କର ପ୍ରତିଧ୍ୱନି ମାତ୍ର ଥିଲା ।

ଅନ୍ୟ ପକ୍ଷରେ ୟୁରୋପ୍‌ର ଏସବୁ ସାଂସ୍କୃତିକ ଅବଧାରଣା ଶିଳ୍ପ ସଭ୍ୟତାର ନିଜସ୍ୱ ଅବଧାରଣା ନଥିଲା । ଶିଳ୍ପ ବିପ୍ଳବର ବହୁ ପୂର୍ବରୁ ୟୁରୋପ୍‌ର ନବଜାଗରଣ (ରେନାସାଁ) ଆନ୍ଦୋଳନ ହୋଇଥିଲା, ଯେତେବେଳେ ନବଜାଗୃତ ୟୁରୋପୀୟ ମେଧା ପ୍ରାଚୀନ ସଭ୍ୟତାଗୁଡ଼ିକର (ବିଶେଷକରି ଗ୍ରୀକ୍ ଓ ଆରବ୍ ସଂସ୍କୃତିର) ମନ୍ଥନ କରି ଏକ ଗତିଶୀଳ ବୌଦ୍ଧିକ-ସାଂସ୍କୃତିକ ମୂଲ୍ୟବୋଧର ସୃଜନ କଲା । ତାହା ଉପରେ ଗ୍ରୀକ୍ ସଭ୍ୟତାର ପ୍ରଭାବ ସବୁଠାରୁ ଅଧିକ ସୁସ୍ପଷ୍ଟ ଥିଲା । ଜ୍ଞାନ ପ୍ରତି ଏକ ବିଶେଷ ଅନୁରକ୍ତି ଜାତ ହେଲା । ଏକେ ତ ଅନେକ ପ୍ରାଚୀନ ସଭ୍ୟତାରେ ଶିକ୍ଷା ବା ବିଦ୍ୟାର ସ୍ଥାନ ଅତି ଉଚ୍ଚରେ ଥିଲା, ତାହା ଉପରେ ପୁଣି ଖ୍ରୀଷ୍ଟୀୟାନ୍‌ମାନଙ୍କର ଅନ୍ଧବିଶ୍ୱାସ ବିରୁଦ୍ଧରେ ଲଢ଼ିବାର ବୁଦ୍ଧିବାଦୀ ଧାରା ଯୋଡ଼ି ହୋଇଗଲା । ଫଳରେ ଶିକ୍ଷା ଓ ଜ୍ଞାନର ଅନୁସନ୍ଧାନ ସମାଜରେ ସର୍ବୋଚ୍ଚ ପ୍ରତିଷ୍ଠା ଲାଭକଲା । ଧର୍ମଯାଜକମାନଙ୍କ ଠାରୁ ମୁକ୍ତ ହୋଇ ଶିକ୍ଷା ସ୍ୱାୟତ୍ତ ହେଲା । ସେହି ସମୟରୁ ଜ୍ଞାନର ଅନୁସନ୍ଧାନ ଓ ମାନବିକ ମୂଲ୍ୟବୋଧର ପ୍ରଧାନ ବାହକ ହେଲା ଶିକ୍ଷାୟତନ ।

ଶିକ୍ଷା ସମ୍ବନ୍ଧୀୟ ଉଚ୍ଚ ଧାରଣାଗୁଡ଼ିକ ଏତେ ଲୋକପ୍ରିୟ ହେଲା ଯେ, ଏ ପର୍ଯ୍ୟନ୍ତ ଶିଳ୍ପ ସଭ୍ୟତା ସେଗୁଡ଼ିକୁ ସମୂଳେ ନଷ୍ଟ କରିପାରି ନାହିଁ । ଆଧୁନିକ ଶିଳ୍ପ ଯୁଗର ପୂର୍ବ ସମୟକୁ ଆମେ ଯଦି ମଧ୍ୟଯୁଗ ବୋଲି କହିବା, ତାହାହେଲେ ଏହି ମୂଲ୍ୟବୋଧଗୁଡ଼ିକ ବସ୍ତୁତଃ ମଧ୍ୟଯୁଗୀୟ ଅଟନ୍ତି । ଶିଳ୍ପ ସଭ୍ୟତା ତାହାର ତାର୍କିକ ପରିଣାମରେ ପହଞ୍ଚିବା ବେଳକୁ ଜଣାପଡୁଛି ଯେ, ଆଧୁନିକ ବିକାଶ ଉପରେ ଆଧାରିତ ସଭ୍ୟତା ସାଙ୍ଗରେ ଏହିସବୁ ମୂଲ୍ୟବୋଧର ସ୍ୱାଭାବିକ ମେଳ ନାହିଁ । ତେଣୁ ଶିଳ୍ପ ସଭ୍ୟତାର ଅଗ୍ରଗତି ଯେଉଁ ଅନୁପାତରେ ହୋଇଚାଲିଛି, ଏହି ମୂଲ୍ୟବୋଧମାନଙ୍କର ହ୍ରାସ ମଧ୍ୟ ସେହି ଅନୁପାତରେ ହୋଇ ଚାଲିଛି ।

ଦ୍ୱିତୀୟ ବିଶ୍ୱଯୁଦ୍ଧର ପରବର୍ତ୍ତୀ କାଳରେ ଶିଳ୍ପ ସଭ୍ୟତାର ଏକ ନିଜସ୍ୱ ସଂସ୍କୃତି ଆକ୍ରାମକ ହୋଇ ବସିଲା । ତାହା ବର୍ତ୍ତମାନ ବ୍ୟାପକ ହୋଇ ଚାଲିଛି । ଏହାର ମାଡ଼ରେ ୟୁରୋପ୍ ମଧ୍ୟ ଥରହର ହେଉଛି । ଫ୍ରାନ୍ସ ଓ ଜର୍ମାନୀର ଲୋକେ ଏହାକୁ ଆମେରିକୀୟ ସଂସ୍କୃତିର ଆକ୍ରମଣ କହି ବିରୋଧ କରୁଛନ୍ତି । ଏହା ଏକ ବ୍ୟର୍ଥ ବିରୋଧ । ଶିଳ୍ପ ସଭ୍ୟତାରେ ଆମେରିକା ୟୁରୋପ୍ ଠାରୁ ଅନେକ ଆଗୁଆ । ୟୁରୋପ୍ ଯଦି ଶିଳ୍ପ ଓ ପ୍ରଯୁକ୍ତି ବିଦ୍ୟାରେ ଆମେରିକାର ଅନୁସରଣ କରୁଛି, ସଂସ୍କୃତିରେ ମଧ୍ୟ ଆମେରିକାର ନେତୃତ୍ୱ ସ୍ୱୀକାର କରିବାକୁ ହେବ । ଫ୍ରାନ୍ସ ଓ ଜର୍ମାନୀର ଲୋକ ନିଜର ପାରମ୍ପରିକ ବା ଶାସ୍ତ୍ରୀୟ ସଂସ୍କୃତିର ଗର୍ବରେ ଯାହାକୁ ଆମେରିକୀୟ ସଂସ୍କୃତି ବୋଲି କହୁଛନ୍ତି, ତାହା ହିଁ ଶିଳ୍ପ ସଭ୍ୟତାର ନିଜସ୍ୱ ସଂସ୍କୃତି । ଏହି ସଂସ୍କୃତିର ମୂଳ କଥା ହେଉଛି ଯେ, ଯାହା ବିକାଶକୁ ସାହାଯ୍ୟ କରିବ, ତାହା ହିଁ ଶ୍ରେଷ୍ଠ ଓ ଯାହା ବିକାଶ ପାଇଁ ବାଧା ସୃଷ୍ଟି କରିବ ତାହା ଅନୁପଯୁକ୍ତ । ଏଠାରେ ବିକାଶର ଅର୍ଥ ମଧ୍ୟ ନିର୍ଦ୍ଦିଷ୍ଟ ହୋଇଯାଇଛି । ବିକାଶର ଅର୍ଥ ରପ୍ତାନୀ ଅଭିମୁଖୀ ଉତ୍ପାଦନ ଓ ଉପଭୋକ୍ତାବାଦୀ ଉତ୍ପାଦନର ବୃଦ୍ଧି । ବିକାଶ ଏକ ଯୁଦ୍ଧ, ଏକ ପ୍ରତିଯୋଗିତା; ଏଥିରେ ନୀତି ଅନୀତିର ପ୍ରଶ୍ନ କେବଳ ବ୍ୟବହାରିକ ହୋଇପାରେ, ଆଦର୍ଶଗତ ନୁହେଁ । ଜଣକର ବିକାଶ କ୍ରମରେ ଅନ୍ୟ ଜଣକର ବିନାଶ ହୋଇପାରେ । ପ୍ରତିଯୋଗିତାରେ ତାହା ହିଁ ହୁଏ । ଜଣେ 'ଫାଷ୍ଟ୍', ଆଉ ଜଣେ 'ଲାଷ୍ଟ୍' ।

ଦ୍ୱିତୀୟ ବିଶ୍ୱଯୁଦ୍ଧର ପରବର୍ତ୍ତୀ କାଳରେ ପାଶ୍ଚାତ୍ୟ ଜଗତରେ ଶିକ୍ଷାର ସ୍ୱାୟତ୍ତତା ନଷ୍ଟ ହୋଇଯାଇଛି । ଆମେରିକାର ଅଧିକାଂଶ ବୈଜ୍ଞାନିକ ପ୍ରତିରକ୍ଷା ବିଭାଗ କିମ୍ବା ବହୁରାଷ୍ଟ୍ରୀୟ ନିଗମମାନଙ୍କର କିଣା ଚାକରରେ ପରିଣତ ହୋଇଛନ୍ତି । କେଉଁ ପ୍ରକାରର ବୈଜ୍ଞାନିକ ଅନୁସନ୍ଧାନ କରାଯିବ, ତାହା ବୈଜ୍ଞାନିକ ନୁହେଁ, କମ୍ପାନୀମାନେ ସ୍ଥିର କରୁଛନ୍ତି । କେବଳ ପ୍ରଯୁକ୍ତି ବିଜ୍ଞାନ ବା ଟେକ୍ନୋଲୋଜିରେ ଏପରି ହେଉଛି, ତାହା ନୁହେଁ । ତାତ୍ତ୍ୱିକ (ଥିଓରିଟିକାଲ୍) ବିଜ୍ଞାନର ଦୀର୍ଘ କିନ୍ତୁ ସିଧା ସମ୍ପର୍କ ପ୍ରଯୁକ୍ତି ବିଜ୍ଞାନ ସହିତ ରହିଛି । ତେଣୁ ନାଭିକୀୟ ପଦାର୍ଥ ବିଜ୍ଞାନ (ନ୍ୟୁକ୍ଲିଅର୍ ଫିଜିକ୍ସ)ର ତାତ୍ତ୍ୱିକ ଅନୁସନ୍ଧାନର ଯେଉଁ ଦିଗଗୁଡ଼ିକରେ ଆମେରିକାର ପ୍ରତିରକ୍ଷା ବିଭାଗର ସ୍ୱାର୍ଥ ରହିଛି, ସେହିସବୁ ଅନୁସନ୍ଧାନ କରୁଥିବା ବୈଜ୍ଞାନିକମାନଙ୍କୁ ତାହା ବାଛି ବାଛି ଅନୁଦାନ ଦେଇ ଉତ୍ସାହିତ କରୁଛି । ଜୀବକୋଷ ବିଜ୍ଞାନ (ଜେନେଟିକ୍ସ)ର ଯେଉଁସବୁ ରହସ୍ୟକୁ

ଭେଦକଲେ ଜୀବଜନ୍ତୁ ଓ ଉଦ୍ଭିଦମାନଙ୍କରେ ବ୍ୟବସାୟ ବଢ଼ିବ, ସେହିସବୁ ଅନୁସନ୍ଧାନ ପାଇଁ କମ୍ପାନୀମାନେ ଅକୁଣ୍ଠିତ ଭାବରେ ଅନୁଦାନ ଦେଉଛନ୍ତି । ଏହା ନୁହେଁ ଯେ ବୈଜ୍ଞାନିକମାନଙ୍କର ଗୋଟିଏ ନଗଣ୍ୟ ଅଂଶ ଏଭଳି କାମରେ ଲାଗିଛି । ଛାତ୍ରାବସ୍ଥାରୁ ହିଁ ଭବିଷ୍ୟତ ବୈଜ୍ଞାନିକମାନଙ୍କୁ ଅନୁଦାନର ଜାଲରେ ବାନ୍ଧି ଦିଆଯାଉଛି । ଜାପାନ୍‌ର ଏତେ ଅଗ୍ରଗତି ସତ୍ତ୍ୱେ ତାତ୍ତ୍ୱିକ ବିଜ୍ଞାନରେ କାହିଁକି ତାହାର ଅବଦାନ ନାହିଁ? କାରଣ ବୋଧେହୁଏ ଏହା ଯେ, ତତ୍ତ୍ୱ ଫତ୍ତ୍ୱର ଆବିଷ୍କାର ୟୁରୋପ୍ ଓ ଆମେରିକା କରନ୍ତୁ, ଜାପାନ୍ କେବଳ ତାହାର ବ୍ୟବହାରିକ ଉପଯୋଗ କରି ଟେକ୍ନୋଲୋଜିରେ ୟୁରୋପ୍-ଆମେରିକା ଠାରୁ ବଳିଯିବ । ଶିକ୍ଷା ସେଠାରେ ଧନ୍ଦାମୂଳକ ହୋଇଯାଇଛି ।

୩

ଆମ ଆଇ.ଏ.ଏସ୍. ଅଫିସର ଓ ନେତାମାନେ ଶିକ୍ଷା ବିଷୟରେ ଭାଷଣ ଦେବାବେଳେ ଭାବନ୍ତି ଯେ, ଧନ୍ଦାମୂଳକ ଶିକ୍ଷା ବିଷୟରେ କିଛି ନ କହିଲେ କଥା ଅପୂର୍ଣ୍ଣ ରହିଯିବ । ସେମାନେ କିନ୍ତୁ ଜାପାନ୍ ବା ଆମେରିକାର ଧନ୍ଦାମୂଳକ ଶିକ୍ଷାକୁ ଆଖି ଆଗରେ ରଖି ଏହି କଥା କୁହନ୍ତି ନାହିଁ । ସିଲେଇ କାମ, ମହମବତୀ ତିଆରି, ସାବୁନ୍ ତିଆରି, ଘଡ଼ି ମରାମତି- ଏହି ସବୁ ହେଉଛି ଧନ୍ଦାମୂଳକ ଶିକ୍ଷା । ଇଞ୍ଜିନିୟର୍, ଡାକ୍ତର, ଓକିଲ, ବୈଜ୍ଞାନିକ, ଶିକ୍ଷକ - ଏହି ସବୁର ଯୋଗ୍ୟତା ପାଇଁ ତ ଶିକ୍ଷା ଅଛି । ଏହିସବୁ ଶିକ୍ଷାରୁ ବାହାରି ଅନେକ ଲୋକ ବେକାର ହେଉଛନ୍ତି । ଧନ୍ଦାମୂଳକ ଶିକ୍ଷାର ପ୍ରବର୍ତ୍ତକମାନେ ଚାହାନ୍ତି ଯେ, ଯେଉଁମାନଙ୍କୁ ଆଧୁନିକ ଅର୍ଥ ବ୍ୟବସ୍ଥାରେ ଲାଭପ୍ରଦ କାମ ମିଳୁନାହିଁ, ସେମାନେ ବଢ଼େଇ, କମାର, ଦର୍ଜି ଆଦି କାମ କରନ୍ତୁ ଓ କୁଟୀର ଶିଳ୍ପର ସ୍ଥାପନା କରି ସ୍ୱ-ନିଯୁକ୍ତିର ବାଟ ଦେଖନ୍ତୁ । ଏସବୁ କାର୍ଯ୍ୟର ଆର୍ଥିକ ଭବିଷ୍ୟତ ଉଜ୍ଜ୍ୱଳ ନହେଲେ ମଧ୍ୟ ଲୋକେ କୌଣସି ମତେ ପେଟ ପୋଷି ନିଅନ୍ତୁ । ଶିକ୍ଷାର ମୁଖ୍ୟ କାର୍ଯ୍ୟ ଏହା ନୁହେଁ ଓ ଏପରି ହେବା ଅନୁଚିତ ।

ଧନ୍ଦାର ପ୍ରଶିକ୍ଷଣ ଶିକ୍ଷା ବ୍ୟବସ୍ଥାର ଏକ ଆବଶ୍ୟକ ବିଭାଗ, କିନ୍ତୁ ମୁଖ୍ୟ ବିଭାଗ ନୁହେଁ । ସମାଜ ଓ ଆର୍ଥିକ ବ୍ୟବସ୍ଥାର ବିକାଶ ସଙ୍ଗେ ତାଳଦେଇ ଶିକ୍ଷା ବ୍ୟବସ୍ଥାରେ ବ୍ୟବହାରିକ ଶିକ୍ଷାଗୁଡ଼ିକର ପ୍ରଚଳନ କରାଯାଇଥାଏ । ଅନେକ ପ୍ରକାରର ଧନ୍ଦା ଶିକ୍ଷା ଆର୍ଥିକ ବ୍ୟବସ୍ଥାର ଉପ-ପରିଣାମ ରୂପେ ଆପେ ଆପେ ବାହାରିପଡ଼େ । ଉଦାହରଣ ସ୍ୱରୂପ କମ୍ପ୍ୟୁଟରର ବ୍ୟାପକ ବ୍ୟବହାର ହେବା ପରେ କେବଳ ଯେ ଶିକ୍ଷା ପାଠ୍ୟକ୍ରମରେ ତାହାକୁ ବିଷୟ ରୂପେ ରଖାଯାଇଛି, ତାହା ନୁହେଁ । ପ୍ରତ୍ୟେକ ସହର ବଜାରରେ କମ୍ପ୍ୟୁଟର ପ୍ରଶିକ୍ଷଣର ଦୋକାନ ଖୋଲିଗଲାଣି । ଧନ୍ଦା ବାହାରିଲେ ଧନ୍ଦାମୂଳକ ଶିକ୍ଷା ବାହାରିବ । ଶିକ୍ଷା ବ୍ୟବସ୍ଥା ପ୍ରତ୍ୟକ୍ଷ ଭାବରେ ଧନ୍ଦା ସୃଷ୍ଟି କରିପାରିବ ନାହିଁ । ଧନ୍ଦା ସୃଷ୍ଟି କରିବା ଆର୍ଥିକ ବ୍ୟବସ୍ଥାର କାର୍ଯ୍ୟ । ଅର୍ଥନୀତି ଓ ବୈଷୟିକ ଜ୍ଞାନକୁ ସମାଜ-ଉପଯୋଗୀ କରି ଶିକ୍ଷା ବ୍ୟବସ୍ଥା ଏଥିରେ ସାହାଯ୍ୟ କରିପାରେ ।

ଧନ୍ଦାମୂଳକ ଶିକ୍ଷାର ବିଡ଼ମ୍ବନା କିପରି, ତାହାର ଏକ ଚିନ୍ତାଜନକ ଉଦାହରଣ ଏହି କମ୍ପ୍ୟୁଟର ଶିକ୍ଷା କ୍ଷେତ୍ରରେ ଦେଖିବାକୁ ମିଳୁଛି । ୧୯୮୦ ଦଶକରେ ଆନ୍ତର୍ଜାତିକ

ମୁଦ୍ରାପାଣ୍ଠିରୁ ଋଣ ନେବାପରେ ଇଲେକ୍ଟ୍ରୋନିକ୍ ଜିନିଷ ଓ କମ୍ପ୍ୟୁଟର ଜାତୀୟ ଯନ୍ତ୍ରମାନଙ୍କର ବ୍ୟାପକ ପ୍ରଚଳନ ବଢ଼ିଲା । ବିଦେଶରୁ ଏଗୁଡ଼ିକର ଆମଦାନୀ ହେଲା ଓ ଏହାର ବିଦ୍ୟାକୁ ସର୍ବାଧୁନିକ ବିଦ୍ୟା ବୋଲି ବିଶ୍ୱବିଦ୍ୟାଳୟ ତଥା ଆଇ.ଆଇ.ଟି. ଆଦି ସଂସ୍ଥାମାନଙ୍କରେ ପ୍ରତିଷ୍ଠିତ କରାଗଲା । ଶେଷୋକ୍ତ ସଂସ୍ଥାମାନଙ୍କରେ ଭାରତର ଶ୍ରେଷ୍ଠ ବିବେଚିତ ମେଧାବୀ ଛାତ୍ରମାନେ ଶିକ୍ଷା ଗ୍ରହଣ କରିଥାଆନ୍ତି । ସରକାର ଏଥିପାଇଁ ଅଜସ୍ର ପଇସା ଖର୍ଚ୍ଚ କରୁଛନ୍ତି । ଏହିସବୁ ସଂସ୍ଥାରୁ ଗତ ସାତ-ଆଠ ବର୍ଷ ମଧ୍ୟରେ ହଜାର ହଜାର ଛାତ୍ରଛାତ୍ରୀ ବାହାରିଲେଣି । ସେମାନଙ୍କ ଭିତରୁ କେବଳ ହାତଗଣତି ଭାରତରେ ବା ଭାରତର ଉନ୍ନତି ପାଇଁ କିଛି କାର୍ଯ୍ୟ କରୁଛନ୍ତି । ବାକି ସମସ୍ତେ କିଣା ହୋଇକରି ବିଦେଶକୁ ଚାଲି ଗଲେଣି । ତାଙ୍କ ଭିତରୁ କେତେକ ଏଭଳି କାର୍ଯ୍ୟରେ ପଶିଛନ୍ତି, ଯାହାକି ତାଙ୍କର ଯୋଗ୍ୟତା ତୁଳନାରେ ନିମ୍ନ ସ୍ତରର । ଭାରତରେ ସେମାନେ ଯେତିକି ଦରମା ପାଇ ଥାଆନ୍ତେ, ବିଦେଶରେ ତାହାଠାରୁ ତିରିଶ ଗୁଣ ବେଶୀ ଦରମା ପାଉଛନ୍ତି । ଏହା ଧନ୍ଦାମୂଳକ ଶିକ୍ଷା ନିଶ୍ଚୟ । ରପ୍ତାନୀ-ଅଭିମୁଖୀ ଶିକ୍ଷା ମଧ୍ୟ । ଏହି ରପ୍ତାନୀରୁ ଭାରତକୁ କୌଣସି ଲାଭ ମିଳିବାର ନାହିଁ । ଅର୍ଥାତ୍ ଶିକ୍ଷା ଓ ଅର୍ଥ ବ୍ୟବସ୍ଥା, ଶିକ୍ଷା ଓ ସମାଜର କୌଣସି ଅନ୍ତଃସମ୍ବନ୍ଧ ସର୍ବୋଚ୍ଚ ଶିକ୍ଷାର ସ୍ତରରେ କି ପରିସରରେ ମଧ୍ୟ ନାହିଁ ।

ସର୍ବୋଚ୍ଚ ଶିକ୍ଷା ଗ୍ରହଣ କରି ବିଦେଶୀ କମ୍ପାନୀର ମୋଟା ଦରମା ପାଉଥିବା ଏହି ଚିକ୍କଣ ଚେହେରାର ଯୁବକମାନେ ବିବାହ ବଜାରରେ ଯେତେ ଆକର୍ଷଣୀୟ ହୁଅନ୍ତୁ ନା କାହିଁକି, ସେମାନଙ୍କର ପ୍ରକୃତ ସ୍ଥିତି ବେଳେବେଳେ ଦାଦନ ଶ୍ରମିକ ଠାରୁ ମଧ୍ୟ ହୀନ । ଏମାନଙ୍କର କାରବାର ପାଇଁ ଆମେରିକାରେ ଗୋଟିଏ ଶବ୍ଦ ପ୍ରଚଳିତ କରିଛି, 'ବଡ଼ି-ସପିଙ୍ଗ୍' । ଏହାର ସ୍ଥୂଳ ଓଡ଼ିଆ ଅନୁବାଦ 'ଦେହ-ବ୍ୟାପାର' କିମ୍ବା 'ଦେହ କିଣା' ହେବ । ଆମେରିକା-ଜାପାନ୍ ଭଳି ଦେଶମାନଙ୍କରେ କମ୍ପ୍ୟୁଟର୍‌ର ଏତେ ବେଶୀ ବ୍ୟବହାର ହେଉଛି ଯେ, ସେମାନେ ପଛୁଆ ଦେଶମାନଙ୍କର କମ୍ପ୍ୟୁଟର ବିଜ୍ଞାନୀମାନଙ୍କୁ ଭଡ଼ାରେ ନେଇ ଶସ୍ତାରେ ନିଜର କାମ କରାଇ ନେଉଛନ୍ତି । ଅନୁନ୍ନତ ଦେଶରୁ ଆସୁଥିବା ଏହି କମ୍ପ୍ୟୁଟର୍ ବୈଜ୍ଞାନିକମାନଙ୍କୁ ଯୋଗ୍ୟତା ତୁଳନାରେ ନିମ୍ନମାନର କାମ କରିବାକୁ ଦିଆଯାଏ । ତେଣୁ ଏହାକୁ ମସ୍ତିଷ୍କ-ବ୍ୟାପାର ନକରି ଦେହ-ବ୍ୟାପାର କୁହାଯାଉଛି । ତାଙ୍କ ନିଜ ଦେଶରେ ଯେଉଁ କାମ ପାଇଁ ପଚାଶ ଗୁଣ ଅଧିକ ପଇସା ଦେବାକୁ ପଡ଼ନ୍ତା, ସେହି କାମ ଅତି ଶସ୍ତାରେ କରାଇ ନେଉଛନ୍ତି ।

ଦାଦନ-ଶ୍ରମିକ ବା ବେଶ୍ୟା ବ୍ୟବସାୟ ପାଇଁ ଯେପରି ଦଲାଲ୍ ହୁଅନ୍ତି, ଆମର ଶ୍ରେଷ୍ଠ ଓ ମେଧାବୀ ଯୁବକମାନଙ୍କୁ ନେଇ ଅସ୍ଥାୟୀ ଭାବରେ ବିଦେଶ ପଠାଇବା ପାଇଁ ମଧ୍ୟ ଦଲାଲ୍ ନିଯୁକ୍ତି ହେଉଛନ୍ତି । ଭାରତର ମହାନଗରୀମାନଙ୍କରେ ଏଭଳି ଦଲାଲ୍-ସଂସ୍ଥାଟିମାନ ଗଢ଼ାଯାଇଛି, ଯେଉଁଗୁଡ଼ିକ ବିଦେଶ ଯାତ୍ରା ଓ ଅଧିକ ଉପାର୍ଜନର ଲୋଭ ଦେଖାଇ ଦେଶର ମେଧାବୀ ଯୁବକମାନଙ୍କୁ ବିଦେଶୀ କମ୍ପାନୀମାନଙ୍କର ସେବା କରିବା ପାଇଁ ପଠାଉଛନ୍ତି । ଧନୀ ଦେଶରେ ତିନି ଚାରି ବର୍ଷ ରହିଲା ପରେ କାଳେ ଏମାନେ ସେ ଦେଶରେ ସ୍ଥାୟୀ ଭାବରେ ରହିଯିବାକୁ ଚାହିଁବେ, ଏହାକୁ ରୋକିବା ପାଇଁ ସେ

ଦେଶର ସରକାରମାନେ କଡ଼ା ଆଇନ୍ କରିଦେଲେଣି ଯେ, ଏହି କମ୍ପ୍ୟୁଟର କର୍ମୀମାନେ ଚାରିବର୍ଷରୁ ବେଶୀ ସମୟ ତାଙ୍କ ଦେଶରେ ରହିପାରିବେ ନାହିଁ।

ବିକାଶ ଅଭିମୁଖୀ ଓ ରପ୍ତାନୀ ଅଭିମୁଖୀ ଶିକ୍ଷାର ଏ ଦିଗ ବିଷୟରେ ଆମର ଶିକ୍ଷାବିତ୍‌ମାନେ ଚିନ୍ତିତ ନୁହନ୍ତି। କାରଣ ଯେଉଁଠି ଧନ୍ଦା ମିଳୁଛି ଓ ବିଦେଶୀ ମୁଦ୍ରାର ଉପାର୍ଜନ ହୋଇପାରୁଛି, ତାହାକୁ ପ୍ରଶ୍ନ କରିବାର ସାହସ ଆମର ନାହିଁ।

୪

'ଧନ୍ଦାମୂଳକ ଶିକ୍ଷା'ର ନିରର୍ଥକ ଭାଷଣବାଜିରେ ଶିକ୍ଷାର ମୌଳିକ ଓ ଶାଶ୍ୱତ ପ୍ରଶ୍ନଗୁଡ଼ିକ ଲୁଚିଯାଉଛି। ଶିକ୍ଷାରେ ଭାଷାର ପ୍ରଶ୍ନ ଏଯାଏ ସମାହିତ ହୋଇନାହିଁ। ଏକ ସଙ୍କ୍ରମଣକାଳୀନ ଭାଷା ରୂପେ ଯେଉଁ 'ତ୍ରିଭାଷୀ ସୂତ୍ର' ବାହାରିଥିଲା, ତାହା ଏକ ସ୍ଥାୟୀ ବ୍ୟବସ୍ଥା ହୋଇଗଲା ବୋଲି ଆମର ଶିକ୍ଷାବିତ୍‌ମାନେ ଧରିନେଇଛନ୍ତି। ରାଷ୍ଟ୍ରୀୟ ଚରିତ୍ରରେ ଉନ୍ନତି ପାଇଁ ଶିକ୍ଷାପ୍ରଣାଳୀରେ କୌଣସି ବ୍ୟବସ୍ଥା କରାଯାଇପାରେ କି ନାହିଁ ଏହାର ଚର୍ଚ୍ଚା ବହୁଦିନରୁ ବନ୍ଦ ହୋଇଗଲାଣି। ଆମର ପାଠ୍ୟକ୍ରମ କେତେଦୂର ଯୁଗୋପଯୋଗୀ ଓ ଭବିଷ୍ୟତ ସମାଜ ଗଠନ ପାଇଁ କେତେଦୂର ଉଦ୍ଦିଷ୍ଟ? ବିଶେଷଜ୍ଞ ମହଲରେ ତଥା ସର୍ବସାଧାରଣରେ ଏ ବିଷୟକ ପ୍ରଶ୍ନଗୁଡ଼ିକର ବିସ୍ତୃତ ଆଲୋଚନା ହେବା ଦରକାର।

ଧନ୍ଦା ଓ ଶିକ୍ଷାର ଯେଉଁ ସମ୍ପର୍କ ବିଷୟରେ କ୍ୱଚିତ୍ ଚର୍ଚ୍ଚା ହୋଇଥାଏ, ତାହା ହେଉଛି ସାଧାରଣ ଶିକ୍ଷା ଓ ପେଶାଗତ ବା ଧନ୍ଦାମୂଳକ ଶିକ୍ଷାକୁ କିପରି ପରସ୍ପର ସାଙ୍ଗରେ ସମ୍ବନ୍ଧିତ କରାଯିବ? କେଉଁ ବିଦ୍ୟାର୍ଥୀ କେଉଁ ସମୟରେ ସାଧାରଣ ଶିକ୍ଷାକୁ ଛାଡ଼ି ପେଶାଗତ ଶିକ୍ଷାକୁ ଚାଲିଯିବ କିମ୍ବା ପେଶାଗତ ଶିକ୍ଷାକୁ ଯିବାପରେ ମଧ୍ୟ ସାଧାରଣ ଶିକ୍ଷାରୁ ବଞ୍ଚିତ ହେବନାହିଁ, ଏସବୁର ପ୍ରକ୍ରିୟା ଏକ ସଭ୍ୟ ସମାଜରେ ରହିବା ଦରକାର। ଶିକ୍ଷାର ଉଦ୍ଦେଶ୍ୟ ଯଦି ବ୍ୟକ୍ତିର ନିଜସ୍ୱ ପ୍ରତିଭାର ବିକାଶ, ତାହାହେଲେ ଜୀବନରେ ଧନ୍ଦା ଆଡ଼କୁ ଯିବାବେଳେ ତାକୁ ମାର୍ଗଦର୍ଶକମାନଙ୍କର ସହଯୋଗ ଦରକାର। ଯେପର୍ଯ୍ୟନ୍ତ କୌଣସି ଏକ ଧନ୍ଦାରେ ସେ ସ୍ଥିର ହୋଇ ନ ପାରିଛି, ସେ ପର୍ଯ୍ୟନ୍ତ ତାହାର ଶିକ୍ଷା ସଂସ୍ଥା ତାହାର ସହଯୋଗୀ ରୂପେ ରହିବା ଦରକାର। ତାହାହେଲେ ଶିକ୍ଷା ସଂସ୍ଥାମାନେ ନାଗରିକ ଜୀବନର ଏକ ମହତ୍ୱପୂର୍ଣ୍ଣ ଅଙ୍ଗ ହୋଇ ରହିବେ ଓ ବ୍ୟକ୍ତି କେବେ ହେଲେ ନିଜର ଶିକ୍ଷା ସଂସ୍ଥାକୁ ଭୁଲି ପାରିବ ନାହିଁ। ଶିକ୍ଷା ସଂସ୍ଥାମାନଙ୍କର ଏପରି ଏକ ସହଯୋଗୀ ଭୂମିକା ନ ରହିଲେ ବ୍ୟକ୍ତି ନିଜର ପୂର୍ଣ୍ଣତା ଲାଭ କରିବା ପାଇଁ ସ୍ୱାଧୀନ ନୁହେଁ। ତାହାର ପେଶା ନିଜର ପୂର୍ଣ୍ଣତାର ପଥରେ ଅନ୍ତରାୟ ହେବ। ଯେଉଁ ସମାଜରେ ବ୍ୟକ୍ତି ନିଜର ପ୍ରତିଭା ଓ ରୁଚି ଅନୁଯାୟୀ ପେଶାର ଚୟନ କରି ପାରେ ନାହିଁ, ସେହି ସମାଜକୁ ଆମେ ପ୍ରକୃତରେ ଗଣତାନ୍ତ୍ରିକ ବା ସଭ୍ୟ ବୋଲି କହି ପାରିବା କି?

ଧନ୍ଦା ହିଁ ଜୀବନ ହେବ, ଏପରି ଏକ ସମାଜର କଳ୍ପନା ବୋଧହୁଏ ଆଧୁନିକ ଯୁଗରେ ସମ୍ଭବ ହେବନାହିଁ। କିନ୍ତୁ ବ୍ୟକ୍ତି ପ୍ରତିଭାର ବିକାଶ ପାଇଁ ଅନୁକୂଳ ଧନ୍ଦାଟିଏ

ପ୍ରତି ମନୁଷ୍ୟକୁ ମିଳୁ, ଏହା ସମ୍ଭାବନାର ପରିଧି ଭିତରେ ନିଶ୍ଚୟ । ସମାଜ ବ୍ୟବସ୍ଥା ଓ ଶିକ୍ଷା ବ୍ୟବସ୍ଥା, ଉଭୟର ସଂସ୍କାର ଏଥିପାଇଁ ଲୋଡ଼ା । କେତେକ ପ୍ରକାର ଧନ୍ଦାର ସାମାଜିକ ପ୍ରତିଷ୍ଠା ନାହିଁ । ଆଉ କେତେକ ପ୍ରକାରର ଧନ୍ଦାର ସାମାଜିକ ପ୍ରତିଷ୍ଠା ଅତି ବେଶୀ । ତେଣୁ ଧନ୍ଦାଗୁଡ଼ିକ ପ୍ରତି ଯେଉଁ ଏକ ସମ୍ୟକ ଦୃଷ୍ଟିକୋଣ ବିକଶିତ ହେବା କଥା, ତାହା ଶିକ୍ଷା ମାଧ୍ୟମରେ ହୋଇପାରୁ ନାହିଁ । ଅଧିକନ୍ତୁ ଶାରୀରିକ ଶ୍ରମ ଉପରେ ପର୍ଯ୍ୟବେଶିତ ଧନ୍ଦା ପ୍ରତି ବିତୃଷ୍ଣା ବଢ଼ିଯାଇଛି । କେବଳ ଶିକ୍ଷାଦ୍ୱାରା ଏହାର ନିରାକରଣ ହେବନାହିଁ ସତ । କିନ୍ତୁ ତାହାର ଅର୍ଥ ନୁହେଁ ଯେ, ଶିକ୍ଷା ବ୍ୟବସ୍ଥାରେ ଶରୀର-ଶ୍ରମ ପ୍ରତି ଦୃଷ୍ଟିକୋଣ ବଦଳାଇବାର ଚେଷ୍ଟା ହେବନାହିଁ । ଯେଉଁ ଦେଶରେ ଷାଠିଏ ଭାଗ ଲୋକ ନିରକ୍ଷର ଓ ସତୁରି ଭାଗ ଲୋକ କୃଷି ଉପରେ ନିର୍ଭରଶୀଳ; ସେ ଦେଶର ଶିକ୍ଷା ବ୍ୟବସ୍ଥାରେ ଶରୀର ଶ୍ରମ ପ୍ରତି ଦୃଷ୍ଟିକୋଣ ବଦଳାଇବାର କୌଣସି ପାଠ୍ୟକ୍ରମ ନାହିଁ ।

ଶିକ୍ଷାର ଉଦ୍ଦେଶ୍ୟ ଚତୁର୍ବିଧ । ବ୍ୟକ୍ତିକୁ ଆତ୍ମସଚେତନ କରିବା, ସମାଜ ସଚେତନ କରିବା, ତାକୁ ସମାଜରେ କାର୍ଯ୍ୟକ୍ଷମ କରିବା ଓ ଜ୍ଞାନର ପ୍ରସାର ତଥା ଅନୁସନ୍ଧାନ କାର୍ଯ୍ୟକୁ ବ୍ୟବସ୍ଥିତ କରିବା । ସାମ୍ପ୍ରତିକ ପାଠ୍ୟକ୍ରମମାନଙ୍କରେ ଶେଷୋକ୍ତ ତିନୋଟି ଉଦ୍ଦେଶ୍ୟ ପ୍ରତି ଦୃଷ୍ଟି ଦିଆଯାଉଛି ବୋଲି ଦାବୀ କରାଯାଇପାରେ । କିନ୍ତୁ ଆଧୁନିକ ଶିକ୍ଷା ବ୍ୟବସ୍ଥାରେ ଆତ୍ମଚେତନାର କୌଣସି ସ୍ଥାନ ନାହିଁ । ଧର୍ମ, ଦର୍ଶନ କିମ୍ବା ମନସ୍ତତ୍ତ୍ୱର ବିଶେଷ ଅଧ୍ୟୟନ ପାଇଁ ପାଠ ରହିଛି, କିନ୍ତୁ ଜଣେ ହାରାହାରି ବ୍ୟକ୍ତିକୁ ଆତ୍ମ-ସଚେତନ କରିବାର ପାଠ୍ୟକ୍ରମ ନାହିଁ ।

ମନୁଷ୍ୟ ତାହାର ନିଜର ପୂର୍ଣ୍ଣତାର କିପରି ଭାବରେ ଉପଲବ୍ଧି କରିପାରିବ ? ପୂର୍ଣ୍ଣତା କହିଲେ କ'ଣ ? ଧନ ଓ କ୍ଷମତା ବ୍ୟତୀତ ମନୁଷ୍ୟର ଆଉ କିଛି ପାଇବାର ଅଛି କି ? ଏହି ବିଷୟରେ ଜାଣିବାର ଓ ବିବେକ ଚାଳନା କରିବାର କୌଣସି ବ୍ୟବସ୍ଥିତ ଧାରା ନଥିବାରୁ ଆଧୁନିକ ମନୁଷ୍ୟ ବେଳେ ବେଳେ ହତାଶ ଓ ଉଦ୍‌ଭ୍ରାନ୍ତ ହୋଇପଡୁଛି । ପ୍ରାଚୀନ ଶିକ୍ଷା ପଦ୍ଧତିରେ ଧର୍ମ ଶିକ୍ଷା ଜରିଆରେ ମନୁଷ୍ୟ ଆତ୍ମ-ସଚେତନ ହେଉଥିଲା । ଏସବୁ ଧର୍ମ ଶିକ୍ଷା ନିଶ୍ଚିତ ଭାବରେ ଅପ୍ରାସଙ୍ଗିକ ହୋଇଯାଇଛି । ତେଣୁ ଆତ୍ମଚେତନା ଜାଗ୍ରତ କରିବାର ଏକ ଧର୍ମ ନିରପେକ୍ଷ ପଦ୍ଧତି ଲୋଡ଼ା । ନଚେତ୍ ଏକ ଦିଗରେ ମନୁଷ୍ୟ ଅଧିକରୁ ଅଧିକ ସ୍ୱାର୍ଥକୈନ୍ଦ୍ରିକ ହୋଇଯାଇଛି ଓ ଅନ୍ୟଦିଗରେ ରାଜ୍ୟ ବ୍ୟବସ୍ଥା ଓ ବଜାର ବ୍ୟବସ୍ଥାର ପ୍ରକାଣ୍ଡ କେନ୍ଦ୍ରୀଭୂତ ଶକ୍ତି ଆଗରେ ନିଜକୁ ଅସହାୟ ମନେକରୁଛି । ଯେତିକି ଅସହାୟ ହେଉଛି, ସେତିକି ସ୍ୱାର୍ଥପର ଓ ସଙ୍କୀର୍ଣ୍ଣ ହେଉଛି । ଆତ୍ମଚେତନା ହିଁ ମଣିଷକୁ ନୈତିକ କରାଏ ଓ ସମାଜ ପ୍ରତି ଦାୟିତ୍ୱବୋଧ ଜନ୍ମାଏ । କେବଳ ଧନ ଓ କ୍ଷମତାର ଲୋଭ ଦେଖାଇ, ପ୍ରତିଯୋଗିତାର ଇଚ୍ଛାକୁ ଉତ୍ତେଜିତ କରାଇ, ବ୍ୟକ୍ତି ଦ୍ୱାରା ସାମାଜିକ କାର୍ଯ୍ୟ କରାଇନେବାର ଯେଉଁ ଆଧୁନିକ ଚେଷ୍ଟା ଚାଲିଛି, ତାହା ଆମକୁ ଏକ ନୂତନ ବର୍ବର ଯୁଗ ଆଡ଼କୁ ଟାଣିନେଉଛି ।

ନୈତିକ ଚେତନା ଓ ସାମାଜିକ ଚେତନା ବଢ଼ାଇବାର ପାଠ୍ୟକ୍ରମ ସହଜରେ ତିଆରି ହୋଇପାରିବ ନାହିଁ । କେଉଁ ନୈତିକତା ? କେଉଁ ସାମାଜିକ ଚେତନା ?

ଗୋଟିଏ ନିର୍ଦ୍ଦିଷ୍ଟ ବିଚାରଧାରା ଅନୁଯାୟୀ ଯଦି ଏଗୁଡ଼ିକୁ ପାଠ୍ୟକ୍ରମରେ ରଖାଯାଏ, ତାହାହେଲେ ଆପତ୍ତି ଉଠିବ ଯେ, ପିଲାଙ୍କ ଉପରେ ଗୋଟିଏ ପ୍ରକାରର ବିଚାରଧାରା ଲଦିବା ଠିକ୍ ନୁହେଁ । ବର୍ତ୍ତମାନର ପ୍ରଚଳିତ ପାଠ୍ୟକ୍ରମମାନଙ୍କରେ ମଧ୍ୟ ଏହି ବିପଦ ରହିଛି । ବ୍ୟକ୍ତିକୁ ତାହାର ଦେଶ, ଭାଷା, ଅଞ୍ଚଳ ଓ ଐତିହ୍ୟ ବିଷୟରେ ଶିକ୍ଷାଦାନ ସମୟରେ ମଧ୍ୟ ଏହି ସମସ୍ୟା ଉଠୁଛି । ଗତ କେତେବର୍ଷ ମଧ୍ୟରେ ଭାରତର କେତେକ ରାଜ୍ୟରେ ଭାରତୀୟ ଜନତା ପାର୍ଟି ଓ କମ୍ୟୁନିଷ୍ଟ୍ ପାର୍ଟିର ସରକାରମାନଙ୍କ ଦ୍ୱାରା ପିଲାଙ୍କର ପାଠ୍ୟପୁସ୍ତକମାନଙ୍କୁ ବଦଳା ଯାଇଥିଲା । ତାହାର ସମାଲୋଚନା କରିବା ସମୟରେ ଏକଥା ବି ସ୍ପଷ୍ଟ ହୋଇଗଲା ଯେ, କଂଗ୍ରେସ୍ ଦଳର ସରକାର ବହୁଦିନରୁ ଯାହା କରିଆସୁଥିଲେ ଭାରତୀୟ ଜନତା ପାର୍ଟି ଓ କମ୍ୟୁନିଷ୍ଟ୍ ପାର୍ଟି ମଧ୍ୟ ସେହି ପଦାଙ୍କ ଅନୁସରଣ କରିଛନ୍ତି ।

ଶିକ୍ଷାକୁ ସ୍ୱୀକାର କରିବା ଦ୍ୱାରା ହିଁ ଏହି ସମସ୍ୟାର ସମାଧାନ ହୋଇପାରିବ । ଶିକ୍ଷାର ସ୍ୱାୟତ୍ତତା ବିଷୟରେ ରାଜନୈତିକ ଦଳମାନଙ୍କର ଏକ ଆଚରଣ ସଂହିତା ରହିବା ଦରକାର । ଦଳୀୟ ଗଣତନ୍ତ୍ରରେ ଯଦି ପ୍ରତ୍ୟେକ ନୂଆ ଦଳର ସରକାର ଗଢ଼ାହେବା ସଙ୍ଗେ ସଙ୍ଗେ ପାଠ୍ୟପୁସ୍ତକମାନଙ୍କର ପରିବର୍ତ୍ତନ ହୋଇଚାଲିବ, ରାସ୍ତା ଓ ଛକମାନଙ୍କର ନାମ ମଧ୍ୟ ବଦଳିଯିବ, ତାହାହେଲେ ଦେଶ ଏକ ପାଗଳଖାନାରେ ପରିଣତ ହେବ । ପ୍ରତ୍ୟେକ ପାଠ୍ୟପୁସ୍ତକରେ, ତାହା ନୀତିଶାସ୍ତ୍ର ହେଉ ବା ଇତିହାସ ହେଉ ବା ଜୀବ ବିଜ୍ଞାନ ହେଉ କୌଣସି ନା କୌଣସି ବିଚାରଧାରା ଅନ୍ତର୍ନିହିତ ଭାବରେ ରହିବ । ପ୍ରତ୍ୟେକ ଯୁଗର କେତେକ ସର୍ବମାନ୍ୟ ବିଚାର ଥାଏ । ଗଣତନ୍ତ୍ର, ଜନମଙ୍ଗଳ ରାଷ୍ଟ୍ର, ଧର୍ମନିରପେକ୍ଷତା, ପରିବେଶ ରକ୍ଷା, ସାମାଜିକ ସମାନତା ଓ ମନୁଷ୍ୟର ନୈତିକତା, ଏ ଯୁଗର କେତେଗୁଡ଼ିଏ ସର୍ବମାନ୍ୟ ବିଚାର । ଏଭଳି ସିଦ୍ଧାନ୍ତଗୁଡ଼ିକ ଉପରେ ଭିତ୍ତିକରି ପାଠ୍ୟକ୍ରମ ତିଆରି ହେବ ଓ ତାହାର ଦାୟିତ୍ୱରେ କେବଳ ଶିକ୍ଷାବିତ୍, ସମାଜଶାସ୍ତ୍ରୀ ଓ ମନସ୍ତତ୍ତ୍ୱବିତ୍‌ମାନେ ରହିବେ । ଯେଉଁ ସୀମାକୁ ଅତିକ୍ରମ କଲେ ଗୋଟିଏ ବିଚାରଧାରାକୁ ଲଦି ଦିଆଯାଉଛି ବୋଲି ଜଣାପଡ଼ିବ, ଏହାର ଅନୁପାତର ମୀମାଂସା ସେମାନେ କରିବେ । ସେମାନଙ୍କର ନିଷ୍ପତ୍ତି ଭୁଲ୍ ହେଲେ ମଧ୍ୟ ଶାସକଦଳ ତାହାକୁ ଗ୍ରହଣ କରିବାକୁ ବାଧ୍ୟ ହେବ । ଏହିପରି ଭାବରେ ପାଠ୍ୟକ୍ରମ ନିର୍ମାଣର ଏକ ସ୍ୱାୟତ୍ତ ପ୍ରକ୍ରିୟା ପ୍ରଚଳିତ କରାଇବାକୁ ହେବ ।

ଏକ ଦିଗଭ୍ରଷ୍ଟ ସମାଜରେ ଭବିଷ୍ୟତ ଶିକ୍ଷାର ରୂପରେଖ ନିରୂପଣ କରିବାକୁ ହେଲେ କେବଳ ପତ୍ରପତ୍ରିକା ଓ ସେମିନାର୍ ଯଥେଷ୍ଟ ନୁହେଁ । ପ୍ରୟୋଗଧର୍ମୀ ଆନ୍ଦୋଳନ ମଧ୍ୟ ଏଥିପାଇଁ ଆବଶ୍ୟକ । କେତେକ ପ୍ରତିବଦ୍ଧ ଲୋକ ନିଜର ଆଦର୍ଶ ଓ ବିଶ୍ୱାସ ଅନୁସାରେ 'ମଡେ଼ଲ୍' ସ୍ଥାପନା କରିବା ପାଇଁ ବାହାରିବା ଦରକାର; ଯଦିଓ ଏ ବାବଦରେ ଆମର ଅନୁଭୂତି ନିରାଶାଜନକ । ଗାନ୍ଧୀ, ଟେଗୋର୍, ଅରବିନ୍ଦ ବା ଗିଜୁଭାଇ ଗୋଟିଏ ସମୟରେ ଯେଉଁସବୁ ପ୍ରୟୋଗ କରିଥିଲେ, ଭାରତର ସମ୍ବିଧାନ ନିର୍ମାତାମାନେ ଓ ୧୯୫୦ ଦଶକର ବୁଦ୍ଧିଜୀବୀମାନେ ତାହାକୁ ସମ୍ମାନ ଦେଲେ ନାହିଁ ଓ ସମ୍ପୂର୍ଣ୍ଣ ଭାବରେ ବରଖାସ୍ତ କରିଦେଲେ । କାରଣ ସେମାନେ ଔପନିବେଶିକ ଶିକ୍ଷା ପଦ୍ଧତିକୁ ପୂର୍ଣ୍ଣ ଭାବରେ ତ୍ୟାଗ

କରିବାର ସପକ୍ଷରେ ନଥିଲେ । ୧ ୯ ୯ ୦ ଦଶକରେ ଏହି ଔପନିବେଶିକ ଶିକ୍ଷା ପଦ୍ଧତିର ଯେଉଁ ନୂଆ ଦୁଷ୍ପରିଣାମଗୁଡ଼ିକ ବାହାରୁଛି, ତାହାର ପରିପ୍ରେକ୍ଷୀରେ ଓ ଆର୍ଥିକ ସାମ୍ରାଜ୍ୟବାଦ ବିରୁଦ୍ଧରେ ମୁଣ୍ଡ ଟେକୁଥିବା ଗଣଆନ୍ଦୋଳନମାନଙ୍କର ସହ ଖାପ ଖୁଆଇ ହୁଏତ ପୁଣି ଥରେ ଶିକ୍ଷାର ବିକଳ୍ପ ଖୋଜିଲେ ପ୍ରୟୋଗଧର୍ମୀ କାର୍ଯ୍ୟକ୍ରମମାନଙ୍କର ଅଭ୍ୟୁଦୟ ହୋଇପାରିବ ।

# ଭାଷା, ଉପଭାଷା, ମାତୃଭାଷା

ଭାଷାର ଗୁରୁତ୍ୱକୁ ଦୁଇଟି ଦିଗରୁ ବିଚାର କରିବା କଥା । ସମ୍ପୂର୍ଣ୍ଣ ପ୍ରାଣୀ ଜଗତରେ ମନୁଷ୍ୟର ବିଶେଷତ୍ୱକୁ ଦର୍ଶାଇବା ପାଇଁ ମନୁଷ୍ୟକୁ ଏକ ବିଚାର ବିବେଚନା କରୁଥିବା ପ୍ରାଣୀ ବୋଲି ଚିହ୍ନିତ କରାଯାଏ । ଏହି ବିଚାର ବିବେଚନା କେବଳ ଭାଷାଦ୍ୱାରା ହିଁ ସମ୍ଭବ ହୁଏ । ଅତ୍ୟନ୍ତ ନିମ୍ନ ଧରଣର ଭାବ ବିନିମୟ ପଶୁମାନେ ମଧ୍ୟ ବିଭିନ୍ନ ସଙ୍କେତ ଦ୍ୱାରା କରିପାରନ୍ତି । କିନ୍ତୁ ସଙ୍କେତ ପ୍ରେରଣ ଭାଷା ନୁହେଁ । ଭାଷା ଦ୍ୱାରା ହିଁ ଅନୁଭୂତି, ପ୍ରତିକ୍ରିୟା ଓ ବିଚାରକୁ ସଞ୍ଚିତ କରାଯାଇପାରେ ଓ ସଞ୍ଚିତ ବିଚାରଗୁଡ଼ିକର ସଞ୍ଚାଳନ ବା ବିନିମୟ ଅନ୍ୟ ମନୁଷ୍ୟମାନଙ୍କ ସାଙ୍ଗରେ ହୋଇପାରେ । ଏହିସବୁ ବିଚାର ବିନିମୟରୁ ନାନା ପ୍ରକାରର ବିଚାର ପ୍ରଣାଳୀ ସୃଷ୍ଟି ହୁଏ ଓ ମନୁଷ୍ୟମାନେ ନିଜ ନିଜର ସଂସ୍କୃତି ତିଆରି କରି ତାହା ଭିତରେ ରହନ୍ତି । ପଶୁମାନେ ପ୍ରକୃତିଦତ୍ତ ପ୍ରବୃତ୍ତିଗୁଡ଼ିକୁ ନେଇ ସାମୂହିକ ତଥା ନିଜସ୍ୱ ଜୀବନଯାପନ କରନ୍ତି । କିନ୍ତୁ ମନୁଷ୍ୟ ନିଜ ଦ୍ୱାରା ତିଆରି ସଂସ୍କୃତି ଦ୍ୱାରା ହିଁ ସାମାଜିକ ତଥା ବ୍ୟକ୍ତିଗତ ଜୀବନର ସବୁ କାମ ସମ୍ପନ୍ନ କରିଥାଏ । ଅତଏବ୍ ବୁଝିବାକୁ ହେବ ଯେ, ଭାଷା ବଳରେ ମନୁଷ୍ୟ ସ୍ୱାୟତ୍ତ ଅର୍ଥାତ ସୁନିୟନ୍ତ୍ରିତ ହୋଇପାରିଛି ।

ତେଣୁ ପରିବାର ହେଉ ବା ରାଷ୍ଟ୍ର ବା ପ୍ରଦେଶ, ପ୍ରତ୍ୟେକ ମାନବଗୋଷ୍ଠୀର ବିକାଶ ପାଇଁ ଭାଷା ଏକ ମୌଳିକ ଅସ୍ତ୍ର । ଭାଷାବିଷୟକ ପ୍ରତ୍ୟେକ ଗୋଷ୍ଠୀର ଏକ ସ୍ପଷ୍ଟ ନୀତି ବା ଦୃଷ୍ଟିକୋଣ ରହିବା ଦରକାର । ତାହାହେଲେ ଏହା କ'ଣ ଏକ ଦୁର୍ଭାଗ୍ୟର ବିଷୟ ନୁହେଁ ଯେ, ଆମେ ଭାରତବାସୀ ଓ ତନ୍ମଧ୍ୟରେ ଓଡ଼ିଶାବାସୀ ଏଯାବତ୍ ଆମର ଏକ ଭାଷା ନୀତି ସ୍ଥିର କରିପାରିନାହୁଁ? ଭାଷା ବିଷୟରେ ଆମେ କହିଆସିଛୁ ଗୋଟିଏ ଭାବରେ, ଆଚରଣ କରୁଛୁ ଅନ୍ୟ ଭାବରେ । ଫକୀରମୋହନ ଓ ଗଙ୍ଗାଧରଙ୍କର ମାତୃଭାଷା ସମ୍ବନ୍ଧୀୟ ପଦ୍ୟୋକ୍ତିମାନଙ୍କୁ କହି, ଶୁଣି ଆମେ ଅନୁପ୍ରାଣିତ ଅନୁଭବ କରୁ । ହୁଏତ ଏହା ଏକ ଗାଉଁଲି ଭାବପ୍ରବଣତା, କିମ୍ବା ଆମେ ଓଡ଼ିଶାର ଶିକ୍ଷିତମାନେ ଏକ ମେରୁଦଣ୍ଡ ବିହୀନ ଓ ସଂସ୍କୃତି ବିହୀନ ଗୋଷ୍ଠୀ । ଶିକ୍ଷିତମାନେ ଏ ବିଷୟରେ ଚର୍ଚ୍ଚା କଲାବେଳେ ଅଧାରେ ଛାଡ଼ିଦିଅନ୍ତି । ତର୍କକୁ ଶେଷ ପର୍ଯ୍ୟନ୍ତ ନେଇଯିବା ତାଙ୍କୁ ଅଡୁଆରେ ପକେଇ ଦେବ ବୋଲି ସେମାନେ ଭୟ କରନ୍ତି । ଏହି ଭୟକୁ ଲଘିବା ପାଇଁ ଆମେ ଓଡ଼ିଶାର ଶିକ୍ଷିତମାନଙ୍କୁ ଦୁଇଟି ପ୍ରଶ୍ନର ପୁରା ଜବାବ ଦେବାପାଇଁ ଅନୁରୋଧ କରୁ ।

'ମାତୃଭୂମି ମାତୃଭାଷାରେ ମମତା ଯା' ହୃଦେ ଜନମି ନାହିଁ

ତାକୁ ଯଦି ଜ୍ଞାନୀ ଗଣରେ ଗଣିବା, ଅଜ୍ଞାନ ରହିବେ କାହିଁ ।' (ଗଙ୍ଗାଧର ମେହେର)

ଏହି ପଦ୍ୟାଂଶଟିରେ ଯାହା କୁହାଯାଇଛି, ତାହା କ'ଣ ଏକ ମଫସଲିଆ ଅନ୍ଧବିଶ୍ୱାସ, ନା ତହିଁରେ ଏକ ନୃତାତ୍ତ୍ୱିକ ସତ୍ୟ ନିହିତ ଅଛି ? ଯେଉଁମାନେ ଏହାକୁ ଏକ ମଫସଲିଆ, ପୁରୁଣାକାଳିଆ ଭାବପ୍ରବଣତା ବୋଲି କହିବେ, ଆମେ ତାଙ୍କ ସାହସକୁ ଧନ୍ୟବାଦ ଦେବୁ । ସେମାନେ ଯଦି ରାଜ୍ୟ ଶାସନ ଓ ପାଠପଢ଼ା ଏକ ବିଦେଶୀ ଭାଷା ମାଧ୍ୟମରେ ହେଉ ବୋଲି ସମର୍ଥନ କରନ୍ତି, ସେଥିରେ ଆମେ ଅସହମତ ହେଲେ ମଧ୍ୟ ତାଙ୍କର ବିଚାର ଓ ଆଚରଣରେ ଏକ ସଙ୍ଗତି ରହିଛି ବୋଲି ମାନିବାକୁ ବାଧ୍ୟ ହେବୁ ।

ମେରୁଦଣ୍ଡବିହୀନ ସେଇମାନେ ଯେଉଁମାନେ ମାତୃଭାଷାର ଗାରିମାକୁ ମାନୁଛନ୍ତି କିନ୍ତୁ ବିଦେଶୀ ଭାଷାର ପ୍ରଚଳନକୁ ସମର୍ଥନ କରୁଛନ୍ତି । ଆମେ ସେଇମାନଙ୍କ ବିଷୟରେ ଚିନ୍ତିତ । ଚର୍ଚ୍ଚା ଓ ଯୁକ୍ତିତର୍କ ବେଳେ ସେମାନେ ଅଦ୍ଭୁତ କଥାମାନ କହିଥାନ୍ତି । ସେଇ କଥାଗୁଡ଼ିକରେ ସତ୍ୟତା ନଥାଏ କିମ୍ବା ଯୁକ୍ତିଯୁକ୍ତତା ନଥାଏ, ଅଥଚ ପ୍ରତ୍ୟେକ ଶିକ୍ଷିତ ବ୍ୟକ୍ତି ସେଗୁଡ଼ିକର ପୁନରାବୃତ୍ତି କରନ୍ତି । ଗୋଲକ ବିହାରୀ ଧଳ ତାଙ୍କର ପୁସ୍ତକ 'ଓଡ଼ିଆ କେବେ ?'ରେ ଶିକ୍ଷିତ ଲୋକମାନଙ୍କର ଏଇ ସହରିଆ ଅନ୍ଧବିଶ୍ୱାସଗୁଡ଼ିକୁ ସମୂଳେ ଧ୍ୱଂସ କରିଛନ୍ତି । ଓଡ଼ିଆ ଭାଷା ଓ ସାହିତ୍ୟ କ୍ଷେତ୍ରରେ ଏହି ପୁସ୍ତକଟି ଅତି ଗୁରୁତ୍ୱପୂର୍ଣ୍ଣ ଓ ଓଡ଼ିଶାର ପ୍ରତ୍ୟେକ କଲେଜରେ ପାଠ୍ୟପୁସ୍ତକ ରୂପେ ସ୍ଥାନ ପାଇବା ଦରକାର ।

କେବଳ ଓଡ଼ିଶା ବା ଭାରତରେ ନୁହେଁ, ପୃଥିବୀର ବହୁ ଅଞ୍ଚଳରେ ଭାଷାମାନଙ୍କର ଅବକ୍ଷୟ ଓ ହୀନସ୍ଥିତି ହୋଇଚାଲିଛି ଓ ଯେଉଁଠି ଏହା ହେଉଛି ସେ ଦେଶମାନଙ୍କରେ ଗୌରବର ମଧ୍ୟ କୌଣସି ବୃଦ୍ଧି ହେଉନାହିଁ । ଗୋରା ସାମ୍ରାଜ୍ୟବାଦୀ ଦେଶମାନେ ଯେଉଁସବୁ ଅଞ୍ଚଳକୁ ଅଧିକାର କରି ନିଜର ଉପନିବେଶରେ ପରିଣତ କଲେ, ସେଠାକାର ବାସିନ୍ଦାମାନଙ୍କୁ ଅସଭ୍ୟ ଓ ସେମାନଙ୍କର ଭାଷାକୁ ଅଯୋଗ୍ୟ ବୋଲି ଘୋଷଣା କଲେ । ସାମ୍ରାଜ୍ୟବାଦୀମାନଙ୍କର ନିୟନ୍ତ୍ରଣ ଓ ପ୍ରଚାରର ଚାପ ଫଳରେ ଔପନିବେଶିକ ଦେଶମାନଙ୍କର ଶିକ୍ଷିତ ଲୋକମାନଙ୍କ ଭିତରେ ଏକ ବୌଦ୍ଧିକ ଗୋଲାମୀ ଆସିଗଲା ଓ ସେମାନେ ନିଜେ ନିଜର ଭାଷାକୁ ଅଯୋଗ୍ୟ ବୋଲି ଯୁକ୍ତି ବାଢ଼ି ବସିଲେ । ଆଜି ଜଣେ ହାରାହାରି ଶିକ୍ଷିତ ଭାରତୀୟ କହେ, ମୋ ଭାଷାଟି ଏକ ଅଯୋଗ୍ୟ ଭାଷା । କେବଳ ଓଡ଼ିଆ ନୁହେଁ, ହିନ୍ଦୀ, ତାମିଲ୍, ବଙ୍ଗଳା ସବୁଗୁଡ଼ିକ ହେଉଛନ୍ତି ଅଯୋଗ୍ୟ । ବୈଜ୍ଞାନିକ ଅନୁସନ୍ଧାନ ପାଇଁ, ଶିଳ୍ପ ବାଣିଜ୍ୟର ସଞ୍ଚାଳନ ପାଇଁ, ଦର୍ଶନ ଓ ସଂସ୍କୃତିର ବିବେଚନା ପାଇଁ ଏଗୁଡ଼ିକ ଅଯୋଗ୍ୟ ଭାଷା । ଏପରି କହିବା ଏକ ଚରମ ହୀନମନ୍ୟତା ।

ନୋଆମ୍ ଚମ୍‌ସ୍କିଙ୍କ ଭଳି ବହୁ ଭାଷାବିଜ୍ଞାନୀ ମାନନ୍ତି ଯେ, ପୃଥିବୀର ଯେଉଁ କେତେ ହଜାର ଭାଷାମାନଙ୍କୁ ଭାଷା ଭାବରେ ଚିହ୍ନିତ କରାଯାଇଛି, ସେମାନେ ସମାନ ଭାବରେ ଯୋଗ୍ୟ । ଗୋଟିଏ ଭାଷା ଅନ୍ୟ ଭାଷାଠାରୁ କମ୍ ଯୋଗ୍ୟ ବୋଲି କହିବାର

କୌଣସି ବୈଜ୍ଞାନିକ ଆଧାର ନାହିଁ । ଶବ୍ଦ ଭଣ୍ଡାର ସଙ୍ଗେ ଭାଷାର ଯୋଗ୍ୟତା ବା କ୍ଷମତାର ଅଙ୍ଗାଙ୍ଗୀ ସମ୍ପର୍କ ନାହିଁ । ଗୋଟିଏ ନିର୍ଦ୍ଦିଷ୍ଟ ଭାଷାକୁ କେଉଁ କେଉଁ କାମ କରିବାକୁ ପଡୁଛି, ତାହା ଉପରେ ନିର୍ଭର କରେ ଯେ, ସେ ଭାଷାର ଶବ୍ଦ ଭଣ୍ଡାର କେତେ ବଡ଼ ହେବ । କୌଣସି ଏକ ଭାଷା ଯେତେବେଳେ ଗୋଟିଏ ନୂଆ ରକମର ଦାୟିତ୍ୱ ନିଏ, ସେ ତାହାର ଶବ୍ଦ ଭଣ୍ଡାରରେ ନୂଆ ଶବ୍ଦମାନଙ୍କୁ ଗଢ଼େ ବା ପୁରାଏ । ଆଦିମକାଳରୁ ଏହି ପ୍ରକ୍ରିୟା ଚାଲି ଆସିଛି । ଆଧୁନିକ ବାଣିଜ୍ୟ, ଶିଳ୍ପ ବା ବିଜ୍ଞାନ କ୍ଷେତ୍ରରେ ଯେ ଓଡ଼ିଆ ବା ତାମିଲ୍ ଭାଷାର ଶବ୍ଦ ଭଣ୍ଡାର ଯଥେଷ୍ଟ ନୁହେଁ, ତାହାର ଏକମାତ୍ର କାରଣ ଓଡ଼ିଆ ବା ତାମିଲ୍ ଏସବୁର ଦାୟିତ୍ୱ ନେଇନାହାନ୍ତି । ଆଗ ଶବ୍ଦ ଆସୁ, ତାହା ପରେ ଆମେ ଆମ ଭାଷାରେ କାମ କରିବା ବୋଲି ଯେଉଁମାନେ କହନ୍ତି, ସେମାନଙ୍କର ଅଜ୍ଞାନତାର କୌଣସି ସୀମା ନାହିଁ ।

ଆହୁରି ଏକ ଅଜ୍ଞାନତାର ସୂଚକ ହେଉଛି ଏହି ଧାରଣା ଯେ, ବିଦେଶୀ ଭାଷା ହେଲେ ସୁଦ୍ଧା ଆମେ ଇଂରାଜୀକୁ ଅବାଧରେ ବ୍ୟବହାର କରିପାରିବୁ ଓ ସମସ୍ତ କାମ ସେଇ ଭାଷାରେ ଚଳେଇ ନେବୁ । ଏପରି ଦମ୍ଭ କରୁଥିବା ଲୋକେ ଫକୀରମୋହନଙ୍କର –

‘ପଢ଼ିଲି ନାନା ଦେଶ ଭାଷା
କାହିଁ ତ’ ନ ପୁରିଲା ଆଶା
ହେଉ ପଛେ ତାହା ନିକୃଷ୍ଟ
ମୋ ମାତୃଭାଷା ମୋତେ ଶ୍ରେଷ୍ଠ ।’

ଏହି ପଦ୍ୟାଂଶକୁ ମଫସଲିଆ ଭାବପ୍ରବଣତା ବୋଲି କହିବାର ସାହସ କରିବେ କି ? ଏ ବିଷୟରେ ଗୋଟିଏ ସିଦ୍ଧାନ୍ତ ଜାଣିବା ଦରକାର । ଜଣେ ଲୋକ ମାତୃଭାଷାରେ ଯେତିକି ପ୍ରବୀଣ ହୋଇପାରିବ ଅନ୍ୟ ଭାଷା ଓ ବିଦେଶୀ ଭାଷାରେ କେବେ ହେଲେ ସେତିକି ପ୍ରବୀଣ ହୋଇପାରିବ ନାହିଁ । ବିଦେଶୀ ଭାଷା ଉପରେ ଦୁଇଗୁଣ ବା ଚାରିଗୁଣ ଅଧିକ ସମୟ ଦେଇ ମଧ୍ୟ ଏହାର ପରୀକ୍ଷା କରାଯାଇପାରେ । ଭାଷାପ୍ରତି ସମ୍ବେଦନଶୀଳ ଜ୍ଞାନୀ ଲୋକେ ସର୍ବଦା କହିଥାନ୍ତି ଯେ, ଶୈଶବ ବା ବାଲ୍ୟାବସ୍ଥାରେ ଘର ବା ପରିବେଶରୁ ପ୍ରାପ୍ତ ଭାଷାକୁ ମଣିଷ ଯେତିକି ସ୍ୱଚ୍ଛନ୍ଦରେ ବ୍ୟବହାର କରିପାରେ, ସେଇ ଭାଷାରେ ସେ ଯେତିକି ମନଗହୀରର କଥା କହିପାରେ ବା ଲେଖିପାରେ, ଅନ୍ୟ ଭାଷା ଦ୍ୱାରା ତାହା ସମ୍ଭବ ନୁହେଁ । ଯେଉଁମାନେ ସ୍କୁଲରେ ଇଂରାଜୀ ଶିକ୍ଷା କରି ଇଂରାଜୀ କବିତା ଲେଖିବାକୁ ଚେଷ୍ଟା କରିଛନ୍ତି, ସେମାନେ କେବେ ହେଲେ ଉଚ୍ଚକୋଟିର କବି ହୋଇପାରିନାହାନ୍ତି ।

ରବୀନ୍ଦ୍ରନାଥ୍ ଠାକୁର୍‌ଙ୍କର କାବ୍ୟ ପ୍ରତିଭା ପ୍ରତି ଆକୃଷ୍ଟ ହୋଇ ତତ୍କାଳୀନ ଇଂରେଜ୍ କବି ୟୀଟ୍‌ସ୍ ରବୀନ୍ଦ୍ରନାଥ୍‌ଙ୍କର କବିତାଗୁଡ଼ିକର ଇଂରାଜୀ ଅନୁବାଦକୁ ସୁଧାରି ତାଙ୍କୁ ନୋବେଲ୍ ପୁରସ୍କାର ପାଇବାରେ ସାହାଯ୍ୟକାରୀ ହୋଇଥିଲେ । କିଛି ସମୟ ପରେ ରବୀନ୍ଦ୍ରନାଥ୍‌ଙ୍କ ସ୍ୱରଚିତ ଇଂରାଜୀ କବିତା ଓ ଲେଖାମାନଙ୍କୁ ପଢ଼ି ସେ ବିରକ୍ତ ହୋଇପଡ଼ିଥିଲେ ଓ ନିଜର ପ୍ରତିକ୍ରିୟା ପ୍ରକାଶ କରିଥିଲେ ଯେ, ‘ଗୁଡ଼ାଏ ଭଲ କବିତା ଲେଖିବା ପରେ ସେ ନିଜକୁ ଇଂରାଜୀ ଲେଖକ କରିବା ପାଇଁ ବାହାରିଛନ୍ତି ଓ ବାଜେ

ଜିନିଷମାନ ଲେଖୁଛନ୍ତି । ସେ ଇଂରାଜୀ ଜାଣନ୍ତି ନାହିଁ । କୌଣସି ଭାରତୀୟ ଇଂରାଜୀ ଜାଣନ୍ତି ନାହିଁ । ଯିଏ ଗୋଟିଏ ଭାଷାକୁ ନିଜ ବାଲ୍ୟକାଳରୁ ନିରବଧି ବ୍ୟବହାର କରୁନାହିଁ, ସେହି ଭାଷାରେ ନିଜର ଭାବ ବିଚାର ପ୍ରକାଶ କଲାବେଳେ ସେ ମାଧୁର୍ଯ୍ୟ ସୃଷ୍ଟି କରିପାରିବ ନାହିଁ କିମ୍ବା ଏକ ନିଜସ୍ୱ ଶୈଳୀ ଦେଇପାରିବ ନାହିଁ ।' (ଅଧୁନା ପ୍ରକାଶିତ କୃଷ୍ଣ ଦତ୍ତ ଓ ଏଣ୍ଡ୍ରୁ ରବିନ୍‌ସନ୍‌ଙ୍କର ପୁସ୍ତକ 'ରବୀନ୍ଦ୍ରନାଥ୍ ଟାଗୋର୍ – ଦି ମିରିଆଡ୍ ମାଇଣ୍ଡେଡ୍ ମାନ୍'ରୁ ଉଦ୍ଧୃତ)

ଓଡ଼ିଶାର ଜଣେ ଶ୍ରେଷ୍ଠ କବି ସଚ୍ଚିଦାନନ୍ଦ ରାଉତରାୟ କଲିକତାରେ ଅବସ୍ଥାନ କଲାବେଳେ ବଙ୍ଗ କବିମାନଙ୍କ ଦ୍ୱାରା ଆକୃଷ୍ଟ ହୋଇ ବଙ୍ଗଳାରେ କବିତା ଲେଖିବା ଆରମ୍ଭ କରିଥିଲେ । ତତ୍କାଳୀନ ଶ୍ରେଷ୍ଠ ବଙ୍ଗ କବିମାନେ ତାଙ୍କର କାବ୍ୟ ପ୍ରତିଭାକୁ ଚିହ୍ନିଲେ, କିନ୍ତୁ ପରାମର୍ଶ ଦେଲେ ଓଡ଼ିଆରେ ଲେଖିବା ପାଇଁ । ଇଂରାଜୀ ତୁଳନାରେ ବଙ୍ଗଳା ଭାଷା ସହିତ ଓଡ଼ିଆ ଭାଷାର ସାମଞ୍ଜସ୍ୟ ଅଧିକ ହେଲେ ସୁଦ୍ଧା ସେମାନେ ମନ୍ତବ୍ୟ ଦେଲେ ଯେ, ଓଡ଼ିଆ ଭାଷାରେ ସଚ୍ଚି ରାଉତରାୟଙ୍କର କାବ୍ୟ ପ୍ରତିଭାର ପୂର୍ଣ୍ଣ ବିକାଶ ହୋଇପାରିବ । ଏହି ଦୁଇଟି ଉଦାହରଣ ଭିତରେ ଭାଷା ସମ୍ପର୍କୀୟ ଏକ ଗହନ ସତ୍ୟ ଲୁଚି ରହିଛି । ନିଜ ଭାଷା ମାଧ୍ୟମରେ ମଣିଷ ଅତୀତର ସଞ୍ଚିତ ବିଦ୍ୟା ଓ କ୍ଷମତାଗୁଡ଼ିକର ଅଧିକାରୀ ହୋଇପାରେ ଓ ନିଜ ଭାଷା ସାଙ୍ଗରେ ଜଣେ ଯେତେ ସ୍ୱାଧୀନ ଓ ସ୍ୱଚ୍ଛନ୍ଦ ହୋଇପାରେ, ଅନ୍ୟ ଭାଷା ମାଧ୍ୟମରେ ତାହା ସମ୍ଭବ ନୁହେଁ । ମା' ସାଙ୍ଗରେ ପିଲାଟିଏ ଯେତେ ରକମର ଭାବଭଙ୍ଗୀ ପ୍ରକାଶ କରିଥାଏ, ଅନ୍ୟ କାହା ସାଙ୍ଗରେ ସେପରି କରେନାହିଁ । ମାତୃଭାଷାଟିଏ ଏହି ମା' ସାଙ୍ଗରେ ସମାନ । ନିଜ ଭାଷାକୁ ମୋଡ଼ାମୋଡ଼ି କରି ବଙ୍କେଇ ଟଙ୍କେଇ କରି ଆମେ ବ୍ୟବହାର କରିପାରିବା, ଶବ୍ଦମାନଙ୍କୁ ଭାଙ୍ଗି ଯୋଡ଼ିପାରିବା । ଅନ୍ୟଭାଷାରେ ଏପରି କଲାବେଳେ ସାବଧାନ ହେବାକୁ ପଡ଼େ । ସେଇ ଭାଷାର ଲୋକେ ଏହାକୁ ଠିକ୍ ମନେକରିବେ କି ନାହିଁ ଭାବିବାକୁ ପଡ଼େ ।

ଭାଷା ବିଷୟକ ଅନ୍ୟ ଗୋଟିଏ ଅଜ୍ଞାନତା ହେଉଛି ପଢ଼ିବା ଓ ଲେଖିବା ଭିତରେ ପାର୍ଥକ୍ୟକୁ ବୁଝି ନ ପାରିବା । ଅତି ଉଚ୍ଚଶିକ୍ଷିତ ଭାରତୀୟମାନେ ଏହି ଭୁଲ୍ କରିଥାନ୍ତି । ବିଷୟ ବୁଝିବା ପାଇଁ, ମୌଳିକ ଗ୍ରନ୍ଥମାନଙ୍କୁ ପଢ଼ିବା ପାଇଁ ଅନେକ ସମୟରେ ବିଦେଶୀ ଭାଷାର ଶିକ୍ଷା ଦରକାରୀ ହୁଏ । କିନ୍ତୁ ନିଜର ଅଭିବ୍ୟକ୍ତି ଓ ଗବେଷଣା ପାଇଁ ତାହାର ପ୍ରୟୋଗ କରିବା ଏକ ଅନ୍ୟ କଥା । 'ଦେଖୁନାହଁ, ଜାପାନ୍‌ର ସବୁ ଲୋକେ ଇଂରାଜୀ ଶିଖୁଛନ୍ତି, ଚୀନ୍‌ରେ ଇଂରାଜୀ ଶିକ୍ଷାକୁ ପ୍ରୋତ୍ସାହିତ କରାଯାଉଛି । ଆଉ ତୁମେ କହୁଛ ଇଂରାଜୀକୁ ଛାଡ଼ ।' ଏପରି କହିବା ଲୋକ କେବେ ଏକଥା ବୁଝିବାକୁ ଚେଷ୍ଟା କରିନାହାନ୍ତି ଯେ, ରୁଷ୍, ଜାପାନ୍ କିମ୍ବା ଚୀନ୍‌ର ବୁଦ୍ଧିଜୀବୀମାନେ ଓ ଲେଖକମାନେ ନିଜ ଅସଲ ଲେଖାଗୁଡ଼ିକୁ, ବକ୍ତବ୍ୟଗୁଡ଼ିକୁ ନିଜ ଭାଷାରେ ହିଁ ଲେଖି ଥାଆନ୍ତି ।

ଗାନ୍ଧୀ ଓ ରବୀନ୍ଦ୍ରନାଥ୍ ଠାକୁର୍ ଉଭୟେ ଏହି ପ୍ରଭେଦକୁ ବୁଝାଇବା ପାଇଁ ଗବାକ୍ଷର ଉଦାହରଣ ଦେଇଛନ୍ତି । ଅନ୍ୟ ଭାଷାଗୁଡ଼ିକ ଗବାକ୍ଷ ସଦୃଶ, ସେଇବାଟେ ଆମେ ବାହାରକୁ ଦେଖିପାରିବା, ବାହାରର ପବନକୁ ଆସିବା ପାଇଁ ବାଟ ଦେବା । କିନ୍ତୁ

ଆମର ନିଜ ଘର ଓ ମୁଖ୍ୟ ଦ୍ୱାର ହେଉଛି ଆମର ଅସଲ ଆବାସ । କେତେକ ଦଶନ୍ଧି ପୂର୍ବେ ଜାପାନୀ ଭାଷା, ରୁଷ୍ ଭାଷା ବା ଚୀନ୍ ଭାଷାର ଶବ୍ଦ ଭଣ୍ଡାର ଯାହା ଥିଲା, ତାହା ଓଡ଼ିଆ, ତାମିଲ୍ କିମ୍ବା ଗୁଜୁରାଟି ଠାରୁ ମଧ କମ୍ । କିନ୍ତୁ ଏହି ତିନୋଟି ଭାଷା ସବୁ କାମରେ ନିଜକୁ ଲଗାଇଲେ – ଶିଳ୍ପ, ବାଣିଜ୍ୟ, ଶାସନ ଓ ବିଜ୍ଞାନରେ । ୨୦-୩୦ ବର୍ଷ ମଧରେ ସେମାନଙ୍କ ଶବ୍ଦ ଭଣ୍ଡାର ଭରିଗଲା । ପୃଥିବୀର ପ୍ରତ୍ୟେକ ମାତୃଭାଷାକୁ ଅତ୍ୟାଧୁନିକ ଅବସ୍ଥାରେ ପହଞ୍ଚାଇ ଦିଆଯାଇପାରେ । ଏହାର ଏକ ସଫଳ ପ୍ରୟୋଗ ଇସ୍ରାଏଲ୍‌ରେ ହେଉଛି । ରାଷ୍ଟ୍ର ନିର୍ମାଣ ଗୋଟିଏ ଦୀର୍ଘକାଳୀନ ଲକ୍ଷ୍ୟ । 'ବର୍ତ୍ତମାନ ବା ଏଇକ୍ଷଣି ମୋତେ ଟିକିଏ ଅସୁବିଧା ହେଉଛି, ତେଣୁ ଏହା ରାଷ୍ଟ୍ରର ନୀତି ନ ହେଉ' ବୋଲି କହିବାର ମାନସିକତା ଭାରତୀୟ ବୁଦ୍ଧିଜୀବୀମାନେ ପୋଷଣ କରୁଛନ୍ତି । ପେଟ୍ରୋଲ୍ ଉପରେ କଟକଣା କଲେ ମଉଜରେ ବୁଲିବା ହେବନାହିଁ, ତେଣୁ ବିଦେଶରୁ ପେଟ୍ରୋଲ୍ ଆମଦାନୀ ବଢ଼ିଚାଲୁ, ଓଡ଼ିଆରେ ଅର୍ଥଶାସ୍ତ୍ର ପଢ଼ାଇବାକୁ କହିଲେ ଆମକୁ ଶବ୍ଦ ଗଢ଼ିବାର ଅତିରିକ୍ତ ଶ୍ରମ କରିବାକୁ ପଡ଼ିବ, ତେଣୁ ଓଡ଼ିଆକୁ ଅଯୋଗ୍ୟ ଘୋଷିତ କରିଦିଆଯାଉ - ଏହି ମାନସିକତାକୁ ନେଇ ଚାଲୁଥିବା ବୁଦ୍ଧିଜୀବୀବର୍ଗ ଭାରତୀୟ ରାଷ୍ଟ୍ର ନିର୍ମାଣ କରିବେ ଅଥବା ଓଡ଼ିଆ ଜାତିକୁ ବିଶ୍ୱ ମାନଚିତ୍ରରେ ସ୍ଥାପିତ କରିବେ ବୋଲି ଯଦି ଆମେ ଆଶା କରିବା, ତାହାହେଲେ ଜାପାନ୍ ଓ ଇସ୍ରାଏଲ୍‌ର ରାଷ୍ଟ୍ର ନିର୍ମାଣ ଗାଥାଗୁଡ଼ିକର ପ୍ରଶଂସା ବନ୍ଦ କରିଦେବା ଉଚିତ । ଗୋଟିଏ ଭାଷାକୁ ଉନ୍ନତ କରିବା ଓ ଗୋଟିଏ ରାଷ୍ଟ୍ରକୁ ଉନ୍ନତ କରିବା ଏକା ଭଳି କାମ । ଉଭୟ ପାଇଁ ଗୋଟିଏ ଯୁଗର ବୁଦ୍ଧିଜୀବୀ ବର୍ଗକୁ କଷ୍ଟ ଓ ତ୍ୟାଗ ସ୍ୱୀକାର କରିବାକୁ ପଡ଼ିଥାଏ । କଷ୍ଟ ଓ ତ୍ୟାଗ କହିଲେ ପରିଶ୍ରମ, ଉତ୍ପାଦକ ଓ ସୃଜନାତ୍ମକ ଶ୍ରମକୁ ହିଁ ବୁଝାଏ । ଆଜି ଆମ ଦେଶରେ କଷ୍ଟ ଓ ତ୍ୟାଗ କରୁଥିବା, ସୃଜନାତ୍ମକ ପରିଶ୍ରମରେ ଆତ୍ମସ୍ୱାର୍ଥକୁ ବଳି ଦେଉଥିବା ବୁଦ୍ଧିଜୀବୀ ବ୍ୟକ୍ତି ରୂପରେ ଅନେକ ଅଛନ୍ତି । କିନ୍ତୁ ଏକ ବ୍ୟାପକ ବୌଦ୍ଧିକ ସମୂହ ନାହିଁ, ଯିଏ ନିଜ କାନ୍ଧରେ ଓଡ଼ିଆ ଜାତିକୁ ଟେକିପାରିବ ।

ଭାଷାର ଗୁରୁତ୍ୱ ଓ ମାତୃଭାଷାର ଗୁରୁତ୍ୱ, ଏହି ଦୁଇଟିର ଗୁରୁତ୍ୱକୁ ଉପଲବ୍ଧ କରିବା ସମୟରେ ମାତୃଭାଷାର ଅର୍ଥକୁ ଠିକ୍ ଭାବରେ ବୁଝିବାକୁ ହେବ । ମାତୃଭାଷାର ଆକ୍ଷରିକ ଅର୍ଥ ହେଉଛି ମା'ଠାରୁ ଶିଖିଥିବା ଭାଷା । କିନ୍ତୁ ଏହି ସଙ୍କୀର୍ଣ୍ଣ ଅର୍ଥରେ ଏହାର ପ୍ରୟୋଗ କରିବା ଭୁଲ୍ ହେବ । ମା' କହିଲେ ମାଟିକୁ ମଧ ବୁଝାଏ, ମାତୃଭାଷା କହିଲେ ନିଜ ମାଟିର ଭାଷା ବୋଲି ଆମେ ବୁଝୁ । ମୋଟ୍ ଉପରେ କହିବାକୁ ଗଲେ ପିଲାଟି ଦିନୁ ଯେଉଁ ଭାଷାକୁ ଆମେ ଅତି ନିବିଡ଼ ଭାବେ ଆମର ନିକଟ ସମ୍ପର୍କୀୟମାନଙ୍କ ଠାରୁ ସ୍ୱତଃସ୍ଫୂର୍ତ୍ତ ଶିଖୁ, ବ୍ୟବହାର କରୁ ଓ ଲଗାତର ଜୀବନର ଶତବିଧ କାର୍ଯ୍ୟରେ ବ୍ୟବହାର କରୁ । ଏହି ଭାଷା ଶିକ୍ଷା ସମୟରେ ହତଭାଗାମାନଙ୍କ ବ୍ୟତୀତ ବାକି ସମସ୍ତେ ମା' ପାଖରେ ହିଁ ରହିଥାନ୍ତି; ତେଣୁ ଏହା ମାତୃଭାଷା । ବେଳେ ବେଳେ ଏକରୁ ଅଧିକ ଭାଷା ଏହି ପରିସ୍ଥିତିରେ ପିଲାମାନଙ୍କୁ ମିଳିଥାଏ । ଏକ ସମୟରେ ଦୁଇଟି ଭାଷା ମିଳିଥିବାର ଉଦାହରଣ ବହୁତ ବେଶୀ, କାରଣ ଅନେକ ପରିବାର ନିଜ ଜନ୍ମଭୂଇଁର ଭାଷା ଅଞ୍ଚଳ ଛାଡ଼ି ଭିନ୍ନ ଏକ ଭାଷାଭାଷୀ ଅଞ୍ଚଳରେ ବାସ କରିଥାନ୍ତି । ପରିବାର ପରିସୀମା ମଧରେ ପୁରୁଣା ଅଞ୍ଚଳର ଭାଷା ରହେ, ପରିବାର ବାହାରୁ ନୂଆ ଅଞ୍ଚଳର

ଭାଷା ଘର ଭିତରକୁ ପ୍ରବେଶ କରେ, ଅତି ନିବିଡ଼ ଭାବରେ । ଉଭୟକୁ ମାତୃଭାଷା ରୂପେ ଗ୍ରହଣ କରାଯାଇପାରେ । ଯେଉଁ ଭାଷାକୁ କେବଳ ଶ୍ରେଣୀକକ୍ଷରେ ଶିକ୍ଷା କରାଯାଏ କିମ୍ବା ଏକ ବ୍ୟବସାୟିକ ଉପଯୋଗିତା ପାଇଁ ଗ୍ରହଣ କରାଯାଏ, ତାହା ମାତୃଭାଷାର କେବେ ସମକକ୍ଷ ହୋଇପାରିବ ନାହିଁ କି ମାନ୍ୟତା ବି ପାଇପାରିବ ନାହିଁ । ଅର୍ଥାତ୍ ଅନ୍ତରତମ ଓ ଉଚ୍ଚତମ ଅଭିବ୍ୟକ୍ତିର ମାଧ୍ୟମ ହୋଇପାରିବ ନାହିଁ ।

ଯେଉଁ ଭାଷାଗୁଡ଼ିକୁ ରାଜନୈତିକ ବା ସାହିତ୍ୟିକ ସ୍ୱୀକୃତି ମିଳିନାହିଁ, ଅନ୍ୟ ଏକ ମାନ୍ୟତାପ୍ରାପ୍ତ ଭାଷାର 'ଉପଭାଷା' ରୂପେ ଚିହ୍ନିତ କରାଯାଉଛି, ସେଗୁଡ଼ିକୁ ଭାଷା ଓ ମାତୃଭାଷାର ମାନ୍ୟତା ମିଳିବା ଉଚିତ କି ନୁହେଁ? ଏହି ପ୍ରଶ୍ନର ଉତ୍ତର ଜଟିଳ, କାରଣ ଏହାର ସମାଧାନ ମାତ୍ରାଭେଦ ଓ ଅସ୍ମିତା-ସଂଘର୍ଷ ଦ୍ୱାରା ହୁଏ । କେତେ ମାତ୍ରାର ପ୍ରଭେଦ ରହିଲେ ତାହାକୁ ଏକ ସ୍ୱତନ୍ତ୍ର ଭାଷା ବା ସ୍ୱତନ୍ତ୍ର 'ମାତୃଭାଷା' ବୋଲି କୁହାଯିବ? ଏହି ପ୍ରଭେଦର ମାତ୍ରାକୁ ଭାଷା ବିଜ୍ଞାନୀମାନେ ସୂକ୍ଷ୍ମ ଭାବରେ ନିରୂପିତ କରିନାହାନ୍ତି । ଅନେକ ପ୍ରତିଷ୍ଠିତ ଭାଷାମାନଙ୍କ ମଧ୍ୟରେ ଥିବା ବାକ୍ୟଗଠନ ପ୍ରଣାଳୀର ଭେଦ ଓ ଶବ୍ଦ ଭଣ୍ଡାରର ପାର୍ଥକ୍ୟ ଏତେ କମ୍ ଯେ, କାହିଁକି ଏହା ଏକ ସ୍ୱତନ୍ତ୍ର ଭାଷା ହେଲା - ତାହାର ଉତ୍ତର କୌଣସି ଭାଷା ବୈଜ୍ଞାନିକ ଦେଇପାରିବ ନାହିଁ ।

ୟୁରୋପ୍‌ରେ ସ୍କାଣ୍ଡିନେଭିଆ ଅଞ୍ଚଳରେ ଚାରି-ପାଞ୍ଚଟା ଭାଷା ଅଛି ଓ ପ୍ରତ୍ୟେକଟି ପ୍ରତିଷ୍ଠିତ । ଭାଷା ବୈଜ୍ଞାନିକମାନେ କହନ୍ତି ସେମାନଙ୍କ ଭିତରେ ଯେଉଁ ପାର୍ଥକ୍ୟ ଅଛି, ତାହା ଅପେକ୍ଷା ବିଭିନ୍ନ ଅଞ୍ଚଳରେ କୁହାଯାଉଥିବା ଇଂରାଜୀ ଉପଭାଷାଗୁଡ଼ିକର ପାର୍ଥକ୍ୟ ବହୁତ ବେଶୀ । ଅତଏବ୍ ଏହା ଭାଷା ବୈଜ୍ଞାନିକର ସମସ୍ୟା ନୁହେଁ । ଭାଷା ବୈଜ୍ଞାନିକ ହାତରେ ଯଦି ଏହାର ସମାଧାନ ଛାଡ଼ି ଦିଆଯିବ, ତାହାହେଲେ ସେ ହୁଏତ ବହୁତ ଭାଷାକୁ ଉପଭାଷା କହିବା ଆରମ୍ଭ କରିଦେବ କିମ୍ବା ପ୍ରତ୍ୟେକ ଉପଭାଷାକୁ ସ୍ୱତନ୍ତ୍ର ଭାଷାର ସମ୍ମାନ ଦେବ । ଅରାଜକ ଭାବରେ ବିବିଧତାର ବୃଦ୍ଧି ଓ ଏକଛତ୍ରବାଦୀ ଢଙ୍ଗରେ ବିବିଧତାର ବିଲୋପ - ଏହି ଉଭୟ ଦୁର୍ବିପାକରୁ ମନୁଷ୍ୟର ସଂସ୍କୃତିକୁ ରକ୍ଷା କରିବା ପାଠ୍ୟ ପୁସ୍ତକର କାମ ନୁହେଁ, ସାମାଜିକ ପ୍ରକ୍ରିୟାର କାମ । ସାମାଜିକ ପ୍ରକ୍ରିୟା କହିଲେ ସାମାଜିକ ଶକ୍ତିମାନଙ୍କର ରଚନା ଓ ସଂଘର୍ଷ ।

ଗୋଟିଏ ତଥାକଥିତ 'ଉପଭାଷା' କହୁଥିବା ଲୋକମାନଙ୍କର ରାଜନୈତିକ ମିଶ୍ରଣ ଯଦି ଅନ୍ୟ ଏକ ସାମଞ୍ଜସ୍ୟପୂର୍ଣ୍ଣ ଭାଷା-ଭାଷୀସମୂହ ସାଙ୍ଗରେ ସମ୍ପୂର୍ଣ୍ଣ ହୋଇ ଯାଇଛି, ତାହାହେଲେ ହୁଏତ ସେମାନେ ନିଜର ଭାଷାକୁ ଅଲଗା କରିବାର ସଂଘର୍ଷ କରିବେ ନାହିଁ । କିନ୍ତୁ ଏକ ଭାଷା-ଭାଷୀ ଗୋଷ୍ଠୀ ଭିତରେ ଯଦି ରାଜନୈତିକ ଶୋଷଣ ବା ପକ୍ଷପାତର ଭେଦ ତୀବ୍ର ରୂପେ ଅନୁଭୂତ ହେବ, ତାହାହେଲେ ଅସ୍ମିତା ସଂଘର୍ଷର ଏକ ସାମାଜିକ ପ୍ରକ୍ରିୟା ଆରମ୍ଭ ହେବ । ଏହି ଅସ୍ମିତା ସଂଘର୍ଷର ଗୋଟିଏ ଦିଗ ହେବ ନିଜ ଭାଷାର ଅଧିକ ବ୍ୟବହାର ଓ ଅନ୍ୟ ଏକ ଦିଗ ହେବ ରାଜନୈତିକ ବିରୋଧ ।

ଓଡ଼ିଶାର ଉତ୍ତର, ଦକ୍ଷିଣ ଓ ପଶ୍ଚିମ ସବୁ ଅଞ୍ଚଳର ନିଜସ୍ୱ ଭାଷା ଅବା ଉପଭାଷା ରହିଛି । କିନ୍ତୁ ପଶ୍ଚିମ ଓଡ଼ିଶାର ଭାଷା ଆନ୍ଦୋଳନ ଯେତିକି ଅଗ୍ରଗତି କରିଛି, ଉତ୍ତର ଓ

ଦକ୍ଷିଣ ଓଡ଼ିଶାରେ ତାହା ହୋଇ ନାହିଁ । ଏହାର କାରଣ ଭାଷାଗତ ନୁହେଁ । ପଶ୍ଚିମ ଓଡ଼ିଶାର ସାମାଜିକ ଶକ୍ତିମାନେ ବହୁ ଦିନରୁ ରାଜଧାନୀ ଅଞ୍ଚଳର ଶାସନ ଓ ଆଧିପତ୍ୟ ବିରୁଦ୍ଧରେ ବିଦ୍ରୋହ କରିଆସି ଅଛନ୍ତି, ରାଜନୈତିକ ଆଧିପତ୍ୟ ସଙ୍ଗେ ସାଂସ୍କୃତିକ ଆଧିପତ୍ୟ ମଧ୍ୟ ସେମାନଙ୍କୁ ଶରବ୍ୟ କରି ଆସିଛି । ଅସହାୟ ପରିସ୍ଥିତିରେ ଯାହା 'ଶଳା କଟକିଆ' ଆଦି ଗାଳିରେ ପ୍ରକାଶ ପାଉଥିଲା, ଆଜି ତାହା ଏକ ରାଜନୈତିକ ଓ ସାହିତ୍ୟିକ ଆନ୍ଦୋଳନର ରୂପ ନେଇଛି । ପଶ୍ଚିମ ଓଡ଼ିଶା ପାଇଁ ଏକ ସ୍ୱତନ୍ତ୍ର ଉନ୍ନୟନ ପରିଷଦ ଗଢ଼ିବାର ଦାବୀକୁ ସବୁ ରାଜନୈତିକ ଦଳ ସ୍ୱୀକୃତି ଦେଇସାରି ଅଛନ୍ତି ।

'ସମ୍ବଲପୁରୀ' ଉର୍ଫ୍ 'କୋଶଳୀ' ଭାଷାରେ ସାହିତ୍ୟ ନିର୍ମାଣର କାମ ମଧ୍ୟ ସମାନ୍ତରାଳ ଭାବେ ଚାଲିଛି । ଏହି ସାହିତ୍ୟିକ ଆନ୍ଦୋଳନ ଯେ କେତେ ସୃଜନାତ୍ମକ ହୋଇ ପାରିଛି, ତାହା ହେମଚନ୍ଦ୍ର ଆଚାର୍ଯ୍ୟଙ୍କର କାବ୍ୟ ଓ ଗଳ୍ପଗୁଡ଼ିକର ଅନୁଧ୍ୟାନ କଲେ ଜଣାପଡ଼େ । ହେମଚନ୍ଦ୍ର ଆଚାର୍ଯ୍ୟ ନିଶ୍ଚିତ ଭାବରେ ଜଣେ ଉଚ୍ଚକୋଟିର ସାହିତ୍ୟିକ ଓ ତାଙ୍କର ପ୍ରତିଭା ଏହି ଭାଷା ଆନ୍ଦୋଳନର ଗର୍ଭରେ ଉନ୍ମେଷିତ ହୋଇଛି । ସମ୍ପ୍ରତି ସେ 'ସମ୍ବଲପୁରୀ' ଭାଷାରେ 'ରାମାୟଣ'ର ରଚନା କରିଛନ୍ତି । ଏ ପର୍ଯ୍ୟନ୍ତ 'ସମ୍ବଲପୁରୀ' ଭାଷା ଆନ୍ଦୋଳନ ଓ 'ପଶ୍ଚିମ ଓଡ଼ିଶା' ରାଜନୈତିକ ଆନ୍ଦୋଳନ ମଧ୍ୟରେ କୌଣସି ଯୋଗାଯୋଗ ନାହିଁ । ବ୍ୟକ୍ତିମାନେ ମଧ୍ୟ ଅଲଗା ଅଲଗା । ଭବିଷ୍ୟତରେ କ'ଣ ହେବ, ତାହାର ଭବିଷ୍ୟବାଣୀ କରିହେବ ନାହିଁ । ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀମାନେ ଯଦି ଏହି ଆନ୍ଦୋଳନ ଦ୍ୱୟର ଅନ୍ଧ ବିରୋଧ ନକରନ୍ତି, ଏକ ଗଣତାନ୍ତ୍ରିକ ସୁଫଳ ଏଥିରୁ ମିଳିପାରେ ।

କିନ୍ତୁ ଆଉ ଏକ ଦୃଷ୍ଟିରୁ ଭାଷା ଓ ଉପଭାଷାର ପାର୍ଥକ୍ୟକୁ ଚିହ୍ନିବା ଦରକାର ହୋଇ ଗଲାଣି । 'ନବ-ସାମ୍ରାଜ୍ୟବାଦ' ବା 'ଜଗତିକରଣ'ର ସନ୍ଦର୍ଭରେ ଏହି ପ୍ରଶ୍ନର ପ୍ରାସଙ୍ଗିକତା ବଢ଼ି ଯାଇଛି । ସାଧାରଣତଃ ଦେଖାଯାଏ ଯେ, ଯାହାକୁ ଆମେ ଉପଭାଷା ବୋଲି କହିଥାଉ, ତାହା ଗୀତ, ନାଟ ଓ କାହାଣୀରେ ବାରମ୍ବାର ବ୍ୟବହୃତ ହୋଇଥାଏ । କିନ୍ତୁ ଶିକ୍ଷା, ଶାସନ ଓ ଅନୁସନ୍ଧାନର ମାଧ୍ୟମ ରୂପେ ସେଗୁଡ଼ିକର ମୋଟେ ବ୍ୟବହାର ହୁଏନାହିଁ ।

ଉନବିଂଶ ଶତାବ୍ଦୀରେ ଓ ବିଂଶ ଶତାବ୍ଦୀର ଆରମ୍ଭରେ ଯେଉଁ ଭାରତୀୟ ଭାଷାମାନଙ୍କର ନବଜାଗରଣ ହେଲା, ସେମାନଙ୍କର ଆକାଂକ୍ଷା ବହୁତ ଉଚ୍ଚ ଥିଲା । ଈଶ୍ୱରଚନ୍ଦ୍ର ଓ ରବୀନ୍ଦ୍ରନାଥ୍ ଚାହୁଁଥିଲେ ଯେ, ବିଶ୍ୱବିଦ୍ୟାଳୟର ଉଚ୍ଚତମ ସ୍ତରମାନଙ୍କରେ ବଙ୍ଗଳା ଭାଷାର ବ୍ୟବହାର ହେଉ । କିନ୍ତୁ ସ୍ୱାଧୀନତା ପରେ ବଙ୍ଗଳା ଭାଷୀଙ୍କର କିମ୍ବା ହିନ୍ଦୀ ଭାଷୀଙ୍କର ଏହି ଉଚ୍ଚ ଆକାଂକ୍ଷା ରହିଲା ନାହିଁ । ବଙ୍ଗଳା, ଓଡ଼ିଆ ଓ ତେଲୁଗୁ ଭାଷୀମାନେ ତାଙ୍କ ଭାଷାରେ ଗୀତ, ନାଟ ଓ ଦଳିତ ବସ୍ତିରେ ସ୍କୁଲ ଶିକ୍ଷାର ମାଧ୍ୟମ ରୂପେ ହିଁ ବ୍ୟବହାର କରିବାକୁ ଚାହୁଁଛନ୍ତି । ବିଜ୍ଞାନ, ଦର୍ଶନ ଓ ଶିଳ୍ପବାଣିଜ୍ୟର ଭାଷା ରୂପେ ସେମାନେ ଇଂରାଜୀକୁ ହିଁ ଧରି ରଖିଛନ୍ତି । ଅର୍ଥନୀତି ଓ ସଂସ୍କୃତିର ଜଗତିକରଣର ଯୁଗରେ ଏହି ବିଦେଶୀ ଭାଷାର ପ୍ରତିଷ୍ଠା ଆହୁରି ବଢ଼ିଯିବ । ତେଣୁ ସମ୍ବିଧାନ ଦ୍ୱାରା ମାନ୍ୟତାପ୍ରାପ୍ତ (ଅଷ୍ଟମ ସୂଚୀର) ଭାରତୀୟ ଭାଷାମାନଙ୍କୁ ପ୍ରକୃତରେ ଗୋଟିଏ ଗୋଟିଏ

ଉପଭାଷା ବୋଲି କହିବାଟା ବେଶୀ ସମିଚୀନ ହେବ । ନୂତନ ଭାଷା ଆନ୍ଦୋଳନଗୁଡ଼ିକ ଯଦି ସଂସ୍କୃତି ଓ ଭାଷାର ସାମ୍ରାଜ୍ୟବାଦ ବିରୁଦ୍ଧରେ ସଚେତ ହୋଇ ନିଜର ଆନ୍ଦୋଳନକୁ ଚଳାଇବ, ତାହାହେଲେ ଏଗୁଡ଼ିକରୁ ସକାରାତ୍ମକ ପରିଣାମ ବାହାରିବ । ଅନ୍ୟଥା ସମ୍ବିଧାନର ଅଷ୍ଟମ ସୂଚୀରେ ଆଉ ଏକ ଉପଭାଷାକୁ ଯୋଡ଼ିବାର ଏହା ଏକ ଆନ୍ଦୋଳନ ହେବ । ବିଡ଼ମ୍ବନା ଏହି ଯେ, ଓଡ଼ିଆ, ବଙ୍ଗଳା ଓ ତାମିଲ୍ ଭାଷା ଓ ସାହିତ୍ୟର ପ୍ରବକ୍ତାମାନେ ତାଙ୍କର ଭାଷାଗୁଡ଼ିକର ଏହି ଉପଭାଷୀକ ସ୍ଥିତି (ଅର୍ଥାତ ଔପନିବେଶିକ ସ୍ଥିତି) ବିରୁଦ୍ଧରେ କୌଣସି ବିଦ୍ରୋହର ସ୍ୱର ଉଠାଉନାହାନ୍ତି ।

୨୯ ମଇ, ୧୯୯୫

# ଆଞ୍ଚଳିକ ବୈଷମ୍ୟ ଓ ସ୍ୱତନ୍ତ୍ର ରାଜ୍ୟ

ଆଧୁନିକ ସଭ୍ୟତା ବିଷୟରେ ଗର୍ବ କରିବାର ଅନେକ କଥା ଅଛି । କିନ୍ତୁ ମନେ ରଖିବାକୁ ହେବ ଯେ, ଏହା ଏକ ବିଷମତାପୂର୍ଣ୍ଣ ସଭ୍ୟତା । ଏହାର ଅର୍ଥ ନୁହେଁ ଯେ, ପ୍ରାଚୀନ ଓ ମଧ୍ୟଯୁଗୀୟ ସଭ୍ୟତାରେ ବିଷମତା ନ ଥିଲା । କହିବାର ତାତ୍ପର୍ଯ୍ୟ କେବଳ ଏହା ଯେ, ମଧ୍ୟଯୁଗୀୟ ସଭ୍ୟତା ପରି ଆଧୁନିକ ସଭ୍ୟତା ମଧ୍ୟ ବିଷମତାପୂର୍ଣ୍ଣ । ବରଂ ଏକଥା ନିର୍ଭୁଲ୍ ଭାବରେ କହି ହେବ ଯେ, ଏତେ ବେଶୀ ଆର୍ଥିକ ବୈଷମ୍ୟ ଓ ସ୍ତରୀକରଣ ମଧ୍ୟଯୁଗରେ ମଧ୍ୟ ନ ଥିଲା । ଏହାର ତଥ୍ୟଗତ ବିବରଣୀ ଜାଣିବାକୁ ହେଲେ ବିଶ୍ୱବ୍ୟାଙ୍କ୍ କିମ୍ବା ୟୁ.ଏନ୍.ଡି.ପି. ଦ୍ୱାରା ପ୍ରକାଶିତ ଗତ କେତେ ବର୍ଷର ବାର୍ଷିକ ସର୍ବେକ୍ଷଣ ଉପରେ ଆଖି ବୁଲାଇଦେବା ଯଥେଷ୍ଟ ହେବ ।

ବିଡ଼ମ୍ବନାର ବିଷୟ ଯେ, ଆଧୁନିକ ସଭ୍ୟତା ଯେତେ ବେଶୀ ଆଗଉଛି ଓ ପ୍ରଯୁକ୍ତି ବିଦ୍ୟା (ଟେକ୍ନୋଲୋଜି)ର ଯେତେ ନୂଆ ନୂଆ ବିକାଶ ହେଉଛି, ଏହି ବିଷମତାଗୁଡ଼ିକ ସେତେ ବେଶୀ ଗଭୀର ଓ ଅଲଘଂନୀୟ ହୋଇ ଯାଉଛି । 'ବିକଶିତ' ଓ 'ବିକାଶଶୀଳ' ଦେଶ ମଧ୍ୟରେ, ରାଷ୍ଟ୍ର ମଧ୍ୟରେ ଥିବା ଧନୀ ଶ୍ରେଣୀ ଓ ଗରିବ ଶ୍ରେଣୀ ବିଭାଗ, ନଗର ଓ ଗ୍ରାମ ମଧ୍ୟରେ ଥିବା ଦୂରତାଗୁଡ଼ିକ ବଢ଼ି ବଢ଼ି ଚାଲିଛି । ଆଞ୍ଚଳିକ ବୈଷମ୍ୟ ସବୁଠାରୁ ବେଶୀ ବଢୁଛି । ବିଶ୍ୱସ୍ତରରେ ଏହି ଆଞ୍ଚଳିକ ବୈଷମ୍ୟର ସନ୍ଦର୍ଭ ହେଉଛି ବିକଶିତ ରାଷ୍ଟ୍ର ଓ ବିକାଶଶୀଳ ରାଷ୍ଟ୍ରମାନଙ୍କ ମଧ୍ୟରେ ଥିବା ଅସମାନତା । ରାଷ୍ଟ୍ରୀୟ ସ୍ତରରେ ଏହାର ସନ୍ଦର୍ଭ ହେଉଛି ଦେଶ ଭିତରର 'ସମୃଦ୍ଧ' ଅଞ୍ଚଳ ବନାମ ଅନଗ୍ରସର ବା ପଛୁଆ ଅଞ୍ଚଳ ।

ଏହି ବୈଷମ୍ୟର ଉତ୍ପତ୍ତି ଆକସ୍ମିକ ଭାବରେ ହୋଇ ନାହିଁ । ଯେଉଁ ଦିନଠାରୁ ଆଧୁନିକ ପ୍ରଯୁକ୍ତି ବିଦ୍ୟାକୁ ଭିତ୍ତିକରି ସାମ୍ରାଜ୍ୟବାଦୀ ଅର୍ଥନୀତିର ପ୍ରଚଳନ ହେଲାଣି (ଭାରତରେ ବ୍ରିଟିଶ୍ କାଳରୁ), ପୃଥିବୀରେ ଓ ରାଷ୍ଟ୍ରମାନଙ୍କ ମଧ୍ୟରେ ଏହି ଆଞ୍ଚଳିକ ବିଷମତା ତୀବ୍ରରୁ ତୀବ୍ରତର ହୋଇ ଚାଲିଛି । ସାମ୍ରାଜ୍ୟବାଦ କହିଲେ କେବଳ ଲୁଣ୍ଠନ ନୁହେଁ । ଲୁଣ୍ଠନରୁ ଯେଉଁ ସୁନାରୂପା, ହୀରାମୋତି ମିଳେ ତାହା ଅଳ୍ପ ଦିନରେ ସରିଯିବ । ଅସଲ ଲୁଣ୍ଠନ ହେଉଛି ନିରବଚ୍ଛିନ୍ନ ଭାବରେ ଚାଲିଥିବା ସାମ୍ରାଜ୍ୟବାଦୀ ଶୋଷଣ, ଯାହା ଏକ ଚିରସ୍ଥାୟୀ ଅର୍ଥନୈତିକ ପ୍ରକ୍ରିୟାରେ ଔପନିବେଶିକ ରାଷ୍ଟ୍ରମାନଙ୍କ ଠାରୁ ସାମ୍ରାଜ୍ୟବାଦୀ ଦେଶ ଅନବରତ ଭାବରେ ଲାଭ ଉଠାଇ ଚାଲିଥାଏ । ଉଭୟ ଦେଶ

ମଧ୍ୟରେ, ବ୍ରିଟେନ୍ ଓ ଭାରତ ଭିତରେ, ଆମେରିକା ଓ ଏସିଆ ମଧ୍ୟରେ ଯେତେ ବେଶୀ ଆର୍ଥିକ ବା ବ୍ୟବସାୟିକ ସମ୍ପର୍କ ବଢ଼ିବ, ଏହି ଲାଭର ପରିମାଣ ସେତିକି ବଢ଼ିଚାଲିବ । ଲାଭ ସବୁବେଳେ ଏକପାଖିଆ, ଏକଚାଟିଆ । ଗୋଟିଏ ଆଡୁ ଅନ୍ୟ ଆଡ଼କୁ ଯାଏ । ସେପଟୁ ଏପଟକୁ ଆସେ ନାହିଁ । ଏହି ଲାଭ ସଙ୍ଗ୍ରହର କେତେଗୁଡ଼ିଏ ଉପାୟ ରହିଛି । ସେଗୁଡ଼ିକ ନିମ୍ନରେ ବର୍ଣ୍ଣିତ ହୋଇଅଛି ।

ସାମ୍ରାଜ୍ୟବାଦୀ ଦେଶ ବା ତାହାର କମ୍ପାନୀ ଉପନିବେଶଠାରୁ ଶସ୍ତା ମୂଲ୍ୟରେ ଶ୍ରମ ଓ କଞ୍ଚାମାଲ୍ ପାଇଥାଏ । ନିଜ ଉତ୍ପାଦିତ ଜିନିଷଗୁଡ଼ିକୁ ଚଢ଼ା ମୂଲ୍ୟରେ ବିକ୍ରି କରେ । ଉପନିବେଶ ଅଞ୍ଚଳର ଉତ୍ପାଦନ ପ୍ରଣାଳୀ, କୌଳିକ ବୃତ୍ତିକୁ ନଷ୍ଟ କରି ସାମ୍ରାଜ୍ୟବାଦୀ ଦେଶର ବା ତାହାର କମ୍ପାନୀମାନଙ୍କର ଜିନିଷକୁ ଉପନିବେଶର ବଜାରରେ ବିକ୍ରି କରେ । ଉପନିବେଶର ବଡ଼ ବଡ଼ ଚାକିରି, ଧନ୍ଦା ଓ ଠିକାଦାରୀ ପ୍ରଭୃତି ସାମ୍ରାଜ୍ୟବାଦୀ ଦେଶର ଲୋକଙ୍କ ହାତକୁ ଚାଲିଯାଏ । ସାମ୍ରାଜ୍ୟବାଦୀ ଦେଶମାନଙ୍କର ଅଧିନରେ ପରିଚାଳିତ ବିତ୍ତୀୟ ସଂସ୍ଥାମାନେ ଉପନିବେଶ ଅଞ୍ଚଳମାନଙ୍କୁ ଋଣ ଦେଇ ସେମାନଙ୍କୁ ଋଣଗ୍ରସ୍ତ କରାଇ ସେମାନଙ୍କ ଅର୍ଥ ବ୍ୟବସ୍ଥାକୁ ଏହି ଋଣ ଉପରେ ପୂର୍ଣ୍ଣ ନିର୍ଭରଶୀଳ କରିଦିଅନ୍ତି ଓ ଆର୍ଥିକ ନୀତିଗୁଡ଼ିକୁ ନିର୍ଦ୍ଦେଶିତ ଓ ନିୟନ୍ତ୍ରିତ କରନ୍ତି । ଉପନିବେଶର ମୁଦ୍ରାକୁ ଦୁର୍ବଳ କରିଦେବା ଫଳରେ ସେହି ଦେଶର ଜିନିଷଗୁଡ଼ିକ ସେମାନଙ୍କୁ ଅତି ଶସ୍ତାରେ ମିଳେ । ଉପନିବେଶର  ଋଣର ବୋଝ ଅଧିକ ହୋଇଯାଏ ।

ଆଜିର ବିଶ୍ୱରେ ଉତ୍ତର ଆମେରିକା, ପଶ୍ଚିମ ୟୁରୋପ୍, ଜାପାନ୍ ଓ ଅଷ୍ଟ୍ରେଲିଆ, ଏହି ଦେଶମାନଙ୍କୁ ନେଇ ଏକ ସାମ୍ରାଜ୍ୟବାଦୀ ଅଞ୍ଚଳ ତିଆରି ହୋଇଛି, ବାକି ଦୁନିଆଁ ସେମାନଙ୍କର ଉପନିବେଶ ଭଳି ରହୁଛନ୍ତି । ଏସିଆ, ଆଫ୍ରିକା ଓ ଲାଟିନ୍ ଆମେରିକାର ବିକାଶଶୀଳ ଦେଶମାନେ ଯେତେ ଚେଷ୍ଟା କଲେ ମଧ୍ୟ ବିକଶିତ ଦେଶଗୁଡ଼ିକର ସମକକ୍ଷ କିମ୍ବା ପାଖାପାଖି ମଧ୍ୟ ହୋଇପାରୁ ନାହାନ୍ତି । କାରଣ ଏହି ଦୁଇ ଅଞ୍ଚଳ ମଧ୍ୟରେ ଉପରୋକ୍ତ ଚାରିଟି ଆର୍ଥିକ ନିୟମ କାର୍ଯ୍ୟକାରୀ ହେଉଛି ।

ଯଦି ଦେଶ ଭିତରେ ଗୋଟିଏ ଅଞ୍ଚଳ ଆଉ ଏକ ବଡ଼ ଅଞ୍ଚଳକୁ ଉପରୋକ୍ତ ଚାରିଟି ସୂତ୍ରରେ ବାନ୍ଧିପାରିବ, ତାହାହେଲେ ପ୍ରଥମ ଅଞ୍ଚଳ ସମୃଦ୍ଧ ବୋଲି ଜଣାପଡ଼ିବ ଓ ଦ୍ୱିତୀୟ ଅଞ୍ଚଳ ତାହାର ଉପନିବେଶ ସଦୃଶ ହେବ । ଦେଶ ଦେଶ ମଧ୍ୟରେ ଏହି ସମ୍ପର୍କକୁ ସାମ୍ରାଜ୍ୟବାଦୀ ଉପନିବେଶ ସମ୍ପର୍କ ବୋଲି କୁହାଯାଏ । କିନ୍ତୁ ଦେଶ ଭିତରେ ଏପରି ସମ୍ପର୍କ କାର୍ଯ୍ୟକାରୀ ହେଲେ ତାକୁ 'ଆନ୍ତରୀଣ (ଆଭ୍ୟନ୍ତରୀଣ) ଉପନିବେଶ' ବୋଲି କହିବା ଉଚିତ୍ ହେବ । ଦୁନିଆର ପ୍ରାୟ ସବୁ ବିକାଶଶୀଳ ଦେଶରେ ଆନ୍ତରୀଣ ଉପନିବେଶମାନ ସୃଷ୍ଟି ହୋଇଛି । ଅଳ୍ପ କିଛି ଅଞ୍ଚଳକୁ ୟୁରୋପ୍-ଆମେରିକା ଭଳି ସମୃଦ୍ଧ କରିବାର ଚେଷ୍ଟାରେ ଗରିବ ଦେଶମାନଙ୍କର ବିରାଟ ଅଞ୍ଚଳମାନ ଆଭ୍ୟନ୍ତରିଣ ଉପନିବେଶରେ ପରିଣତ ହୋଇଛି । ଆଞ୍ଚଳିକ ବୈଷମ୍ୟର ମୂଳ କାରଣ ହେଉଛି ଆଭ୍ୟନ୍ତରିଣ ଉପନିବେଶବାଦ । ଆଧୁନିକ ବିକାଶ ନୀତି ଅର୍ଥାତ ଆଧୁନିକୀକରଣର ଏହା ଏକ ଅପରିହାର୍ଯ୍ୟ ଅଙ୍ଗ ।

ଆଧୁନିକୀକରଣ କହିଲେ କ'ଣ ? ଆଧୁନିକୀକରଣର ଅବଧାରଣା ହେଲା ଏଇଆ ଯେ, ୟୁରୋପ୍ ଓ ଆମେରିକା ହେଉଛନ୍ତି ଆଧୁନିକତାର ପ୍ରତୀକ ଓ ଆଦର୍ଶ । ଆର୍ଥିକ କାର୍ଯ୍ୟକଳାପରେ ଅର୍ଥାତ୍ ଉତ୍ପାଦନ, ପରିଚାଳନା ଓ ଜୀବନଯାପନ ଏହି ତିନୋଟି କ୍ଷେତ୍ରରେ ୟୁରୋପ୍-ଆମେରିକା ଯେଉଁସବୁ ଯନ୍ତ୍ରବିଦ୍ୟା, କଳକବ୍ଜା ବ୍ୟବହାର କରୁଛନ୍ତି, ସେହିସବୁ କଳକବ୍ଜା ଓ ଯନ୍ତ୍ରବିଦ୍ୟାକୁ ବ୍ୟବହାର କରି ଆମେ ମଧ୍ୟ ସମୃଦ୍ଧ ହେବା । ଏହିସବୁ ଯାନ୍ତ୍ରିକ ସରଞ୍ଜାମ ଆମ ପାଖରେ ନାହିଁ । ସେସବୁ ବିଦେଶରୁ ଆମଦାନୀ କରିବାକୁ ହେବ ।

ଆମର ସବୁ ଟେକ୍ନୋଲୋଜି ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ବିଦେଶରୁ ହିଁ ଆସିଥାଏ । ସେସବୁର ଦାମ୍ ବହୁତ ଚଢ଼ା । ଦେଶରେ ତିଆରି କରିପାରିବା ନାହିଁ, କିମ୍ବା କରିବାକୁ ଗଲେ ତାଙ୍କ ଠାରୁ ସତ୍ତ୍ୱ-ଆଇନ୍ (ପେଟେଣ୍ଟ୍) ଅନୁଯାୟୀ ଯନ୍ତ୍ରବିଦ୍ୟା କିଣିବାକୁ ହେବ । ତେଣୁ ବିଦ୍ୟା କିଣିବା ଅପେକ୍ଷା ଯନ୍ତ୍ର କିଣିବା ହିଁ ସିଧା ବାଟ ବୋଲି ମନେହୁଏ । ଅଥଚ ଖର୍ଚ୍ଚ ବହୁତ । ଏତେ ଖର୍ଚ୍ଚ ଯେ, ଔପନିବେଶିକ ଦେଶମାନେ ନିଜ ଦେଶର ସବୁ ଅଞ୍ଚଳ ଓ ସବୁ ଶ୍ରେଣୀର ଲୋକଙ୍କୁ ତାହା ଦେଇପାରିବେ ନାହିଁ । କେବଳ ଅଳ୍ପ କେତେକ ଅଞ୍ଚଳ ଓ ମୁଷ୍ଟିମେୟ ସଂଖ୍ୟକ ଲୋକଙ୍କୁ ଆଧୁନିକ ଢଙ୍ଗରେ ସମୃଦ୍ଧ କରାଯାଇପାରିବ । ବାକି ଅଞ୍ଚଳ ପାଇଁ ଅର୍ଥର ଅଭାବ ହେବ । ବରଂ ସମୃଦ୍ଧ ଅଞ୍ଚଳ ପାଇଁ ପଛୁଆ ଅଞ୍ଚଳରୁ ଲାଭ ସଂଗ୍ରହ କରିବାକୁ ହେବ । ସହରର ସମୃଦ୍ଧି ପାଇଁ ଗ୍ରାମାଞ୍ଚଳରୁ ଲାଭ ସଂଗ୍ରହ କରିବାକୁ ହେବ । ଦିଲ୍ଲୀ, ପଞ୍ଜାବ୍ ଓ ଗୁଜୁରାଟ୍‌ର ସମୃଦ୍ଧି ପାଇଁ ଓଡ଼ିଶାରୁ ଶସ୍ତା ଶ୍ରମ ପଠାଇବାକୁ ହେବ । ପଞ୍ଜାବ୍‌ର ଶ୍ରମିକ ଯେତିକି ମଜୁରି ନେବେ, ଓଡ଼ିଶାର ଦାଦନ ତାହାର ଚାରିଭାଗରୁ ଭାଗେ ମଜୁରିରେ କାମ କରିବେ । ପଞ୍ଜାବ୍‌କୁ ଏଇ ବାଟରେ ଲାଭ ମିଳିଥିଲା । କିନ୍ତୁ ଅନ୍ୟପକ୍ଷରେ ପଞ୍ଜାବ୍ ବା ଦିଲ୍ଲୀର ଲୋକ ଓଡ଼ିଶାକୁ ଆସି ମିସ୍ତ୍ରୀ ବା ମେନେଜର ହେଲେ ଓଡ଼ିଶାର ମେନେଜର, ମିସ୍ତ୍ରୀଠାରୁ ଢେର ଅଧିକା ମଜୁରି ପାଇବ । କେହି ଭାବିବା ଉଚିତ ନୁହେଁ ଯେ, ପଞ୍ଜାବ୍ ଓ ଦିଲ୍ଲୀର ଲୋକ ଦ୍ୱେଷମୂଳକ ଭାବରେ ଏପରି କରୁଛନ୍ତି; ମୋଟେ ନୁହେଁ, ସେମାନେ କେବଳ ଆଞ୍ଚଳିକ ବୈଷମ୍ୟର ସୁଯୋଗ ନେଉଛନ୍ତି । ବରଗଡ଼ କେନାଲ୍ ଅଞ୍ଚଳର ଗରିବ ଚାଷୀ ମଧ୍ୟ ମରୁଡ଼ି ଅଞ୍ଚଳର ଶ୍ରମିକକୁ ପସନ୍ଦ କରେ, କାରଣ ସେ ଅଳ୍ପ ମଜୁରୀ ନେଇ କାମ କରେ । ଏହା ପଛରେ ଦ୍ୱେଷ ନାହିଁ; ଅଛି ଅର୍ଥନୀତିର କଠୋର, ନିଷ୍ଠୁର ନିୟମ ।

ବ୍ରିଟିଶ୍ ଶାସକମାନେ ଭାରତର ବନ୍ଦରମାନଙ୍କୁ ମହାନଗରୀରେ ପରିଣତ କଲେ । ଦିଲ୍ଲୀ ସେମାନଙ୍କ ଶାସନକେନ୍ଦ୍ର ଥିଲା । ତେଣୁ ଦିଲ୍ଲୀ ମଧ୍ୟ ମହାନଗର ହେଲା । ଉତ୍ତରରେ ଦିଲ୍ଲୀ, ପୂର୍ବରେ କଲିକତା, ପଶ୍ଚିମରେ ବମ୍ବେ ଓ ଦକ୍ଷିଣରେ ମାନ୍ଦ୍ରାଜ୍ । ଏହିସବୁ ଅଞ୍ଚଳ ଆଂଶିକ ଭାବରେ ସମୃଦ୍ଧ ଦେଖାଗଲେ । ବାକି ଭାରତ, ମଝିରେ ଯାହା ରହିଗଲା, ତାହାର ଆଧୁନିକୀକରଣ ହେଲା ନାହିଁ । ସ୍ୱାଧୀନତା ପରେ ଯେଉଁ ସ୍ୱତନ୍ତ୍ର ଭାଷାଭିତ୍ତିକ ରାଜ୍ୟମାନଙ୍କର ଗଠନ ହେଲା, ପ୍ରତ୍ୟେକ ରାଜ୍ୟର ଗୋଟିଏ ଗୋଟିଏ ଶାସକ ଶ୍ରେଣୀ ତିଆରି ହେଲା । ଏହି ଶାସକ ଶ୍ରେଣୀମାନେ ନିଜ ନିଜ ରାଜ୍ୟର ରାଜଧାନୀମାନଙ୍କୁ

ସମୃଦ୍ଧ କଲେ ଓ ନିଜର ଘରଦ୍ୱାର ସେଇଠି ବନାଇନେଲେ । ରାଜସ୍ୱର ବଡ଼ ଅଂଶ ଏହି ରାଜଧାନୀରେ ଓ ତାହାର ପାଖ ଅଞ୍ଚଳରେ ଖର୍ଚ୍ଚ ହେଲା । ତେଣୁ ସ୍ୱାଧୀନତାର ପଚାଶ ବର୍ଷ ପରେ ଦେଖାଗଲା ଯେ, ପ୍ରତ୍ୟେକ ରାଜ୍ୟର ରାଜଧାନୀ ଓ ପାର୍ଶ୍ୱସ୍ଥ ଅଞ୍ଚଳ ସମୃଦ୍ଧ ବୋଲି ଜଣା ପଡୁଛି । ଅଥଚ ରାଜ୍ୟର ଅଧିକାଂଶ ଅଞ୍ଚଳ ଦୁର୍ଗମ ଓ ପଛୁଆ ହୋଇ ରହିଛି । ଗୋଟିଏ ନିୟମ ସବୁଠି କାମ କରୁଛି । ଭୁବନେଶ୍ୱର ଓ ପଶ୍ଚିମ ବା ଦକ୍ଷିଣ ଓଡ଼ିଶା ଭିତରେ ଯେଉଁ ପାର୍ଥକ୍ୟ, କଲିକତା ଓ ଉତ୍ତର ବଙ୍ଗ ମଧ୍ୟରେ ସେଇ ପାର୍ଥକ୍ୟ, ବମ୍ବେ ଓ ବିଦର୍ଭ ମଧ୍ୟରେ ସେଇ ଫାଙ୍କ ।

## ଆଞ୍ଚଳିକ ଅସ୍ମିତା

ଆଞ୍ଚଳିକ ବିଷମତାରୁ ଯେଉଁ ସଙ୍ଘର୍ଷ ଉପୁଜୁଛି ତାହା ଆଞ୍ଚଳିକ ଚେତନା ସୃଷ୍ଟି କରୁଛି ଓ ସେଥିରୁ ଆଞ୍ଚଳିକ ଅସ୍ମିତା ଜନ୍ମ ନେଉଛି । ଯେଉଁସବୁ ପଛୁଆ ଅଞ୍ଚଳର ନିଜସ୍ୱ ସଂସ୍କୃତି କିମ୍ବା ସ୍ୱତନ୍ତ୍ର ଭାଷା ଅଛି, ସେଠାରେ ଆଞ୍ଚଳିକ ଅସ୍ମିତାର ଏକ ସାଂସ୍କୃତିକ ଦିଗ ମଧ୍ୟ ପ୍ରକାଶ ପାଉଛି । ଅଲଗା ଭାଷା ନ ଥାଇ ମଧ୍ୟ ଆଞ୍ଚଳିକ ବିଦ୍ରୋହ ହେଉଛି - ତେଲେଙ୍ଗାନା, ବିଦର୍ଭ ଓ ଉତ୍ତରାଞ୍ଚଳ ଏହାର ଉଦାହରଣ । ତେଣୁ ସ୍ୱତନ୍ତ୍ର ରାଜ୍ୟ ଆନ୍ଦୋଳନର ମୁଖ୍ୟ ଆଧାର ଭାଷା ନୁହେଁ, ଆଞ୍ଚଳିକ ବିଷମତା । ପୁଞ୍ଜି ଓ ରାଜସ୍ୱର ବିଷମତାପୂର୍ଣ୍ଣ ବଣ୍ଟନରୁ ଏହା ଉପୁଜିଥାଏ ।

ଦିଲ୍ଲୀ, ଭୁବନେଶ୍ୱର ଓ କଳାହାଣ୍ଡିର ବିକାଶ ପାଇଁ କେତେ ପୁଞ୍ଜି ଓ କେତେ ରାଜସ୍ୱ ଖର୍ଚ୍ଚ ହେଉଛି, ଏହାର ବ୍ୟବସ୍ଥିତ ବିବରଣୀ କୌଣସି ପୁସ୍ତକରେ ଉପଲବ୍ଧ ହେଉନାହିଁ । କିନ୍ତୁ ଆନୁମାନିକ ଭାବରେ କହି ଦିଆଯାଇପାରିବ ଯେ, ଦିଲ୍ଲୀରେ ଯଦି ପ୍ରତି ବ୍ୟକ୍ତି ପାଇଁ ବିକାଶ ଖର୍ଚ୍ଚ ଏକ ହଜାର ଟଙ୍କା, ଭୁବନେଶ୍ୱରରେ ତାହା ୫୦ ଟଙ୍କା ଓ କଳାହାଣ୍ଡିରେ ପାଞ୍ଚ ଟଙ୍କା । ଆଧୁନିକ ବିକାଶ ଢାଞ୍ଚାରେ ଏହି ଅନୁପାତଗୁଡ଼ିକ ସ୍ୱାଭାବିକ । ନୂତନ ରାଜ୍ୟ ଗଠିତ ହେଲେ ଏହି ଅନୁପାତ ବଦଳିଯିବ ନାହିଁ । ଅନୁପାତ ବଦଳାଇବାକୁ ହେଲେ ପ୍ରଚଳିତ ବିକାଶ ନୀତିକୁ ବଦଳାଇବାକୁ ହେବ ଓ ଦିଲ୍ଲୀ-ଭୁବନେଶ୍ୱରର ଶାସକ ଗୋଷ୍ଠୀମାନଙ୍କୁ ବଦଳାଇବାକୁ ହେବ ।

ବିକାଶ ନୀତିର ପରିବର୍ତ୍ତନ କଥାଟାକୁ ଶିକ୍ଷିତ ଶ୍ରେଣୀର ଲୋକେ ହୃଦୟଙ୍ଗମ କରିପାରୁ ନାହାନ୍ତି । ବିକାଶ ନୀତି ବଦଳାଇବାର ଅର୍ଥ ରାଷ୍ଟ୍ରର ପୁନଃନିର୍ମାଣ ଓ ବିକାଶ ପାଇଁ ବିଦେଶୀ ପୁଞ୍ଜି, ଋଣ ଓ ଅତ୍ୟାଧୁନିକ ପ୍ରଯୁକ୍ତି ବିଦ୍ୟାର ଆବଶ୍ୟକତାକୁ ଅସ୍ୱୀକାର କରିବା ଓ ନିଜ ଦେଶର ପୁଞ୍ଜି ଓ ସରକାରୀ ରାଜସ୍ୱ ଉପରେ ନିର୍ଭର କରି ଆର୍ଥିକ ବିକାଶର ଯୋଜନା କରିବା । ମହାନଗର ଓ ତାହାର ଉପଭୋକ୍ତାବାଦୀ ଜୀବନ ପଦ୍ଧତିକୁ ପରିତ୍ୟାଗ କରିବା ।

ଆଧୁନିକ ବିଜ୍ଞାନର ବିରୋଧ କରିବା ଏକ ଭୁଲ୍ କଥା, କିନ୍ତୁ ବିଦେଶୀ ଯନ୍ତ୍ରବିଦ୍ୟା ଉପରେ ନିର୍ଭରଶୀଳ ରହିବା ନିଶ୍ଚିତ ଭାବରେ ଏକ ଭୁଲ୍ ନୀତି । ଯେତିକି ଆଧୁନିକ ଯନ୍ତ୍ର ଭାରତର ଲୋକ ତିଆରି କରିପାରିବେ, ତାହାର ବିବେକପୂର୍ଣ୍ଣ ଉପଯୋଗ କରାଯାଇପାରେ । ଅନ୍ୟପକ୍ଷରେ ପାରମ୍ପରିକ କୌଶଳଗୁଡ଼ିକର ସୁଚିନ୍ତିତ ବ୍ୟବହାର

କରି କୃଷି, ଜଙ୍ଗଲ ଓ କ୍ଷୁଦ୍ରଶିଳ୍ପର ବିକାଶ କରାଯାଇପାରିବ । ପ୍ରତ୍ୟେକ ଗ୍ରାମ ଆତ୍ମନିର୍ଭରଶୀଳ ହେଲେ ପ୍ରତ୍ୟେକ ଜିଲ୍ଲାଟି ମାନ ମଧ୍ୟ ନିଜର ମୌଳିକ ଆବଶ୍ୟକତାଗୁଡ଼ିକର ଉତ୍ପାଦନ ଓ ଆୟୋଜନ କରିପାରିବେ । ରାଷ୍ଟ୍ରକୁ ଆର୍ଥିକ ଭାବରେ ଆତ୍ମନିର୍ଭର କରିବା ପାଇଁ ଜିଲ୍ଲା ଓ ଗ୍ରାମସ୍ତରରୁ ଆତ୍ମନିର୍ଭରତାର ନିୟମକୁ ଲାଗୁ କରିବାକୁ ହେବ ।

ଏହି କଥାକୁ ଶିକ୍ଷିତ ଲୋକେ ଗ୍ରହଣ କରିପାରୁ ନାହାନ୍ତି, ତେଣୁ ସେମାନେ ଆଧୁନିକୀକରଣର ଗୋଲାମ୍ ପାଲଟୁଛନ୍ତି । ସେମାନେ ଚାହାନ୍ତି ଯେ, ବିଷମତାର ବ୍ୟବସ୍ଥା ରହୁ, କିନ୍ତୁ ସେମାନଙ୍କୁ ଅନ୍ୟମାନଙ୍କର ତୁଳନାରେ ବେଶୀ ସୁବିଧା ମିଳୁ । ସେମାନେ ଭାବନ୍ତି ଯେ, ଭାରତରେ ରହିବାକୁ ହେଲେ ଦିଲ୍ଲୀରେ ରହିବା ଓ ପୁଅଝିଅଙ୍କୁ ଆମେରିକା ପଠାଇବା । ଓଡ଼ିଶାରେ ରହିବାକୁ ପଡ଼ିଲେ ଭୁବନେଶ୍ୱରରେ ରହିବା ଓ ଦିଲ୍ଲୀ ଆମକୁ ଏକ ବିଶେଷ ପାଣ୍ଠି ଦେଉ ବୋଲି ଦାବି କରିବା । ବରଗଡ଼ରେ ରହିବାକୁ ହେଲେ କେନାଲ୍ କୂଳରେ ରହିବା ଓ ଭୁବନେଶ୍ୱରକୁ ଧମକ୍ ଦେବା ଯେ, ଆମେ ଅଲଗା ହୋଇ ସ୍ୱତନ୍ତ୍ର ରାଜ୍ୟ ଗଠନ କରିବୁ । ଏପରି କହୁ କହୁ କଥାରେ ଦୃଢ଼ତା ଆସିଯାଏ ଓ ଅଲଗା ରାଜ୍ୟ ପାଇଁ ଆନ୍ଦୋଳନ ତେଜି ଉଠେ ।

ଏହି କ୍ରମରେ ଭାରତର ଅନେକ ପଛୁଆ ଅଞ୍ଚଳ ସ୍ୱତନ୍ତ୍ର ରାଜ୍ୟର ଦାବୀ କରୁଛନ୍ତି ଓ କେତେକ ସ୍ଥାନରେ ସଫଳତା ହାସଲ କରିନେଉଛନ୍ତି । ତେଲେଙ୍ଗାନା ରାଜ୍ୟ ହୋଇନାହିଁ, କିନ୍ତୁ ଝାଡ଼ଖଣ୍ଡ୍ ହୋଇଛି । ବୁନ୍ଦେଲଖଣ୍ଡ୍ ହୋଇନାହିଁ, କିନ୍ତୁ ଉତ୍ତରାଞ୍ଚଳ୍ ହୋଇଛି । ବିଦର୍ଭ ହୋଇନାହିଁ, କିନ୍ତୁ ଛତିଶ୍‌ଗଡ଼୍ ହୋଇଛି । ନୂଆ ନୂଆ ଅଞ୍ଚଳରେ ଆଓ୍ୱାଜ୍ ଉଠୁଛି ମାତ୍ର ଆନ୍ଦୋଳନ ଉଠିପାରୁ ନାହିଁ, ଯଥା ପୂର୍ବ ଉତ୍ତର ପ୍ରଦେଶ । ଦୁଇ ବର୍ଷ ତଳେ ପଶ୍ଚିମ ବଙ୍ଗର ଉତ୍ତର ଭାଗରେ କାମ୍‌ତାପୁର୍ ପିପୁଲ୍‌ସ୍ ପାର୍ଟି ନାମକ ଏକ ସଙ୍ଗଠନ ଖବରକାଗଜମାନଙ୍କର ଧ୍ୟାନ ଆକର୍ଷଣ କଲା । ଓଡ଼ିଶାର କେତେକ ପଶ୍ଚିମ ଜିଲ୍ଲାରେ କୋଶଳ ରାଜ୍ୟର ଆନ୍ଦୋଳନ ଓଡ଼ିଶାର ଗଣମାଧ୍ୟମର ଧ୍ୟାନ ଆକର୍ଷଣ କରିଛି । କାମ୍‌ତାପୁରୀ ପରି କୋଶଳୀ ଗୋଟିଏ ଭାଷାର ନାମ । ଆଗରୁ କୁହାଯାଇଛି ଯେ, ଭାଷା ନିମିତ୍ତ ହୋଇପାରେ, ମାତ୍ର ବିଦ୍ରୋହର ମୁଖ୍ୟ ଆଧାର ହେଉଛି ଆଞ୍ଚଳିକ ବୈଷମ୍ୟ ।

ବୈଷମ୍ୟ ଆଞ୍ଚଳିକ ହେଉ କିମ୍ବା ଅନ୍ୟ ଯେକୌଣସି ପ୍ରକାରର, ଏହା ବିରୁଦ୍ଧରେ ଆନ୍ଦୋଳନ ଏକ ସ୍ୱାଗତଯୋଗ୍ୟ ଘଟଣା । କିନ୍ତୁ ବିଷମତାପୂର୍ଣ୍ଣ ଆର୍ଥିକ ନୀତିଗୁଡ଼ିକର ବିକଳ୍ପ ନଖୋଜିବା ଆନ୍ଦୋଳନର ଏକ ବିକୃତି । ଦୁଇ ତିନିବର୍ଷ ପରେ ପଶ୍ଚିମ ଓ ଦକ୍ଷିଣ ଓଡ଼ିଶାର ଲୋକେ ପଚାରିବେ ଛତିଶ୍‌ଗଡ଼୍ ଏକ ସ୍ୱତନ୍ତ୍ର ରାଜ୍ୟ ହୋଇସାରିଛି । ସେହି ଅଞ୍ଚଳର ଜନସାଧାରଣଙ୍କର ଆର୍ଥିକ ଓ ସାମାଜିକ ପରିସ୍ଥିତିରେ ଗୁଣାତ୍ମକ ପରିବର୍ତ୍ତନ ଆସିଛି କି ? ଛତିଶ୍‌ଗଡ଼୍ ରାଜ୍ୟ ହେବାପରେ ତାହାର ଏକ ଶାସକ ଗୋଷ୍ଠୀ ତିଆରି ହୋଇଛି । ଏହି ଶାସକ ଗୋଷ୍ଠୀ ପୂର୍ବେ ମଧ୍ୟପ୍ରଦେଶ୍‌ର ଶାସକ ଗୋଷ୍ଠୀର ଗୌଣ ଭାଗ ଥିଲା । ସ୍ୱତନ୍ତ୍ର ଛତିଶ୍‌ଗଡ଼୍‌ରେ ତାହା ମୁଖ୍ୟ ଶାସକ ଗୋଷ୍ଠୀ ହୋଇପାରିଛି । ଛତିଶ୍‌ଗଡ଼୍ ରାଜ୍ୟକୁ ଯେଉଁ ପୁଞ୍ଜି, ଋଣ ବା ରାଜସ୍ୱ ମିଳିବ, ତାହାର ବଡ଼ ଅଂଶ ଏହି

ଗୋଷ୍ଠୀର ସନ୍ତାନସନ୍ତତିମାନଙ୍କୁ ଆଧୁନିକ ସମୃଦ୍ଧିର ସୁଖ ଦେବାପାଇଁ ଖର୍ଚ୍ଚ ହେବ । କେତେକ ଶିଳ୍ପ ଓ ବ୍ୟବସାୟ ଛତିଶ୍‌ଗଡ୍‌ରେ ଖୋଲିବ, ଯାହା ସ୍ୱତନ୍ତ୍ର ରାଜ୍ୟ ନହେଲେ ମିଳି ନଥାନ୍ତା । ସେଗୁଡ଼ିକର ପ୍ରଭୁ ଏହି ଶାସକ ଗୋଷ୍ଠୀ ଓ ତାହାର ସନ୍ତାନସନ୍ତିମାନେ ହେବେ । ଏମାନେ ସମସ୍ତେ ରାଜଧାନୀ ରାୟପୁର ଓ ପାଖ ଅଞ୍ଚଳରେ ବସବାସ କରିବେ । ତେଣୁ ଏହି ଅଞ୍ଚଳର ସମୃଦ୍ଧି ଆଗ ଅପେକ୍ଷା ବେଶୀ ଦେଖାଯିବ । ଏହା ବ୍ୟତୀତ ଯଦି ଆଉ କିଛି ହେବ, ତାହା ହିଁ ଭବିଷ୍ୟତର ସ୍ୱତନ୍ତ୍ର ରାଜ୍ୟ ଆନ୍ଦୋଳନମାନଙ୍କୁ (ଯଥା କୋଶଳ ରାଜ୍ୟ ଆନ୍ଦୋଳନକୁ) ବାଟ ଦେଖାଇବ । ରାଜଧାନୀ ରାୟପୁର୍‌ ଠାରୁ ଦୂର ଅଞ୍ଚଳରେ ବସ୍ତର୍‌, ଅମ୍ବିକାପୁର୍‌ ଓ ରାୟଗଡ୍‌ ଜିଲ୍ଲାର ଗ୍ରାମାଞ୍ଚଳମାନଙ୍କରେ ରହୁଥିବା ଜନସାଧାରଣଙ୍କର କୌଣସି ଗୁଣାତ୍ମକ ଉନ୍ନତି ହୋଇ ପାରିବ କି ? ସ୍ୱତନ୍ତ୍ର ଛତିଶ୍‌ଗଡ୍‌ ରାଜ୍ୟରେ ସେମାନଙ୍କର କିଛି ଭାଗ ଅଛି କି ? ଏହି ପ୍ରଶ୍ନର ଉତ୍ତର କୁହେଳିକାମୟ ।

ଯଦି ସ୍ୱତନ୍ତ୍ର କୋଶଳ ରାଜ୍ୟର ସ୍ଥାପନା ହୁଏ, ତାହାହେଲେ ଏହି ରାଜ୍ୟର ମଧ୍ୟ ଏକ ଶାସକ ଶ୍ରେଣୀ ତିଆରି ହେବ । ପଶ୍ଚିମ ଓଡ଼ିଶାରେ ଥିବା ବିଭିନ୍ନ ଜିଲ୍ଲାର ବଛାବଛା ପରିବାର ଏହି ଶ୍ରେଣୀର ଅନ୍ତର୍ଭୁକ୍ତ ହେବେ । ଉଚ୍ଚ ନ୍ୟାୟାଳୟ, ସଚିବାଳୟ, ମନ୍ତ୍ରିମଣ୍ଡଳ ଓ ସରକାରୀ ବ୍ୟବସାୟିକ ସଂସ୍ଥାମାନ ନୂଆ ଭାବରେ ଗଠିତ ହେବାରୁ ଶାସକ ଶ୍ରେଣୀର ପରିବାରମାନେ ତଦ୍ୱାରା ଲାଭାନ୍ୱିତ ହେବେ । କିନ୍ତୁ ଏମାନେ ରାଜ୍ୟ ଜନସଂଖ୍ୟାର ଏକ ପ୍ରତିଶତ ମଧ୍ୟ ହେବେ ନାହିଁ । ତେଣୁ ଆନ୍ଦୋଳନର କର୍ମକର୍ତ୍ତାମାନଙ୍କୁ ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଉତ୍ତର ଦେବାକୁ ହେବ । ଭାରତ ଓ ଓଡ଼ିଶା ସରକାରଙ୍କର ଯେଉଁ ନୀତି ଫଳରେ ଓଡ଼ିଶାରେ ଆଞ୍ଚଳିକ ବୈଷମ୍ୟ ସୃଷ୍ଟି ହୋଇଛି, ତାହାର ପରିବର୍ତ୍ତନ ଓ ପ୍ରତିକାର କେଉଁ ବାଟରେ ହେବ ?

ରାଜସ୍ୱ ନିଅଣ୍ଟର ବିକଟ ସମସ୍ୟାର ସମ୍ମୁଖୀନ ହେବାପାଇଁ କୋଶଳ ରାଜ୍ୟର ସରକାର କେଉଁ କେଉଁ ଖର୍ଚ୍ଚ କାଟ କରିବେ ଓ କେଉଁ ଧରଣର ରାଜସ୍ୱ ବୃଦ୍ଧି କରିବେ ?

କୋଶଳ ରାଜ୍ୟରେ କୃଷିର ବିକାଶ କିପରି ହେବ, କୃଷିଜାତ ଦ୍ରବ୍ୟର ଉଚିତ୍‌ ମୂଲ୍ୟ କିପରି ମିଳିବ ଓ ମରୁଡ଼ି ଅଞ୍ଚଳର କୃଷି ବିକାଶ କେଉଁପରି ହେବ ? ଭୂମିର ମାଲିକାନା ଓ ସିଲିଂ ଆକାରରେ କେଉଁ ପରିବର୍ତ୍ତନ ହେବ ?

ଜଙ୍ଗଲ ଓ ଖଣିର ବ୍ୟବସ୍ଥାରେ କି କି ପରିବର୍ତ୍ତନ ହେବ ? ଆଦିବାସୀମାନଙ୍କୁ ଜଙ୍ଗଲ ଓ ଖଣିରେ କେଉଁ ଅଧିକାର ମିଳିବ ? କେନ୍ଦୁପତ୍ର ବ୍ୟବସାୟର ପୁନର୍ଗଠନ କିପରି ଭାବରେ ହେବ ?

କୋଶଳ ରାଜ୍ୟର ସ୍ୱଚ୍ଛ ପାଣ୍ଠି ଭିତରେ ବେକାରମାନଙ୍କୁ ରୋଜଗାର ଦେବାପାଇଁ କେଉଁ ବ୍ୟବସ୍ଥା ହେବ ?

ପ୍ରାଥମିକ ଓ ମାଧ୍ୟମିକ ଶିକ୍ଷାରେ ପଢୁଆ ଲୋକମାନଙ୍କର ଅନୁପାତ କିପରି ବଢ଼ିବ ଓ ଭାରତର ଉନ୍ନତ ଜିଲ୍ଲାମାନଙ୍କର ଶିକ୍ଷିତ ସଂଖ୍ୟାହାର ସାଙ୍ଗରେ ସମାନ ହୋଇପାରିବ ?

ପଶ୍ଚିମ ଓ ଦକ୍ଷିଣ ଓଡ଼ିଶାର ଲୋକେ ପ୍ରଚଳିତ ଅମଲାତାନ୍ତ୍ରିକ ବ୍ୟବସ୍ଥା ଦ୍ୱାରା ନିର୍ଯ୍ୟାତିତ । ଏହି ଅମଲାତାନ୍ତ୍ରିକ ବ୍ୟବସ୍ଥାରେ କେଉଁ ସଂସ୍କାର କିଭଳି ଅଣାଯିବ ?

ଓଡ଼ିଶାର ସବୁ ଅଞ୍ଚଳରେ ଥିବା ସାମାଜିକ ଭେଦଭାବଗୁଡ଼ିକର ପ୍ରତିକାର କେଉଁପରି ହେବ ?

ଏଗୁଡ଼ିକ ହେଉଛି ବାସ୍ତବିକ ସମସ୍ୟା ଯାହାର ସମାଧାନ ନ ଖୋଜିଲେ କୌଣସି ରାଜନୈତିକ ଆନ୍ଦୋଳନର ସାର୍ଥକତା ନାହିଁ । ଏକ ଦିଗରେ ଆଞ୍ଚଳିକ ବିଷମତା ସୃଷ୍ଟି କରୁଥିବା ବିକାଶ ନୀତି, ଅନ୍ୟ ଦିଗରେ ପଛୁଆ ଅଞ୍ଚଳମାନଙ୍କର ବାସ୍ତବ ସମସ୍ୟା - ଉଭୟ ଦିଗ ପ୍ରତି ଆଭିମୁଖ୍ୟ ସ୍ୱଷ୍ଟ ହେବା ଦରକାର । ସ୍ୱତନ୍ତ୍ର ରାଜ୍ୟ ଏକ ନୂଆ ପ୍ରକାରର ରାଜ୍ୟ ହେବା ଆବଶ୍ୟକ ।

୩୧ ଅଗଷ୍ଟ, ୨୦୦୧

ବିଂଶ ଶତାବ୍ଦୀର ଶେଷ ଦୁଇ ଦଶକ ଭାରତର ଜାତୀୟ ଜୀବନରେ ଏକ ସନ୍ଧିକାଳ । ଏହି କାଳଖଣ୍ଡରେ କେତେକ ଗୁରୁତ୍ୱପୂର୍ଣ୍ଣ ଘଟଣାବଳୀ ଦେଶର ରାଷ୍ଟ୍ରୀୟ ଚେତନାକୁ ଦୋହଲାଇ ଦେଲା ଓ ସାଧାରଣ ଲୋକଙ୍କଠାରୁ ଆରମ୍ଭ କରି ବୁଦ୍ଧିଜୀବୀ ସ୍ତରୀୟ ଲୋକଙ୍କର ଚିନ୍ତା ଓ ବିଚାର ପ୍ରକ୍ରିୟା ଓଲଟପାଲଟ ହୋଇଗଲା । ସେହି ଘଟଣାଗୁଡ଼ିକ ହେଉଛି ମଣ୍ଡଳ କମିଶନ୍‌ର ସୁପାରିଶ୍‌କୁ କାର୍ଯ୍ୟକାରୀ କରିବା ପରବର୍ତ୍ତୀ ଘୋର ସାମାଜିକ ଉତ୍ତେଜନା, ଅଯୋଧ୍ୟାରେ ରାମ ମନ୍ଦିର ପ୍ରତିଷ୍ଠା ପାଇଁ ଆନ୍ଦୋଳନ ଓ ବାବ୍ରୀ ମସ୍‌ଜିଦ୍‌ର ଧ୍ୱଂସ, ତଥା ନୂଆ ଆର୍ଥିକ ନୀତି ନାମରେ ଉଦାରୀକରଣ-ଘରୋଇକରଣ-ଜଗତୀକରଣ ଯୁଗର ଆରମ୍ଭ । ଏହି ସବୁ ଘଟଣାବଳୀ ରାଷ୍ଟ୍ରୀୟ ଚେତନାକୁ ଗୋଟିଏ ଗୋଟିଏ ଶକ୍ତ ଧକ୍କା ପହଞ୍ଚାଇଲା । ଅନେକ ତଥାକଥିତ ପ୍ରଗତିଶୀଳ ବୁଦ୍ଧିଜୀବୀମାନଙ୍କର ବିଚାର ଜଗତରେ ବିଭ୍ରାଟ ସୃଷ୍ଟି ହେଲା । ଏହି ସବୁ ଘଟଣାବଳୀର ଠିକ୍ ପୂର୍ବରୁ ଆନ୍ତର୍ଜାତିକ ସ୍ତରରେ ସୋଭିଏତ୍ ଋଷ୍‌ର ବିଘଟନ ସାଙ୍ଗକୁ ଏକ-ଧ୍ରୁବୀୟ ବିଶ୍ୱର ଅଭ୍ୟୁଦୟ ହୋଇ ସାରିଥାଏ ।

ଏହି ପରି ଏକ ସନ୍ଧିକ୍ଷଣରେ କିଶନ ପଟ୍ଟନାୟକ ଦେଶର କତିପୟ ରାଜନୈତିକ ଚିନ୍ତକମାନଙ୍କ ମଧ୍ୟରୁ ଜଣେ ଯିଏ କି ଅଭୁତପୂର୍ବ ବୈଚାରିକ ସନ୍ତୁଳନ ତଥା ଦୂରଦୃଷ୍ଟିର ପରିଚୟ ଦେଇ ଯାଇ ଅଛନ୍ତି । ଏହି ପୁସ୍ତକଟିରେ ସ୍ଥାନିତ ପ୍ରବନ୍ଧଗୁଡ଼ିକରୁ ଏହାର ଜ୍ୱଳନ୍ତ ପ୍ରମାଣ ମିଳିପାରିବ । ନୂଆ ଆର୍ଥିକ ନୀତି, ସାମ୍ପ୍ରଦାୟିକତା, ଭାଷା ସମସ୍ୟା, ସମାଜବାଦର ଭବିଷ୍ୟତ, ଦେଶରକ୍ଷା, ଗଣତନ୍ତ୍ର, ପ୍ରଯୁକ୍ତି ବିଦ୍ୟା, ନାରୀ ଆନ୍ଦୋଳନ ଓ ନାରୀ ସମସ୍ୟା, ଜଗତୀକରଣ, ଶାସ୍ତ୍ରର ଭୂମିକା, ରାଜନୀତି, ପ୍ରାକୃତିକ ସମ୍ପଦର ଉପଯୁକ୍ତ ବିନିଯୋଗ, ଭାରତୀୟ ରାଷ୍ଟ୍ରୀୟ ବ୍ୟବସ୍ଥା, ହିନ୍ଦୁ ଧର୍ମ, ସାମାଜିକ ଓ ଆଞ୍ଚଳିକ ବୈଷମ୍ୟ, ଦଳିତ-ଶୂଦ୍ର ସଂସ୍କୃତି ଓ ରାଜନୀତି, ଶିକ୍ଷା ବ୍ୟବସ୍ଥା ଇତ୍ୟାଦି ବିଷୟରେ ତାଙ୍କର ସନ୍ଧାନୀ ମନ ଏହି ପ୍ରବନ୍ଧଗୁଡ଼ିକରେ, ଭାରତର ନିର୍ଦ୍ଦିଷ୍ଟ ସାମାଜିକ ସନ୍ଦର୍ଭକୁ ଆଖି ଆଗରେ ରଖି, ଅତି ସଚ୍ଚୋଟତାର ସହିତ ବିକଳ୍ପର ଅନୁସନ୍ଧାନ କରିଅଛି । ଏହି ସବୁ ପ୍ରବନ୍ଧ ଭିତରେ ସେ ଭାରତୀୟ ସମାଜ ଓ ମାନବ ଜାତି ସମ୍ମୁଖିନ ହେଉଥିବା ସଙ୍କଟଗୁଡ଼ିକର ବିଶ୍ଳେଷଣ ସାଙ୍ଗକୁ ସେଗୁଡ଼ିକର ସମାଧାନର ସୂତ୍ର ଖୋଜିବାକୁ ଚେଷ୍ଟା କରିଛନ୍ତି ।

ଆମ ଆଗରେ ଉଭା ହୋଇଥିବା ଆର୍ଥିକ, ସାମାଜିକ ଓ ରାଜନୈତିକ ଆହ୍ୱାନର ପ୍ରତ୍ୟୁତ୍ତର ଦେବାପାଇଁ ଓ ପ୍ରତ୍ୟେକ ଚିନ୍ତାଶୀଳ ବ୍ୟକ୍ତିର ଚିନ୍ତା ଓ ଚେତନାକୁ ଏକ ସନ୍ତୁଳିତ ମାର୍ଗରେ ନେବାପାଇଁ ଏହି ପ୍ରବନ୍ଧ ସଙ୍କଳନଟି ସହାୟକ ହେବ । ଜନ ଆନ୍ଦୋଳନର କର୍ମୀ, ବୁଦ୍ଧିଜୀବୀ, ସାମାଜିକ-ରାଜନୈତିକ କାର୍ଯ୍ୟକର୍ତ୍ତା, ମାନବ ବିଜ୍ଞାନର ଛାତ୍ର, ସାଧାରଣ ପାଠକ, ଏହି ସମସ୍ତ ସମୁଦାୟଙ୍କ ନିକଟରେ ଏହା ପହଞ୍ଚିପାରିବ ଓ ଆଦୃତ ହେବ ବୋଲି ଆମର ଆଶା ଓ ବିଶ୍ୱାସ ।

ବିକଳ୍ପ ପ୍ରକାଶନ
ସମତା ଭବନ
ବରଗଡ଼ - ୭୬୮୦୨୮

